# ସାଧନାର ପଥେ

ପ୍ରଥମ ଖଣ୍ଡ

ହରେକୃଷ୍ଣ ମହତାବ୍



ଡକ୍ଟର ହରେକୃଷ୍ଣ ମହତାବ୍ ଫାଉଣ୍ଡେସନ୍

# ସାଧନାର ପଥେ
(ପ୍ରଥମ ଖଣ୍ଡ)

ପ୍ରକାଶକ :

ଭର୍ତ୍ତୃହରି ମହତାବ
ଡକ୍ଟର ହରେକୃଷ୍ଣ ମହତାବ ଫାଉଣ୍ଡେସନ୍
କଟକ-୨

ପରିମାର୍ଜିତ ଦ୍ବିତୀୟ ସଂସ୍କରଣ
ଦେବସ୍ନାନ ପୂର୍ଣ୍ଣିମା, ୧୯୮୭

ମୁଦ୍ରାକର :

ପ୍ରଜାତନ୍ତ୍ର ପ୍ରେସ୍,
କଟକ-୨

ମୂଲ୍ୟ :

ବନ୍ଧାଇ ଟ ୪୫-୦୦

**Price Rs.45-00**

**Revised Edition**

**June, 1987**

**SADHANARA PATHE : Part—I (Autobiography of Dr. Harekrushna Mahtab from 1899 to 1946 Printed at Prajatantra Press, Cuttack-2 and Published by Bhartruhari Mahtab, Dr. Harekrushna Mahtab Foundation, Cuttack-2, Orissa**

# ସୂଚୀ


୧ । ସାଧନାର ପଥେ ୧

୨ । ବାଲ୍ୟ ଜୀବନ ୩

୩ । ଉତ୍କଳ ସ୍କୁଲ୍ ୮

୪ । ବିବାହ ୧୩

୫ । କଲେଜ ଜୀବନ ୧୯

୬ । ସାଧାରଣ ଜୀବନ ଆରମ୍ଭ ୩୬

୭ । ଜେଲ ଜୀବନ ଆରମ୍ଭ ୬୮

୮ । ୧୯୨୩-୧୯୨୯ ୮୮

୯ । ୧୯୩୦-୧୯୩୧ ୧୨୬

୧୦ । ୧୯୩୨-୧୯୩୬ ୧୪୨

୧୧ । ୧୯୩୭-୧୯୪୦ ୧୬୧

୧୨ । ଗତ ମହାଯୁଦ୍ଧ ଓ ତା' ପରେ ୨୦୬


---

# ସାଧନାର ପଥେ

ଜୀବନରେ ସମୟ ଆସେ, ଯେତେବେଳେ ମନୁଷ୍ୟ ପଛକୁ ଅନାଇ ଅତୀତର ଆଲୋଚନା କରେ । ନିଜର ମନ ପରିଷ୍କାର କରିବାପାଇଁ ଓ ଅତୀତକୁ ଗୁନ୍ଥି ବର୍ତ୍ତମାନ ଓ ଭବିଷ୍ୟତର ପଥ ନିର୍ଣ୍ଣୟ କରିବାପାଇଁ ଜୀବନର ଆରମ୍ଭରୁ ଆଜି ସୁଦ୍ଧା ଯେତିକି ମନେ ଅଛି, ତାହା ସବୁ ଆଲୋଚନା କରି ଦେଖିବାକୁ ମନ ହୁଏ । କି ଘାତ-ପ୍ରତିଘାତ ଭିତରେ ଗତି କରି ଆସି ଏଠି ପହଞ୍ଚିଛି, ତାହା ଅନ୍ତତଃ ମୋ ପକ୍ଷରେ ଜାଣିବା ଉଚିତ । ମୋର ଜୀବନରେ ଯେ କିଛି ବିଶେଷତ୍ୱ ଅଛି, ତାହା ନୁହେଁ । ପ୍ରତ୍ୟେକ ଜୀବନ ଏକ ବିରାଟ ଉପନ୍ୟାସ । କେତେ ଛୋଟବଡ଼ ଘଟଣାର ଘାତ-ପ୍ରତିଘାତରେ ପ୍ରତ୍ୟେକ ଜୀବନ ଏ ସଂସାରର ଭିଡ଼ ଭିତରେ ଯେ ଠେଲିପେଲି ଚାଲିଛି, ଭାବିଲେ ବିସ୍ମିତ ହେବାକୁ ହୁଏ । ମୋ ପରି ଅନେକେ ଗତି କରି ଆସୁଛନ୍ତି, ଅଜ୍ଞାତରୁ ବାହାରି ପୁଣି ସେ ଅଜ୍ଞାତରେ ଲୋପ ପାଇ ଯାଉଛନ୍ତି । ଏ ମଢ଼ି ଅବସ୍ଥା ଟିକିକ କାହାର କିପରି ଜାଣିଲେ ଅଗ୍ରଗତିରେ ପରସ୍ପରକୁ ସାହାଯ୍ୟ କରିବ; ତେଣୁ ଏ ଆଲୋଚନା, ନିଜ ମନର ପ୍ରକାଶ ଚେଷ୍ଟା ମାତ୍ର ।

ପ୍ରତ୍ୟେକ ଜୀବନ ବାସ୍ତବିକ ତା' ପକ୍ଷରେ ଏକ ବିରାଟ ସାଧନା । ସେ ନିଜେ ତାହା ଜାଣିପାରୁ ବା ନ ପାରୁ, ତା'ର ନିଜ ଜୀବନଟି ମଧ୍ୟରେ ସେ ନାନା ଅବସ୍ଥାର ତାଡ଼ନା ଭିତରେ ଗତି କରି ତା'ର ନିର୍ଦ୍ଦିଷ୍ଟ ସାଧନା ସେ ସମ୍ପାଦନ କରୁଛି । ଜୀବନଟି ଜନ୍ମଠାରୁ ଆରମ୍ଭ ହୋଇନାହିଁ କି ମୃତ୍ୟୁରେ

ତା'ର ଶେଷ ହୋଇପାରିନାହିଁ । ବହୁ ଅଭିଜ୍ଞତା ଓ ସାଧନା ପ୍ରତ୍ୟେକ ଜୀବନ ବହୁ କାଳରୁ ଅର୍ଜନ କରି ଆସୁଛି ଓ ବହୁକାଳ ପର୍ଯ୍ୟନ୍ତ ସେହିପରି କରିଚାଲିଥିବ । ଏ ସମସ୍ତ ଭିତରେ କୌଣସି ନିୟମ ଓ ଶୃଙ୍ଖଳା ନିର୍ଣ୍ଣୟ କରିବା ସାଧାରଣ ମନୁଷ୍ୟର କାମ ନୁହେଁ । ସିଦ୍ଧ ସାଧକମାନେ କିଛି ହେଲେ ଯାହା ଅନୁଭବ କରିଥିବେ, ସେ ଉପରେ ମନ ଦେବାପାଇଁ ମଧ୍ୟ ସାଧାରଣ ଲୋକର ଅବସର ନାହିଁ ବା ସ୍ପୃହା ନାହିଁ । ଏତିକି କହିଲେ ଯଥେଷ୍ଟ ଯେ, ପ୍ରତ୍ୟେକ ନିଜ ନିଜ ସାଧନାର ପଥ ଅତିକ୍ରମ କରି ଯାଉଛନ୍ତି । ପଥ ମଝିରେ ଯେପରି ଆଗକୁ ଯିବାପାଇଁ ବେଳେ ବେଳେ ପଛକୁ ଅନାଇବାକୁ ପଡ଼େ, ସେହିପରି ନିଜ ଜୀବନର ଅତୀତ ଅନୁଭୂତି ମଧ୍ୟ ଆଲୋଚନା କରିବାର ଆବଶ୍ୟକତା ଥାଏ । ଦୈନନ୍ଦିନ ବିବରଣୀ ଲେଖି ରଖିବା ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ଏକ ଆଶ୍ରମ ନିୟମ । ତଦ୍ଦ୍ୱାରା ନିଜକୁ ନିଜେ ଜାଣିବାରେ ସାହାଯ୍ୟ ମିଳେ । ଅଭ୍ୟାସବଶତଃ ମୁଁ ଦୈନନ୍ଦିନ ବିବରଣୀ ଲେଖି ରଖି ଆସୁଛି । ସବୁ ଚିଠିପତ୍ର ସମ୍ଭାଳି ରଖିବାରେ ମୋର ଉତ୍ସାହ ବରାବର ଅଛି । ବାରମ୍ବାର ଘର ଖାନତଲାସ ହୋଇ ବହୁ ଚିଠିପତ୍ର ପୋଲିସ ଦ୍ୱାରା ଜବତ ହୋଇ ନଷ୍ଟ କରି ଦିଆଯାଇଥିଲେ ମଧ୍ୟ ମୋର କଲେଜ ସମୟରୁ ଅନେକ ଚିଠିପତ୍ର ଓ ଦୈନନ୍ଦିନ ବିବରଣୀ ଆଜି ସୁଦ୍ଧା ଅଛି । ତେଣୁ ମୋର ଅତୀତ ଆଲୋଚନା କରିବାକୁ କିଛି ସାହାଯ୍ୟ ମିଳୁଛି ।

ମୁଁ ନିଜକୁ ବିଶିଷ୍ଟ ବୋଲି କେବେ ମନେ କରେନାହିଁ । ବାସ୍ତବିକ ମୁଁ ବିଶିଷ୍ଟ ନୁହେଁ । ନିଜ ବିଶ୍ୱାସରେ ନିଜେ ଦୃଢ଼ ରହି ସଂସାର ଭିତରେ ଠେଲି ପେଲି ଚାଲିବା ମୋର ସ୍ୱଭାବ ହୋଇଗଲାଣି । ତାହା ଭଲ କି ମନ୍ଦ ଅତୀତକୁ ଆଲୋଚନା କରି ଜାଣିହେବ । ସାର୍ଥକତା ଓ ବ୍ୟର୍ଥତାର ପରସ୍ପର ସଂଘାତରେ ନିଜର ଲକ୍ଷ୍ୟ ଠିକ୍ ରଖି ଗତି କରି ପାରୁଛି କି ନାଁ, ତାହା ମଧ୍ୟ ଜୀବନରେ ଜାଣିବା ଉଚିତ । ଏହିସବୁ ଦୃଷ୍ଟିରୁ ମୋର ଜୀବନ କାହାଣୀ ଲେଖା । ଏଥିରୁ ଭଲକରି ସମସ୍ତେ ଜାଣି ପାରିବେ ଯେ, ଏଥିରେ କୌଣସି ପ୍ରକାର ବିଶେଷତ୍ୱ କିଛି ନାହିଁ ବା କିଛି ରହସ୍ୟ ମଧ୍ୟ ନାହିଁ ।

---

# ବାଲ୍ୟ ଜୀବନ

ମୋର ଜନ୍ମ—ସନ ୧୩୦୭ ସାଲ ବିଛା ୬ଦିନ ମଙ୍ଗଳବାର ଖ୍ରୀଷ୍ଟାବ୍ଦ ୧୮୯୯ ମସିହା ନଭେମ୍ବର ତା୨୧ରିଖ । ଏକ ପଲ୍ଲୀଗ୍ରାମ, ନାମ ଅଗରପଡ଼ା, ଜିଲ୍ଲା ବାଲେଶ୍ୱରରେ ମୋର ଜନ୍ମ । ସେଦିନ ସପ୍ତଗ୍ରହ ଯୋଗ ହୋଇଥିଲା ଓ ସେଦିନ ମୋର ଜନ୍ମ ଯୋଗୁଁ ମୋର ଗ୍ରହ ଭାରି ଟାଣ ବୋଲି ପିଲାଦିନରୁ ମୁଁ ଶୁଣି ଆସୁଛି । ମୋର ଜନ୍ମଦାତା ପିତା ସ୍ୱର୍ଗତ କୃଷ୍ଣଚରଣ ଦାସ ଜଣେ ଦରିଦ୍ର ପରିବାରର ଲୋକ ଥିଲେ । ମାତ୍ର ସେ ଅତି ବୁଦ୍ଧିମାନ୍ ଥିଲେ ଓ ଦେଖିବାକୁ ଅତି ସୁନ୍ଦର ଥିଲେ । ଶିକ୍ଷା ବୋଲିଲେ ଯାହା ବୁଝାଏ, ସେଥିରୁ ସେ କିଛି ହେଲେ ପାଇବାର ସୁବିଧା ପାଇ ନଥିଲେ । ମୋର ମାଆ ସ୍ୱର୍ଗତ ତୋହଫା ବିବି ସ୍ୱର୍ଗତ ଜଗନ୍ନାଥ ମହତାବଙ୍କ କନ୍ୟା । ସେ ଅଗରପଡ଼ାର ଜଣେ ଜମିଦାର ଓ ସେ ସେହି ଘରର କର୍ତ୍ତା, ତାର ଇତିହାସ ଯୋଗେ ସେ ପ୍ରସିଦ୍ଧ ।

ଆକବରଙ୍କ ସମୟରେ ଯେତେବେଳେ ମୋଗଲବାହିନୀ ବଙ୍ଗ, ବିହାର ଓ ଓଡ଼ିଶା ଅଭିମୁଖେ ଯାତ୍ରା କରିଥିଲେ, ସେତେବେଳେ ସେହି ବାହିନୀମାନଙ୍କ ସହ ଖାଦ୍ୟ ପ୍ରଭୃତି ଜିନିଷ ଯୋଗାଇବାପାଇଁ ବେପାରୀମାନେ ମଧ୍ୟ ଆସୁଥିଲେ । ଉତ୍ତର-ପଶ୍ଚିମ ଭାରତର କ୍ଷେତ୍ରି ଜାତି ଏ ବେପାରକୁ ଏକଚାଟିଆ କରି ନେଇଥିଲେ । କଥିତ ଅଛି ଯେ—ସେହି ସମୟରେ କେତେକ କ୍ଷେତ୍ରି ପରିବାର ଓଡ଼ିଶାରେ ଆସି ବସବାସ କରି ରହି ଯାଇଥିଲେ । ଆଗରପଡ଼ାର ଜମିଦାର ପରିବାର ଅମୃତସରରୁ ଆସିଥିଲେ ବୋଲି କଥିତ ଅଛି । ଗୁରୁ ନାନକ କ୍ଷେତ୍ରି ଜାତିର ଅତି ପ୍ରଧାନ ବ୍ୟକ୍ତି ଥିବାରୁ କ୍ଷେତ୍ରିମାନେ ସମସ୍ତେ ଶିଖ୍ ନ ହେଲେ ମଧ୍ୟ ଗୁରୁ ନାନକଙ୍କୁ ମାନନ୍ତି; ଏଣୁ ଆଗରପଡ଼ାରେ ଗୁରୁ ନାନକଙ୍କର ଗାଦିଟିଏ ବହୁକାଳରୁ ଥିଲା । ତାହା 'ଭାଇଜୀ ବାଡ଼ି' ବୋଲି ପ୍ରସିଦ୍ଧ । ଅଳ୍ପ କେତେବର୍ଷ ହେଲା ଏ ଅନୁଷ୍ଠାନର ସମ୍ପତ୍ତିବାଡ଼ି ନିଲାମ ହୋଇଯାଇ ଏହା ଲୁପ୍ତ ହୋଇଯାଇଛି ।

ଆଗରପଡ଼ା ପରିବାରଙ୍କର ସିଂହ ଉପାଧି ଥିଲା । ଏମାନେ ଛଅ ଭାଇ ଥିଲେ ଓ କ୍ରମଶଃ ଏ ପରିବାର ବଢ଼ିବାରେ ଲାଗିଲା । ସେତେବେଳେ 'ଜୋର ଯାର ମୁଲକ ତାର' ଏହିପରି ଅବସ୍ଥା ଥିଲା । ସେ ଅବସ୍ଥାର ସୁବିଧା ନେଇ ସିଂହ-ପରିବାର କେନ୍ଦୁଝର ରାଜ୍ୟର କେତେକ ଅଂଶ ଜବରଦସ୍ତି ଦଖଲ କରି ନେଇ ନିଜକୁ ତହିଁର ରାଜା ବୋଲାଇ ଦେଲେ । ସେହି ସମୟରୁ ଆଗରପଡ଼ା ଜମିଦାରୀ

ରୁକଅପୁଛ ଓ ଏହାକୁ ରାଜକ ଏବଂ ଏ ଜମିଦାରମାନଙ୍କୁ ରାଜା ବୋଲି ସମସ୍ତେ କହନ୍ତି । ଇଂରେଜ ରାଜତ୍ୱ ସ୍ଥାପନ ପରେ ଆଗରପଡ଼ା ରାଜକ ସାଧାରଣ ଜମିଦାରୀରେ ପରିଣତ ହେଲା । ତା ପରେ ପରେ ଭାଇ ଭାଇ ଭିତରେ ଭାଗ ବଣ୍ଟା ଅଗ୍ର ହୋଇ କେତେ ଖଣ୍ଡ ମଧ୍ୟ ହୋଇଗଲା । ଶେଷ ଆଗରପଡ଼ା ରାଜକର ଚୌଦ ଅଂଶର ମାଲିକ ରାଜା ରାମଚନ୍ଦ୍ର ସିଂହ ନିଃସନ୍ତାନ ଅବସ୍ଥାରେ ସରଲୋକ ଗମନ କଲେ ଓ ତାଙ୍କର ଉତ୍ତରାଧିକାରୀ ତାଙ୍କର ଭଣଜା ଜଗନ୍ନାଥ ମହାପାତ୍ର ସେହି ଜମିଦାରୀର ମାଲିକ ହେଲେ ।

ଇତ ମଧ୍ୟରେ ପଞ୍ଜାବରୁ ଆସିଥିବା ଉତ୍ତପନ୍ନ ଶ୍ରେଣି ପରିବାରଙ୍କ ଅବସ୍ଥା ଏପରି ହୋଇଯାଇଥିଲା ଯେ, ସେମାନେ ବିବାହ ଆଦି ସମ୍ପର୍କରେ ସବୁଆଡ଼ୁ ବିଚ୍ଛିନ୍ନ ହୋଇ ଅତି ସୀମାବଦ୍ଧ ପରିଧି ମଧ୍ୟରେ ଚଳାଚଳ ହେଉଥିଲେ । ଯେ କେତୋଟି ପରିବାର ଓଡ଼ିଶାରେ ଥିଲେ ତାଙ୍କର ଭିତରେ ବର ଓ କନ୍ୟା ଖୋଜିବାକୁ ପଡ଼ୁଥିଲା । ଏହି ଶ୍ରେଣି ପରିବାରଙ୍କର ବର୍ତ୍ତମାନ ସଂଖ୍ୟା ଦୁଇ ଶହରୁ କମ୍ । ଏଥିରୁ ବୁଝାପଡ଼ିବ, ବିବାହ ଆଦି କାର୍ଯ୍ୟରେ କେତେ ସୀମାବଦ୍ଧ କ୍ଷେତ୍ର ଭିତରେ ଚଳ ପ୍ରଚଳ ହେବାକୁ ପଡ଼େ । ଜଗନ୍ନାଥ ମହାପାତ୍ର ନିଜର ଜ୍ୟେଷ୍ଠା କନ୍ୟା ମୋହିନୀ ବିବାହ ପାଇଁ କଟକ ଜିଲ୍ଲା ଅସୁରେଶ୍ୱର ଗ୍ରାମରୁ କୃଷ୍ଣଚରଣ ଦାସଙ୍କୁ ମନୋନୀତ କରିଥିଲେ ଓ ନିଜ କନ୍ୟାର ସୁଖ ସ୍ୱାଚ୍ଛନ୍ଦ୍ୟପାଇଁ କୃଷ୍ଣଚରଣଙ୍କୁ ସପରିବାରରେ ଆଗରପଡ଼ା ନେଇ ଆସି ସେମାନଙ୍କ ଭରଣପୋଷଣର ସମସ୍ତ ଭାର ନେଇଥିଲେ । କୃଷ୍ଣଚରଣ ଘରଜୋଇଁ ହୋଇ ରହିଲେ । ଏହି ଅବସ୍ଥାରେ ଜମିଦାରୀ ପରିଚାଳନାର ଅନେକ କାର୍ଯ୍ୟ କୃଷ୍ଣଚରଣଙ୍କୁ ବଢ଼ାଇ ଦିଆ ହୋଇଥିଲା ଓ ସେ ତାହା ନିଜର ସାଧାରଣ ଜ୍ଞାନ ଓ ବୁଦ୍ଧି ବଳରେ ସନ୍ତୋଷଜନକ ଭାବରେ ଚଳାଇ ଥିଲେ । ଅବସ୍ଥାଚକ୍ର ଏପରି ଯେ ଜଗନ୍ନାଥ ମହାପାତ୍ର କୌଣସି ପୁତ୍ର-ସନ୍ତାନ ନ ଥିବା ଅବସ୍ଥାରେ ଅତ୍ୟନ୍ତ ପୀଡ଼ିତ ହୋଇ ପଡ଼ିଲେ । ସେତେବେଳକୁ ମୁଁ ମାଆଙ୍କ ଦ୍ୱିତୀୟ ସନ୍ତାନ, ମାତ୍ର ସାତ ମାସର ହୋଇଥାଏ ।

ମାତାମହ ମୋତେ ପୋଷ୍ୟପୁତ୍ର ରୂପେ ଗ୍ରହଣ କରି କିଛିଦିନ ପରେ ଇହଲୀଳା ସାଙ୍ଗ କଲେ । ବର୍ତ୍ତମାନ ଦାସପରିବାରରୁ ଆସି ମୁଁ ମହାପାତ୍ର ପରିବାରର ଅନ୍ତର୍ଭୁକ୍ତ ହେଲି । ମାତ୍ର କୃଷ୍ଣଚରଣ, ଜଗନ୍ନାଥ ମହାପାତ୍ରଙ୍କ ମୃତ୍ୟୁପରେ ଆଗରପଡ଼ା ରାଜପରିବାରର କର୍ତ୍ତା ହୋଇ ସମସ୍ତ କାର୍ଯ୍ୟ ପରିଚାଳନା କଲେ । ଆଇନ୍ ଅନୁସାରେ ମୁଁ ଜମିଦାରୀର ମାଲିକ ହେଲି । ମୁଁ ନାବାଳକ ଥିବା ହେତୁ ମୋର ପାଳିକା ମାତା ଧନ୍ନିବିବ ମୋର ମହାଫିମ୍ ଓ ଶ୍ରୀ କୃଷ୍ଣଚରଣ କ୍ଷମତାପ୍ରାପ୍ତ ମେନେଜର ହେଲେ, ମାତ୍ର କାର୍ଯ୍ୟତଃ କୃଷ୍ଣଚରଣ ଗୃହକର୍ତ୍ତା ଭାବରେ ସବୁ ଚଳାଇଲେ ।

ନିଜେ କିଛି ଆଧୁନିକ ଶିକ୍ଷା ନ ପାଇଥିଲେ ମଧ୍ୟ ସେ ଆଗରପଡ଼ାରେ ଶିକ୍ଷା ବିସ୍ତାର ଓ ଆଧୁନିକ ଭାବପ୍ରସାରର କାର୍ଯ୍ୟ ପ୍ରଥମେ ଆରମ୍ଭ କରିଥିଲେ । ପ୍ରଥମେ ଆମ ଗାଁରେ ଗୋଟିଏ ପୁରୁଣା ଧରଣର ପାଠଶାଳା ଥିଲା । ସେଥିରେ ଅବଧାନ ଥିଲେ ମହାଦେଇ ଦାସ । ଅତି ବୁଢ଼ା । ମୁଁ ମଧ୍ୟ ତାଙ୍କ ଚାଟଶାଳୀରେ ବସିଛି । ମହାଦେଇ ଦାସଙ୍କ ବୟସ ୯୦ରୁ ବେଶି ଥିଲା । ଗାଁର ସମସ୍ତେ ତାଙ୍କଠି ପଢ଼ିଛନ୍ତି, ଏଣୁ ତାଙ୍କୁ ସମସ୍ତେ ମାନୁଥିଲେ । ପଣିକିଆ ପର୍ଯ୍ୟନ୍ତ ସେ ପଢ଼ାଉଥିଲେ । କବିତା ରଚନା କରୁଥିଲେ ବୋଲି ଶୁଣିଛି । ତାଙ୍କପରେ ସେ ଚାଟଶାଳୀର ଅବଧାନ ହେଲେ ଜଗବନ୍ଧୁ ମହାନ୍ତି । ଏହାଙ୍କଠି ମଧ୍ୟ ମୁଁ ପଢ଼ିଛି । ଗାଁରେ ଯେତେବେଳେ ନିମ୍ନ ପ୍ରାଥମିକ ବିଦ୍ୟାଳୟ ସ୍ଥାପିତ ହୁଏ, ସେତେବେଳେ ଏ ସେଥିରେ ଦ୍ୱିତୀୟ ଶିକ୍ଷକ ହୋଇ ରହିଥିଲେ । ଶ୍ରୀ ବିଷ୍ଣୁଚରଣ ପାଣିଗ୍ରାହୀ ପ୍ରଥମ ଶିକ୍ଷକ ରୂପେ ଥିଲେ । ନିମ୍ନ ପ୍ରାଥମିକ ବିଦ୍ୟାଳୟଠାରୁ ଆରମ୍ଭ କରି ମଧ୍ୟ-ଇଂରାଜୀ ବିଦ୍ୟାଳୟଟିଏ କୃଷ୍ଣଚରଣଙ୍କ ଉଦ୍ୟମରେ ଗ୍ରାମରେ ସ୍ଥାପିତ ହେଲା । ମନେ ଅଛି, ଯେତେବେଳେ ଉଚ୍ଚ ପ୍ରାଥମିକ ବିଦ୍ୟାଳୟକୁ ମଧ୍ୟଭର୍ଣ୍ଣାକୁଲର କରିବାପାଇଁ ସେ ଉଦ୍ୟମ କରିଥିଲେ, ସେତେବେଳେ ସେ ତତ୍କାଳୀନ ଜିଲ୍ଲାବୋର୍ଡର ଭାଇସ୍-ଚେୟାରମ୍ୟାନ୍ ସାମନ୍ତ ରାଧାଚରଣ ଦାସଙ୍କୁ ଆମ ଗାଁକୁ ଆଣି ଅଭ୍ୟର୍ଥନାର ବିପୁଳ ଆୟୋଜନ କରିଥିଲେ । ତା' ପରେ ସ୍କୁଲ ମଧ୍ୟ-ଭର୍ଣ୍ଣାକୁଲର ହୋଇଥିଲା । ତାଙ୍କରି ଉଦ୍‌ଯୋଗରେ ଗ୍ରାମରେ ଡାକଘର ଖୋଲା ହେଲା । ପ୍ରଥମେ ଡାକଘର ଖୋଲା ହେଲାବେଳେ ସେ ହାତରୁ ପୋଷ୍ଟକାର୍ଡ଼, ଲଫାଫା କିଣି ଗାଁସାରା ବଣ୍ଟାଇ ଚିଠି ଲେଖାଇ ପ୍ରମାଣ କରିଥିଲେ ଯେ, ସେଠି ଡାକଘର ହେଲେ ବ୍ୟବସାୟ ହିସାବରେ କ୍ଷତି ହେବନାହିଁ । ତା' ଛଡ଼ା ଡାକବିଭାଗର କର୍ତ୍ତାମାନଙ୍କୁ ମଧ୍ୟ ବହୁତ ଅଭ୍ୟର୍ଥନା କରାହୋଇଥିଲା । ଗାଁର ଉନ୍ନତି ପାଇଁ ସେତେବେଳେ ଯେ ଉଦ୍ୟମ ଦରକାର ପଡ଼ୁଥିଲା, ତାହା ବର୍ତ୍ତମାନ ଭାବିଲେ ବିସ୍ମିତ ହେବାକୁ ପଡ଼େ । ସେ ସରକାରୀ ହାକିମ-ହୁକୁମାମାନଙ୍କ ସାଙ୍ଗରେ ଖୁବ୍ ମିଶି ପାରୁଥିଲେ ଓ ସେମାନଙ୍କ ଉପରେ ପ୍ରଭାବ ବିସ୍ତାର କରିପାରୁଥିଲେ । ସେ ସମୟର କଲେକ୍ଟର ଇକ୍‌ଟନ୍ ସାହେବ ତାଙ୍କୁ ଅନରାରି ମାଜିଷ୍ଟ୍ରେଟ କରିବାପାଇଁ ପ୍ରସ୍ତାବ କରିଥିଲେ, ମାତ୍ର କୃଷ୍ଣଚରଣ ନିଜର ସୀମା ଏତେ ଭଲ କରି ବୁଝିପାରୁଥିଲେ ଯେ ସେ ତାହା ନମ୍ରତାର ସହିତ ପ୍ରତ୍ୟାଖ୍ୟାନ କରିଥିଲେ ।

ମୋର ସହୋଦର ବଡ଼ଭାଇ ଶ୍ରୀ ନରସିଂହଚରଣ ଓ ମୁଁ ଗ୍ରାମରେ ସ୍ଥାପିତ ବିଦ୍ୟାଳୟରେ ପଢ଼ା ଆରମ୍ଭ କରିଥିଲୁ । ଆମ ପଢ଼ିଲାବେଳେ ଗାଁ ସ୍କୁଲରେ ଇଂରାଜୀ ପଢ଼ିବାର ବନ୍ଦୋବସ୍ତ ନ ଥିବାରୁ ଆମପାଇଁ ସ୍ୱତନ୍ତ୍ର ଶିକ୍ଷକ ରଖାଯାଇ ଘରୋଇ-ଭାବରେ ଇଂରାଜୀ ପଢ଼ିବାର ବ୍ୟବସ୍ଥା ହୋଇଥିଲା । ଶ୍ରୀ କୃପାସିନ୍ଧୁ ମହାନ୍ତି ଆମର

ଇଂରେଜୀ ଶିକ୍ଷକ ଥିଲେ । ଶ୍ରୀ ଭଗବାନ ଚରଣ ମହାପାତ୍ର ଆମ ଗାଁ ସ୍କୁଲର ହେଡ୍-ପଣ୍ଡିତ ଥିଲେ । ଦୁହେଁଯାକ ଅତି ଉତ୍ସାହୀ ଓ ଆଦର୍ଶବାଦୀ ଥିଲେ । ବଡ଼ ମଣିଷ ହେଲେ କି ଗୁଣ ସବୁ ଦରକାର, ବଡ଼ ମଣିଷଙ୍କ କାର୍ଯ୍ୟକଳାପ ଏମାନେ ଗପକରି —ଆମକୁ ଶୁଣାଉଥିଲେ । ଜଣେ ସାଧାରଣ ଲୋକ ନ ହୋଇ କିଛି ଅଧିକ କରିବାର ସ୍ପୃହା ଏମାନଙ୍କ ମନରେ ଜାଗ୍ରତ କରାଇଥିଲେ । ଏହି ଗାଁ ସ୍କୁଲରେ ପଢୁଥିବା ବେଳେ ସମାସ୍ୟଣ କଥାକୁ ପଦ୍ୟାକାରରେ ମୁଁ ରଚନା କରିଥିଲି । ଆମ ଘରେ ଠାକୁରସେବା ଓ ପର୍ବ ଏତେ ବେଶୀ ଯେ ପ୍ରାୟ ପ୍ରତି ମାସରେ କିଛି ନା କିଛି ଲଗିଥାଏ । ପ୍ରତ୍ୟେକ ପର୍ବରେ ଯାତ୍ରା ଓ ପାଲା ହୁଏ । ପାଲାବାଲାମାନେ ମନରୁ ସଙ୍ଗୀତ ରଚନା କରି ବୋଲି ଯାଉଥିବା ଦେଖି ଦେଖି ମୁଁ ଭାବିଲି ମୁଁ କାହିଁକି ରଚନା ନ କରି ପାରିବି । କେବଳ ପଦ ମିଳିବା ଛଡ଼ା ସେ ରଚନାରେ ଅନ୍ୟ କିଛି ନ ଥିଲା ।

ଗାଁ ସ୍କୁଲରେ ପାଠ ଶେଷ କରି ଭଦ୍ରକ ହାଇସ୍କୁଲରେ ପାଠ ପଢ଼ିବାକୁ ଗଲୁ । ସେ ଅଞ୍ଚଳରେ ଖୁବ୍ କମ୍, ପ୍ରାୟ କେହି ନୁହେଁ କହିଲେ ଚଳେ, ଇଂରେଜୀ ଶିକ୍ଷାପାଇଁ ମନ ବଳାଇଥିଲେ । ଆମର ଭଦ୍ରକରେ ରହି ପଢ଼ିବାପାଇଁ ଓ ଆମର ଜୀବନ ଗଠନ କରିବାପାଇଁ ବାବା ଯେଉଁ ବନ୍ଦୋବସ୍ତ କରିଥିଲେ, ତାହା ସେତେବେଳେ ବଡ଼ ଅପ୍ରୀତିକର ବୋଧ ହେଉଥିଲା; ମାତ୍ର ବର୍ତ୍ତମାନ ତାହା ଅତି ଉତ୍କୃଷ୍ଟ ବୋଲି ପ୍ରମାଣିତ ହେଉଛି । ସାଙ୍ଗ ସୁଖରେ ରହିବାପାଇଁ ଆମ ଗାଁରୁ ଆହୁରି ଦୁଇଜଣ ଛାତ୍ରଙ୍କୁ ପୂର୍ଣ୍ଣ ସାହାଯ୍ୟ ଦେଇ ଆମ ସାଙ୍ଗରେ ରଖାଇ ବାବା ପାଠ ପଢ଼ାଇଥିଲେ । ଆମର ମୁରବି ସ୍ୱରୂପ ଆମ ଗ୍ରାମ ବିଦ୍ୟାଳୟର ଶିକ୍ଷକ ଶ୍ରୀ ବିଷ୍ଣୁଚରଣ ପାଣିଗ୍ରାହୀଙ୍କୁ ନିଯୁକ୍ତ କରିଥିଲେ । ବନ୍ଦୋବସ୍ତ ଏପରି ହୋଇଥିଲା ଯେ, ଆମ ହାତକୁ ଗୋଟିଏ ସୁଦ୍ଧା ପଇସା ଆସେ ନାହିଁ । ବାବାଙ୍କଦ୍ୱାରା ନିର୍ଦ୍ଧାରିତ ହିସାବ ଅନୁସାରେ ଖରଚ କରି ମୁରବି ଆମକୁ ଚଳାନ୍ତି । ବାବା ଓ ମୁରବି ଏତେ କଡ଼ା କରି ହିସାବ ନିର୍ଦ୍ଧାରଣ କରିଥିଲେ ଯେ ଟିକିଏ ହେଲେ ଫୁର୍ତ୍ତି କରିବାର ଅବକାଶ ଆମର ନ ଥିଲା । ସ୍କୁଲ ଓ ବସା, ଏହା ବ୍ୟତୀତ ଅନ୍ୟ କୁଆଡ଼େ ମୁରବିଙ୍କ ସାଙ୍ଗ ଛଡ଼ା ଆମେ ଯାଇ ପାରୁ ନ ଥିଲୁ । ବାବାଙ୍କ ନିର୍ଦ୍ଦେଶମତେ ଆମର ଚଳିବା ଗରିବ· ଧରଣର ଥିଲା । ସେ ସମୟରେ ଆମେ ଯେପରି ଚଳୁଥିଲୁ, ବର୍ତ୍ତମାନ ଗ୍ରାମାଦାସରେ ଅଧିକାଂଶ ତା'ଠାରୁ ଭଲଭାବରେ ଚଳିବାର ଦେଖେଁ । ଲୁଗା ଗୁରିଖଣ୍ଡ ଓ ଜାମା ଦୁଇଖଣ୍ଡ ଛଡ଼ା ବେଶୀ ନ ଥିଲା । ଭାତ, ଡାଲି ଓ ତରକାରି ଛଡ଼ା ଆଉ କିଛି ମିଳୁ ନ ଥିଲା । ଆଉ କିଛି ଏଣେ ତେଣେ ଖର୍ଚ୍ଚ କରିବାର ସୁବିଧା ମଧ୍ୟ ନ ଥିଲା—କାରଣ ଆମକୁ କଦାପି ପଇସା ଦିଆ ହେଉ ନ ଥିଲା । ଏ ବନ୍ଦୋବସ୍ତ ସେତେବେଳେ ଅତି ଅଡ଼ୁଆ ଓ ବିରକ୍ତିଜନକ ବୋଧ ହେଉଥିଲା । ଆମ ସାଙ୍ଗରେ ପଢୁଥିବା

ଅନେକ ଛାତ୍ର ଆମ ଆଖି ଆଗରେ କେଡ଼େ ଫୁର୍ତ୍ତିରେ ଚଳୁଥାନ୍ତି । ତାଙ୍କୁ ଦେଖି ମୋର ରାଗ ହେଉଥାଏ । ପରେ ଆମ ବିରକ୍ତିର ସୀମା ଏତେ ଦୂରକୁ ଗଲା ଯେ, ଆମେ ବର୍ଷର ସାରା ହୋଇ ଆମ ମୁରବି ରଖୁଥିବା ହିସାବ ଖାତାକୁ ଆମେ ଗୋପନରେ ନଷ୍ଟ କରିଦେଲୁ । ବାପାଙ୍କଠାରେ ଜଣାଇଥିଲୁ ଯେ ମୁରବି ପଇସା ଆତ୍ମସାତ୍ କରୁଛନ୍ତି । ସେହିପରି ଘରେ ଜନ୍ମଦାତ୍ରୀ ମା ଓ ପାଳକ ମା'ଙ୍କୁ ଜଣାଇଥିଲୁ ଯେ ଭବିଷ୍ୟରେ ନ ଖାଇ ନ ପିଇ ଆମେ ଦୁହେଁ ମରିଯିବୁ । ସେମାନେ ଆମ ନିବେଦନରେ ଏତେ ଖୁସି ହୋଇଗଲେ ଯେ ସେମାନେ ଆମ ହାତରେ ଖର୍ଚ୍ଚ ପାଇଁ କିଛି ଟଙ୍କା ଦେବାପାଇଁ ଜିଦ୍ କଲେ, ମାତ୍ର ବାପା ଏସବୁ କଥା ବୁଝିପାରି ଏପରି ଚତୁରତା ସହିତ ଘର ଭିତରେ ଆପତ୍ତିକୁ ତୁଲାଇନେଲେ ଯେ, ଆମର ସମସ୍ତ ଶ୍ରମ ବ୍ୟର୍ଥ ହୋଇଗଲା । ବାବା ସମସ୍ତଙ୍କୁ ବୁଝାଇଦେଲେ ଯେ ସହର ବଜାର ଜାଗାରେ ପିଲାଙ୍କ ହାତରେ ପଇସା ଦେଲେ ପିଲା ଖରାପ ହୋଇଯିବେ ଓ ଶେଷରେ ମଦ ଖାଇ ବେଶ୍ୟାଘର ଯାଇ ଜମିଦାରୀ ଉଡ଼ାଇ ଦେବେ । ନିରସ୍ତ ହୋଇ ମନକଥା ମନରେ ମାରି ଆମେ ସେହିପରି ପାଞ୍ଚବର୍ଷ କାଳ ଭିକ୍ଷୁରେ ପଡ଼ି ରହିଲୁ । ବାଲ୍ୟାବସ୍ଥାରେ ଓ ଯୌବନର ପ୍ରାରମ୍ଭରେ ସେତେବେଳେ ଯେ ଖୁବ୍ କଷାକଷି ଭିତରେ ଆମକୁ ଚଳିବାକୁ ପଡ଼ିଥିଲା, ତା'ର ଭଲ ଫଳ ଆଜି ଭୋଗ କରୁଛି । ବିଳାସୀ ହେବାପାଇଁ ସ୍ପୃହା ହିଁ ନଷ୍ଟ ହୋଇଗଲା । ବେଶୀ ଖର୍ଚ୍ଚ କରି ସମ୍ଭୋଗରେ ରହିବାର ଆକାଙ୍କ୍ଷା କୁଆଡ଼େ ହଜିଗଲା, ମାତ୍ର ସେପରି କଡ଼ାକଡ଼ି ଭିତରେ ଚଳିବା ଫଳରେ କେତେକ କୁଫଳ ମଧ୍ୟ ଘଟିଲା । ଅପରିଚିତ ଲୋକମାନଙ୍କ ସହିତ ସାହସରେ ମିଶିବା ଓ ନିଃସଙ୍କୋଚରେ ସେମାନଙ୍କ ସହିତ କାରବାର କରିବା, ଏ ଅଭ୍ୟାସ ହୋଇ ପାରିଲା ନାହିଁ । ଏ ଅସୁବିଧାକୁ ଅତିକ୍ରମ କରିବାପାଇଁ ମୁଁ ଆଜିସୁଦ୍ଧା ଚେଷ୍ଟା କରୁଛି—ମାତ୍ର ସେ ଦୋଷର ମୂଳୋତ୍ପାଟନ ମୁଁ କରିପାରୁ ନାହିଁ । ସୁବିଧା ଅସୁବିଧା ସବୁ ବିଚାର କରି ମୁଁ ଦେଖିପାରୁଛି ଯେ, ସୁବିଧା ହିଁ ବେଶୀ ହୋଇଛି ଏବଂ ସେ ସମୟର ବନ୍ଦୋବସ୍ତ ମୋ ନିଜ ଜୀବନରେ ବହୁ ଉପକାର କରିଛି । ବର୍ତ୍ତମାନ ମୁଁ ମୋ ନିଜ ଅନୁଭୂତିରୁ ସାହସ କରି କହିପାରେ ଯେ, ଛାତ୍ର ଅବସ୍ଥାରେ ଓ ବିଶେଷତଃ କିଶୋର ବୟସରେ ପିତା ମାତା ବା ମୁରବି ନିଜେ ବୁଝି ଶୁଝି ଖରଚର ହିସାବ କରି ଶିକ୍ଷକ ବା ମୁରବିଙ୍କ ହାତରେ ପଇସା ଦେବା ଉଚିତ । ଛାତ୍ର ହାତରେ ତା ନିଜର ଖର୍ଚ୍ଚ ପାଇଁ ପଇସା ଦେବା ଉଚିତ ନୁହେଁ । ଅଥଚ ମଧ୍ୟ ଛାତ୍ର ଯାହା କିଛି ଖର୍ଚ୍ଚ କରିବ, ତା'ର ହିସାବକୁ ତାଙ୍କର ମୁରବି ଭଲ କରି ଯାଞ୍ଚ କରିବା ଉଚିତ ।

———

# ଭଦ୍ରଖ ସ୍କୁଲ

ଛାତ୍ର ହିସାବରେ ମୁଁ ଭଲ ଛାତ୍ର ବୋଲି ପରିଚିତ ଥିଲି । ଇଂରେଜୀ, ଅଙ୍କ, ସଂସ୍କୃତ ପ୍ରଭୃତିରେ ପ୍ରଥମ, ଦ୍ୱିତୀୟ ହେଉଥିଲି । ଭଦ୍ରଖ ସ୍କୁଲରେ ପଢ଼ା ଆରମ୍ଭ କରିବାବେଳେ ମୋର ବୟସ ୧୩ବର୍ଷ ଥିଲା ଏବଂ ମାଟ୍ରିକୁଲେସନ୍ ପାଶ କଲାବେଳେ ମୋର ବୟସ ୧୭ ବର୍ଷ ହୋଇଥିଲା । ଏହି କେତେବର୍ଷ ମଧ୍ୟରେ ମୁଁ ବର୍ତ୍ତମାନ ଦୂରରୁ ଦେଖିପାରୁଛି, ମୋର ଜୀବନର ଗତି ଏକ ନିର୍ଦ୍ଦିଷ୍ଟ ମାର୍ଗ ଅବଲମ୍ବନ କରିଥିଲା । କୌଣସି ଚାକିରି-ବାକିରି ନ କରି କିମ୍ବା ଘରେ ଜଣେ ଜମିଦାର ହୋଇ ନ ବସି ସାଧାରଣ ସେବାକାର୍ଯ୍ୟ ଦିଗରେ ମନ ନିଶ୍ଚିତ ଭାବରେ ଚାଲିଥିଲା । ମନେ ପଡ଼ୁଛି, ପଢ଼ା ଶେଷରେ ଡେପୁଟି ମାଜିଷ୍ଟ୍ରେଟ ହେବି ବୋଲି କଳ୍ପନା କରି ଯେତେବେଳେ ମୋର ମୁରବିମାନେ ଓ ଅନ୍ୟମାନେ ଆନନ୍ଦ ପ୍ରକାଶ କରନ୍ତି, ସେତେବେଳେ ତାହା ମୋତେ ବଡ଼ ଅସୁଖ ଲାଗୁଥିଲା । ଆଉ ମଧ୍ୟ ଆମ ପରିବାରର ଗତାନୁଗତିକ ଧାରା ଅନୁସାରେ ମୋତେ ଯେତେବେଳେ କେହି ରାଜା ବୋଲି ଡାକେ, ମୋତେ ବଡ଼ ସଙ୍କୋଚ ବୋଧ ହେଉଥିଲା ।

ଅନ୍ୟ ପକ୍ଷରେ ସାଧାରଣ ସେବା ଦିଗରେ ମନ କିପରି ଆକୃଷ୍ଟ ହେଉଥିଲା, ତା'ର କେତୋଟି ଘଟଣା ଜ୍ୱଳନ୍ତ ଭାବରେ ମନେଅଛି । ସେତେବେଳେ(୧୯୧୪-୧୮) ବିଶ୍ୱଯୁଦ୍ଧ ଲାଗିଥାଏ । ସେହି ସମୟରେ ବଙ୍ଗ ଦେଶରେ ବିପ୍ଳବୀମାନଙ୍କର ନାନା ପ୍ରକାର କାର୍ଯ୍ୟର ଖବର ମଧ୍ୟ ଶୁଣାଯାଉଥାଏ । ବାଲେଶ୍ୱରରେ ଯତୀନ ମୁଖାର୍ଜୀ ଓ ତାଙ୍କର ଦଳ ବ୍ରିଟିଶ୍ ସୈନ୍ୟମାନଙ୍କ ସହିତ ବୀରତ୍ୱର ସହିତ ଯୁଦ୍ଧ କରି ପ୍ରାଣ ଦେଲେ । ଏ ଖବର ଏପରି ଏକ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା ଯେ, ସେତେବେଳେ ମୋର ମନ ବଳୁଥିଲା ମୁଁ ଯାଇ ସେ ପ୍ରକାର ଦଳରେ ଯୋଗ ଦିଅନ୍ତି କି । ଏହି ସମୟରେ ସି: ଆଇ: ଡି: ଅଫିସରମାନେ ସ୍କୁଲରେ ଛାତ୍ରମାନଙ୍କ କାର୍ଯ୍ୟକଳାପ ବିଷୟରେ ଅନୁସନ୍ଧାନ କରୁଥିଲେ, ଏହା ମଧ୍ୟ ଏକ ଚାଞ୍ଚଲ୍ୟକର ବିଷୟ ଥିଲା । ମୋର ମନେ-ଅଛି, ଥରେ ଜଣେ ସି: ଆଇ: ଡି: ଅଫିସର ଆମ କ୍ଲାସରେ ହେଡ୍ ମାଷ୍ଟର ପଢ଼ାଉଥିବାବେଳେ ଆମ କ୍ଲାସକୁ ପଶି ଆସିଲେ । ହେଡ୍ ମାଷ୍ଟର ଏତେ "ନିର୍ଭୀକ-ଭାବରେ ତାଙ୍କୁ କ୍ଲାସରୁ ବାହାର କରିଦେଲେ ଯେ ଆମ ମନରେ ହେଡ୍-ମାଷ୍ଟରଙ୍କ ପ୍ରତି ଭକ୍ତି ବଢ଼ିଗଲା । ଆମ ସମୟର ହେଡ୍ ମାଷ୍ଟର ଓ ସ୍କୁଲର ଅଧିକାଂଶ ଶିକ୍ଷକ ବଙ୍ଗାଳି ଥିଲେ ଓ ସେମାନେ ଦେଶର ସ୍ୱାଧୀନତା ଓ ବିପ୍ଳବର କାହାଣୀ ମଧ୍ୟ ଶୁଣାଉଥିଲେ । ପ୍ରଥମେ ଆମର ହେଡ୍ ମାଷ୍ଟର ଥିଲେ ଶ୍ରୀ ଶାକ୍ୟସିଂହ

ସେନ୍ । ତାପରେ ଆସିଲେ ଶ୍ରୀ ହେମେନ୍ଦ୍ରନାଥ ଘୋଷାଲ   ସେ ସାହାସର କାମକୁ ଅତି ପସନ୍ଦ କରୁଥିଲେ । ଯେତେବେଳେ ଆମେ ସାହସର ସହିତ କିଛି କାମ କରୁଁ, ସେ ଆମକୁ ପୂରାପୂରି ସମର୍ଥନ କରି ଆମ ଦେହରେ ଅଁଶ ଲଗାଇ ଦେଉ ନ ଥିଲେ । ସେକେଣ୍ଡ କ୍ଲାସରେ ପଢୁଥିବାବେଳେ ଉତ୍କଳ ସମ୍ମିଳନୀର ପ୍ରଚାରକ ଶ୍ରୀ ଅନନ୍ତ ମିଶ୍ର ଭଦ୍ରଖ ଆସିଥିଲେ । ତାଙ୍କ ପାଇଁ ସଭାର ଆୟୋଜନ ମୁଁ ଓ ମୋର ଆଉ କେତେକ ସହପାଠୀ କରିଥିଲୁଁ । ସ୍କୁଲ ହଲରେ ସଭାର ବନ୍ଦୋବସ୍ତ ହୋଇଥିଲା, ମାତ୍ର ସ୍କୁଲ କମିଟିର ସେକେଟେରୀ ସେଥିପାଇଁ ଅନୁମତି ଦେଲେ ନାହିଁ । ସନ୍ଧ୍ୟାବେଳେ ସଭା ହେବାର କଥା, ମାତ୍ର ତା'ର ପ୍ରାୟ ଏକଘଣ୍ଟା ପୂର୍ବରୁ ଆମକୁ ସେକେଟେରୀଙ୍କ ଆଦେଶ ଜଣା ପଡ଼ିଲା । ହଠାତ୍ ନାଚାର ହୋଇ ଆମେ ହେଡ଼୍‌ମାଷ୍ଟରଙ୍କ ନିକଟକୁ ଗଲୁ । ସେ ସାହାସର ସହିତ କହିଲେ, ମୁଁ ହେଡ଼୍‌ମାଷ୍ଟର, ସ୍କୁଲ ଘର ମୋ ଜିମା, ସେଥିରେ ସେକେଟେରୀଙ୍କର କିଛି କହିବାର ନାହିଁ, ତୁମେ ଯାଅ ସଭା କର ।' ଆମେ ଅତି ଖୁସି ହୋଇ ଚାଲି ଆସିଲୁ । ଏହି ସଭାରେ ପ୍ରଚାରକ ମହାଶୟ ସମ୍ପାଦକଙ୍କୁ ଖୁବ୍ ଉତ୍ତମ ମଧ୍ୟମ ଶୁଣାଇଥିଲେ । ପ୍ରଚାରକ ଶ୍ରୀ ଅନନ୍ତ ମିଶ୍ରଙ୍କୁ ମୁଁ ଆମ ଗାଁକୁ ନେଇ ଯାଇଥିଲି । ସେଠାରେ ସଭା ହୋଇଥିଲା । ସେଠାରେ ସୋଳିଏ ଅତ୍ୟାଚାର ବିଷୟ ତାଙ୍କୁ କହିଥିଲୁଁ । ସେ ତାକୁ ସେତେବେଳକାର 'ସାହସୀ' ଖବରକାଗଜ 'ଆଶା'ରେ ପ୍ରକାଶ କରିଥିଲେ ।

ମୁଁ ଫାଷ୍ଟ କ୍ଲାସରେ ପଢୁଥିବାବେଳେ ଥରେ କମିଶନର ସାହେବ ଭଦ୍ରଖ ଆସିବାର ଖବର ଶୁଣାଗଲା । ସେତେବେଳେ ଗୋଟିଏ ସବ୍‌ଡିଭିଜନାଲ ସହର ପକ୍ଷରେ ଏହା ଏକ ବଡ଼ କଥା । ମୁଁ ଓ ମୋର ଜଣେ ସହପାଠୀ ଦୁହେଁ ରେଲ-ଷ୍ଟେସନକୁ ସେଦିନ ଗଲୁ । ସନ୍ଧ୍ୟା ଗାଡ଼ିରେ କମିଶନର ସାହେବ ଓହ୍ଲାଇଲେ । ସେ ଏବଂ କେତେକ ସ୍ଥାନୀୟ କର୍ମଚାରୀ ସାଇକେଲ ଯୋଗେ ସହରକୁ ଆସିଲେ । ସେତେବେଳେ ମଟର ନ ଥିଲା, ଆଉ ମଧ୍ୟ ସାଳନ୍ଦୀ ନଦୀରେ ପୋଲ ନ ହୋଇ-ଥିବାରୁ ଷ୍ଟେସନରୁ ସହରକୁ ଘୋଡ଼ାଗାଡ଼ି ମଧ୍ୟ ଯିବା ଆସିବା କରି ପାରୁ ନ ଥିଲା । ମୋର ସହପାଠୀ ଓ ମୁଁ ଦୁହେଁ ସାଇକେଲରେ ଷ୍ଟେସନ ଯାଇଥିଲୁ । ଆମେ ଦୁଇଜଣ ଇଚ୍ଛା କରି ଆଗେ ଆଗେ ଧୀରେ ଧୀରେ ସାଇକେଲ ଏପରି ଚଲାଇଲୁ ଯେ ପଛରେ କମିଶନର ସାହେବ ଓ ସରକାରୀ କର୍ମଚାରୀମାନେ ଆଗକୁ ଯାଇ ନ ପାରି ବଡ଼ ଅଡୁଆରେ ପଡ଼ିଲେ । ପୋଲିସ ଆମକୁ ଧମକ ଦେଉଥାନ୍ତି, ମାତ୍ର ଆମେ ରାସ୍ତା ନ ଛାଡ଼ି ଅତି ଧୀରେ ଧୀରେ ଚାଲିଥାଉ । ଫଳରେ ବହୁ ବିଳମ୍ବରେ କମିଶନର ସାହେବ ସହରରେ ପହଞ୍ଚିଲେ ଏବଂ ହଠାତ୍ ହେଡ଼ମାଷ୍ଟରଙ୍କୁ ଜଣାଇଲେ ଦୁଇଜଣ ଛାତ୍ର ତାଙ୍କ ପ୍ରତି କିପରି ବ୍ୟବହାର କରିଛନ୍ତି । ହେଡ଼ମାଷ୍ଟରଙ୍କ ସହିତ

କମିଶନରଙ୍କର କ'ଣ ରୋଷ ପଡ଼ି ହେଲା କେ ଜାଣେ, କିନ୍ତୁ ଆମର କିଛି ହେଲା ନାହିଁ, ବରଂ ହେଡ଼ମାଷ୍ଟର ଆମ କାର୍ଯ୍ୟରେ ଆନନ୍ଦ ପ୍ରକାଶ କଲେ ।

ସେହିପରି ଭଦ୍ରକ ସବ୍‌ଡିଭିଜନ ଅଫିସର ରାୟବାହାଦୁର ଉପାଧି ପାଇବା ଉପଲକ୍ଷେ ସ୍କୁଲ ପକ୍ଷରେ ଏକ ବିରାଟ ସମ୍ବର୍ଦ୍ଧନାର ବ୍ୟବସ୍ଥା ହୋଇଥାଏ । ସେ ସମୟରେ ନୂଆ କଣ ବାୟୁସ୍କୋପ ଭଦ୍ରକ ଆସିଥାଏ—ବହୁଲୋକ ସମାଗମ । ଏହି ଘଟଣାରେ ପୋଲିସ ଇନ୍‌ସପେକ୍ଟର ଜଣେ ଛାତ୍ରକୁ ଅସମ୍ମାନସୂଚକ କଥା କହିବାରୁ ଛାତ୍ର ଓ ପୋଲିସ ଭିତରେ ଏପରି ପିଟାପିଟି ହେଲା ଯେ ବହୁ ପୋଲିସ କନେଷ୍ଟବଲ ଓ ଦାରୁଗା ଆହତ ହୋଇଥିଲେ । ଆମର ଆକ୍ରମଣ ଫଳରେ ସବୁ ପୋଲିସ କର୍ମଚାରୀ ଘୁଞ୍ଚି ପଳାଇଲେ ଓ ଶେଷରେ ବନ୍ଧୁକଧାରୀ ପୋଲିସ ଆସି ପହଞ୍ଚିଲେ । ସେତେବେଳକୁ ଆମେ କିଏ କୁଆଡ଼େ ଖସିଯାଇଥିଲୁ, ଆହୁ ମଧ୍ୟ ଲୋକ ଭାଙ୍ଗି ଯାଇଥିଲେ । ରାୟବାହାଦୁରଙ୍କ ସମ୍ବର୍ଦ୍ଧନା ପଣ୍ଡ ହୋଇଥିଲା । ଏ ଘଟଣା ସମ୍ପର୍କରେ ମୋତେ ସଂପୃକ୍ତ କରି କେତେକ ଛାତ୍ରଙ୍କ ନାମରେ ନାନାପ୍ରକାର ଦଫା ଲଗାଇ ପୋଲିସ ମକଦ୍ଦମା ଦାଏର କରିଥିଲେ । ମାତ୍ର ହେଡ଼ମାଷ୍ଟର ମହାଶୟ ସବ୍‌ଡିଭିଜନ ଅଫିସରଙ୍କୁ କହି ନିଜେ ତଦନ୍ତ କରି ଯଥାବିଧି ଦଣ୍ଡଦେବାର ଭାର ନେଇ ମୋକଦ୍ଦମା ସବୁ ଉଠାଇ ନେବାପାଇଁ ଜିଦ୍ କରିଥିଲେ । ଫଳରେ ମୋକଦ୍ଦମା ଗୁଡ଼ିକ ଉଠିଗଲା, ହେଡ଼ମାଷ୍ଟର ତଦନ୍ତ କଲେ । ସେ ପୋଲିସକୁ ଦୋଷୀକରି ଛାଡ଼ିଦେଲେ । ଆହୁ ମଧ୍ୟ ସେ ଆମକୁ ଏପରି ଘରୋଇ ପରାମର୍ଶ ଦେଲେ ଯେ, ଯାହା ଫଳରେ ପୋଲିସ କୌଣସି ଛାତ୍ରକୁ ଛୁଇଁ ପାରିଲେ ନାହିଁ । ଏହିପରି ପୋଲିସ କର୍ମଚାରୀଙ୍କ ସହିତ ବହୁବାର ସଂଘର୍ଷ ହୋଇଛି, ମାତ୍ର ଆମେ ସବୁବେଳେ ହେଡମାଷ୍ଟରଙ୍କ ସମର୍ଥନ ପାଇଛୁ । ସେତେବେଳେ, ଇଂରେଜ ସରକାର ବିରୋଧୀ ହେବା, ସି: ଆଇ: ଡି:ର ନଜରରେ ପଡ଼ିବା ପ୍ରଭୃତିରେ ଏକ ପ୍ରକାର ଭାବପ୍ରବଣତା ଥିଲା ଯାହା ହେଡ଼ମାଷ୍ଟର ଓ କେତେକ ଶିକ୍ଷକ ଛାତ୍ରମାନଙ୍କ ଭିତରେ ପ୍ରବେଶ କରାଇବାର ଚେଷ୍ଟା କରୁଥିଲେ । ସେ ଉଦ୍ୟମ ମୋଟି ସଫଳ ହୋଇଥିଲା ।

ଏହି ଛାତ୍ରାବସ୍ଥାରେ ମୁଁ ଯେତେବେଳେ ଥାର୍ଡ଼ କ୍ଲାସରେ ପଢୁଥିଲି, ଭଦ୍ରଖ ସବ୍‌ଡିଭିଜନର କେତେକ ଅଞ୍ଚଳରେ ଦୁର୍ଭିକ୍ଷ ପଡ଼ିଲା । ଅନ୍ନଛତ୍ର ଖୋଲିବା ପାଇଁ ରାମକୃଷ୍ଣ ମିଶନର ସ୍ୱାମୀ ପୂର୍ଣ୍ଣାନନ୍ଦ ଆମ ଅଞ୍ଚଳକୁ ଯାଇ ଆମ ଘରେ କେନ୍ଦ୍ର ଖୋଲି ରହିଲେ । ସେ ମୋତେ ପ୍ରଥମେ ପଢ଼ିବାପାଇଁ 'ଇମିଟେସନ ଅଫ୍ କ୍ରାଇଷ୍ଟ' ପୁସ୍ତିକା ଖଣ୍ଡେ ଦେଇଥିଲେ । ସେତେବେଳେ ମୁଁ ତାକୁ ପଢ଼ି ବଡ଼ ଆନନ୍ଦ ଅନୁଭବ କରିଥିଲି । ଏହାଛଡ଼ା ସ୍ୱାମୀ ବିବେକାନନ୍ଦ ଓ ରାମକୃଷ୍ଣଙ୍କର ଅନେକ ବଙ୍ଗଳା ବହି ପଢ଼ିବାପାଇଁ ଦେଇଥିଲେ । ତାଙ୍କ ସମ୍ପର୍କରେ ଆସି ମୁଁ ସ୍ୱାମୀ

ବିବେକାନନ୍ଦ ଓ ରାମକୃଷ୍ଣଙ୍କ ପ୍ରତି ଆକୃଷ୍ଟ ହୋଇଥିଲି । ଈଶ୍ୱରର ସେବା, ଅଦମ୍ୟ ସାହସ, ରଜୋଗୁଣର ତାଣ୍ଡବ, ଉଦ୍ଦୀପନା ଏସବୁ ସେତେବେଳେ ମୋ ମନକୁ ଏପରି ଆଘାତ କରିଥିଲା ଯେ ମୋର ମନେହୁଏ ବର୍ତ୍ତମାନ ସୁଦ୍ଧା ଯେପରି ମୁଁ ସେହି ପ୍ରେରଣା ଫଳରେ ଚାଲିଛି । ଏହି ସମୟରେ ବିବେକାନନ୍ଦଙ୍କ ସମସ୍ତ ଲେଖା ପଢ଼ିଥିଲି । କେତେକ ବୁଝିପାରୁଥିଲି ,ଓ କେତେକ ପାରୁ ନ ଥିଲି, ମାତ୍ର ସେ ଲେଖାସବୁ ମୋତେ ଯେପରି ଚାବୁକ ଦେଇ ସାଧାରଣ ସେବା ଓ ଦେଶକାମ ପ୍ରତି ଦୌଡ଼ାଉଥିଲା ପରି ବୋଧ ହେଉଥିଲା । ମାଟ୍ରିକ୍ୟୁଲେଶନ ପାଶ୍ କଲାବେଳକୁ ମୋର ମନ ନିର୍ଦ୍ଦିଷ୍ଟ ମାର୍ଗ ଧରିସାରିଥିଲା, ମାତ୍ର ଯେଉଁ ସବୁ କାରଣ ଅନେକ ସମୟରେ ମନୁଷ୍ୟକୁ କୌଣସି ସ୍ଥିରୀକୃତ ପନ୍ଥାରୁ ଅପସରାଏ, ସେ କାରଣମାନ ମଧ୍ୟ ମୋ ପକ୍ଷରେ ଉପସ୍ଥିତ ଥିଲା ।

ମୁଁ ଯେତେବେଳେ ହାଇସ୍କୁଲ ପ୍ରଥମ ଶ୍ରେଣୀରେ ପଢ଼ୁଥିଲି—ସେତେବେଳେ ମୋର ଜନ୍ମଦାତ୍ରୀ ମାଆ ଭୟଙ୍କର ଜ୍ୱରରେ ପୀଡ଼ିତା ହେଲେ । ସେ ତ ଆଜନ୍ମ ରୁଗ୍ଣା, କିନ୍ତୁ ଏଥର ସେ ଆଉ ବର୍ତ୍ତିଲେ ନାହିଁ । ମୁଁ ଘରେ ଥାଏଁ । ମୃତ୍ୟୁର କିଛି ସମୟ ପୂର୍ବରୁ ପାଟି ପଡ଼ିଗଲା, କଥା କହିପାରିଲେ ନାହିଁ । ମୁଁ ବିଛଣା ପାଖରେ ବସିଥାଏ, ଆଉ ସମସ୍ତେ ଚାରିଆଡ଼େ ଘେରିଥାନ୍ତି । ଗାଁ'ର କବିରାଜ ଯେ କି ମୂଳରୁ ଚିକିତ୍ସାର ଭାରରେ ଥିଲେ, ସେ ମଧ୍ୟ ଥାଆନ୍ତି । ମାଆ ମୋର ମୋ ମୁହଁକୁ ବାରମ୍ବାର ତରାଟି ଅନାଉଥାଏ । କିଛି କହିବାକୁ ମନ କରୁଥାଏ ପରି—ମାତ୍ର ପୁଣି ଆଖିବୁଜି ଦେଉଥାଏ । ପୁଣି ବାବାଙ୍କ ଆଡ଼କୁ ଅନାଉଥାଏ, କିଛି କହିବ ବୋଲି ମନ କରୁଥାଏ—ମାତ୍ର ନ ପାରି ଆଖିବୁଜି ଦେଉଥାଏ । ଏହିପରି ଚାହିଁ ଚାହିଁ କିଛି ସମୟ ଭିତରେ ଆଉ ସେ ଆଖି ଖୋଲିଲା ନାହିଁ । କବିରାଜ ନାଡ଼ି ଦେଖି ମୁହଁ ଶୁଖାଇ 'ନାହିଁ' ବୋଲି କହିଦେଲେ । ହଠାତ୍ କାନ୍ଦ-ବୋବାଳି ପଡ଼ିଗଲା । ମୁଁ ଅବାକ୍ ହୋଇ ଚାହିଁଥାଏ । ମୁଁ ଇତିପୂର୍ବରୁ କେବେ କାହାକୁ ମରିବାର ଦେଖି ନ ଥିଲି । ଏହି ଅଛି—ପୁଣି କୁଆଡ଼େ ଗଲା—ଜୀବନ ମରଣ ଭିତରେ ଏତେ ସୂକ୍ଷ୍ମ ପ୍ରଭେଦ ଓ ପୁଣି ଏତେ ବଡ଼ !!! କେତେକ ମୁହୂର୍ତ୍ତ ପରେ ମୁଁ ମଧ୍ୟ କାନ୍ଦିବାରେ ଲାଗିଲି । ମାଆ ମୋର ପିଲାଦିନୁ ମୋତେ ରାମାୟଣ, ମହାଭାରତ, ଦାର୍ଢ୍ୟତା ଭକ୍ତି ପ୍ରଭୃତି କେତେ ପୁରାଣ ଶାସ୍ତ୍ର ପଢ଼ି ଶୁଣାଇଛି—କୁଆଡ଼େ ଯେତେବେଳେ ମନ ନ ଲାଗେ ମୁଁ ଦୌଡ଼ିଆସି ମା' ପାଖରେ ବସିପଡ଼ି ଜିଦ୍ ଲଗାଏ—'ମା, କାହାଣୀ କହ', ଏତେ କାହାଣୀ ତାକୁ ଜଣାଥିଲା ଯେ, ସେ କେବେ ମୋତେ ମନା କରିନାହିଁ । ଭଦ୍ରଖରେ ପଢୁଥିଲାବେଳେ ଛୁଟିରେ ଯେତେବେଳେ ମୁଁ ଘରକୁ ଆସେ, ସେ ଭଦ୍ରଖ କଥା ଚିକିନିଖି କରି ପଚାରେ । ଯେତେବେଳେ ପଇସା ଅଭାବ କଥା କହେ, ସେ ମୁରୁକି ହସେ ଆଉ କିଛି କହେ

ନାହିଁ । ସମସ୍ତେ କହୁଥିଲେ, ମାଆ ମୋର ଘରର ଲକ୍ଷ୍ମୀ ଥିଲା—ତା'ର ଯୋଗେ ଘରୁ ଭରପୂର ଜଣାଯାଉଥିଲା—ମାସକ ପର୍ଯ୍ୟନ୍ତ ସବୁବେଳେ ମାଆ ମୁହଁ ମୋ ଆଖି ଆଗରେ ନାଚବାରେ ଲାଗିଲା । ଭଦ୍ରକ ଗଲି, ସେଠାରେ ମଧ୍ୟ ସେହିପରି । ସେ ସମୟରେ ରାମକୃଷ୍ଣ ମିଶନର ସ୍ୱାମୀ ବ୍ରହ୍ମାନନ୍ଦ ଓ ସ୍ୱାମୀ ଶଙ୍କରାନନ୍ଦ ଭଦ୍ରକରେ କିଛିକାଳ ପାଇଁ ଅବସ୍ଥାନ କରୁଥା'ନ୍ତି । ନିୟମିତ ଭାବରେ ଏମାନଙ୍କ ପାଖକୁ ମୁଁ ଯାଉଥିଲି । ଏମାନେ ମୋତେ ବଡ଼ ସ୍ନେହ କରୁଥିଲେ ଓ ନାନା ପ୍ରକାର ଗଳ୍ପ କହୁଥିଲେ । କଥାପ୍ରସଙ୍ଗରେ ସ୍ୱାମୀ ବ୍ରହ୍ମାନନ୍ଦ ମାୟାର ତତ୍ତ୍ୱ ବୁଝାଇଲେ । କିଏ କାହାର ମାତା, କିଏ କାହାର ପିତା, କିଏ କାହାର ବନ୍ଧୁ, ପରମାତ୍ମାର ସୃଷ୍ଟି ମାୟାରେ ସେସବୁ ଇତ୍ୟାଦି । ତା' ପରେ ସ୍ୱାମୀ ବିବେକାନନ୍ଦଙ୍କ ଲେଖା ପଢ଼ି ମନ କିଛିଟା ଆଶ୍ୱସ୍ତ ହେଲା । ମା' ପାଇଁ ମନ କାନ୍ଦୁଛି—ମାତ୍ର ସେ ଦୁର୍ବଳତା; ତାକୁ ଏଡ଼ି ଅଗ୍ରସର ହେବାକୁ ହେବ । କେତେ ଦୁଃଖ ମନରେ ମାରିଦେବାକୁ ହେବ । କେତେକ ସୁଖର ଉଲ୍ଲାସ ମଧ୍ୟ ମନରେ ମାରିଦେବାକୁ ହେବ, ଅଗ୍ରସର ହେବାକୁ ହେବ ।

ମାଆର ମୃତ୍ୟୁ ଜୀବନରେ ଯେଉଁ ପ୍ରଥମ ଧକ୍କା ଦେଇଥିଲା, ତଦ୍ଦ୍ୱାରା ଏତିକି ହେଲା ଯେ, କ୍ରମଶଃ ମନ ବୈରାଗ୍ୟ ଆଡ଼କୁ ଗତି କଲା—ଅର୍ଥାତ୍ ମାୟାବାଦ ପ୍ରତି ଅନୁକୃଷ୍ଟ ହେଲା, ମାତ୍ର ସେଥିରେ ଏତେ ପ୍ରତିବନ୍ଧକ !!!

ମାଆର ମୃତ୍ୟୁ ପରେ ବାସ୍ତବିକ ଆମ ଘରେ ବିଶୃଙ୍ଖଳା ଦେଖାଦେଲା; କାରଣ ସେହି ଥିଲା ମୋର ପାଳିକା ମାତା ଓ ବାବାଙ୍କ ମଧ୍ୟରେ ସଂଯୋଗସୂତ୍ର । ପାଳିକା ମାତା ବାସ୍ତବିକ କର୍ତ୍ତ୍ରୀ । ମାଆ ମରିବା ପରେ ବାବାଙ୍କର ମଧ୍ୟ ବୈରାଗ୍ୟ ଆରମ୍ଭ ହେଲା । ଏକେ ତ ମୂଳରୁ ସେ ସଂକୀର୍ତ୍ତନ ଇତ୍ୟାଦିରେ ଉନ୍ମତ୍ତ ଥିଲେ; କିନ୍ତୁ ବର୍ତ୍ତମାନ ତାଙ୍କର ସଂସାର ଗ୍ରନ୍ଥି ଯଥାବିଧି ବୈଷ୍ଣବଦୀକ୍ଷା ନେବାରେ ମନ ବଳିଲା । ସେ ଏ କଥା କେତେଥର ବ୍ୟକ୍ତ ମଧ୍ୟ କଲେ, ମାତ୍ର ତାଙ୍କର ଗୋଟିଏ ମାୟା ଏଥିରେ ଅନ୍ତରାୟ ହୋଇଥାଏ । ପୋଷ୍ୟପୁତ୍ର ହିସାବରେ ମୁଁ ଜମିଦାର, ମାତ୍ର ମୋର ଅନ୍ୟ ସହୋଦର ଭାଇ ତିନିଜଣଙ୍କର ଚଳାଚଳ ପାଇଁ ସେପରି କିଛି ନ ଥାଏ । ଏମାନଙ୍କ ପାଇଁ କିଛି ବନ୍ଦୋବସ୍ତ କରିବା ଲାଗି ବାବା ଚିନ୍ତିତ ହୋଇ ପଡ଼ିଲେ । ତେଣୁ ସଙ୍ଗେ ସଙ୍ଗେ ମୋତେ ପୁରାପୁରି ଗୃହସ୍ଥ କରି ମୋ ଉପରେ ଜମିଦାରୀ ପ୍ରଭୃତି ବୁଝିବାର ଭାର ନ୍ୟସ୍ତ କରିବା ପାଇଁ ମନସ୍ଥ କଲେ । ଏଥିରେ ମୁଁ ଅସମ୍ମତି ପ୍ରକାଶ କଲି, ମାତ୍ର କୌଣସି ପ୍ରକାରେ ମୋତେ ଛାଡ଼ିବାର ବ୍ୟବସ୍ଥା କରାଗଲା ।

———

# ବିବାହ

ମା'ଆର ମୃତ୍ୟୁର କେତେ ମାସ ପରେ ମୋର ବିବାହର ବନ୍ଦୋବସ୍ତ ହେବାରେ ଲାଗିଲା । କଟକ ଜିଲ୍ଲା ଅସୁରେଶ୍ୱର ଗ୍ରାମର ଶ୍ରୀ ଆନନ୍ଦରାମ ସିଂହଙ୍କ କନ୍ୟା ସହିତ ମୋର ବିବାହ ସ୍ଥିରୀକୃତ ହୋଇଗଲା । ଏ ବିଷୟରେ ପ୍ରଥମେ ମୁଁ କିଛି ଜାଣି ନ ଥିଲି । ମୋତେ ମଧ୍ୟ କେହି କିଛି ଶୁଣାଇ ନ ଥିଲେ, ମାତ୍ର ଯେତେବେଳେ ଆନନ୍ଦରାମ ସିଂହ ଆମ ଘରକୁ ଆସିଲେ ଓ ବାଟରେ ଆମ ଭଦ୍ରାକ୍ଷ ବଗିଚାରେ ଦିନକପାଇଁ ରହିଲେ, ସେତେବେଳେ ମୁଁ ସବୁ ଜାଣିଲି । ଜାଣିବା ମାତ୍ରକେ ଯେତେବେଳେ ମୋର ଯେତିକି ଶକ୍ତି ଥିଲା, ସେତିକି ସେଥିରେ ସେ ପ୍ରସ୍ତାବରେ ବାଧା ଦେଇଥିଲି, ମାତ୍ର ତା'ର ଫଳ କିଛି ହେଲା ନାହିଁ । ବାବାଙ୍କର କୌଣସି କଥାରେ ବାଧା ଦେବା କଳ୍ପନାତୀତ ବ୍ୟାପାର ଥିଲା । ଆଉ ମଧ୍ୟ ପିଲାଦିନୁଁ ମୁଁ ଏପରିଭାବରେ ବଢ଼ିଥିଲି ଯେ, ବାବାଙ୍କ ମୁହଁରେ କେବଳ ଯେକୌଣସି କଥା କହିବା ଅସମ୍ଭବ ଥିଲା ତାହା ନୁହେଁ, ତାଙ୍କ ସାମନାରେ ମୁକ୍ତ ଭାବରେ ବସା ଉଠା, ଚଲାବୁଲା କରିବା ମଧ୍ୟ ଅଭ୍ୟାସର ବାହାର ଥିଲା । ପିଲାଦିନୁଁ ଏ ପ୍ରକାର ବଢ଼ିବାର ମନ୍ଦଫଳ ଆଜିଯାଏ ଭୋଗୁଛି । ନିଜକୁ ଗୁପ୍ତ ରଖିବା, ସଙ୍କୋଚରେ ଚଳିବା, ଏ ମୋର ଏପରି ମଜ୍ଜାଗତ ହୋଇଯାଇଛି ଯେ, ଆଜି ସୁଦ୍ଧା ତା'ର ଅବଶେଷ ମୋଠି ସ୍ପଷ୍ଟଭାବରେ ରହିଯାଇଛି । ଅବଶ୍ୟ ତାକୁ ଅତିକ୍ରମ କରିବାପାଇଁ ମୁଁ ବରାବର ଚେଷ୍ଟା କରି ଆସୁଛି । ଯାହାହେଉ, ମୋର ବିବାହ ପ୍ରସ୍ତାବକୁ ମୁଁ ଏଘର ଲୋକଙ୍କ ଆଗରେ କହିବାକୁ ଲାଗିଲି, ଯେପରିକି ଅବଶେଷରେ ତାହା ବାବାଙ୍କ କାନକୁ ଯିବ, ମାତ୍ର ସେ ବିରୋଧର ମୂଲ୍ୟ କିଛି ନ ଥିଲା । ଘରେ ମୋର ପାଳିକା ମା' ଓ ପାଳିକା ତାଇ ମା' ( ପାଳକ ପିତାଙ୍କ ବଡ଼ ଭାଇଙ୍କ ସ୍ତ୍ରୀ ) ଏମାନେ ସମସ୍ତେ ମୋର ବିବାହ ପ୍ରସ୍ତାବରେ ଭାରି ଉଲ୍ଲସିତ । ବାବା ମଧ୍ୟ ମୋତେ ଶୁଣାଇ ଜୋରରେ କେତେ ଥର କହିଲେ, 'ହେଲା; ପଢ଼ା ତ ଆଉ କେତେ ମାସରେ ସରିବ । ଆମର ଗୃହସ୍ଥି-ବାକିଆ କରିବା କଥା ନୁହେଁ । ହାକିମ-ହୁକୁମାଙ୍କ ସାଙ୍ଗରେ ଇଂରେଜୀରେ ଦି'ପଦ କଥା କହିଲେ ହେଲା । ବାହାସାହା ହୋଇ ବିଷୟ ଦେଖିବା ହେଉଛି ମୂଳ କଥା ।' ଏକଥା ଶୁଣି ଓ ଘରଆଡ଼େ ଏହାର ସମର୍ଥନର ବାୟୁମଣ୍ଡଳ ଦେଖି ମୁଁ ମ୍ରିୟମାଣ ହୋଇସାରିଲିଣି । ଜୀବନରେ ଗୋଟିଏ ବଡ଼ ଆଘାତ ପାଇବାକୁ ଯାଉଛି, ଏହିପରି ମନେ ହେଉଥାଏ । ବିବେକାନନ୍ଦଙ୍କ ପ୍ରେରଣା, ଦେଶପାଇଁ କାମ କରିବାର ପ୍ରବଳ ଇଚ୍ଛା, ସାଧାରଣ ଜୀବନର ପରିବର୍ତ୍ତେ ଆଉ କିଛି ଭିନ୍ନ ରକମର ଜୀବନ ଯାପନ କରିବା ଏ ସବୁ ଯେ ମନରେ ଭରିଯାଇଥିଲା, ସେ କଅଣ ନଷ୍ଟ ହୋଇଯିବ । ସାମାନ୍ୟ ଟିକିଏ ଇଂରେଜୀ ପଢ଼ି ଘରେ ବସି ଜମିଦାରଟିଏ ହୋଇ ରହିବ, ଏହା ମୋତେ ଏତେ ବ୍ୟସ୍ତ କରିଦେଲା ଯେ, ଏଥିରେ ମୋର ପଢ଼ାପଢ଼ିରେ

ମଧ୍ୟ ଟିକିଏ ବ୍ୟାଘାତ ଘଟିଲି । ମୋର ଅସୁବିଧା ଏହି ଥାଏ ଯେ, ମୁଁ ମନ ଖୋଲି କାହାକୁ କିଛି କହି ପାରୁ ନ ଥାଏ । ଯାହାକୁ ବା କିଛି କହୁଥାଏ ସେ ମୋତେ ହସରେ ଉଡ଼ାଇ ଦେଉଥାଏ । ବାହାଘର ବିରୋଧରେ ମନେ ମନେ ଭାବି ଓ ତାହା କାର୍ଯ୍ୟରେ ପରିଣତ କରିବାର କୌଣସି ବାଟ ନ ଦେଖି, ମୋର ଭାବୀ ଶ୍ୱଶୁର ଓ ତାଙ୍କର କନ୍ୟା ପ୍ରତି ମୋର ବଡ଼ ଘୃଣାର ଭାବ ଜାତ ହେଉଥାଏ । ବାବା ବନ୍ଦୋବସ୍ତ କରିଥିଲେ ଯେ, କନ୍ୟା ଆସି ଆମ ଗ୍ରାମରେ ରହିବ ଓ ବିବାହରେ ଉଭୟ ଖର୍ଚ୍ଚ ବରପକ୍ଷ ବହନ କରିବ । ଏହି ସମୟରେ କନ୍ୟା ଓ କନ୍ୟାପିତା ମାସକ ପୂର୍ବରୁ ଆସି ଆମ ଗ୍ରାମରେ ରହିଲେ । ଖୁବ୍ ଜାକଜମକରେ ବିବାହ କାର୍ଯ୍ୟ ସମ୍ପନ୍ନ ହେବ ବୋଲି ବନ୍ଦୋବସ୍ତ ଚାଲିଥାଏ । ସେତେବେଳକାର ମୋର ମାନସିକ ଅଶାନ୍ତି ଏତେ ବେଶୀ ଯେ, ତାହା ବ୍ୟକ୍ତ କରିବା କଠିନ ଥିଲା; କିନ୍ତୁ ବାବାଙ୍କ ବିରୋଧରେ କିଛି କହିବା ବା କରିବା ଚିନ୍ତାର ବାହାର ବ୍ୟାପାର ଥିଲା । ଶେଷରେ ମୁଁ ଭାଗ୍ୟ ଉପରେ ସବୁ ଛାଡ଼ିଦେଲି । ଯାହା ହେବାର ଥିବ ହେବ, ଏହା ହିଁ ଭାବି ଟିକିଏ ଆଶ୍ୱସ୍ତ ହେଲି । ବିବାହ ଦିନ ଆସିଗଲା । ମହାସମାରୋହ । ଗାଁ ଲୋକେ କହୁଥିଲେ ଯେ ଏପରି ସମାରୋହ ବିଗତ ପଚାଶ ବର୍ଷ ମଧ୍ୟରେ ଗାଁରେ ହୋଇ ନ ଥିଲା । ଶେଷ ପର୍ଯ୍ୟନ୍ତ ମୁଁ ଭାବୁଥାଏ କୌଣସି ପ୍ରକାରେ ବାହାଘରଟା ବନ୍ଦ ହୋଇଯାନ୍ତା କି, ମାତ୍ର ତାହା ହେବାର ନୁହେଁ । ମନେ ଅଛି, ଯେତେବେଳେ କନ୍ୟାର ହାତ ସହିତ ମୋ ହାତ ମିଳାଇ ଗଣ୍ଠି ବନ୍ଧାହେଲା ଓ ବ୍ରାହ୍ମଣମାନେ ମନ୍ତ୍ର ପଢ଼ିବାରେ ଲାଗିଲେ, ସେତେବେଳେ ମୋର ଶିରା ପ୍ରଶିରାରେ ଏକ ପ୍ରକାର ବିଦ୍ୟୁତ୍ ଖେଳିଲା ପରି ମୋତେ ବୋଧେ ହେଲା । ଏ ପ୍ରକାର ପୂର୍ବେ କେବେ ମୁଁ ଅନୁଭବ କରି ନ ଥିଲି । ସେତେବେଳେ ମୁଁ ଭାବୁଥାଏ "ଜୀବନଯାକ ମୋ ସହିତ ବନ୍ଧା ହେଲୁ, ତୋତେ ମୁଁ କାନ୍ଧରେ ନେଇ ଚାଲିବି, ତୋତେ ସୁଖୀ କରିବା ପାଇଁ ଚେଷ୍ଟା କରିବି, ମାତ୍ର ମୋ ସହିତ ବୋଧହୁଏ ତୋ ଜୀବନ ସୁଖୀ ହେବ ନାହିଁ ।" କନ୍ୟା ପ୍ରତି ଦୟାର ଭାବ ଜାଗ୍ରତ ହେଲା । ବିବାହ ପ୍ରତି ଯେଉଁ ବିରୋଧ ଭାବ ଥିଲା, ସେ ଧୀରେ ଧୀରେ କେଉଁଆଡ଼େ ଚାଲିଗଲା । ଏତେ ଶୀଘ୍ର ମୋର ପୂର୍ବ ଭାବଯାକ ବଦଳିଗଲା ଯେ, ମୁଁ ନିଜେ ମଧ୍ୟ ସେ କଥା ଭାବି ବିସ୍ମିତ ହେଉଥିଲି ।

ବିବାହ ସରିଗଲା । କନ୍ୟାକୁ ପୂର୍ବରୁ ଦେଖିବାର ସୁଯୋଗ ମିଳି ନ ଥିଲା । ଯେଉଁଦିନ ପ୍ରଥମେ ଦେଖିଲି ସେ ଦିନ ମୁଁ ନିଜେ ମୁଗ୍ଧ ହୋଇଥିଲି । ସୁନ୍ଦରୀ ପ୍ରତିମା । ଅତି ସରଳ, ମାତ୍ର ଅତି ଗମ୍ଭୀର । ଆମ ଘରେ ବା ସେତେବେଳକାର ପାରିପାର୍ଶ୍ୱିକ ସମାଜରେ ଦିନବେଳେ ସ୍ତ୍ରୀ ସହିତ ଦେଖା ବା କଥାବାର୍ତ୍ତା କରିବାର ସୁବିଧା ନ ଥିଲା । ତା ହୋଇଥିଲେ ମୁଁ ସ୍ତ୍ରୀକୁ କିଛି ପାଠ ପଢ଼ାଇବାର ବନ୍ଦୋବସ୍ତ କରି ଥାଆନ୍ତି । ମୋର ନିଜ ମାଆ ଛଡ଼ା ଆମ ଘରେ ଆଉ କେହି ସ୍ତ୍ରୀ-ଲୋକ ପାଠ

ପଢ଼ି ନ ଥିଲେ । ତେଣୁ ମୋ ସ୍ତ୍ରୀର ପାଠ ପଢ଼ିବାର ପ୍ରସ୍ତାବ ସୁଦ୍ଧା କରିବା ସ୍ୱାଭାବିକ ଭ୍ରୁଷ୍ଟ ବ୍ୟାପାର ଥିଲା । ମୋର ସ୍ତ୍ରୀର ନାମଟିରେ ମୁଁ ମଧ୍ୟ ସନ୍ତୁଷ୍ଟ ହୋଇଥିଲି । ସୁଭଦ୍ରା ନାମଟି ମୋତେ ବଡ଼ ସୁଖ ଲାଗିଥିଲା । କିଛି ଦିନ ସମ୍ଭୋଗ ପରେ ମୁଁ ଉଦ୍ରଣ ଗଲି ପାଠ ପଢ଼ା ପାଇଁ ।

କେତେ ମାସ ପରେ ମାଟ୍ରିକୁଲେସନ୍ ପରୀକ୍ଷା ଆରମ୍ଭ ହେଲା । ସେ ବର୍ଷ ୧୯୧୭ ମସିହାରେ ପ୍ରଶ୍ନପତ୍ର ବାରମ୍ବାର ବେର ହେବା ଯୋଗୁଁ ପରୀକ୍ଷା ତିନଥର ହୋଇଥିଲା । ଶିକ୍ଷକମାନେ ଆଶା କରୁଥିଲେ ମୁଁ ପରୀକ୍ଷାରେ ଖୁବ୍ ଭଲ ଫଳ କରିବି । ମୋର ବିବାହ ମଝିରେ ନ ହୋଇଥିଲେ ବୋଧହୁଏ ତା' କରିଥାଆନ୍ତି । ମାତ୍ର ତା ହେଲା ନାହିଁ । ତେବେ ପ୍ରଥମ ଶ୍ରେଣୀରେ ପାଶ୍ କରିଥିଲି । ପରୀକ୍ଷା ଫଳ ବାହାରିଗଲା ପରେ ମୁଁ ଏକ ନୂତନ ଚିନ୍ତାରେ ପଡ଼ିଥିଲି । ବାବାଙ୍କର ଦୃଢ଼ ମତ, ଘରେ ସମସ୍ତଙ୍କର ଦୃଢ଼ ମତ ଓ ମୋ ସ୍ତ୍ରୀର ମଧ୍ୟ ଦୃଢ଼ ମତ ଯେ ମୋର ଆଉ ପଢ଼ିବାର ଆବଶ୍ୟକତା କିଛି ନାହିଁ । ମାତ୍ର ମୋର ମନ ଦୌଡ଼ୁଥାଏ ଆହୁରି ବେଶୀ ପଢ଼ିବାକୁ, ପଢ଼ା ଛାଡ଼ିଲେ ଜୀବନର ସବୁ ଗଲା ବୋଲି ମୋତେ ବୋଧ ହେଉଥାଏ । ବାବା ମଧ୍ୟ ମୋତେ ବସି ରହି ନିଜ ବାଟରେ ଚିନ୍ତା କରିବାର ସୁବିଧା ଦେବେ ନାହିଁ ବୋଲି ବଙ୍କପଣକର । ସେ ଧୀରେ ଧୀରେ ଜମିଦାରୀ କାଗଜପତ୍ର ମୋତେ ବତାଇବାରେ ଲାଗିଥାନ୍ତି । ମୁଁ ମଧ୍ୟ ସାହସ କରି ମନା କରିପାରୁ ନ ଥାଏ । ମାଟ୍ରିକୁଲେସନ୍ ପରୀକ୍ଷାଠାରୁ କଲେଜରେ ନାମ ଲେଖାଇବା ପର୍ଯ୍ୟନ୍ତ ୩/୪ ମାସ ମୁଁ ଜମିଦାରୀ କାମ ଓ ଘର କାମ କିଛି ବୁଝିଥିଲି । ଆମ ଘର ସହିତ ଠାକୁର ମନ୍ଦିର ସଂଯୁକ୍ତ ଥିବାରୁ ଓ ଠାକୁରଙ୍କ ପର୍ବ ପର୍ବାଣିରେ ଗୀତ ବଜାଣ ଓ ସଂକୀର୍ତ୍ତନ ବାଧ୍ୟତାମୂଳକ ଥିବାରୁ, ଆମ ଘରର କେହି ଜଣେ ବା ଅଧିକଙ୍କୁ ସଙ୍ଗୀତ ବିଦ୍ୟା ଶିଖିବାକୁ ପଡ଼େ । ମୋର ବଡ଼ଭାଇ ଯେ ଭଦ୍ରକରେ ପ୍ରାୟ ବର୍ଷେ ଖଣ୍ଡେ ପଢ଼ି ଶରୀରର ଅସୁସ୍ଥତା ହେତୁ ପଢ଼ା ଛାଡ଼ି ଦେଇଥିଲେ, ସେ ଘରେ ରହି କିଛି କିଛି ସଙ୍ଗୀତ ଶିକ୍ଷା କରୁଥିଲେ । ମୁଁ ମଧ୍ୟ ଏହି ସମୟରେ କିଛି ସଙ୍ଗୀତ ଶିକ୍ଷା ଆରମ୍ଭ କଲି —ବେହେଲା, ହାରମୋନିୟମ, ବଂଶୀ ଏ ସବୁଥିରୁ କିଛି କିଛି ଶିଖିଲି । ଏଥିରେ ବାବା ଭାରି ଖୁସି ହେଲେ । ସେ ବୋଧହୁଏ ଭାବିଲେ ଯେ ମୁଁ ଜଣେ ସୁଦକ୍ଷ ଗୃହକର୍ତ୍ତା ଓ ବିଷୟୀ ହୋଇପାରିବି; ମାତ୍ର ସେଥିରେ ମୁଁ ତାଙ୍କୁ ବଡ଼ ନିରାଶ କରିଥିଲି । ସେ ଜୀବିତ ଥିଲା ପର୍ଯ୍ୟନ୍ତ ମୁଁ ତାଙ୍କର ସନ୍ତୋଷଭାଜନ ହୋଇ ପାରି ନ ଥିଲି । ଗ୍ରୀଷ୍ମଛୁଟି ପରେ କଲେଜ ଖୋଲିବାର ପନ୍ଦର ଦିନ ଥାଏ ଓ ସେହି ସମୟରେ ନୂଆ ଛାତ୍ରଙ୍କ ନାମ ଲେଖା ହୁଏ, ମୁଁ ଖୁବ୍ ସାହସ ସଞ୍ଚୟ କରି ବାବାଙ୍କଠାକୁ ଖଣ୍ଡେ ଚିଠି ଲେଖିଲି । ସେଥିରେ ନାନାପ୍ରକାର ଯୁକ୍ତି ଦେଖାଇ ଜଣାଇଥିଲି ଯେ, ମୋର କଲେଜରେ ପଢ଼ିବା ଉଚିତ ଓ ତେଣୁ ମୁଁ ତାହା କରିବି ବୋଲି ସ୍ଥିର କରିଛି । ବାବାଙ୍କୁ ସିଧାସିଧି ଦୃଢ଼ ଭାବରେ ଜଣାଇବା ଏହି

ପ୍ରଥମ । ବାବା ମଧ୍ୟ ମୋତେ ଏକ ଦୀର୍ଘ ଉତ୍ତର ଦେଲେ । ସେଥିରେ ସେ ଲେଖି-ଥିଲେ "ମୋର ବର୍ତ୍ତମାନ ସଂସାର ଛାଡ଼ିବାର କଥା—ମୋତେ ଘରକରଣା ଆଉ ଭଲ ଲାଗୁନାହିଁ । ତୁ ତ ଜମିଦାରୀର ମାଲିକ । ତୋର ନଜର ତଳ ଭାଇ ଅସୁସ୍ଥ ଓ ଆଉ ମଧ୍ୟ ତୋ ତଳ ସାନ ଭାଇ ଦୁଇଟି ପିଲା । ସେମାନଙ୍କ ତତ୍ତ୍ୱ ବୁଝିବାକୁ ହେବ । ଏମାନଙ୍କୁ ମଣିଷ କରିବାର ଭାର ତୋ ଉପରେ । ଏଣୁ ଆଉ ପଢ଼ିବା କଥା ନ ଭାବି ବିଷୟ ବୁଝି ଭାଇମାନଙ୍କର ସନ୍ଧି କର । ମୁଁ ତ ଇଂରେଜୀ ପଢ଼ି ନ ଥିଲି । କୋଡ଼ିଏ ବର୍ଷ କାଳ ଜମିଦାରୀ ବୁଝି ବେଶ୍ ସୁନାମ ଅର୍ଜ୍ଜନ କରିଛି । ତୁ ତ କାମ ଚଳିବା ଭଳି ଇଂରେଜୀ ପଢ଼ିଛୁ, ଆଉ ନ ପଢ଼ି ସେତିକରେ ମୋଠାରୁ ବେଶୀ ନାମ କରିବୁ ।" ଆଉ ମଧ୍ୟ ସେ ଚିଠିରେ ବାବା ଲେଖିଥିଲେ ଯେ ମୁଁ କଲେଜରେ ପଢ଼ିବାକୁ ହେଲେ ମାସକୁ ଯାହା ଖର୍ଚ୍ଚ ପଡ଼ିବ, ତାହା ସେ ଯୋଗାଇ ପାରିବେ ନାହିଁ, କାରଣ ପୂର୍ବରୁ ଯେଉଁ ବଜେଟ ଅନୁସାରେ ଘର ଓ ଠାକୁର ମନ୍ଦିର ଚାଲି ଆସୁଛି, ତାକୁ ବଦଳାଇ ନୂଆ ଖର୍ଚ୍ଚର ବନ୍ଦୋବସ୍ତ କରିବାର ଅଧିକାର ତାଙ୍କର ନଥିଲା । ସେ ଚିଠି ପାଇ ମୁଁ ଏତେ ବିବ୍ରତ ହୋଇପଡ଼ିଲି ଯେ, ମୋର ଆତ୍ମହତ୍ୟା କରିବା ଉଚିତ ବୋଲି ବୋଧ ହେଲା । ଏଣେ ମୋର ସ୍ତ୍ରୀ ମୋତେ ବୁଝାଇବାରେ ଲାଗିଛି ଯେ, ବେଶୀ ପଢ଼ିବାରେ ଲାଭ କିଛି ନାହିଁ । ତେଣେ ମୋର ପାଳିକା ମାତା କଷ୍ଟକରେ ପଢ଼ିବା ପ୍ରସ୍ତାବ ଶୁଣି କାନ୍ଦ ପକାଉଥାନ୍ତି । କହୁଥାନ୍ତି—"ମୁଁ ବୁଢ଼ୀ ହେଲି, ତୋତେ ପୁଅ କରିଥିଲି ତୁ ଘର ସମ୍ଭାଳିବୁ ଏତିକି ମୁଁ ଦେଖିବି ନାହିଁ କି ?" ମୋତେ ଏତେ ଅସ୍ଥିର ବୋଧ ହେଉଥାଏ ଯେ, ବେଳେ ବେଳେ ଘର ଛାଡ଼ି ପଳାଇବି ବୋଲି ଭାବୁଥାଏ । ମୋ ଆଗରେ ପ୍ରଶ୍ନ ଥାଏ ମୁଁ ଜଣେ ସାଧାରଣ ଗୃହସ୍ଥ ହୋଇ ରହିବି କି ତା'ଠାରୁ ଆଉ କିଛି ଅଧିକ କରିବି । ଯଦି ସାଧାରଣ ଗୃହସ୍ଥ ହୋଇ ରହିବାର କଥା, ତେବେ ବାସ୍ତବିକ ଆଉ ପଢ଼ି କିଛି ଲାଭ ନାହିଁ । କିନ୍ତୁ ମୋ ମନ ସେଥିରେ ଆଦୌ ରାଜି ହେଉ ନ ଥାଏ । ମୋର ମନେ ଅଛି—ଖୁବ୍ ପୁଙ୍ଖାନୁପୁଙ୍ଖ ରୂପେ ମୋର ମନକୁ ସେତେବେଳେ ମୁଁ ଆଲୋଚନା କରିଛି । ପାଠ ପଢ଼ି ଚାକିରୀ କରିବା ବା ଅର୍ଥ ଉପାର୍ଜନ କରିବାର ଇଚ୍ଛା ଆଦୌ ନ ଥିଲା । ଏକମାତ୍ର ଚିନ୍ତା ମୋର ଚାଲିଥାଏ ସାଧାରଣ ଗୃହସ୍ଥ ଠାରୁ ଆଉ କିଛି ବେଶୀ ହେବା, ସାଧାରଣଙ୍କର କିଛି ନା କିଛି ସେବା କରିବା—ଦେଶ କାମ କିଛି କରିବା । ସେତେବେଳେ ଯଦି ଏହା ମୋତେ ଜଣାଯାଇଥାନ୍ତା, ଯେପରିକି ଆଜି ଜଣାଯାଉଛି ଯେ ସେବାକାର୍ଯ୍ୟ ପାଇଁ ଇଂରେଜୀ ପଢ଼ିବା ବା କଲେଜ ଶିକ୍ଷାର ପ୍ରୟୋଜନ ନାହିଁ ତେବେ ମୁଁ ସେତେ-ବେଳେ ନିଜକୁ ଅତିରିକ୍ତ କଷ୍ଟଓକଷ୍ଟ କରି ବାବାଙ୍କ ବିରୋଧରେ, ଘରେ ମାଆଙ୍କ ବିରୋଧରେ ଯାଇପାରି ନ ଥାନ୍ତି; ମାତ୍ର ମୋର ବିଶ୍ୱାସ ଥାଏ ଯେ, କଲେଜରେ ନ ପଢ଼ିଲେ ମୁଁ ଦେଶକାମ କିଛି କରିପାରିବି ନାହିଁ । ନାମଲେଖା ଦିନ ନିକଟ ହୋଇ-ଆସୁଥାଏ । ଆଉ ଗୋଟିଏ ଅଛି, ବାବା ଥା'ନ୍ତି ମଫସଲରେ ଏକ ଖମାରଘରେ ।

ମୁଁ ଘରେ 'ବାବାଙ୍କଠାକୁ ଯାଉଛୁ ବୋଲି କହି' ଯାଇ ତାଙ୍କ ପାଖେ ପହଞ୍ଚିଲି । ବାବା ପଚାରିବାରୁ ମୁଁ କହିଲି ଯେ, ମୁଁ କଟକ ଯିବାପାଇଁ ବାହାରି ଆସିଛୁ । ଏ କଥା ଶୁଣି ସେ ଏତେ ରାଗିଗଲେ ଯେ; ମୁଁ ମ୍ରିୟମାଣ ହୋଇ ବସିପଡ଼ିଲି । ସେଠି ରହିଲି । ମୋ ଜମିଦାରୀ କାଗଜପତ୍ର ଯାହାକିଛି ଥିଲା, ତାକୁ ଚାକରଦ୍ୱାରା ବାବାଙ୍କଠାକୁ ପଠାଇଦେଲି । ସେ ରାଗରେ ସବୁ ରଖି ନେଇଥା'ନ୍ତି; ମାତ୍ର ମୁଁ ସାହସ କରି ଟଙ୍କା ମାଗିପାରୁ ନ ଥାଏ । ଅବଶେଷରେ ଜଣେ ଗୁମାସ୍ତାକୁ କହିଲି, ବାବାଙ୍କଠାରୁ ଟଙ୍କା ଆଣିବା ପାଇଁ । ସେତେବେଳକୁ ବାବା ବୋଧହୁଏ ବୁଝି ସାରିଲେଣି ଯେ, ମୁଁ ଆଉ ତାଙ୍କ କଥା ରଖିବି ନାହିଁ । ସେ ମୋତେ ଡାକ ପଠାଇ ଗମ୍ଭୀର ଭାବରେ କହିଲେ—"ଟଙ୍କା କେଉଁଠୁ ଆସିବ ? କେତେ ମାସକୁ ଖରଚ ହେବ ?" ଏହା କହି ସେ ନିଜେ ଏକ କାଗଜରେ ହିସାବ କରିବାରେ ଲାଗିଲେ । ହିସାବ କରି କହିଲେ, "ମାସକୁ କୋଡ଼ିଏ ଟଙ୍କା ହେଲେ ହେଇ୍ ହେବ । ଆଉ ଜଣେ ଚାକର ସାଙ୍ଗରେ ଯିବ । ତା' ପାଇଁ ଖରଚ ୫୧୦୲ଙ୍କା । ମୋଟ୍ ୫୩୦ଙ୍କା ହେଲେ ଚଳିବ । ନଗଦ ୫୫୦୲ଙ୍କା ନେଇଯାଅ, ମାସକୁ ମାସ ୫୩୦୲ଙ୍କା ପଠାଇ ଦିଆହେବ ।" ଏତିକି ଖୁବ୍ ଗମ୍ଭୀର ଭାବରେ କହି ସେ ଉଠି ଚାଲିଗଲେ ଓ ଗୁମାସ୍ତାକୁ କହିଗଲେ ଟଙ୍କା ଦେଇ ଦେବାପାଇଁ । ଜଣେ ଚାକର ବା କାହିଁକି ଯିବ, ପ୍ରଥମେ ନାଁ ଲେଖା ଓ ବହି କିଣାରେ ବେଶି ଖର୍ଚ୍ଚ ଲାଗିବ, ମାସିକ ଖର୍ଚ୍ଚ ସେତିକିରେ ଚଳିବ ନାହିଁ ଇତ୍ୟାଦି ବିଷୟ ମୁଁ କିଛି କହିପାରିଲି ନାହିଁ । ସବୁ ମୋତେ ମହା ଅଡୁଆ ଜଣାପଡୁଥାଏ; ମାତ୍ର ସବୁ ଅସୁବିଧା ଭେଦକରି ଯିବାପାଇଁ ଏକ ପ୍ରରୋଚନା ମୁଁ ଅନୁଭବ କରୁଥାଏ । ଗୁମାସ୍ତା ମୋତେ ୫୫୦୲ଙ୍କା ଦେଇଦେଲେ । ମୁଁ ସେଠୁ ରେଲ୍-ଷ୍ଟେସନକୁ ବାହାରିଲି; ସେଠୁ ଷ୍ଟେସନ ଆଠ ମାଇଲ୍, ଚାଲିକି ଯିବା ଚଳିବ ନାହିଁ; କାରଣ ଆମ ଘରେ ସେ ପର୍ଯ୍ୟନ୍ତ କେହି କୁଆଡ଼େ ଚାଲିକି ଯାଇ ନାହାନ୍ତି, ଆଉ ମଧ୍ୟ ବିନା ଚାକରରେ କେହି କୁଆଡ଼େ ଯାଇ ନାହାନ୍ତି । ତେଣୁ ବାବାଙ୍କର ମୋ ପାଇଁ ଚାକରର ବନ୍ଦୋବସ୍ତ । ଗୁମାସ୍ତା ସବାରି ବେହେରା ମଧ୍ୟ ବନ୍ଦୋବସ୍ତ କରିଦେଲେ । ମୋହନ ବୋଲି ଜଣେ ଚାକର ମୋ ସହିତ ଆସିଲା । ମୁଁ ଷ୍ଟେସନରେ ଯାଇ ପହଞ୍ଚିଲି । ବାଟରେ ଆମ ଜମିଦାରୀର କେତେକ ଗାଁ ମଧ୍ୟଦେଇ ଆସିଲି । ସେ ଗାଁର ମୁଖିଆ ମୁଖିଆ ଲୋକମାନେ ମୋତେ ଦେଖିବା ପାଇଁ ଆସିଥିଲେ । 'ଗାଁ ଭିତରକୁ ରାଜା ଆସିଛନ୍ତି' କହି ପ୍ରଚଳିତ ରୀତି ଅନୁସାରେ ସେମାନେ କିଛି ସଲାମି ଦେଲେ । ସଲାମି ବାବଦ ମୋଟ ୧୫୦୲ କି ୨୦୦ ପାଇଥିଲି, ପଚାଶ ଟଙ୍କା ସାଙ୍ଗକୁ ଏତିକି ମିଳିବାରୁ ମୁଁ ଆଶ୍ୱସ୍ତ ହୋଇଥିଲି ।

*

# କଲେଜ ଜୀବନ

ମୁଁ ଆଇ. ଏସ୍‌ସି. ନେଇଥିଲି । ଫିଜିକ୍‌ସ, କେମିଷ୍ଟ୍ରୀ, ମାଥେମେଟିକ୍‌ସ ଏବଂ ବଟାନୀ ମୋର ଅଧ୍ୟୟନର ବିଷୟ ଥିଲା । କଟକରେ ମୋର ଭଦ୍ରକ ସ୍କୁଲର କେତେକ ସହପାଠୀଙ୍କ ସହ ଗୋଟିଏ ଘରୋଇ ମେସ୍‌ରେ ରହିଲି । ବର୍ତ୍ତମାନ ମୋର ବୟସ ୧୭ ବର୍ଷ । ଏକ ନୂତନ ପ୍ରକାରର ଜୀବନ ଆରମ୍ଭ ହେଲା । ପଢ଼ିବାଟା ମୋର ମୁଖ୍ୟ ଉଦ୍ଦେଶ୍ୟ ନ ଥିବାରୁ କଲେଜରେ ଲାଗିପଡ଼ି ଖୁବ୍ ଭଲ ପଢ଼ିବାର ପ୍ରୟାସ ମଧ୍ୟ ନ ଥିଲା । କୌଣସି ପ୍ରକାରେ ପାଶ୍ କରିବାର ବ୍ୟବସ୍ଥା କରି ଅନ୍ୟାନ୍ୟ ସମସ୍ତ ପ୍ରାୟ ସାଧାରଣ କାର୍ଯ୍ୟରେ ନିୟୋଜିତ ହେଉଥିଲି । କଲେଜରେ ସରକାରୀ ହଷ୍ଟେଲରେ ଯେଉଁ ଛାତ୍ରମାନେ ଥିଲେ, ସେମାନଙ୍କ ଚାଲିଚଳଣି ସୁଖ ଲାଗୁ ନ ଥିଲା । ସେମାନେ ଯେପରି ଏକ ବିଳାସର ଜୀବନ-ଯାପନ କରୁଛନ୍ତି, ଏହିପରି ମନେ ହେଉଥିଲା । ସେତେବେଳେ କଲେଜରେ ଯେଉଁମାନେ ଛାତ୍ର ନେତା ଥିଲେ, ସେମାନେ ଖୁବ୍ ଭଲ ବକ୍ତୃତା କରିପାରୁଥିଲେ; ମାତ୍ର ସେମାନଙ୍କ ଗତିବିଧି ଆଦୌ ସୁଖ ଲାଗୁ-ନ ଥିଲା । କଲେଜରେ ନାମ ଲେଖାଇ ଛାତ୍ର-ଆନ୍ଦୋଳନ ବା ତତ୍‌ସମ୍ପର୍କୀୟ କୌଣସି କାମରେ ମୁଁ କେବେ ଯୋଗ ଦେଇ ନ ଥିଲି । କଲେଜରେ ଛାତ୍ର-ଜୀବନଟା ମୋତେ ଯେପରି ମୋ ଉଦ୍ଦେଶ୍ୟ ପାଇଁ ଫମ୍ପା ଜଣା ପଡ଼ୁଥିଲା ।

କଲେଜରେ ସେକେଣ୍ଡ ଇୟରରେ ପଢ଼ିବାବେଳେ ନବକୃଷ୍ଣ ଚୌଧୁରୀ, ପ୍ରହ୍ଲାଦ ସାହୁ ଏମାନଙ୍କ ସହିତ ଆଳାପ ପରିଚୟ ହୁଏ । ପ୍ରହ୍ଲାଦ ସାହୁ ଆମ ମେସ୍‌ରେ ରହି କଲେଜରେ ପଢ଼ୁଥିଲେ । ନବକୃଷ୍ଣ ଚୌଧୁରୀ ଆମ ମେସ୍‌ରେ ଅଧିକାଂଶ ସମୟ କଟାଉଥିଲେ । ସାଧାରଣ ଜୀବନର ବାହାରେ କିଛି କରିବାକୁ ହେବ, ଏହା ହିଁ ଆମର ଧ୍ୟେୟ ଥିଲା । କଲେଜରେ ଆମେ ପଢ଼ୁଥିଲେ ମଧ୍ୟ କଲେଜ-ଜୀବନ ସହିତ ଆମର ସମ୍ପର୍କ ନ ଥିଲା କହିଲେ ଚଳେ । ଆମ ନିଜ ନିଜ ଭିତରେ ଆମେ ନାନାପ୍ରକାର ରାଜନୀତିକ ଓ ଅନ୍ୟ ଉଚ୍ଚ ଆଲୋଚନା କରୁଥିଲୁଁ । ସେତେ-ବେଳେ ଏନି ବେଶାନ୍ତଙ୍କ ଦ୍ୱାରା ସମ୍ପାଦିତ 'ନିଉ ଇଣ୍ଡିଆ' ନାମକ ଦୈନିକ କାଗଜର ଗ୍ରାହକ ହୋଇ ତାକୁ ନିୟମିତ ଭାବରେ ପଢ଼ୁଥିଲୁ । ମୋର ଯେତେଦୂର ଧାରଣା, କଲେଜରେ ଏ କାଗଜ କେହି ତ' ପଢ଼ୁ ନ ଥିଲେ, ବାହାରେ ମଧ୍ୟ ଏହାର ଆଲୋଚନା ଖୁବ୍ କମ୍ ଥିଲା । କଲେଜ ଲାଇବ୍ରେରୀରୁ ନାନାପ୍ରକାର ବହି ଆଣି ପଢ଼ୁଥିଲୁ । ଆମ୍ଭେମାନେ ନିଜକୁ ନିଜେ ଫ୍ରି. ଥିଙ୍କରସ୍ ବା ସ୍ୱାଧୀନ ଚନ୍ତା

କରୁଥିବା ବ୍ୟକ୍ତି ବୋଲି ଭାବୁଥିଲୁ ଓ କହୁଥିଲୁ । ସାଧାରଣଙ୍କର ମତ ଅନୁସାରେ ଚାଲିବା ଏକ ପ୍ରକାର ଦୁର୍ବଳତା, ନିଜେ ଯାହା ଠିକ୍ ଭାବିବ ତଦନୁସାରେ ସାଧାରଣଙ୍କ ମତ ଗଠନ କରିବା ହିଁ ହେଉଛି ସାମର୍ଥ୍ୟ— ଏହା ଆମର ସିଦ୍ଧାନ୍ତ ଥିଲା ଓ ଏହି ଅନୁସାରେ ଆମେ ମଧ୍ୟ 'ଚାଲୁଥିଲୁ' । ନିଜକୁ 'ବୀର' କରିବାପାଇଁ; ଅର୍ଥାତ୍ ସାଧାରଣଙ୍କ ମତକୁ ଭୟ ନ କରି ନିଜ ମତରେ ସାହସ ସହକାରେ ଚାଲିବାର ଅଭ୍ୟାସ କରିବା ପାଇଁ ନାନାପ୍ରକାର ପନ୍ଥା ଆମେ ଅବଲମ୍ବନ କରିଥିଲୁ । ଧରନ୍ତୁ ନବକୃଷ୍ଣ ଚୌଧୁରୀ ଏକ ବଡ଼ ଛତା ନେଇ କଲେଜକୁ ଯାଉଥିଲେ । ଅନ୍ୟ ପିଲାମାନେ ହସନ୍ତି, ଥଟ୍ଟା କରନ୍ତି । ଏଥିରେ ଆମେ ଖୁସି ହେଉ ଯେ, ଆମେ ସେମାନଙ୍କ ମତକୁ ଭ୍ରୂକ୍ଷେପ କରୁ ନା । ସେତେବେଳେ ଅଧ୍ୟାପକ ଯୋଗେଶଚନ୍ଦ୍ର ବୋଷ, ଯେ କି ବଟାନି ପଢ଼ାଉଥିଲେ ମଧ୍ୟ ନାନାପ୍ରକାର ଗବେଷଣା ନିଜେ କରି କଲେଜରେ ଏକ ବୈଜ୍ଞାନିକ ବାୟୁମଣ୍ଡଳ ବଜାୟ ରଖିଥିଲେ, ଥରେ ସେ କହିଲେ ଯେ, ଟସର ଲୁଗା ପିନ୍ଧିବାର ଅନେକ ଭଲ ଗୁଣ ଅଛି । ତା'ପରେ ମୁଁ ମଠା ଲୁଗା ପିନ୍ଧି କଲେଜକୁ ଯିବାରେ ଲାଗିଲି, ସମସ୍ତେ ଦେଖି ହସନ୍ତି । ସେଇଥିରେ ଆମର ଆନନ୍ଦ । ଅନ୍ୟର ମତକୁ କେତେଦୂର ଖାତିର୍ ନ କରି ପାରୁଛୁ, ଏହା ପରୀକ୍ଷା କରିବାପାଇଁ ଅନେକଥର ଖାମାନନ୍ଦ ଥାଳକ କାଟି ମୁଁ କଲେଜକୁ ଯାଇଛି ଓ ସାହସ ସହକାରେ ନାନାପ୍ରକାର ବିଦ୍ରୂପ ସହ୍ୟ କରିଛି । ଥରେ ଆମେ ତିନିଜଣ ଚୌଧୁରୀ ବଜାର ଭିତରେ ଗଲାବେଳେ ଆମର ସ୍ୱାଧୀନ ଚିନ୍ତା ବିଷୟରେ କଥାବାର୍ତ୍ତା ହେଉଥାଏ । ଅନ୍ୟର ତିରସ୍କାର, ବିଦ୍ରୂପ ଓ ତା'ର ମତ ପ୍ରତି କେତେଦୂର ଆମେ ବେପରବାୟ, ତାହା ପରୀକ୍ଷା କରିବାର କଥା ଉଠିଲା । ନାନାପ୍ରକାର ପ୍ରସ୍ତାବ ଭିତରେ ଗୋଟିଏ ପ୍ରସ୍ତାବ ହେଲା ଯେ, ପାନ ଦୋକାନରେ ଖଟା ମିଳିବ କି ନା ପଚାରୁଥିବୁ ଓ ପାନଦୋକାନୀ ଯାହା କହୁ ପଛକେ ତାକୁ ବାରମ୍ବାର ଖଟା ମଗାଯାଉ । ମୋର ମନେଅଛି, ମୁଁ ଯାଇ ଏକ ପାନଦୋକାନୀକୁ ଖଟା ବାରମ୍ବାର ଜିଦ୍ କରି ମାଗିବାରେ ସେ ବିରକ୍ତ ହୋଇ ଗାଳି ଦେଇଥିଲା । ସେଇଥିରେ ଆମେ ଖୁସି ହୋଇ ଚାଲିଗଲୁ । ଫାଷ୍ଟ ଇୟରରେ ପଢ଼ୁଥିବା ସମୟରେ ମୋର ମନ ହେଲା କୁସ୍ତି ଶିଖିବାପାଇଁ । ସେତେବେଳେ କଟକରେ ବନା ପହିଲୁଆନ୍ ପ୍ରସିଦ୍ଧ । ତାଙ୍କର ଆଖଡ଼ା ଥାଏ ଟାଉନହଲ୍‌ରେ । ରାତି ଚାରିଟାରୁ ଉଠି କୁସ୍ତି କସରତ ଶିଖିବାପାଇଁ ମୁଁ ସେଠାକୁ ଯାଉଥିଲି । ଥରେ ଗୋଟିଏ ପେଞ୍ଚ ଶିଖୁ ଶିଖୁ ଏପରି ଭାବରେ ପଡ଼ିଗଲି ଯେ, କିଛି ସମୟପାଇଁ ଅଚେତନ ହୋଇଗଲି । ତା'ପରେ କୁସ୍ତି ଶିକ୍ଷା ଛାଡ଼ିଦେଲି ।

ବୋଧହୁଏ ସେତେବେଳେ ସେକେଣ୍ଡ ଇୟରରେ ପଢ଼ୁଥିଲି, ସେତେବେଳେ ମୋହନ ସି. ଅର୍. ଡ. ନାଇଡୁ ନାମକ ଜଣେ ସାଧକ ଆମ କଲେଜରେ

ଏକ ବକ୍ତୃତା ଦେଇଥିଲେ । ନିଜର ଶକ୍ତି ଉପରେ ବିଶ୍ୱାସ ବଢ଼ାଇବାକୁ ହେବ, ନିଜର ଗୁପ୍ତ ଶକ୍ତିକୁ କିପରି ଜାଗ୍ରତ କରିବାକୁ ହେବ, ଏଥିପାଇଁ ପ୍ରାଣାୟାମ କିପରି ସାହାଯ୍ୟ କରେ ଇତ୍ୟାଦି ବିଷୟରେ ସେ ଏକ ସୁନ୍ଦର ଭାଷଣ ଦେଇ ଘୋଷଣା କରିଥିଲେ ଯେ, ଯେଉଁମାନେ ଏହିବୁ ବିଷୟ ତାଙ୍କଠାରୁ ଶିକ୍ଷା କରିବାପାଇଁ ଇଚ୍ଛା କରନ୍ତି, ସେମାନଙ୍କୁ ସେ ଶିଖାଇବା ପାଇଁ ପ୍ରସ୍ତୁତ । ଖୁବ୍ କମ୍ ଲୋକ ଶିଖିବାପାଇଁ ବାହାରିଥିଲେ । ତା' ଭିତରେ ଶିବକୃଷ୍ଣ ଚୌଧୁରୀ ଓ ମୁଁ ଥିଲୁ । କିଛିଦିନ ପରେ ଆମେ ଦୁଇଜଣ ହିଁ ତାଙ୍କଠାରୁ ଶିକ୍ଷା କରିବାପାଇଁ ରହିଗଲୁ । ଆଉ ସମସ୍ତେ ଛାଡ଼ି ପଳେଇଲେ । ସେ ସମୟରେ ପ୍ରାଣାୟାମ ଶିଖିବାର ସୁଯୋଗ ମିଳିଥିଲା, ଆଉ ମଧ୍ୟ ନିଜ ଭିତରେ ଅନ୍ତର୍ନିହିତ ଶକ୍ତି ବଢ଼ାଇବାପାଇଁ ଏକ ପ୍ରବଳ ଅଭିଳାଷ ଜାଗ୍ରତ ହୋଇଥିଲା । "ମୁଁ ସାହସୀ" "ମୁଁ ସୁନ୍ଦର", "ମୁଁ ଜଣେ ବଡ଼ ମଣିଷ", "ମୋଦ୍ୱାରା ଜଗତର ବହୁ ମହତ୍ କାର୍ଯ୍ୟ ସାଧିତ ହେବ" ଇତ୍ୟାଦି ପ୍ରକାର ଚିନ୍ତାର ଧାରା ସେ ବତାଇଥିଲେ ।

ମୋର ମନ ଯେଉଁଆଡ଼କୁ ଚାଲିଥାଏ, ସେ ଦିଗରେ ଏ ସବୁ ଶିକ୍ଷା ସାହାଯ୍ୟ କରିଥିଲା । ଏହି ନାଇଡୁଙ୍କ ସାଙ୍ଗରେ ୧୯୨୦ ମସିହା ସେପ୍ଟେମ୍ବର ମାସରେ ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନ ପ୍ରସ୍ତାବ ଆଲୋଚନା କରିବାପାଇଁ କଲିକତାରେ କଂଗ୍ରେସର ଯେଉଁ ବିଶେଷ ଅଧିବେଶନ ହୋଇଥିଲା, ସେଥିରେ ଦର୍ଶକଭାବରେ ଯୋଗ ଦେବାପାଇଁ ମୁଁ ଯାଇଥିଲି । ଏ ବିଷୟ ପରେ କହିବି ।

ବର୍ତ୍ତମାନ ଆମ ମେସ୍ ଜୀବନ । ମେସ୍‌ରେ 'ମଳୟ' ନାମକ ଏକ ହାତଲେଖା ମାସିକ ପତ୍ରିକା ଆମେ ବାହାର କରୁଥିଲୁଁ । ଏଥିରେ ଭଦ୍ରକ ସ୍କୁଲରୁ ସହପାଠୀ ହରିହରନାରାୟଣ ମହାନ୍ତି ଓ ଉପେନ୍ଦ୍ରପ୍ରସାଦ ମହାନ୍ତି ଖୁବ୍ ପରିଶ୍ରମ କରୁଥିଲେ । 'ଡଷ୍ଟବିନ୍' ନାମକ ଏକ ସାପ୍ତାହିକ ହାତଲେଖା ଇଂରେଜୀ ପତ୍ରିକା ମଧ୍ୟ ବାହାର କରୁଥିଲୁଁ । ତା'ର ଭାର ମୋ ଉପରେ ଥିଲା । କଲେଜର ମୁଖ୍ୟ ସ୍ରୋତଠାରୁ ଆମେ ଏତେ ଦୂରରେ ଥିଲୁ ଯେ, ଆମର ଏସବୁ କାର୍ଯ୍ୟ ଅଧିକାଂଶ ଲୋକଙ୍କୁ ଜଣା ନ ଥିଲା । ଆମେ ଯେପରି ଅନ୍ୟମାନଙ୍କୁ ହେୟଜ୍ଞାନ କରୁଥିଲୁଁ, ସମାଲୋଚନା କରୁଥିଲୁଁ ସେମାନେ ମଧ୍ୟ ଆମକୁ ସେହିପରି ତୁଚ୍ଛ ମନେ କରୁଥିଲେ । ସାଧାରଣ କାର୍ଯ୍ୟ ଦିଗରେ ଉତ୍ସାହ ଓ ଅଧ୍ୟବସାୟ ଯେପରି ଥିଲା, କଲେଜ ପାଠ୍ୟ ଦିଗରେ ସେପରି ନ ଥିଲା । ତେଣୁ ପରୀକ୍ଷା ସମୟରେ ରାତି-ଦିନ ଲାଗି ଖୁବ୍ ପଢ଼ିବାକୁ ହେଉଥିଲା । ରାତି ରାତି ଉଜାଗର ହୋଇ ଯଥାକଥା କଲେଜ ପାଠ ପଢ଼ି ପରୀକ୍ଷାରେ ପାଶ୍ କରିଯାଇଛି । ମୋ ଅଭିଜ୍ଞତାରୁ ମୁଁ ଜାଣେ, ପରୀକ୍ଷାରେ ପାଶ୍ କରିବା ପାଇଁ ଅନ୍ତତଃ ୧୫ ଦିନ ରାତିଦିନ ପଢ଼ା ଆବଶ୍ୟକ । ଆଇ. ଏସ୍‌ସି. ପରୀକ୍ଷା ବେଳକୁ ମୂଳରୁ ନ ପଢ଼ି ଶେଷରେ ପରୀକ୍ଷାର ପନ୍ଦର କୋଡ଼ିଏ ଦିନ

ଆଗରୁ ଯେତେବେଳେ ଲଟିପଣ୍ଡା କାମ ଆରମ୍ଭ କରେ, ସେତେବେଳେ ଅନେକ ସହପାଠୀ ଘୋଷଣା କରିଥିଲେ ଯେ, ମୁଁ ନିଶ୍ଚୟ ଫେଲ ହେବି । ମୋର ନିଜର ମଧ୍ୟ ଶଙ୍କା ହୋଇଥିଲା; ମାତ୍ର ଦୈବାତ୍ ଦ୍ୱିତୀୟ ଶ୍ରେଣୀରେ ପାଶ୍ କରିଯାଇ ନିଃଶ୍ୱାସ ମାରିଥିଲି ।

ମୁଁ ଦେଖିଲି ଯେ, ବିଜ୍ଞାନ ନେଇ, ଯଥାମତ ନ ପଢ଼ିଲେ ପାଶ୍ କରିବା ସୁବିଧାଜନକ ନୁହେଁ । ତେଣୁ ଆଇ. ଏସ୍‌ସି. ପାଶ୍ କରି ସାରିଲା ପରେ ପୁଣି ସଂସ୍କୃତ ପରୀକ୍ଷା ଦେଇ ବି. ଏ. ପଢ଼ିଲି । ସଂସ୍କୃତ ଓ ଅର୍ଥନୀତି ମୋର ଅଧ୍ୟୟନର ବିଷୟ ଥିଲା । ଏ ଦୁଇଥିରେ ମୁଁ ଭଲ କରୁଥିଲି । ସାମାନ୍ୟ ପଢ଼ାପଢ଼ିରେ ଶତକଡ଼ା ପଚାଶରୁ ଅଧିକ ନମ୍ବର ରଖିପାରୁଥିଲି । ସେତେବେଳେ ଅଧ୍ୟାପକଙ୍କ ଭିତରୁ ଗୋପାଳଚନ୍ଦ୍ର ଗାଙ୍ଗୁଲି, ବରଦାକାନ୍ତ ଗାଙ୍ଗୁଲି, ଆର୍ତ୍ତବଲ୍ଲଭ ମହାନ୍ତି ଏମାନେ ମୋତେ ବେଶ୍ ସୁଖ ପାଉଥିଲେ । ପଢ଼ାପଢ଼ିରେ ବେଶୀ ସମୟ ଦେବାପାଇଁ ପରାମର୍ଶ ଦେଉଥିଲେ । କଟକ ସହରରେ ପୋଲିସ ବା ଅନ୍ୟ କୌଣସି ସରକାରୀ କର୍ମଚାରୀ ଜୁଲମ କରୁଥିଲେ, ତାକୁ ସେତେବେଳେ 'ଉତ୍କଳ ଦୀପିକା'ରେ ଇଂରେଜୀରେ ଲେଖି ପ୍ରକାଶ କରୁଥିଲି । ସେତେବେଳକାର ଉତ୍କଳ ଦୀପିକା ଲେଖାସବୁ ଅଧେ ଇଂରେଜୀ ଓ ଅଧେ ଓଡ଼ିଆ ଥିଲା । ଏହି ସବୁ ଲେଖା ଯୋଗୁଁ ସ୍ଥାନ ମହଲରେ ଯେପରି ପରିହାସ ଶୁଣିବାକୁ ମିଳୁଥିଲା, ଅନ୍ୟ କେତେକଙ୍କ ମହଲରେ ପ୍ରଶଂସା ମଧ୍ୟ ମିଳୁଥିଲା ।

ଭାରତସେବକ-ସମିତିର ସଭ୍ୟ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଏହି ସମୟରେ କଟକରେ ଏକ ସେବାସମିତି ସ୍ଥାପନ କରିଥିଲେ । ସେଥିରେ ମୁଁ ଓ ମୋର ସଙ୍ଗୀମାନେ ଯୋଗ ଦେଇଥିଲୁ । ସେବା-ସମିତିର ବହୁ ବିଭାଗ ଥିଲା । ସମବାୟ ବିଭାଗର ଭାରରେ ମୁଁ ଥିଲି । ସମବାୟ-ନୀତିରେ ଗୋଟିଏ କାଗଜ ପେନ୍‌ସିଲ ଦୋକାନ ମୁଁ ଖୋଲିଥିଲି । ଏହା ସୁନ୍ଦର ଚାଲିଥିଲା ଓ କୋ-ଅପରେଟିଭ୍ ବିଭାଗର ଡେପୁଟି ଡାଇରେକ୍ଟର ଏ ଦୋକାନ ଦେଖିବାକୁ ଆସିଥିଲେ । ସେତେବେଳେ ଲକ୍ଷ୍ମୀନାରାୟଣବାବୁ ଆମକୁ କିପରି ଅଫିସ ରଖିବାକୁ ହୁଏ, କିପରି ରିପୋର୍ଟ ଲେଖିବାକୁ ହୁଏ, କିପରି ତଥ୍ୟ ସଂଗ୍ରହ କରିବାକୁ ହୁଏ ଇତ୍ୟାଦି ବହୁ ବିଷୟ ଶିଖାଇଥିଲେ । ଲକ୍ଷ୍ମୀନାରାୟଣ ବାବୁ ନିଜେ ବହୁତ ପରିଧି ମଧ୍ୟରେ ବିଚରଣ କରିବାର ସୁବିଧା ପାଇଥିବାରୁ ସେ ଆମକୁ ବହୁତ ପରିଧିର କଳ୍ପନାରେ ଖୁବ୍ ସାହାଯ୍ୟ କରିଥିଲେ । ସାଧାରଣ ଜୀବନ ବୋଲିଲେ ଯାହା ବୁଝାଏ, ତାହା ଧାରଣା କରିବାର ସୁବିଧା ମୁଁ ତାଙ୍କଠାରୁ ପାଇଥିଲି ।

ବୋଧହୁଏ ଥାର୍ଡ଼ ଇୟରରେ ପଢ଼ିବାବେଳେ ମୋର ଘୁଙ୍କରଟିକୁ କଲେଗ ହେଲା । ତା'ର ଦହୁନ୍ତ ସେବା ମୁଁ କରିଛି—ମାତ୍ର ସେ ମରିଗଲା । ତା ନାମ ମୋହନ ଥିଲା । ତା'ର ମୃତ୍ୟୁ ପରେ ଆମ ମେସ୍‌ର ନାମ 'ମୋହନ ମେସ' ହୋଇଥିଲା ଓ ତାହା ଶେଷ ପର୍ଯ୍ୟନ୍ତ ରହିଥିଲା ।

୧୯୧୮ ମସିହାରେ କଟକରେ ଉତ୍କଳ ସମ୍ମିଳନୀର ଏକ ଅଧିବେଶନ ହୋଇଥିଲା । ସେଥିରେ ମୁଁ ସ୍ୱେଚ୍ଛାସେବକ ହୋଇଥିଲି । ସେହି ସମୟରେ ସେତେବେଳକାର ଓଡ଼ିଶାର ନେତା ମଧୁବାବୁ, ଯେ କି ସମ୍ମିଳନୀର ସର୍ବେସର୍ବା ଥିଲେ, ତାଙ୍କଠାକୁ ବରାବର ଯିବା ଆସିବା କରୁଥିଲି । ତାଙ୍କର ଚିନ୍ତାର ଧାରା, ସାହସ ଓ ଉତ୍ସାହବାଣୀରେ ମୁଁ ଖୁବ୍ ଅନୁପ୍ରାଣିତ ହେଉଥିଲି । ଏପରିକି ସେତେବେଳେ 'ଦ ଓରିଆ' ବୋଲି ଯେଉଁ ଇଂରେଜୀ ସାପ୍ତାହିକ ପତ୍ରିକା ସେ ବାହାର କରୁଥିଲେ, ତା'ର ଅନେକ ଲେଖା ମୁଁ ମୁଖସ୍ଥ କରି କେତେକଙ୍କୁ ଲେଖି ଆମ ମେସ୍‌ରେ ଘରଆଡ଼େ ଟଙ୍ଗାଇଥିଲି । ଗୋଟିଏ ବାକ୍ୟ ଯାହା ବର୍ତ୍ତମାନ ସୁଦ୍ଧା ମୋ କାନରେ ଝଙ୍କାରୁଛି, ସେ ହେଉଛି—"Life blood of a people is not too dear a price to secure justice for their progeny." ବଂଶଧରମାନଙ୍କ ପାଇଁ ନ୍ୟାୟ ହାସଲ କରିବାକୁ ହେଲେ ନିଜର ରକ୍ତ ଦାନ ସେଥିପାଇଁ ବେଶୀ କିଛି ବଡ଼ କଥା ନୁହେଁ । ଓଡ଼ିଶା ଦେଶ-ମିଶ୍ରଣ ଦାବୀ ସମ୍ପର୍କରେ ମଧୁବାବୁ ଏ କଥା କହିଥିଲେ । ସେ ସମ୍ପର୍କରେ ସେ ମଧ୍ୟ କହିଥିଲେ 'History of Bengal should not be lost upon us" ଅର୍ଥାତ୍ ବଙ୍ଗଦେଶର ଇତିହାସରୁ ଆମର ଶିଖିବାର ଅଛି । ବଙ୍ଗଦେଶର 'ବନ୍ଦେମାତରମ୍' ଆନ୍ଦୋଳନରୁ ଓଡ଼ିଶାର ବହୁତ କିଛି ଶିଖିବାର ଅଛି, ଏ କଥା ମଧୁବାବୁ ବରାବର ଆମକୁ କହୁଥିଲେ । ଏ ସବୁ ଓଡ଼ିଶା ଦେଶମିଶ୍ରଣ ସମ୍ବନ୍ଧରେ କୁହାଯାଉଥିଲା । ମଧୁବାବୁଙ୍କ ସହିତ ଖୁବ୍ ନିକଟ ସମ୍ପର୍କରେ ଆସି ବି ନେ ହେଲେ ଦେଶର ସ୍ୱାଧୀନତା ଓ ସେଥିପାଇଁ ଜୀବନ ଦାନ, ଏ ସମ୍ବନ୍ଧରେ କିଛି ଶୁଣି ନାହିଁ । ସେତେବେଳେ ଓଡ଼ିଶାରେ ଏକମାତ୍ର ରାଜନୀତିକ ଚିନ୍ତା ଥିଲା, ଓଡ଼ିଆଭାଷୀ ପ୍ରଦେଶମାନଙ୍କ ଏକତ୍ରୀକରଣ ଓ ପଡ଼ୋଶୀ ବଙ୍ଗାଳିମାନଙ୍କର ଔଦ୍ଧତ୍ୟରୁ ଆତ୍ମରକ୍ଷା ।

ଆମ କଲେଜର ଯେଉଁମାନେ ବକ୍ତା, ସେମାନେ ମଧ୍ୟ ଏହି ଧାରାରେ ବକ୍ତୃତା ଦେଉଥିଲେ; ମାତ୍ର ଏ ସବୁ ଆମ ଦଳକୁ ସୁଖ ଲାଗୁ ନ ଥାଏ । ରାଉଲଟ୍ ଆଇନ୍, ତା'ର ପ୍ରତିବାଦସ୍ୱରୂପ ସତ୍ୟାଗ୍ରହ, ପଞ୍ଜାବ ଅତ୍ୟାଚାର, ସ୍ୱାଧୀନତା-

ପାଇଁ ପ୍ରାଣଦାନ, ତିଲକ, ଗାନ୍ଧି ପ୍ରଭୃତିଙ୍କର ଜୀବନ୍ତ ପ୍ରେରଣାମୟ ଉଦ୍‌ବୋଧନ, ଏସବୁ ଆମକୁ ଏତେ ଜୋରରେ ଆଘାତ କରୁଥାଏ ଯେ, ଆମେ ଓଡ଼ିଶାର ତତ୍‌କାଳୀନ ଚନ୍ଦ୍ରାଘାତ ଭିତରେ ଶ୍ୱାସରୁଦ୍ଧ ହୋଇ ଯାଉଥାଉଁ ବୋଲି ମନେ-ହେଉଥାଏ ।

ସେତେବେଳେ ଆମ ଭିତରେ ସେହି କଥାବାର୍ତ୍ତା ହେଉଥିଲା ଏବଂ ବର୍ତ୍ତମାନ ମଧ୍ୟ ପଛକୁ ଅନାଇ ସେହିପରି ଅନୁଭବ କରୁଛି ଯେ, ଏକଲବ୍ୟ ଯେପରି ଏକ କାଳ୍ପନିକ ଗୁରୁଠାରୁ ମୃଦ୍ଧବିଦ୍ୟା ଶିଖିଥିଲେ, ଆମେ ମଧ୍ୟ ସେହିପରି ବିନା ଗୁରୁରେ ରାଜନୀତି ଶିକ୍ଷା କରିଛୁ ।

ସେତେବେଳେ ଆମେ ଶୁଣିଥିଲୁଁ ଯେ, ପଣ୍ଡିତ ଗୋପବନ୍ଧୁ ଦାସ କଂଗ୍ରେସ ଅଧିବେଶନରେ ଯୋଗ ଦେବାପାଇଁ ଯାଇଛନ୍ତି ଓ ପୁରୀରେ ତତ୍‌କାଳୀନ ବିହାର ପ୍ରାଦେଶିକ କଂଗ୍ରେସକମିଟି ଅଧୀନରେ ଗୋଟିଏ ଜିଲ୍ଲା କଂଗ୍ରେସକମିଟି ସ୍ଥାପିତ ହୋଇଛି । ପଣ୍ଡିତ ଗୋପବନ୍ଧୁ ଦାସ ସତ୍ୟବାଦୀରେ ଯେଉଁ ବିଦ୍ୟାଳୟ ସ୍ଥାପନ କରିଥିଲେ, ସେ ସମ୍ବନ୍ଧରେ ବହୁ କଥା ଆମ କାନକୁ ଆସୁଥାଏ । ସେହି ସ୍କୁଲର ବହୁ ଛାତ୍ର କଲେଜରେ ପଢୁଥାନ୍ତି । ଆମ ମେସ୍‌ରେ ସେହି ସ୍କୁଲର ଗୁଣନିଧି ସାହୁ ନାମକ ଜଣେ ଛାତ୍ର ଆମର ଭାରି ଅନ୍ତରଙ୍ଗ ବନ୍ଧୁ ଥାଆନ୍ତି । ଆଚାର୍ଯ୍ୟ ହରିହର ଓ ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ଭୂୟସୀ ପ୍ରଶଂସା ଶୁଣୁଥାଉଁ । ସେତେବେଳେ ଗୋପବନ୍ଧୁଙ୍କ ଦ୍ୱାରା ସମ୍ପାଦିତ ସାପ୍ତାହିକ 'ସମାଜ' କାଗଜ ଆମେ ପଢୁଥାଉଁ । ତା'ର ଭାଷା ଓ ଭାବ ଆମ ମନକୁ ଖୁବ୍ ଘେନୁଥାଏ । ପୁରୀର ଦୁର୍ଭିକ୍ଷ ବ୍ୟାପାରରେ ତତ୍‌କାଳୀନ ସ୍ଥାନୀୟ ସରକାରୀ କର୍ମଚାରୀମାନଙ୍କ ନିନ୍ଦନୀୟ ଅବହେଳା ସମ୍ବନ୍ଧରେ ଯେଉଁ ଆନ୍ଦୋଳନ ଗୋପବନ୍ଧୁ ଚଳାଇଥିଲେ, ତାହା ଆମ ଉପରେ ଖୁବ୍ ପ୍ରଭାବ ପକାଇଥିଲା । ମୋର ମନେ ହୁଏ, ଓଡ଼ିଶାରେ ସେବା-ଭାବର ପ୍ରଥମ ପ୍ରବର୍ତ୍ତକ ପଣ୍ଡିତ ଗୋପବନ୍ଧୁ ।

ସେତେବେଳେ ମୁଁ ବା ମୋର ସଙ୍ଗୀ କେହି ଗୋପବନ୍ଧୁଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସି ନ ଥିଲୁ । ଦୂରରେ ରହି ସବୁକଥା ଜାଣିବା, ଶୁଣିବା, ଦେଖିବା ଓ ଭବିଷ୍ୟତ୍‌ପାଇଁ ନିଜକୁ ତିଆରି କରିବା, ଏହାହିଁ ଆମର କର୍ମନୀତି ଥାଏ ! ଏହା ମଧ୍ୟ ଧରିଥିଉ ଯେ, ଯେତେବେଳେ ରାଜନୀତିରେ ଯୋଗଦେବାକୁ ହେବ, ସେତେବେଳେ ପୂର୍ଣ୍ଣ ବେଗରେ ଓ ସମସ୍ତ ପ୍ରାଣ ଦେଇ ଯୋଗ ଦେବାକୁ ହେବ । ବର୍ତ୍ତମାନ ମୁଁ ବୁଝୁଛି, ଆମର ସେ ନୀତି ଠିକ୍ ଥିଲା । ଆମ ସମୟରେ ଯେଉଁମାନେ ଛାତ୍ର-ନେତା ଥିଲେ, ସେମାନେ ପରେ ଦେଶ-ସେବା କରିପାରିଲେ ନାହିଁ । ସେହିଦିନୁ ଆଜି

ପାଇଛି ଦେଖୁଛି, ଯେଉଁ ଛାତ୍ରମାନେ ଜୀବନରେ ସମସାମୟିକ ରାଜନୀତିକ କାର୍ଯ୍ୟରେ ମୁଖ୍ୟ ଭାବରେ ଭାଗ ନେଇଛନ୍ତି, ସେମାନେ ପରେ ସାଧାରଣ ସେବକ ହୋଇ ରହି-ପାରି ନାହାନ୍ତି । ଏହାର କାରଣ ମୁଁ ଅନୁମାନ କରୁଛି; ବୋଧହୁଏ ନାନାପ୍ରକାର ପାରିବାରିକ ଅବସ୍ଥା ଭିତରୁ ବିଭିନ୍ନ ପ୍ରକାର ଉଦ୍ଦେଶ୍ୟ ରଖି ପାଠ ପଢ଼ା ଆରମ୍ଭ ହୁଏ ଓ ଚାଲେ । ଛାତ୍ରାବସ୍ଥାରେ ସେ ଅବସ୍ଥା ଓ ଉଦ୍ଦେଶ୍ୟ ଲୁପ୍ତ ଭାବରେ ଥାଏ । ତେଣୁ ଛାତ୍ର ନିଜକୁ ନିଜେ ମୁକ୍ତ ଓ ସ୍ୱାଧୀନ ନ ଭାବି ସେହି ଅବସରରେ ସେ ନିଜର ଉଦ୍ଦେଶ୍ୟ ଓ ଅବସ୍ଥାକୁ ଭବିଷ୍ୟତ ପ୍ରତି ଦୃଷ୍ଟି ରଖି ନିଜକୁ ତିଆରି କରୁଥିଲେ ହେଉ-ଥାନ୍ତା; ମାତ୍ର ତାହା ନ ହୋଇ ସେହି ସମୟର କ୍ଷଣିକ ବାୟୁମଣ୍ଡଳରେ ସମସାମୟିକ ବ୍ୟାପାରରେ ଉତ୍ସାହସହକାରେ ଲିପ୍ତ ହୋଇ ଛାତ୍ରଜୀବନ ଶେଷରେ ଯେତେ-ବେଳେ ସ୍ୱାଭାବିକ ଅବସ୍ଥା ଓ ଉଦ୍ଦେଶ୍ୟର ସମ୍ମୁଖୀନ ହୁଅନ୍ତି, ତେତେବେଳେ ଅତି ଉଗ୍ର ରାଜନୀତିକ ମତବାଦୀ ଛାତ୍ର ମଧ୍ୟ ଅତ୍ୟାଚାରୀ ସରକାରୀ କର୍ମଚାରୀ ହେବାକୁ ବାଧ୍ୟ ହୁଏ । ଏସବୁ ଦେଖି ମୋର ଦୃଢ଼ ମତ ଯେ, ଛାତ୍ରଜୀବନରେ ସମସାମୟିକ ରାଜନୀତିକ ବ୍ୟାପାରରେ ଯୋଗ ଦେବା ଠିକ୍ ନୁହେଁ । ଯଦି ଯୋଗଦେବା ବାଞ୍ଛନୀୟ ବୋଲି ମନେ ହୁଏ, ତେବେ ଛାତ୍ରଜୀବନ ସମାପନ କରି ସ୍କୁଲ କଲେଜରୁ ବାହାରି ଆସି ଯୋଗଦେବା ଉଚିତ । ତାହାହେଲେ ଛାତ୍ରାବସ୍ଥାରେ କୃତ୍ରିମ ମୁକ୍ତାବସ୍ଥା ଆଉ ନ ଥିବ । ଯାହା କରିବାକୁ ହେବ, ନିଜର ସ୍ୱାଭାବିକ ଅବସ୍ଥାର ସମ୍ମୁଖୀନ ହୋଇ କରିବାକୁ ହେବ ।

ଯାହା ହେଉ ମୋର କଲେଜ ଜୀବନ ଯେପରି ଭାବରେ କଟିଥିଲା, ସେଥିରେ ମୁଁ ଖୁସି ଓ ତଦ୍ଦ୍ୱାରା ମୋର ନିଜର ଅନେକ ଲାଭ ହୋଇଛି ।

କଲେଜ-ଜୀବନ ଶେଷ ହେବା ଉପରେ, ଏହି ସମୟରେ ଦେଶବ୍ୟାପୀ ପ୍ରବଳ ବାତ୍ୟା ବହିବାର ସୂଚନା ମିଳିଲା । ପ୍ରଥମେ ରାଉଲଟ୍ ଆଇନ୍, ତା'ର ପ୍ରତିବାଦକଳେ ସତ୍ୟାଗ୍ରହ, ପୁଣି ପଞ୍ଜାବରେ ଜାଲିଆନାୱାଲାବାଗ ହତ୍ୟାକାଣ୍ଡ, ଶେଷରେ ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନର ସୂତ୍ରପାତ—ଏସବୁ ଏକ ପରେ ଏକ ଏପରି ବିଦ୍ୟୁତ ଗତିରେ ଘଟି ଯାଉଥାଏ, ଯେଉଁଥିରେ ଅସ୍ଥିର ଧୀର ରହିବା ଅସମ୍ଭବ ହୋଇ ପଡ଼ିଲା । ଏ ଝଡ଼ ତୋଫାନର ସମ୍ମୁଖୀନ ହେବାକୁ ହେବ, ଏକଥା ମୁଁ ଓ ମୋର ସଙ୍ଗୀମାନେ ଭଲ କରି ଜାଣି, ନିଜ ଭିତରେ ଏସବୁ ବିଷୟରେ ବହୁ ପ୍ରକାର ଆଲୋଚନା କରୁଥିଲୁ । ମାତ୍ର ଏସବୁ ସମ୍ପର୍କରେ ଆମ ଓଡ଼ିଶାରେ କିଛି ଚର୍ଚ୍ଚା ନ ଥାଏ କହିଲେ ଚଳେ ।

ଓଡ଼ିଶାରେ ଭାରତୀୟ ଚିନ୍ତାଧାରା ପ୍ରବେଶ କରାଇବା ଏକାନ୍ତ କର୍ତ୍ତବ୍ୟ, ଏହା ଆମକୁ ଜଣା ଯାଉଥାଏ । ସେଥିପାଇଁ ୧୯୧୯ ମସିହା ଶେଷ ବା ୧୯୨୦

ମସିହାର ଆରମ୍ଭରେ 'ଭାରତୀ ମନ୍ଦିର' ନାମରେ ଗୋଟିଏ ପାଠାଗାର ବାଖରାବାଦରେ ସ୍ଥାପିତ ହୋଇଥିଲା । ଏଥିରେ ନିତ୍ୟାନନ୍ଦ କାନୁନ୍‌ଗୋ, ନବକୃଷ୍ଣ ଚୌଧୁରୀ ଓ ଭାଗୀରଥୀ ମହାପାତ୍ର ପ୍ରମୁଖ ଥିଲେ । ମୁଁ ଏଥିରେ ପୂର୍ଣ୍ଣପ୍ରାଣରେ ଯୋଗ ଦେଇଥିଲି । ଭାରତୀ ମନ୍ଦିର ଖୁବ୍ ଅଳ୍ପଦିନ ମଧ୍ୟରେ ଗୋଟିଏ ବଡ଼ ପାଠାଗାର ହୋଇପାରିଥିଲା । ନାନାଆଡ଼ୁ ବହି ସଂଗ୍ରହ କରି ବିଭିନ୍ନ ପ୍ରଦେଶର ଖବରକାଗଜ ଅଣାଇବାରେ ଯେ କାମ ଶେଷ ହୋଇଥିଲା, ତାହା ନୁହେଁ; ପାଠାଗାରରେ ପାଠକମାନଙ୍କ ସଂଖ୍ୟା ବଢ଼ାଇବାପାଇଁ ବିପୁଳ ଉଦ୍ୟମ କରିଥିଲୁ । ମୁଁ ବଳ ଓଜନ ଓ ସାଧାରଣ କାର୍ଯ୍ୟରେ ମୁହାଁ ଥିବା ପ୍ରତ୍ୟେକଙ୍କୁ କୁହାପୋଚ୍ଛା କରି 'ଭାରତୀ ମନ୍ଦିର'କୁ ଅଣୁଥିଲୁ । ଭାଗୀରଥୀ ମହାପାତ୍ର ଏ ଦିଗରେ ବହୁ ଉଦ୍ୟମ କରିଥିଲେ । ମୋର ମନେହୁଏ, ସବୁ ପ୍ରଦେଶର ଖବର ଆଲୋଚନା କରି ଭାରତୀୟ ଚିନ୍ତାଧାରା ବିସ୍ତାରରେ ଭାରତୀ ମନ୍ଦିର ପ୍ରଭୂତ ସାହାଯ୍ୟ କରିଥିଲା । ଆମେ ଏହି ଉଦ୍ୟମରେ ଥାଉଁ, ଏହି ସମୟରେ କଲିକତାରେ ଗାନ୍ଧିଜୀଙ୍କ ଅସହଯୋଗ ପ୍ରସ୍ତାବ ଆଲୋଚନାପାଇଁ କଂଗ୍ରେସର ବିଶେଷ ଅଧିବେଶନ ବସିଲା । କଅଣ ସେଠି ହେଉଛି ଜାଣିବାପାଇଁ 'ଭାରତୀ ମନ୍ଦିର' ବନ୍ଧୁମାନେ ମୋତେ କଲିକତା ପଠାଇଥିଲେ । ମୋହନ ସି. ଆର୍. ଡି. ନାଇଡ଼ୁଙ୍କ ସହ ମୁଁ କଲିକତା ଯାଇଥିଲି । ମୋତେ ଘରୁ ଯେତେ କମ୍ ପଇସା ମିଳୁଥିଲା, ସେଥିରେ କଲିକତା କିପରି ଗଲି ତାହା ଏକ କୌତୂହଳର ବିଷୟ । ମୁଦ୍ଧ ଋଣକୁ ଟ ୨୦୦ଟଙ୍କା ଦେଇ ବାବା ଏକ ବଣ୍ଡ ଖରିଦ୍ କରିଥିଲେ । ତାଙ୍କର ଧାରଣା ଥିଲା ଯେ, ସେ ଟଙ୍କା ଆଉ ମିଳିବ ନାହିଁ । ଥରେ ମୋତେ ସେ ଘରପାଖରେ ସେ ବଣ୍ଡକୁ ଦେଖାଇ ପଚାରିଥିଲେ, ଏ ଟଙ୍କା କିପରି ମିଳିବ ? ମୁଁ କହିଥିଲି ଟଙ୍କା ନିଶ୍ଚୟ ମିଳିବ । କଟକରେ ସେଥିପାଇଁ ଚେଷ୍ଟା କରିବାକୁ ହେବ । ଏହିପରି ସେ ବଣ୍ଡଟିକୁ ମୁଁ ନେଇ ଆସିଥିଲି । ତାକୁ କଟକ ଟ୍ରେଜେରୀରେ ଭଙ୍ଗାଇ ଟ ୧୦୦ଟଙ୍କା ବାପାଙ୍କ ପାଖକୁ ପଠାଇ ଲେଖିଦେଇଥିଲି ଯେ, ବାକି ଟଙ୍କା ପରେ ମିଳିବ । କିଛି ନ ମିଳିବା ଅପେକ୍ଷା ଟ ୧୦୦ଟଙ୍କା ଫେରସ୍ତ ପାଇ ସେ ବାକି ଟଙ୍କାପାଇଁ କିଛିଦିନ ନିଶ୍ଚିନ୍ତ ହୋଇଥିଲେ । ବାବାଙ୍କୁ ଏଇଠି ଠକିଥିଲି । ଯାହାହେଉ, ଏହି ଶହେଟଙ୍କା ନେଇ କଲିକତା ଗଲି । ସେଠାରେ ରହିବା ଇତ୍ୟାଦିର ବନ୍ଦୋବସ୍ତ ନାଇଡ଼ୁ କରି ଦେଇଥିଲେ । ଗୋଲଦୀଘିରେ କଂଗ୍ରେସ ସଭା ବସିଥାଏ । ସେଠି ଏନିବେସାନ୍ତଙ୍କୁ ଶ୍ରୋତାମାନେ ଚିତ୍କାର କରି କୁହାଇ ଦେଲେନାହିଁ । ଚିତ୍ତରଞ୍ଜନ ଦାସ, ମୋତିଲାଲ ନେହରୁ ଓ ବିଦେଶରୁ ଫେରିଥିବା ହିଜିପଲି ଲାଲ ଲଜ୍‌ପତ୍ ରାୟଙ୍କ ବକ୍ତୃତା ଶୁଣିଲି, ମହାତ୍ମା ଗାନ୍ଧିଙ୍କ ବକ୍ତୃତା ଶୁଣିଲି, ପଣ୍ଡିତ ମଦନମୋହନ ମାଲବ୍ୟଙ୍କ ବକ୍ତୃତା ଶୁଣିଲି । ମୋର ମନେ ଅଛି, ଯେତେବେଳେ ମାଲବ୍ୟଜୀ କହୁଥିଲେ ଯେ, କଂଗ୍ରେସର

ବାର୍ତ୍ତା ଯଦି ଭାରତର ସବୁ ଅଞ୍ଚଳରେ ପହଞ୍ଚାଇ ଦିଆଯାଇ ପାରିବ, ତେବେ ସେ ଅସହଯୋଗ ପ୍ରସ୍ତାବକୁ ସମର୍ଥନ କରିବେ । ସେ ପ୍ରସ୍ତାବ ବିରୋଧରେ ତାଙ୍କର ଏକ ବଡ଼ ଯୁକ୍ତି ଥିଲା ଯେ, ଅସହଯୋଗର ସମ୍ବାଦ ସୁଦ୍ଧା ଦେଶର ଅନ୍ଦିସନ୍ଧିରେ ପହଞ୍ଚିବାର ସୁବିଧା ନାହିଁ ।

ବିଦେଶୀ ଶାସନରୁ ମୁକ୍ତି ପାଇବାପାଇଁ ସଶସ୍ତ୍ର ବିଦ୍ରୋହ ପରିବର୍ତ୍ତେ ଅହିଂସାତ୍ମକ ଅସହଯୋଗ ହିଁ ଏକମାତ୍ର କାର୍ଯ୍ୟକାରୀ ପନ୍ଥା, ଦେଶବାସୀଙ୍କ ସହଯୋଗ ଅପସରି ଗଲେ ବିଦେଶୀ ଶାସନ ଚାଲି ପାରିବ ନାହିଁ, ଏହାହିଁ ଉତ୍କୃଷ୍ଟ ଓ କାର୍ଯ୍ୟକାରୀ ପନ୍ଥା ବୋଲି ମହାତ୍ମା ଗାନ୍ଧୀ ସୁନ୍ଦରଭାବରେ ବୁଝାଇଥିଲେ । ସରକାରୀ ଅନୁଷ୍ଠାନମାନଙ୍କରୁ ଅପସରି ଯିବା, ସରକାରୀ ଉପାଧିମାନ ଛାଡ଼ିଦେବା, ବିଦେଶୀ ବସ୍ତ୍ର ବର୍ଜନ, ମାଦକ ଦ୍ରବ୍ୟ ବର୍ଜନ କରିବା ଇତ୍ୟାଦି ଅସହଯୋଗର କାର୍ଯ୍ୟକ୍ରମ ଥାଏ ।

ଏ ପ୍ରସ୍ତାବକୁ ପ୍ରତିପତ୍ତିଶାଳୀ ବ୍ୟକ୍ତିମାନେ ବିରୋଧ କରିଥିଲେ ମଧ୍ୟ ପ୍ରବଳ ଉତ୍ସାହ ଓ ଉନ୍ମାଦନା ଭିତରେ ଗୃହୀତ ହେଲା । ମାତ୍ର ଯେଉଁମାନେ ବିରୋଧ କରୁଥିଲେ; ସେମାନେ କଂଗ୍ରେସର ସାଧାରଣ ଅଧିବେଶନରେ ପୁଣି ନିଜର ଶକ୍ତି ପରୀକ୍ଷା କରିବାର ସ୍ଥିର କଲେ । ସେ ତ ଯୁକ୍ତିର ଲଢ଼ାଇ, ମାତ୍ର ଯେଉଁ ଉତ୍ସାହ ଓ ଉନ୍ମାଦନା ଭିତରେ କଲିକତାରେ ପ୍ରସ୍ତାବ ଗୃହୀତ ହେଲା, ତା'ର ପ୍ରଭାବ ମୋ ଉପରେ ଏତେ ବେଶି ପଡ଼ିଥିଲା ଯେ, ମୁଁ ସେ ସମୟରେ ସମ୍ପୂର୍ଣ୍ଣ ଅଭିଭୂତ ହୋଇ ଯାଇଥିଲି । ନାଇଡୁ ଏ ପ୍ରସ୍ତାବର ପ୍ରବଳ ବିରୋଧୀ ଥିଲେ । ସେ ଏହାକୁ ଏତେ ଅପସନ୍ଦ ଓ ମୁଁ ଏହାକୁ ଏପରି ପସନ୍ଦ କଲି ଯେ, ସେହି କଲିକତାରେ ଆମର ପରସ୍ପରର ବିଚ୍ଛେଦ ଘଟିଲା । ସେ କଲିକତାରେ ରହିଗଲେ ଓ ସେହିଦିନଠୁ ୧୯୪୮ ମସିହା ପର୍ଯ୍ୟନ୍ତ ତାଙ୍କର ମୋର ଦେଖା ହୋଇନାହିଁ ବା କୌଣସି ଚିଠିପତ୍ର ଦିଆନିଆ ହୋଇ ନାହିଁ । ମୁଁ କଟକ ଫେରିଲି ।

କଟକରେ ପହଞ୍ଚିବା ପୂର୍ବରୁ ବାଟରେ ଏକ କାଣ୍ଡ ଘଟିଗଲା । ମୁଁ ଏକ୍ସପ୍ରେସ ଗାଡ଼ିରେ କଟକ ଫେରୁଥିଲି । ଗାଡ଼ି କଟକ ଷ୍ଟେସନରେ ଖୁବ୍ ସକାଳୁ ପହଞ୍ଚେ । ମୁଁ ଶୋଇ ପଡ଼ିଥିଲି, ଗାଡ଼ି କଟକ ଷ୍ଟେସନ ଛାଡ଼ି କିଛିଦୂର ଚାଲିଗଲା ପରେ ମୋ ନିଦ ଭାଙ୍ଗିଗଲା । ପଚାରି ବୁଝିଲି ଯେ, କଟକ ଷ୍ଟେସନ ଚାଲିଗଲାଣି । ହଠାତ୍ ମୁଁ ଗାଡ଼ି ଚେନ୍ ଟାଣିଦେଲି । ଗାଡ଼ି ବନ୍ଦ ହେଲା—ଗାର୍ଡ ସାହେବ ଆମ ଡବା ଆଗକୁ ଆସି କିଏ ଚେନ୍ ଟାଣିଛି ବୋଲି ପଚାରିଲେ । ମୁଁ କହିଲି 'ମୁଁ ଟାଣିଛି ଓ ଟାଣିବାର ଯଥେଷ୍ଟ କାରଣ ଅଛି ।' ତହୁଁ ଗାର୍ଡ ସାହେବ ଗମ୍ଭୀର ଭାବରେ କହିଲେ, "ଆଚ୍ଛା ସେ କୈଫିୟତ ଅନ୍ୟ କେଉଁଠି ଦେବ ।" ଏତିକି କହି ସେ ମୋତେ ପୋଲିସକୁ

ପଠେଇଦେଲେ । ମୁଁ ଷ୍ଟେସନରେ ଜିଛୁ ସମସ୍ତ ବୃଦ୍ଧ ମୋତେ ଜାମିନରେ ଛାଡ଼ିଦେବା ପାଇଁ ପୋଲିସକୁ କହିଲି । ସବୁ କଥା ଶୁଣି ମୋତେ ଜାମିନରେ ଛାଡ଼ି ଦିଆଗଲା । ଇତି ମଧ୍ୟରେ ଷ୍ଟେସନର ଘୋଡ଼ାଗାଡ଼ି ସବୁ ଚାଲିଯାଇଥିଲା, ମୋର ସବୁ ଜିନିଷପତ୍ର ମୁଁ ନିଜେ ମୁଣ୍ଡାଇ ଆସି ଆମ ମେସ୍‌ରେ ପହଞ୍ଚିଲି । ସେତେବେଳେ ଯେ କଟକ ସଦର ସବ୍‌ଡ଼ିଭିଜନ ଅଫିସର ଥିଲେ, ତତ୍‌ପୂର୍ବରୁ ସେ ଭଦ୍ରଖରେ ଥିଲା-ବେଳେ ତାଙ୍କ ସହିତ ବାବାଙ୍କର ଖୁବ୍ ବନ୍ଧୁତା ଥିଲା । ମୁଁ ଯାଇ କଚେରୀ ପୂର୍ବରୁ ତାଙ୍କୁ ସବୁ କହିଲି । ସେ ମୋତେ ସାନ୍ତ୍ୱନା ଦେଇ କଚେରୀରେ ପହଞ୍ଚିବା ପାଇଁ ଉପଦେଶ ଦେଇଥିଲେ । ସେହିଦିନ କଚେରୀରେ ବିଚାର ହୋଇ ମୋତେ ପାଞ୍ଚଟଙ୍କା ଜୋରିମାନା ହୋଇଥିଲା ।

କଲେଜରେ ଛାତ୍ର ଓ ପ୍ରଫେସରମାନେ ମୋତେ ଏକ ସାହସୀ ଲୋକ ବୋଲି କହିଲେ । କଂଗ୍ରେସରୁ ଫେରିଛି, ଏହା ମଧ୍ୟ ସେ ସମୟରେ କଲେଜରେ ମୋର ଟିକିଏ ଗୌରବ ବଢ଼ାଇଥାଏ । କଂଗ୍ରେସ କଅଣ, କିପରି ହୁଏ, କିଏ କଅଣ କହିଲେ, ଏ ସବୁ ବିଷୟ ଅନେକ ଛାତ୍ରଙ୍କ ସହିତ ଆଲୋଚନା କଲି । ସେତେବେଳେ ମୁଁ ଲକ୍ଷ୍ୟ କରିଛି ଯେ, ଛାତ୍ରମାନଙ୍କ ଭିତରେ ଏକ ନୂତନ ବାତ୍ୟା କ୍ରମଶଃ ବଢ଼ୁଥାଏ । ଆମ 'ଭାରତୀ ମନ୍ଦିର'ରେ କଲିକତା କଂଗ୍ରେସ ପ୍ରସ୍ତାବ ଆଲୋଚିତ ହେଲା । ଆମକୁ ଝାସଦେବାକୁ ହେବ, କଲେଜ ଛାଡ଼ି ଆନ୍ଦୋଳନରେ ମଗ୍ନ ହେବାକୁ ହେବ, ଏହା ନିଶ୍ଚିତ; ମାତ୍ର କେବେ ତାହା କରିବୁ, ଏହି ବିଷୟରେ ଇତସ୍ତତଃ ହେଉଥାଉ । ଏହି ସମୟରେ ନୀଳକଣ୍ଠ ଚୌଧୁରୀ, ତାଙ୍କ ଭାଇ ଗୋପବନ୍ଧୁ ଚୌଧୁରୀ, ଯେ କି ସେତେବେଳେ ଡେପୁଟୀ ମାଜିଷ୍ଟ୍ରେଟ ଥାଆନ୍ତି, ତାଙ୍କଠାରୁ ଚିଠି ପାଇଲି, ସେ ଲେଖିଥା'ନ୍ତି "ସୁଅରେ ଭାସିଯିବା ସହଜ, ମାତ୍ର ସୁଅରେ ପହଁରିବା ହେଉଛି କର୍ତ୍ତବ୍ୟ ।"

କଲିକତା କଂଗ୍ରେସ ପରେ ସି. ଆର୍. ଦାସ ପ୍ରଭୃତି ଅସହଯୋଗ-ବିରୋଧୀମାନେ ପ୍ରବଳ ଆନ୍ଦୋଳନ ଚଳାଇଲେ । କଲିକତା ପ୍ରସ୍ତାବକୁ ମାନି ସେତେବେଳେ ଚାଲିଥିବା ଲାଟସଭା ନିର୍ବାଚନକୁ ବର୍ଜନ କଲେ ସତ; ମାତ୍ର ନାଗପୁରଠାରେ କଂଗ୍ରେସର ଯେଉଁ ସାଧାରଣ ଅଧିବେଶନ ହେବାର ଥିଲା, ସେଠାରେ ଅସହଯୋଗକୁ ରଦ୍ଦ କରିବାର ଉଦ୍ୟମ ବିରାଟ ଆକାରରେ ଚଳାଇଲେ । ନାଗପୁର କଂଗ୍ରେସ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ଆମେ ଥିର କଲୁ । ନିଜକୁ ବୁଝାଇବା ଭଳି କାମ କରିବାକୁ ସବୁବେଳେ କିଛି ହେଲେ ଯୁକ୍ତି ମିଳିଥାଏ ଓ ଆମକୁ ମଧ୍ୟ ସେହିପରି ଏକ ଯୁକ୍ତି ମିଳିଲା । ଏଥିରେ ସନ୍ଦେହ ନାହିଁ ଯେ, ସେତେବେଳେ ଆମର ଚିନ୍ତା ଯେତେଦୂର ଚାଲି ଯାଉଥାଏ, ହୃଦୟ ସେତେଦୂର ଯାଇ ପାରୁ ନ ଥାଏ । ତେଣୁ କଲେଜ ଛାଡ଼ିବା ପାଇଁ ସ୍ଥିର କରି ମଧ୍ୟ ଛାଡ଼ିବା ପାଇଁ ମନ ହେଉ ନ ଥାଏ ।

ଇତିମଧ୍ୟରେ ଅନେକ ଅନେକ ସ୍କୁଲକଲେଜପଢ଼ା ଚାଲୁଥାଏ, ମାତ୍ର ମୁଖ୍ୟ କାମ ଭାରତୀମନ୍ଦିରରୁ ହେଉଥାଏ । ଜଣେ ସି.ଆଇ.ଡି. ଅଫିସର ପାଠକ ହିସାବରେ ଝଡ-ମଠ ଭାରତୀ ମନ୍ଦିରକୁ ଆସୁଥିବାର ଖବର ପାଇ ଆମେ ଏକପ୍ରକାର ଉତ୍ତେଜନା ଅନୁଭବ କରୁଥାଉଁ । ଏହି ସମୟରେ ମୋ ନିଜକଥା ଭାବି ଓ ଘରେ ବାବା, ପାଳିକା ମାଆ ଓ ମୋ ସ୍ତ୍ରୀର ମନୋଭାବ ଇତ୍ୟାଦି ସବୁ ବିଚାର କରି ମୁଁ ଭାବୁଥାଏଁ ଯେ, ମୋତେ ଘର ଛାଡ଼ିଦେବାକୁ ହେବ, ଅନ୍ୟପକ୍ଷରେ ଭାବୁଥାଏଁ, ମୁଁ ଆନ୍ଦୋଳନରେ ଯୋଗ ଦେଇପାରିବି ନାହିଁ, କାରଣ ବି. ଏ. ପରୀକ୍ଷା ୧୯୨୧ ମସିହା ଫେବୃଆରୀ କିମ୍ବା ମାର୍ଚ୍ଚମାସରେ ହେବ । ତତ୍ପୂର୍ବରୁ ଟେଷ୍ଟ ପରୀକ୍ଷା ହୋଇଗଲା । ମୁଁ ଟେଷ୍ଟ ପରୀକ୍ଷାରେ ଭଲଭାବେ ପାସ୍ କରିଥାଏ; ମାତ୍ର ମୋର ଲେକ୍ଚର ସର୍ଟ ଥାଏ । ମୁଁ ଟିକିଏ ବ୍ୟସ୍ତ ହୋଇ କଲେଜର ତତ୍କାଳୀନ ହେଡ଼ କିରାଣୀଙ୍କ ପାଖରେ ପହଞ୍ଚିଲି । ତାଙ୍କୁ କୌଣସିପ୍ରକାରେ ସନ୍ତୋଷ କରି ଲେକ୍ଚର ଠିକ୍ କରିନେଲି । ଏହି ସମ୍ପର୍କରେ ମୋତେ ମୋ ସୁନାମୁଦିଟି ବିକିବା ପାଇଁ ପଡ଼ିଥିଲା । ନୋଟିସ ବୋର୍ଡ଼ରେ ମୋର ନାମ ଅନ୍ୟମାନଙ୍କ ନାମ ସହିତ ବାହାରିଗଲା, ଅଥଚ ଏଣେ କଲେଜ ଛାଡ଼ିବା ହିଁ ସ୍ଥିରୀକୃତ ହୋଇଥାଏ । ମନର ଗତି ବୁଝିବା ବଡ଼ କଠିନ, ଏକ ସମୟରେ ବିଭିନ୍ନ ପ୍ରକାର ସ୍ରୋତ ଏକାବେଗରେ କିପରି ମନ ଭିତରେ ଚାଲେ, ତାହା ଭାବିଲେ ବିସ୍ମିତ ହେବାକୁ ପଡେ ।

କିଛିଦିନ ପରେ ନାଗପୁର କଂଗ୍ରେସ ଆସିଗଲା । ଭାରତୀ ମନ୍ଦିରରେ ବିଚାର ହୋଇ ସେ କଂଗ୍ରେସରେ ଯୋଗଦେବାପାଇଁ ଭାଗୀରଥୀ ମହାପାତ୍ର ଓ ମୁଁ ଯାଇଥିଲୁ । ଏ କଂଗ୍ରେସରେ ଓଡ଼ିଶାରୁ ୨୭ଜଣ ଯୋଗ ଦେଇଥିଲେ । କଂଗ୍ରେସ ଅଧିବେଶନର ଦୁଇ ତିନିଦିନ ପରେ ଚକ୍ରଧରପୁରଠାରେ ଉତ୍କଳ ସମ୍ମିଳନୀର ଗୋଟିଏ ଅଧିବେଶନ ହେବାର ଥାଏ । ପଣ୍ଡିତ ଗୋପବନ୍ଧୁ ପ୍ରମୁଖ ସମ୍ମିଳନୀର କେତେକ ନେତା କଂଗ୍ରେସରେ ଯୋଗ ଦେଇଥିଲେ ଓ କଂଗ୍ରେସ ଶେଷ ହେବା ମାତ୍ରକେ ଚକ୍ରଧରପୁର ଚାଲି ଆସିଥିଲେ । କଂଗ୍ରେସ-ଅଧିବେଶନ ସାଙ୍ଗେ ସାଙ୍ଗେ ନିଖିଳ ଭାରତ ଛାତ୍ର-ସମ୍ମିଳନୀ ହେଉଥିବାରୁ କଟକରୁ ଛାତ୍ରସମାଜ ପକ୍ଷରୁ ଓ କଲିକତାରେ ଲ ପଢ଼ୁଥିବା କେତେକ ଓଡ଼ିଆ ଛାତ୍ର ନାଗପୁର ଯାଇଥିଲେ ଓ କଂଗ୍ରେସରେ ଯୋଗ ଦେଇଥିଲେ । ସେତେବେଳେ କଂଗ୍ରେସର କିଛି ନିୟମାବଳୀ ନ ଥିଲା । ଯେ ଯାଉଥିଲେ, ସମସ୍ତେ ପ୍ରତିନିଧି ଓ ସେହି ପ୍ରତିନିଧିମାନେ ସେଇଠି ବସି ବିଷୟ ବିବେଚନା କରୁଥିଲେ । ସେଇଠି ନିଖିଳ ଭାରତ କଂଗ୍ରେସ-କମିଟି ଗଠିତ ହୋଇଥିଲା । ଆଉ ଓଡ଼ିଶାରେ ପ୍ରାଦେଶିକ କଂଗ୍ରେସ କମିଟି ନ ଥିବାରୁ, ଓଡ଼ିଶା ବିହାର ସହିତ ଥିବା ହେତୁ ଆମେ ସମସ୍ତେ ବିହାର-ଓଡ଼ିଶାର ପ୍ରତିନିଧି ହିସାବରେ କଂଗ୍ରେସରେ ଯୋଗ ଦେଇଥିଲୁଁ । ସେଠି ବଙ୍ଗଳା-ପ୍ରତିନିଧିମାନଙ୍କ ମଧ୍ୟରେ ମାଡ଼-

ପିକ୍‌ଟିଂ, ଅସହଯୋଗକୁ ରଦ୍ଦ କରିବାପାଇଁ ସି.ଆର.ଦାସଙ୍କ ସ୍ପେସାଲ ଟ୍ରେନରେ ପ୍ରତିନିଧି ଆଣିବା, ଏ ସବୁ ଚାଲିଥିଲେ ମଧ୍ୟ ଅସହଯୋଗ ସପକ୍ଷରେ ବିପୁଳ ଉନ୍ମାଦନା ବର୍ତ୍ତମାନ ସାମାନ୍ୟ କଥା ବୋଲି ମନେ ହୋଇପାରେ, ମାତ୍ର ସେ ସମୟରେ ଏ ସବୁ ଇତିହାସ ସୃଷ୍ଟି କରିଥିଲା ।

ନାଗପୁର କଂଗ୍ରେସରେ ଗାନ୍ଧିଜୀଙ୍କର ଅସହଯୋଗ ଆନ୍ଦୋଳନର କାର୍ଯ୍ୟକ୍ରମ ଏକମତ ହୋଇ ସମସ୍ତେ ଗ୍ରହଣ କରିନେଲେ । ସି. ଆର୍. ଦାସ ଯେ କି ଏହାର ପ୍ରବଳ ବିରୋଧୀ ଥିଲେ, ସେ ଏ ପ୍ରସ୍ତାବ ଆଗତ କରିଥିଲେ । କଂଗ୍ରେସ ମହଲରେ ଉତ୍ସାହର ସୀମା ନାହିଁ । ସତେ ଯେପରି ବିପ୍ଳବର ଏକ ପ୍ରବଳ ବନ୍ୟା ମାଡି ଆସୁଛି—ସମସ୍ତେ ସେଥିରେ ଭାସିଯିବେ ।

ଏହି ନାଗପୁର କଂଗ୍ରେସରେ ପଣ୍ଡିତ ଗୋପବନ୍ଧୁଙ୍କ ସହିତ ମୋର ପ୍ରଥମ ପରିଚୟ ହୁଏ । ତାଙ୍କର ହୃଦୟ ଏତେ କୋମଳ ଓ ଅନୁକମ୍ପାଭରା ଯେ, ମୁଁ ଦେଖି ବିସ୍ମିତ ହୋଇଯାଇଥିଲି । ସେ ମୋର ସମସ୍ତ କଥା ଶୁଣିଲେ । ମୁଁ ଯେ ବିବ୍ରତ ଥିଲି, ତା ମଧ୍ୟ ସେ ଜାଣିପାରିଲେ । ମୁଁ ତାଙ୍କୁ ପଚାରିଲି, "କଅଣ କରିବି, ବି. ଏ. ପରୀକ୍ଷା ଦେବି ନା ନାହିଁ ?" ସେ ଟିକିଏ ଚିନ୍ତା କରି କହିଲେ, ଦେଇ ଦିଅ, ତା'ପରେ ଏଥିରେ ଯୋଗ ଦେବ !" ସେତେବେଳେ ମୋ ମନରେ ଯେଉଁ ପ୍ରବଳ ଦ୍ୱିଧା ଚାଲିଥାଏ, ତା'ର ସମାଧାନ ନ କରି ଗୋପବନ୍ଧୁଙ୍କ ପରାମର୍ଶ ବରଂ ତାକୁ ଉତ୍କଟ କରିଦେଲା । କଂଗ୍ରେସ ଅଧିବେଶନ ସରିବା ମାତ୍ରକେ ଗୋପବନ୍ଧୁ ବାବୁ ପ୍ରଭୃତି ଚକ୍ରଧରପୁର ଚାଲିଗଲେ । ନାଗପୁରରେ ରହିଲୁ ଭଗୀରଥୀ ମହାପାତ୍ର, ନିରଞ୍ଜନ ପଟ୍ଟନାୟକ ଓ ମୁଁ ।

କଂଗ୍ରେସ ଅଧିବେଶନ ପରେ ନିଖିଳ ଭାରତ କଂଗ୍ରେସ କମିଟି କଂଗ୍ରେସର ନୂଆ ନିୟମ ପ୍ରଣୟନ ଓ କାର୍ଯ୍ୟକ୍ରମ ସମ୍ବନ୍ଧରେ ବିଷୟମାନ ଆଲୋଚନା କରୁଥାନ୍ତି । ଅନୁପସ୍ଥିତ ଅନ୍ୟ ତିନିଜଣଙ୍କ ମତ ନେଇ ଆମେ ତିନିଜଣ ସ୍ୱତନ୍ତ୍ର ନିଖିଳ ଭାରତ କଂଗ୍ରେସ କମିଟିରେ ଯୋଗ ଦେଇଥିଲୁଁ । ଏହା ମିଥ୍ୟାଚାର ବୋଲି ସେତେବେଳେ ଭାବି ନ ଥିଲୁଁ । ଯାହାହେଉ ସେତେବେଳେ ଓଡ଼ିଶାର ନାମ ଉତ୍କଳ ରଖାଯାଉ, ଭାଷାସୂତ୍ରରେ କଂଗ୍ରେସର ପ୍ରଦେଶମାନ ଗଠିତ ହେଉ ଇତ୍ୟାଦି ବିଷୟରେ ଆମ୍ଭେମାନେ ସମିତିରେ କିଛି କିଛି କହିଥିଲୁଁ । ବର୍ତ୍ତମାନ କଂଗ୍ରେସ ଯେଉଁ ନିୟମରେ ଚାଲିଛି, ତା'ର ମୂଳଭିତ୍ତି ସେହି ସମୟରେ ଗଢ଼ା ହୋଇଥିଲା । ମହାତ୍ମାଗାନ୍ଧୀ ତା'ର ନିର୍ମାତା; ପ୍ରତ୍ୟେକ ନିୟମ ପୁଙ୍ଖାନୁପୁଙ୍ଖ ରୂପେ ଆଲୋଚିତ ହୋଇ ସଂଧ୍ୟାଠାରୁ ରାତି ପାହାନ୍ତା ପର୍ଯ୍ୟନ୍ତ ବସି ଦୁଇଦିନରେ ନିୟମସବୁ ତିଆର

ହୋଇଗଲା । ସେ ସମୟରେ ମୁଁ ଲକ୍ଷ୍ୟକରି ଦେଖିଛି, କାମ କରିବା ଢଙ୍ଗରେ ମହାତ୍ମା ଗାନ୍ଧୀ ଅନ୍ୟମାନଙ୍କଠାରୁ ଏତେ ବେଶୀ କର୍ମଠ ଥିଲେ ଯେ, କିଛି ସମୟ ପରେ ଅନ୍ୟମାନେ ନିଜକୁ ମ୍ରିୟମାଣ ମନେ କରିଥିଲେ । ନିଜର କାମ କରିବାର ଶକ୍ତିରେ ଗାନ୍ଧିଜୀ ସେଇଠି ସମସ୍ତଙ୍କୁ ପରାଭୂତ କରି ପୂର୍ଣ୍ଣ ବଶ୍ୟତା ସ୍ୱୀକାର କରାଇଥିଲେ ।

କାମ ସରିଗଲା, ବର୍ତ୍ତମାନ ଆମର ଫେରିବାର କଥା । ଏଇଠି ନାଗପୁରରେ କିପରି ଥିଲି ତାହା ମଧ୍ୟ ମନେ ପଡ଼ୁଛି । ମୋଠାରେ ବେଶୀ ଟଙ୍କା ନ ଥାଏ । କଲିକତା ଯିବା ସମୟରେ ଯେଉଁ ୧୦୦ ଟଙ୍କା ବାବାଙ୍କଠାରୁ ଠକି ନେଇଥିଲି, ସେଥିରୁ ୫୦ ଟଙ୍କା ଖର୍ଚ୍ଚ କରିଥିଲି ଓ ଆଉ ୫୦ ଟଙ୍କା ରଖିଥିଲି । ସେଇଥିରେ ନାଗପୁର ଯିବା, ଆସିବା ଓ ରହିବା ଖର୍ଚ୍ଚ ଚଳାଇବାକୁ ହେଲା । ସାଙ୍ଗରେ ଗୋଟିଏ କୁକର ନେଇଥାଏ । ସେଥିରେ ଡାଲି, ଚାଉଳ ବସାଇ ଦେଇ କାମକୁ ବାହାରିଯାଏ । ଦିନେ ଦିନେ ଫେରିବା ବେଳକୁ ଅଙ୍ଗାରନିଆଁ ଲିଭିଯାଇ କିଛି ସିଝି ପାରି ନ ଥାଏ, ଅଗତ୍ୟା ଉପବାସ ରହିବାକୁ ପଡ଼େ । ମୋର ଶୀତଲୁଗା ନ ଥାଏ, ସେଠି ବଡ଼ ଶୀତ, ପୁଣି କଂଗ୍ରେସ କ୍ୟାମ୍ପର ଉପରେ ଭଲ ଘୁଉଣି ନ ଥାଏ । ଅଧା ଶୀତରେ ଜାକିଜୁକି ହୋଇ ବସେ, ଭାଗୀରଥୀ ବାବୁଙ୍କଠାରୁ ବଡ଼ ଖାଏ—ଏହିପରି କେତେ ରାତି କଟାଇଦେଲି । ଏସବୁ ବର୍ତ୍ତମାନ ଅସୁବିଧା ବୋଲି ମନେ ହେଉଛି, ମାତ୍ର ସେତେବେଳେ ତା' ସେପରି କିଛି ବୋଧ ହେଉ ନ ଥିଲା ।

କଟକ ଫେରିଲି । ବର୍ତ୍ତମାନ ମନର ଅବସ୍ଥା, କଲେଜ ଛାଡ଼ିବାକୁ ହେବ । ସ୍ୱାଧୀନତା ଆନ୍ଦୋଳନରେ ଗାନ୍ଧିଜୀଙ୍କ ପତାକାତଳେ ଛିଡ଼ା ହେବାକୁ ପଡ଼ିବ, ଏହା ଠିକ୍; ମାତ୍ର ସେହି ସିଦ୍ଧାନ୍ତ ପର୍ଯ୍ୟନ୍ତ ମନକୁ ନେବାପାଇଁ ଖୁବ୍ ବେଗ ପାଇବାକୁ ପଡ଼ୁଥାଏ । ଏକେ ତ ମୁଁ କଲେଜରେ ପଢ଼ିବାପାଇଁ ବାବା ଘୋର ଆପତ୍ତି କରୁଥିଲେ, ଧୀରେ ଧୀରେ ସେ ତାକୁ ବରଦାସ୍ତ କରିନେଲେ । ପଢ଼ା ଛାଡ଼ିଦେଇ ଘରେ ବସିଲେ ବୋଧହୁଏ ବେଶୀ କିଛି କହନ୍ତେ ନାହିଁ; ମାତ୍ର ଆନ୍ଦୋଳନରେ ଯୋଗ ଦେବି, କଅଣ ବାବା କହିବେ ? କଅଣ ବା ମାଆ କହିବେ ? କେଉଁଠି ବା ମାଇ ମୁଁ ଉଠିବି ? ଏ ସବୁ ମନକୁ ବଡ଼ ଆଲୋଡ଼ନ କରୁଥାଏ, ମାତ୍ର ଯେଉଁ ସିଦ୍ଧାନ୍ତରେ ଉପନୀତ ହୋଇଥାଏ ତାହା ବଳବତ୍ତର ଥିବାରୁ ମୋତେ ଟାଣି ଟାଣି ନେଇ ଯାଉଥାଏ । ଅନେକ ସମୟରେ ଉପଲବ୍ଧି କରିଛି ଯେ, କୌଣସି ସିଦ୍ଧାନ୍ତରେ ଉପନୀତ ହେବା ପରେ ଯଦି ସେହି ସିଦ୍ଧାନ୍ତଠି ଆତ୍ମସମର୍ପଣ କରି ଦିଆଯାଏ, ତେବେ ନାନାପ୍ରକାର ଆଲୋଡ଼ନ, ଉଦ୍‌ବେଗ ଭିତରେ ସେହି ସିଦ୍ଧାନ୍ତ ଟାଣି ଓଟାରି ନେଇଯାଏ ।

କଟକରେ ଆସି ପହଞ୍ଚିଲୁ । ପହଞ୍ଚିବା ମାତ୍ରକେ ଅବସ୍ଥା ମଧ୍ୟ ମୋତେ ଖୁବ୍ ସାହାଯ୍ୟ କରିଥିଲା । ସେହି ସମୟରେ ମଧୁବାବୁ ବିହାର ଓ ଓଡ଼ିଶା ସରକାରଙ୍କର ମନ୍ତ୍ରୀ ଭାବରେ ମନୋନୀତ ହୋଇଗଲେ । ସେତେବେଳେ ଅସହଯୋଗର ପ୍ରବଳ ଝଞ୍ଜା ବହୁଥାଏ । ଯେଉଁମାନେ ସରକାର ସହିତ କିଛିହେଲେ ସମ୍ପର୍କ ରଖୁଥାନ୍ତି, ସେମାନେ ଘୃଣ୍ୟ, ଦେଶଦ୍ରୋହୀ । ବିଶେଷତଃ କଂଗ୍ରେସ ବ୍ୟବସ୍ଥା ସଭା ବର୍ଜନ କରିଥିବା ସ୍ଥଳେ ମଧୁବାବୁ ବ୍ୟବସ୍ଥା-ପରିଷଦକୁ ଯାଇ, ପୁଣି ସେଠି ମନ୍ତ୍ରୀ ହେବା ଆମ୍ଭମାନଙ୍କୁ ବଡ଼ ଜୋରରେ ଆଘାତ କରିଥିଲା । ଯେଉଁ ମଧୁବାବୁ ଆମକୁ ଉପଦେଶ ଦେଉଥିଲେ, ସରକାରୀ ଚାକିରି କେବେହେଲେ କରିବ ନାହିଁ, ସେ ପୁଣି ଆଜି ଏକ ବଡ଼ ଚାକିରି ପାଇ ବସିଗଲେ ।·ଭାରତୀ ମନ୍ଦିରରେ ଏ ବିଷୟରେ ପ୍ରବଳ ଆଲୋଚନା ହେଲା, ଏହାର ପ୍ରତିବାଦ ସାଧାରଣଙ୍କ ତରଫରୁ କରାଇବାକୁ ହେବ ଓ ଏହି ଅବସରରେ ଓଡ଼ିଶାରେ ଭାରତୀୟ ଚିନ୍ତାସ୍ରୋତ ବୁହାଇବାକୁ ହେବ । ଆମ ସେବା-ସମିତିରେ ଲକ୍ଷ୍ମୀନାରାୟଣବାବୁ ଅସହଯୋଗ ଆନ୍ଦୋଳନକୁ ପସନ୍ଦ କରୁ ନ ଥିଲେ । ମଧୁବାବୁ ମନ୍ତ୍ରୀ ହେବା ବିରୋଧରେ ସେ ଏକମତ ନ ଥିଲେ । ସେତେବେଳେ ଯେଉଁମାନେ ଅସହଯୋଗର ବିରୋଧୀ, ସେମାନେ ସମସ୍ତେ ଦେଶଦ୍ରୋହୀ, ଏହା ହିଁ ଜନତାର ଚିତ୍କାର ଥିଲା । ସେମାନଙ୍କୁ ଆମେ ହୃଦୟର ସହିତ ଘୃଣା କରୁଥିଲୁଁ, ଅବଶ୍ୟ ଏହା ଅହିଂସା ନୀତିର ବିରୋଧୀ; ପ୍ରତ୍ୟେକର ତାଙ୍କ ମତ ପାଇଁ ତାକୁ ସମ୍ମାନ କରିବାକୁ ହେବ ଓ ସମ୍ମାନର ସହିତ ତା'ର ମତ ବିରୋଧୀ ହେବାକୁ ହେବ; ମାତ୍ର ସେତେବେଳେ ଯେ ଅସହଯୋଗର ବିରୋଧୀ—ତାକୁ ସାଧାରଣରେ ଅପଦସ୍ଥ କରି ତୁଚ୍ଛ ତାଚ୍ଛଲ୍ୟ କରିବା କର୍ତ୍ତବ୍ୟ ବୋଲି ମନେ ହେଉଥିଲା । ଏଇଠି ଲକ୍ଷ୍ମୀନାରାୟଣବାବୁଙ୍କ ସହିତ ପଥ ବିଚ୍ଛେଦ ଘଟିଲା ।

ସଂଯୋଗ ଏପରି ଯେ, ଆମେ ମଧୁବାବୁଙ୍କ ମନ୍ତ୍ରୀପଦ ଗ୍ରହଣର ପ୍ରତିବାଦ କରିବାର କଳ୍ପନା କରୁଥିବାବେଳେ, କଟକରେ ସେ ସମୟର ଜଣାଶୁଣା କେତେକ ବ୍ୟକ୍ତି ମଧୁବାବୁଙ୍କ ମନ୍ତ୍ରୀ ନିଯୁକ୍ତିରେ ଆନନ୍ଦ ପ୍ରକାଶ କରିବା ପାଇଁ ଏକ ସଭା ଆହ୍ୱାନ କଲେ । ଏ ସୁବିଧା ଆମର ଛାଡ଼ିବାର ନୁହେଁ, ସେହି ସଭାରେ ମଧୁବାବୁଙ୍କ ନିନ୍ଦାବାଦ କରାଇବାକୁ ହେବ; ମାତ୍ର ସେତେବେଳେ ମଧୁବାବୁ ଓଡ଼ିଶାର ଅଦ୍ୱିତୀୟ ନେତା । ତାଙ୍କର ପ୍ରଭାବ ଆଗରେ ସମସ୍ତେ ନତମସ୍ତକ । ତାଙ୍କ ବିରୋଧରେ କିଛି କହିବା ଅସମ୍ଭବପ୍ରାୟ ଥିଲା । ତଥାପି ଭାରତୀ ମନ୍ଦିରର ଆମେ କେତେଜଣ ଯୁବକ ପ୍ରାଣପଣେ ଚେଷ୍ଟା କଲୁ । ଓଡ଼ିଆ ଓ ଇଂରେଜିରେ ଓଡ଼ିଶାସାରା ପ୍ରଚାରପତ୍ର ବଣ୍ଟାଇବାର ବ୍ୟବସ୍ଥା କଲୁଁ । "At last Mr. Das, a Government Servant drawing Rs. 60,000 from malaria of Balasore, famine of Puri and floods of Cuttack" ଏହାହିଁ ଥିଲା ଇଂରାଜୀ

ପ୍ରସ୍ତୁରପତ୍ରର ଶିରୋନାମା । ସେଥିରେ ଇଂରେଜ କବି Browningଙ୍କର ଏକ ଉପଯୋଗୀ କବିତାଂଶ ମଧ୍ୟ ଶେଷରେ ଦିଆଯାଇଥିଲା । "Just for a handful of silver he left us, just for a ribbon to stick in his coat ।" "ଅଣିବର୍ଷରେ ମଧୁବାବୁ ବୃକଣଆ" ଏହା ଥିଲା ଓଡ଼ିଆ ପ୍ରସ୍ତୁର ପତ୍ରର ଶିରୋନାମା । ଏ ଦୁଇ ପ୍ରସ୍ତୁରପତ୍ରକୁ କୌଣସି ପ୍ରେସ ଛାପିବାକୁ ରାଜି ହେଲେ ନାହିଁ । ଶେଷରେ ଏକ ଭଙ୍ଗା ପ୍ରେସରେ ରାତିରେ ମୁଁ ନିଜେ ଗୋପନରେ ପ୍ରେସ ନାଁ ନ ଦେଇ ପ୍ରସ୍ତୁରପତ୍ର ଛପେଇ ଆଣିଥିଲି । ପ୍ରସ୍ତୁରପତ୍ରମାନଙ୍କରେ କାହାରି ସ୍ୱାକ୍ଷର ନ ଥିଲା । ଓଡ଼ିଶାର ସମସ୍ତ ଜିଲ୍ଲାକୁ ଏ ପ୍ରସ୍ତୁରପତ୍ର ବିତରଣ ପାଇଁ ପଠାଇଥିଲୁଁ । କଟକରେ ଘରେ ଘରେ ଏହାକୁ ବାଣ୍ଟିଲୁଁ । ସଭାକୁ ଯେପରି ବେଶୀ ଲୋକ ଆସିବେ, ତା'ର ଚେଷ୍ଟା କରିଲୁଁ । ସଭାରେ କିପରି ନିଜକୁ ପରିଚାଳନ କରିବାକୁ ହେବ, ସେଥିପାଇଁ ପୁଙ୍ଖାନୁପୁଙ୍ଖ ରୂପେ ସବୁ ଆଗରୁ ଠିକ୍ କରିଥିଲୁଁ । ସାଧାରଣସଭା ପରିଚାଳନାର ଯେତେ ନିୟମ, ସବୁ ମୁଁ ପଢ଼ି ନିଜେ ଠିକ୍ କରିଥିଲି । ସଭାପତି ଜନ୍ଦାବାଦ ପ୍ରସ୍ତାବ ଆଣିବାକୁ ଅନୁମତି ନ ଦେଇପାରନ୍ତି, ଏଥିପାଇଁ ଠିକ୍ ହେଲା, ଜଣେ ଆମର ଲୋକ ସଭାପତିତ୍ୱ କରିବାପାଇଁ ପ୍ରସ୍ତାବ କରିପିବ । କଟକ ଟାଉନ୍‌ହଲରେ ସଭା ହେବାର ଥାଏ, ଆଗରୁ ଯାଇ ଆମ ସମର୍ଥକମାନେ ସବୁ ଆସନ ମାଡ଼ି ବସିଯିବାର ସ୍ଥିର ହୋଇଥିଲା । ସେହିଦିନ ତାହା ହିଁ ହେଲା । ସଭାର ଉଦ୍ୟୋକ୍ତାମାନେ ସଭାସ୍ଥଳରେ ପହଞ୍ଚିବାବେଳକୁ ସେମାନେ ବସିବା ପାଇଁ ସ୍ଥାନ ପାଇଲେ ନାହିଁ । ଏହା ଯେ ଏକ ପୂର୍ବକଳ୍ପିତ କାର୍ଯ୍ୟ, ତାହା ସେମାନେ ଜାଣିପାରିଲେ ନାହିଁ; ବରଂ ବେଶୀ ଲୋକ ସଭାକୁ ଆସିଛନ୍ତି ଦେଖି ସେମାନେ ଖୁସି ହେଲେ । ତା' ପରେ ସ୍ଥାନାଭାବରୁ ସଭା ଟାଉନହଲ ପଡ଼ିଆରେ ହେବାର ସ୍ଥିର ହେଲା ! ସମସ୍ତେ ବାହାରକୁ ଗଲୁଁ । ପ୍ରାୟ ଦୁଇ ତିନି ହଜାର ଲୋକ ସଭାରେ ଥିଲେ । ସଭା ଆରମ୍ଭ ହେଲା, ଉଦ୍ୟୋକ୍ତାମାନଙ୍କ ତରଫରୁ ସଭାପତିପାଇଁ ପ୍ରସ୍ତାବ ଆସିବା ମାତ୍ରକେ ଆମ ତରଫରୁ ଆଉ ଏକ ପ୍ରସ୍ତାବ ଆସିଲା । ଏ ପ୍ରକାର ଅବସ୍ଥା ପାଇଁ ଉଦ୍ୟୋକ୍ତାମାନେ ପ୍ରସ୍ତୁତ ନ ଥିଲେ । ଆମେମାନେ ଦାବୀ କଲୁ, ଭୋଟ ନିଆଯାଉ; ମୁଁ ନିୟମ କାଢ଼ି ଦେଖାଇଲି ଯେ, ଏପରି ଅବସ୍ଥାରେ ଭୋଟ୍ ନେବାକୁ ହେବ । ଉଦ୍ୟୋକ୍ତାମାନେ ଯଦି ନିଜ ମନୋନୀତ ସଭାପତିଙ୍କ ସଭାପତିତ୍ୱରେ ସଭା କରିବାର ଥିଲା ତା' ହେଲେ ସେମାନେ ବିଜ୍ଞାପନରେ ସଭାପତିଙ୍କର ନାମ ଜଣାଇବା ଉଚିତ୍ ଥିଲା । ସେମାନେ ଯେତେବେଳେ ତା' ନ କରିଛନ୍ତି, ସେତେବେଳେ ସଭା-ହାତରେ ସଭାପତି ନିର୍ବାଚନ କାର୍ଯ୍ୟ ରହିଛି । ଉଭୟ ପକ୍ଷର ଯୁକ୍ତି ହେଉ ହେଉ କ୍ରମଶଃ ଗାଳିଦିଅଦେଇ ଆରମ୍ଭ ହେଲା । ଗୋଳମାଳ ହେଲା—ସଭାର ଅଧିକାଂଶ ଅତି ଉତ୍ସାହର ସହିତ ଆମକୁ ସମର୍ଥନ କରୁଥିଲେ । ବହୁ ଗୋଳମାଳ ପରେ ସଭାର



କଲେଜ ଗ୍ରୁପ ମହ୍ବତାବ



ଦୀନବନ୍ଧୁ ଆଣ୍ଡ୍ରୁଜ, ପଣ୍ଡିତ ଗୋପବନ୍ଧୁଙ୍କ ସହ ମହ୍ତାବ

ଉଦ୍ୟୋକ୍ତାମାନେ, ପ୍ରାୟ ୧୩ କମ୍ବା ୧୪ ଜଣ ସଭା ଛାଡ଼ି ଚାଲିଗଲେ । ଆମର ସଭା ଚାଲିଲା । ମଧୁବାବୁଙ୍କୁ ଯେତେ ତୀବ୍ର ଭାବରେ ନିନ୍ଦା କରାଯାଇପାରେ, ତାହା କରାଗଲା । ନିନ୍ଦାବାଦ ପ୍ରସ୍ତାବ ମଧ୍ୟ ଗୃହୀତ ହେଲା ।

ଏହା ଫଳରେ କଟକ ସହରରେ ଏକ ନୂଆ ଜୀବନ ଦେଖାଦେଲା । ସ୍ୱାଧୀନତା ପାଇଁ ପିପାସା, ଭାରତୀୟ ଚିନ୍ତାଧାରା ପ୍ରତି ଆକର୍ଷଣ, ଏ ସବୁ ଥିଲା; ମାତ୍ର ସେ ସମସ୍ତକାର ନେତୃତ୍ୱର ଉପରେ ଚପିରହିଥିଲା । ହଠାତ୍ ଲୋକମତ ତୁଳାପଣ ଉପରକୁ ଫୁଲିଉଠିଲା । ନାଗପୁରରୁ ଗାନ୍ଧି ଟୋପିଟିଏ କିଣିଥିଲି, ତାକୁ ପିନ୍ଧି ସବୁବେଳେ ବୁଲୁଥିବାରୁ ଓ ମୋ ନାମ 'ମହତାବ୍'ଟା ଓଡ଼ିଶାରେ ଅଶୁଣା ଥିବାରୁ ଅନେକ ଭାବିଥିଲେ, ମୁଁ ଜଣେ ମୁସଲମାନ ଯୁବକ । ବାସ୍ତବିକ୍ ସେତେବେଳକାର ଉତ୍କଳୀୟ ସାହିତ୍ୟରେ ମୋତେ ଅଜ୍ଞାତକୁଳଶୀଳ ମୁସଲମାନ ଯୁବକ ବୋଲି ବର୍ଣ୍ଣନା କରା ହୋଇଥିଲା ।

ସଭା ଶେଷରେ ଓଡ଼ିଶାରେ କଂଗ୍ରେସର ନୂତନ ନିୟମ ଅନୁସାରେ ଅସ୍ଥାୟୀ ପ୍ରାଦେଶିକ କଂଗ୍ରେସ କମିଟି ଗଢ଼ିଦେଲୁଁ । ସମସ୍ତ ବିବରଣୀ ପଣ୍ଡିତ ଗୋପବନ୍ଧୁଙ୍କ ନିକଟକୁ ଲେଖି ଜଣାଇଲୁଁ, ସେ ସେତେବେଳେ ପୁରାପୂରି କଂଗ୍ରେସ ଭିତରକୁ ଆସିଯାଇଥିଲେ । ନାଗପୁର କଂଗ୍ରେସ ପରେ ଚକ୍ରଧରପୁରଠାରେ ଯେଉଁ ଉତ୍କଳ-ସମ୍ମିଳନୀ ବସିଥିଲା, ସେଥିରେ ପଣ୍ଡିତ ଗୋପବନ୍ଧୁ ପ୍ରସ୍ତାବ କରିଥିଲେ ଯେ, ସମ୍ମିଳନୀର ଉଦ୍ଦେଶ୍ୟ 'ଦେଶମିଶ୍ରଣ'ନ ରହି କଂଗ୍ରେସର ଉଦ୍ଦେଶ୍ୟ ଅନୁସାରେ 'ସ୍ୱରାଜ୍ୟ-ପ୍ରାପ୍ତି' ହେଉ । ଏ ପ୍ରସ୍ତାବ ଫଳରେ ସମ୍ମିଳନୀର ସଭାପତି ସଭା ଛାଡ଼ି ଚାଲିଯାଇଥିଲେ । ସମ୍ମିଳନୀରେ ଏ ପ୍ରସ୍ତାବ ଗୃହୀତ ହୋଇଥିଲେ ମଧ୍ୟ ସମ୍ମିଳନୀରୁ ବହୁଲୋକ ଅପସରି ଯାଇଥିଲେ ।

ପଣ୍ଡିତ ଗୋପବନ୍ଧୁ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାର ଜଣେ ଲବ୍ଧ-ପ୍ରତିଷ୍ଠ ସଭ୍ୟ ଥିଲେ । ତତ୍କାଳୀନ ଲାଟ୍ ସାର୍ ଏଡ୍‌ୱାର୍ଡ଼ ଗେଟ୍‌ଙ୍କର ଗୋପ-ବନ୍ଧୁଙ୍କ ପ୍ରତି ପ୍ରଭୂତ ସମ୍ମାନ ଥିଲା । ୧୯୧୯ ଶାସନ ସଂସ୍କାର ଆଇନ୍ ଫଳରେ ଯେଉଁ ନିର୍ବାଚନ ହେଲା, ଯାହାକୁ କଂଗ୍ରେସ କଲିକତା ଅଧିବେଶନରେ ବର୍ଜ୍ଜନ କରିଥିଲା, ସେଥିରେ କଂଗ୍ରେସ ସିଦ୍ଧାନ୍ତକୁ ମାନି ଗୋପବନ୍ଧୁ ନିର୍ବାଚନପ୍ରାର୍ଥୀ ହୋଇ ନ ଥିଲେ । ଅପରନ୍ତୁ ଭୋଟ ଦିଅ ନାହିଁ ବୋଲି ଖୁବ୍ ଜୋର୍‌ରେ ପ୍ରଚାର ଚଳାଇ ଥିଲେ, ଯାହା ଫଳରେ ଅନେକ ସ୍ଥାନରୁ ପ୍ରାୟ କେହି ଭୋଟ ଦେବାକୁ ଆସି ନ ଥିଲେ । ଭାରତର ଅନ୍ୟତ୍ର କେତେକ ସ୍ଥାନରେ ଏହିପରି ମଧ୍ୟ ହୋଇଥିଲା ।

ଗୋପବନ୍ଧୁ ଉତ୍କଳ ଥିଲେ, ମାତ୍ର ପୂର୍ଣ୍ଣ ସମୟ ଦେଇ ଦେଶକାମ କରିବାକୁ ସମର୍ଥ ହେବାପାଇଁ ସେ ବନ୍ଧୁମାନଙ୍କୁ ଉତ୍କଳର ଛାଡ଼ିବା ଦେଇଥିଲେ । ବର୍ତ୍ତମାନ ଉତ୍କଳର ଛାଡ଼ିବାପାଇଁ କଂଗ୍ରେସ କହୁଛି, ଏହି ହେତୁରୁ ଗୋପବନ୍ଧୁ କଂଗ୍ରେସ ଆଗରେ ଥିଲେ । ସବୁ ଦିଗରୁ ବିଚାର କଲେ ଗୋପବନ୍ଧୁ ହିଁ ନୂତନ ଓଡ଼ିଶାର ନ୍ୟାୟସଙ୍ଗତ ନେତା ଥିଲେ । ସେହି ହିସାବରେ ତାଙ୍କୁ ପ୍ରଥମେ ଉତ୍କଳ ପ୍ରାଦେଶିକ କଂଗ୍ରେସ-କମିଟିର ସଭାପତିରୂପେ ନିର୍ବାଚନ କରାଗଲା । କାର୍ଯ୍ୟ-ନିର୍ବାହକ ସମିତିରେ ମୁଁ ଜଣେ ସଭ୍ୟରୂପେ ନିର୍ବାଚିତ ହୋଇଥିଲି ।

ଏ ଗୋଳମାଳରେ ମୁଁ ଓ ନବକୃଷ୍ଣ ଚୌଧୁରୀ ପ୍ରଭୃତି ମୋର ସଙ୍ଗୀମାନେ ଆପେ ଆପେ କଲେଜ ଛାଡ଼ିଦେଇ ସାରିଲୁଣି, ଯାହା ନାମମାତ୍ର ସେଠି ଥିଲା, ତାହା ମଧ୍ୟ ମଧୁବାବୁଙ୍କ ଉଦ୍ୟମରେ ଗଲା । ସେ ଦିନର ସଭା ପରେ ଆମର ପ୍ରିନ୍ସପାଲ ଲେମ୍ବାଟ ସାହେବ ଆମ ମୁରବିମାନଙ୍କ ପାଖକୁ ଲେଖିଥିଲେ ଯେ, ଆମର ଆଚରଣ ଖରାପ ହୋଇଗଲାଣି, ଆମକୁ ସେମାନେ ନ ସୁଧାରିଲେ ଆମ ନାମ କଟିଯିବ ।° ଏହାପରେ ଆମ ଭିତରୁ ମଧ୍ୟର ସାଙ୍ଗସାଥି କିଏ କୁଆଡ଼େ ଗଲେ, କେବଳ ନବକୃଷ୍ଣ ଚୌଧୁରୀ ଓ ମୁଁ କଲେଜ ଛାଡ଼ିଲୁ । ଭାଗୀରଥିବାବୁ ଉତ୍କଳର ଛାଡ଼ିଲେ । ଅନ୍ୟାନ୍ୟ କେତେକ ଆଇନଜୀବୀ ଅଳ୍ପକାଳ ପାଇଁ ନିଜ ନିଜର ବ୍ୟବସାୟ ବନ୍ଦ ରଖିଥିଲେ । ଶ୍ରୀ ନବକୃଷ୍ଣ ଚୌଧୁରୀ ପରେ ଶାନ୍ତିନିକେତନରେ ପଢ଼ିବାକୁ ଗଲେ । ଶ୍ରୀ ରାଜକୃଷ୍ଣ ବୋଷ ଅଚିରେ ପଢ଼ା ଛାଡ଼ି କଂଗ୍ରେସ କାମ କଲେ । ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ କଲିକତାରେ ଯାଇ ପଢ଼ିଲେ । ପ୍ରିନ୍ସପାଲଙ୍କ ଚିଠି ପାଇ ବାବା ମୋତେ ଅତି ଶୀଘ୍ର ଘରକୁ ଯିବାପାଇଁ ପତ୍ର ଲେଖିଲେ । ମୁଁ ଗଲି, ଦେଶସାରା କିପରି ନୂଆ ଆନ୍ଦୋଳନ ଚାଲିଛି ସେ ସମ୍ବନ୍ଧରେ ମୁଁ ତାଙ୍କୁ ବୁଝାଇ କହିଲି; ମାତ୍ର ସେ କିଛି ଶୁଣିଲେ ନାହିଁ, ଅତି ବିରକ୍ତ ହେଲେ । ମୋତେ ଘରେ ରହିବାପାଇଁ କହିଲେ । ବି. ଏ. ପର୍ଯ୍ୟନ୍ତ ପଢ଼ିଆସି ପରୀକ୍ଷା ୭ କିମ୍ବା ୮ ଦିନ ଥାଏ ଏପରି ଅବସ୍ଥାରେ ପରୀକ୍ଷା ଦେବାପାଇଁ ମୁରବିମାନଙ୍କ ଜିଦ୍ ଓ ପରୀକ୍ଷାକୁ କଂଗ୍ରେସ ସିଦ୍ଧାନ୍ତ ଅନୁସାରେ ବର୍ଜନ କରିବାପାଇଁ ଛାତ୍ରର ଜିଦ୍—ଏପରି ସଂଘର୍ଷ ଭିତରେ ମୁଁ ପଡ଼ି ନାହିଁ । ମୋର କଲେଜ ଶିକ୍ଷା ବିଷୟରେ ବାବା ମୂଳରୁ ଉଦାସୀନ ଥିଲେ । ତାଙ୍କର ଭୟ ଥିଲା ଯେ, ବି. ଏ. ପାଶ୍ କରିସାରି ଚାକିରି କରିବି, ଯାହା ସେ ଆଦୌ ପସନ୍ଦ କରୁ ନ ଥିଲେ । ଏ ଗୋଳମାଳରେ ମୋର ପଢ଼ା ବନ୍ଦ ହୋଇଗଲା, ଏଥିରେ ବାବା ବୋଧହୁଏ ଖୁସି ହେଲେ । ସେ ମୋତେ ପରୀକ୍ଷା ଦେଇଦେବାପାଇଁ କହି ନାହାନ୍ତି; ବରଂ ଘରେ ରହି ବିଷୟ ବୁଝିବାପାଇଁ କହିଥିଲେ । ଏହି ସମୟରେ ଘରେ ପ୍ରାୟ ଦେଢ଼ ମାସ ଅତି ଉଦ୍‌ବେଗରେ ମୁଁ କଟାଇଛି ସେ ଉନ୍ମାଦନା

ଭିତରେ ମୁଁ ଥିଲି, ସେଠୁ ଛାଡ଼ି ଆସି ନିଷ୍ପନ୍ଦ ଗୃହଜୀବନ ଭିତରେ ଜଳବିନା ମାଛ ପରି ଅସ୍ଥିରତା ଅନୁଭବ କରୁଥିଲି ।

ଘରେ ଥିବା ସମୟରେ ମୋର ସାନଭାଇ କାହ୍ନୁଚରଣ ଭୟଙ୍କର ଭାବରେ ବେମାର ଥିଲା । ରାତି ଉଜାଗର ହୋଇ ପ୍ରାୟ ମାସେ ଖଣ୍ଡେ ତା'ର ଶୁଶ୍ରୂଷା କଲି । ଭଦ୍ରଖରୁ ପ୍ରତିଦିନ ଡାକ୍ତର ଆସୁଥା'ନ୍ତି । ବାବା ଅତିଶୟ ଚିନ୍ତିତ ହୋଇପଡ଼ିଥା'ନ୍ତି, ମାତ୍ର ଶେଷରେ ସେ ଭଲ ହୋଇଗଲା; କିନ୍ତୁ ଭାଇ ପ୍ରତି ମୋର ବ୍ୟବହାରରେ ବାବା ଅତି ସନ୍ତୁଷ୍ଟ ହୋଇଥିଲେ । ଆଉ ମଧ୍ୟ ମୁଁ ଯେତିକି ଗାନ୍, ବଜାଣ ଶିଖିଥିଲି, ସେତିକି ବ୍ୟବହାର କରିବାରେ ବାବା ଅତିଶୟ ଖୁସି ଥିଲେ ।

ଏହି ସମୟରେ ମୋ'ସ୍ତ୍ରୀକୁ ମୋ ପନ୍ଥାରେ ରାଜି କରାଇବା ପାଇଁ ଯଥାସାଧ୍ୟ ଚେଷ୍ଟା କରୁଥିଲି । ଏ ପନ୍ଥାରେ ଜେଲ୍, ଗୁଳି ଓ ଫାଶି ପ୍ରଭୃତି ଅଛି ଶୁଣି ସେ କାନ୍ଦି ପକାଉଥାଏ, ଜମିଦାରୀ ମଧ୍ୟ ଯିବାର ଆଶଙ୍କା ରହିଛି ଶୁଣି ତା'ର ଶ୍ୱାସରୁଦ୍ଧ ହୋଇଯାଉଥାଏ । ସେ ସାଧ୍ୟମତେ ଚେଷ୍ଟା କରୁଥାଏ, ମୋତେ ନିବର୍ତ୍ତାଇବା ପାଇଁ । ଆମ ଉଭୟଙ୍କର ଚେଷ୍ଟା ଏପରି ଦୃଢ଼ ଓ ହାର୍ଦ୍ଦିକ ଥାଏ ଯେ, କେହି କାହାରିକୁ ବଦଳାଇ ନ ପାରି ଏକ ଅଚଳ ଅବସ୍ଥା ସୃଷ୍ଟି ହୋଇ ଯାଇଥାଏ ।

## ସାଧାରଣ ଜୀବନ ଆରମ୍ଭ

ଏଇଠି ମୋ ଜୀବନରେ ଗୋଟିଏ ସନ୍ଧି ଥିଲା । ମୁଁ ଯେଉଁଆଡ଼େ ମନ କରିଥିଲି, ସେଇଆଡ଼େ ମୋ ଜୀବନ ପ୍ରବାହିତ ହୋଇଥାନ୍ତା । ଗମ୍ଭୀର ଚିନ୍ତା, ବାରମ୍ବାର ବିବେକାନନ୍ଦଙ୍କ ଲେଖା ପଢ଼ିବା, ନିଜର ଆତ୍ମାକୁ ଶରୀରଠାରୁ ପୃଥକ ଉପଲବ୍ଧି କରିବା, ଏସବୁ ନିରବଚ୍ଛିନ୍ନ ଭାବରେ ଚାଲିଥାଏ । କେହି ସେଠି ନଥା'ନ୍ତି ଯାହା ସହିତ ମୁଁ ପରାମର୍ଶ କରିବି ବା ଯାହାଠାରୁ କିଛି ହେଲେ ଉତ୍ସାହ ପାଇବି । ଅତଶୀଘ୍ର ମୋତେ ଏକ ସିଦ୍ଧାନ୍ତରେ ଆସି ପହଞ୍ଚିବାକୁ ହେବ । "ଦେଶପାଇଁ ଅନ୍ୟମାନେ କାମ କରନ୍ତୁ, ଅର୍ଥ ସାହାଯ୍ୟ କରିବା କ'ଣ ବଡ଼ କଥା ନୁହେଁ କି ?" ଏହା ଥିଲା ଅନ୍ତରର ଦୁର୍ବଳତାର ପରାମର୍ଶ । ସବୁ ବିଚାର କରି ମୁଁ ସ୍ଥିର କଲି ଯେ, ଦେଶକାମରେ ସମୁଦାୟ ସମୟ ଦେବାକୁ ହେବ, ତାହାର ପରିଣାମ ଯାହା ହେଉ ପଛକେ । ଏହି ସିଦ୍ଧାନ୍ତ କରି କଟକ ଯିବାର ସ୍ଥିର କଲି । ମାତ୍ର ପଇସା କାହିଁ ? ବାବାଙ୍କୁ ଯାଇ କହିଲି ଯେ ମୁଁ ଛୁଟି ପାଇଛି, ବି.ଏ. ପରୀକ୍ଷା ଦେବାକୁ ହେବ । ଏ ପରୀକ୍ଷା ସରକାରୀ ନୁହେଁ, ଏକ ବେସରକାରୀ ପରୀକ୍ଷା ହେଉଛି । ପିଲାଦିନୁ ଯେପରି ବଢ଼ିଆସିଛି, ସେଥିରେ ମନ କଥା ମନେ ମାରି ବାହାରକୁ ତା'ର ନାମ ନିଶାଣ ଦେଖାଇ ନ ଦେବା ମୋର ଏକ ଅଭ୍ୟାସ ହୋଇଯାଇଛି । ମନ ଭିତରେ ମୋର ଯେ ଉଦ୍‌ବେଗ ଚାଲିଥାଏ, ସେ ମୋ ଭିତରେ । ବାହାରେ ମୋର ଆଚରଣରୁ ବାବା କିମ୍ବା ଅନ୍ୟ କେହି ତା'ର ଗନ୍ଧ ସୁଦ୍ଧା ପାଉ ନ ଥିଲେ । ବାବା ମୋତେ ୫୦ଟଙ୍କା ଦେଇ କହିଲେ, ପରୀକ୍ଷା ଦେଇସାରି ଶୀଘ୍ର ଚାଲିଆସିବୁ । ଅନ୍ୟମାନଙ୍କଠି ସେ ବ୍ୟକ୍ତ କଲେ ଯେ, "ହରିର ମନ ବର୍ତ୍ତମାନ ଥିର ହୋଇଗଲାଣି ! ହେଲା, ମନ କରିଛି ପରୀକ୍ଷା ଦବ, ଦେଉ । ସରକାରୀ ପରୀକ୍ଷା ତ ନୁହେଁ । ଏ ପରୀକ୍ଷାରେ କଅଣ ଚାକିରୀ ମିଳିବ କି ?" ଟଙ୍କା ମୋ ହାତରେ ପଡ଼ିବା ମାତ୍ରକେ ମୋ ମନ ଉଲ୍ଲସି ଉଠିଲା ।

ଅବିଳମ୍ବେ କଟକ ଯିବାର ବନ୍ଦୋବସ୍ତ କଲି । ମୋ ସ୍ତ୍ରୀକୁ ମଧ୍ୟ ସେହିପରି ଠକିଲି । ପାଳିକା ମାଆକୁ ମଧ୍ୟ ଠକିଲି । ସମସ୍ତଙ୍କୁ ବିଶ୍ୱାସ ଦେଇ କହିଗଲି ଯେ, ପରୀକ୍ଷା ଶେଷ ହେବା ମାତ୍ରକେ ପ୍ରାୟ ୧୫ ଦିନ ମଧ୍ୟରେ ଫେରିଆସିବି । ସମସ୍ତେ ତ ବିଶ୍ୱାସ କରିଗଲେ, ମାତ୍ର ମୋର ସ୍ତ୍ରୀ ପୂରାପୂରି ବିଶ୍ୱାସ କରୁ ନ ଥାଏ । ଗୃହ ନିୟମ

ପର୍ଯ୍ୟନ୍ତ କଥା ଗଲା । ସେ ସବୁ ମତେ ଅଟକାଇ ନ ଥିଲା । ସମସ୍ତଙ୍କୁ ଠକି-ଠାକି କଟକ ଆସିଲି ।

ମୋର ଏହି ଆଚରଣ ଯୋଗୁ ଆଜି ପର୍ଯ୍ୟନ୍ତ ମୋ ମନ ଭିତରେ ଦୁଃଖ ଓ ଅନୁତାପର ଗୋଟିଏ ସ୍ରୋତ ଅନ୍ତଃସଲିଳା ହୋଇ ବରାବର ବହିଆସୁଛି—ବୋଧ ହେଉଛି, ଏହା ଜୀବନସାରା ବହିବ । ସମସ୍ତଙ୍କୁ ବୁଝାଇ ସୁଝାଇ ମୋର କର୍ତ୍ତବ୍ୟ ପଥ ଆଶ୍ରା କରିଥିଲେ ବୋଧହୁଏ ବିଳମ୍ବ ହୋଇଥାନ୍ତା; ମାତ୍ର ଆଜୀବନ ଏକ ଦୁଃଖର ଛାୟା ମନ ଭିତରେ ପଡ଼ି ନ ଥାନ୍ତା । ଠକିଦେବା ଫଳରେ ମୋର ମନ ଅନୁସାରେ କାମ ଅବଲମ୍ବେ ହୋଇଗଲା ସିନା; ମାତ୍ର ଯେଉଁମାନଙ୍କୁ ଠକିଲି, ଯେମାନଙ୍କ ପ୍ରତି ଯେ ଅନ୍ୟାୟ ଆଚରଣ କଲି, ତା'ର ପ୍ରତିକ୍ରିୟା ଚିରଦିନ ପାଇଁ ହୃଦୟ ଉପରେ ପ୍ରଭାବ ପକାଇ ଦେଇଛି । ସେ ପ୍ରତିକ୍ରିୟାକୁ ଠେଲି ପେଲି ବରାବର ଚାଲିଛି । ସେଥିପାଇଁ ପ୍ରବଳ ଉଦ୍ୟମ ସବୁବେଳେ ଦରକାର ପଡ଼ୁଛି ।

ଯା' ହେଉ, ମୁଁ ଯାଇ କଟକରେ ପହଞ୍ଚିଲି । ଘର ଛାଡ଼ିଲି, ଜମିଦାରୀ ଜୀବନରେ ଓ ଗୃହସ୍ଥପଣିଆରେ ଚିରଦିନ ପାଇଁ ଜଳାଞ୍ଜଳି ଦେଲି ବୋଲି ସ୍ଥିରକରି ସାଧାରଣ ଜୀବନରେ ପୂର୍ଣ୍ଣ ପ୍ରାଣରେ ଯୋଗ ଦେଲି ।

ବନ୍ୟା-ସାହାଯ୍ୟ ସମ୍ବନ୍ଧୀୟ ସରକାରୀ ନୀତିରେ ଅସନ୍ତୁଷ୍ଟ ହୋଇ ଗୋପବନ୍ଧୁ ଚୌଧୁରୀ ଅସହଯୋଗ କରି ଡେପୁଟି ମାଜିଷ୍ଟ୍ରେଟ୍ କାମ ଛାଡ଼ିଦେଇ ଥାଆନ୍ତି । ଏହା ଓଡ଼ିଶାରେ କଂଗ୍ରେସ ଆନ୍ଦୋଳନକୁ ଖୁବ୍ ବଳ ଦେଇଥାଏ । ଆମ କଲେଜରେ ଛାତ୍ରମାନଙ୍କ ଧର୍ମଘଟ ହୋଇ ଅନେକ ଛାତ୍ର ଅସହଯୋଗ କରି ପଢ଼ା ଛାଡ଼ି ଦେଇଥାନ୍ତି । କଲିକତାରେ ପଢ଼ୁଥିବା ଓଡ଼ିଶାର ଅନେକ ଛାତ୍ର ପଣ୍ଡିତ ଗୋପବନ୍ଧୁଙ୍କ ପ୍ରେରଣାରେ ଅସହଯୋଗ କରି ପଢ଼ାଛାଡ଼ି ଚାଲି ଆସିଥାଆନ୍ତି । ଅବଶ୍ୟ ଏମାନଙ୍କ ଭିତରୁ ପରେ ଅନେକ ଫେରିଗଲେ । କେତେକ ପଢ଼ା ଛାଡ଼ିଦେଲେ ମଧ୍ୟ ସାଧାରଣ ଜୀବନରେ ନ ରହି ଅନ୍ୟ ପ୍ରକାର ଜୀବନ ଅବଲମ୍ବନ କଲେ; ତଥାପି ଅନେକ ଦୃଢ଼ ହୋଇ ରହିଗଲେ । ସେହିମାନେ ଓଡ଼ିଶାରେ ସାଧାରଣ ଜୀବନରେ ସ୍ତମ୍ଭସ୍ୱରୂପ ଠିଆ ହୋଇଥିଲେ ।

ଏହି ସମୟରେ ମହାତ୍ମାଗାନ୍ଧୀ ଭାରତ ଭ୍ରମଣରେ ବାହାରିଥାନ୍ତି । ଧର୍ତ୍ତିବାସୁ ପରି ଘୂରିଆଡ଼େ ବୁଲି ଅସହଯୋଗ ପ୍ରଚାର କରୁଥାନ୍ତି । ସେହି ଭ୍ରମଣ-ବେଳେ ଓଡ଼ିଶା ମଧ୍ୟ ଆସିଥିଲେ । ଭଦ୍ରଖ, କଟକ, ପୁରୀ ଓ ବ୍ରହ୍ମପୁର ଏହି ଚାରିନାଗାକୁ ଯାଇଥିଲେ । ପ୍ରତ୍ୟେକ ଜାଗାରେ ହଜାର ହଜାର ଲୋକ ସଭାରେ

ଯୋଗ ଦେଉଥାନ୍ତି । 'ସୈତାନ୍ ସରକାର' ବୋଲି ଯେତେବେଳେ ଜୋର କରି ସେ କହି ଦେଉଥିଲେ, ଶ୍ରୋତାଙ୍କ ମଧ୍ୟରେ ନିର୍ଭୀକତାର ଏକ ତୋଫାନ ବହିଯାଉଥିଲା । ଅହିଂସାର ତାତ୍ପର୍ଯ୍ୟ, ଅସହଯୋଗର କୌଶଳ ସବୁଆଡ଼େ ସରଳ ଏବଂ ମଧୁର ଭାଷାରେ କହି ସେ ଏକ ଜୀବନ୍ତ ପ୍ରେରଣାର ପ୍ଲାବନ ସୃଷ୍ଟି କରିଦେଲେ । ଓଡ଼ିଶା ଗସ୍ତରେ ମୁଁ ବରାବର ତାଙ୍କ ସାଙ୍ଗରେ ଥିଲି । ଭଦ୍ରଖରେ ତାଙ୍କର ରହିବା ଓ ସଭା ଇତ୍ୟାଦିର ସମସ୍ତ ଭାର ମୋ ଉପରେ ପଡ଼ିଥିଲା । ସେ ଦିନ ମୋତେ ଏତେ ପରିଶ୍ରମ କରିବାକୁ ପଡ଼ିଥିଲା ଯେ, ମୋର ଦେହ ହାତ ଅଚଳ ହୋଇପଡ଼ିଲା ପରି ବୋଧ ହେଉଥାଏ ।

ଗାନ୍ଧିଜୀଙ୍କୁ ବ୍ରହ୍ମପୁରରେ ଆମେ ବିଦାୟ ଦେଲୁଁ । ସେ ମାନ୍ଦ୍ରାଜ ଗଲେ । ବ୍ରହ୍ମପୁର ଷ୍ଟେସନରେ କିଛି ସମୟ ସେ କର୍ମୀମାନଙ୍କ ସହିତ କଥାବାର୍ତ୍ତା କରିଥିଲେ । "ଅନେକଗୁଡ଼ାଏ ବିଷୟ ଭାବ ନାହିଁ, ଗୋଟିଏ ବିଷୟ ଭାବ ଓ ତାକୁ କାମରେ ପରିଣତ କର"—ଏ କଥା ଆଜିଯାଏ କାନରେ ବାଜୁଛି ।

ଗାନ୍ଧିଜୀ ଓଡ଼ିଶା ଚସ୍ତ କରି ଗଲା ପରେ, ସଙ୍ଗଠିତ ଭାବରେ କାମ ଆରମ୍ଭ କରିବାର ବ୍ୟବସ୍ଥା ହେଲା । କଂଗ୍ରେସ-ମେମ୍ବର ସଂଗ୍ରହ, କଟକରେ ସ୍ୱରାଜ୍ୟାଶ୍ରମ ସଙ୍ଗଠନ, ଏହିସବୁ କାମ ଆରମ୍ଭ ହେଲା । ଓଡ଼ିଶାର ସବୁ ଜିଲ୍ଲାରେ କଂଗ୍ରେସର ଶାଖା ଓ କାର୍ଯ୍ୟକ୍ରମର ପ୍ରବର୍ତ୍ତନ ପାଇଁ ବ୍ୟବସ୍ଥା ହେଲା । ବାଲେଶ୍ୱର ପାଇଁ କିଛି ହୋଇପାରୁ ନ ଥାଏ; କାରଣ ସେ ଜିଲ୍ଲାରେ ସାଧାରଣ ଜୀବନ ପ୍ରାୟ ନ ଥାଏ କହିଲେ ଚଳେ । ପ୍ରାଦେଶିକ କଂଗ୍ରେସ କମିଟିରେ ସମସ୍ତେ ଆଶା କରୁଥାନ୍ତି ଯେ, ମୁଁ ଯାଇ କିଛି କରେଁ । ବାଲେଶ୍ୱରରେ ସେତେବେଳେ ମୋର କେହି ଜଣାଶୁଣା ନ ଥାନ୍ତି । ଯେ କେତେଜଣ କଲେଜ ଛାତ୍ର ପଢ଼ା ଛାଡ଼ିଥିଲେ, ସେହିମାନେ ମୋର ଜଣାଶୁଣା । ସେମାନଙ୍କ ସହିତ ମୋର ଘନିଷ୍ଠତା ମଧ୍ୟ ନ ଥାଏ । ତା'ପରେ ମୁଁ ବାଲେଶ୍ୱର ଗଲେ, ସେଠି କାଳେ କପରି ବାବା ପ୍ରଭୃତିଙ୍କ ସହିତ ଦେଖା ହୋଇଯିବ ଦା ସେମାନେ ଆସି ମୋତେ ନେଇଯିବେ, ଏ ଆଶଙ୍କା ମଧ୍ୟ ଥାଏ । ତେଣୁ ପ୍ରଥମରେ ମୁଁ ବାଲେଶ୍ୱର କାର୍ଯ୍ୟର ଭାର ନେବି ନାହିଁ ବୋଲି କହିଥିଲି; ମାତ୍ର ଅନ୍ୟ କେହି ନ ମିଳିବାରୁ ସେ ଭାର ଆସି ମୋ ଉପରେ ପଡ଼ିଲା । କରୁଣାକର ପାଣିଗ୍ରାହୀ, କୃଷ୍ଣପ୍ରସାଦ ମହାପାତ୍ର, ଭୈରବ ଚନ୍ଦ୍ର ମହାପାତ୍ର ଓ ଆଉ ଜଣେ, ଯେ କି ପରେ ଜଣେ ଉଚ୍ଚପଦସ୍ଥ ପୋଲିସ କର୍ମଚାରୀ ହେଲେ, ଏହିମାନେ କଟକରେ ଥାଆନ୍ତି । ଏମାନଙ୍କ ସହିତ ପରାମର୍ଶ କରି ବାଲେଶ୍ୱରରେ ସବୁଠାରୁ କପରି ଭଲ କାମ ହେବ, ତା'ର ଯୋଜନା ପ୍ରସ୍ତୁତ କଲି । ପ୍ରଥମେ କୃଷ୍ଣପ୍ରସାଦ ମହାପାତ୍ରଙ୍କୁ ମୋଟିଏ ଥିବା ଟଙ୍କା ଦେଇ ବାଲେଶ୍ୱର ପଠାଇଥିଲି, ଜାଣି ଆସିବା ପାଇଁ, ସେଠି କେଉଁମାନେ କଂଗ୍ରେସ

ବା ଜାତୀୟ ଆନ୍ଦୋଳନ ପ୍ରତି ସହାନୁଭୂତି-ପ୍ରଦର୍ଶକ । ସେ ଦୁଇ ତିନ ଦିନ ମଧ୍ୟରେ ଫେରିଆସି ଖବର ଦେଲେ ଯେ, ସେପରି କେହି ନାହାନ୍ତି । କେବଳ ସେ ଜଣେ ଓକିଲଙ୍କ ଘରେ ଗାନ୍ଧି ଛବି ଦେଖିଥିଲେ । ଅନ୍ୟ ଶିକ୍ଷିତ ମହଲରେ କେଉଁଠି ବର୍ତ୍ତମାନ କଂଗ୍ରେସ ଆନ୍ଦୋଳନର ଚର୍ଚ୍ଚା ନ ଥିବା ବୋଲି କହିଲେ । ଏ କଥା ମଧ୍ୟ ଜାଣି ରଖିବାକୁ ହେବ ଯେ, କଂଗ୍ରେସ ପାଇଁ ଆବଶ୍ୟକ ଅର୍ଥ ଗୁରୁମାନଙ୍କ ହିଁ ସଂଗ୍ରହ କରିବାକୁ ହେବ । ମୋଟ ଉପରେ ଯେଉଁ ଅର୍ଥ ଥିଲା, ସେ ପ୍ରାୟ ଶେଷ ହେବା ଉପରେ । ଆଉ ପ୍ରାୟ ୧୦ । ୧୨ ଟଙ୍କା ଥାଏ, ଏଣେ ୧୯୨୧ ମସିହା ଏପ୍ରିଲ ୬ ତାରିଖ ଆସି ପହଞ୍ଚିଲା । ଅପ୍ରେଲ ୬ ତାରିଖଠାରୁ ୧୩ ତାରିଖ ଜାତୀୟ ସପ୍ତାହ, ସବୁଆଡ଼େ ହରତାଳ ହେବ । ସମସ୍ତେ ଉପବାସ କରିବେ । ଏହି ସାତଦିନଯାକ ସବୁଆଡ଼େ ବ୍ୟାପକ ଭାବରେ ସଭା ସମିତି କରି ଅହିଂସା, ଅସହଯୋଗ ବିଷୟରେ ବୁଝାଇବାକୁ ହେବ । କୌଣସି ଗ୍ରାମ ଯେପରି ବାଦ୍ ନ ଯାଏ । ଅପ୍ରେଲ ୫ ତାରିଖ ରାତି ପାସେଞ୍ଜରରେ ଆମେ ସବୁଜଣ ବାଲେଶ୍ୱର ଗଲୁଁ । ଆମେ ଭାବିଥିଲୁଁ ଯେ ସକାଳେ ବାଲେଶ୍ୱରରେ ପହଞ୍ଚି ହରତାଳର ଜାଗରି ଦେବୁଁ । ତା' ପରେ ଦେଖାଯିବ, କଅଣ ହେଉଛି । ସେଦିନ ତ ଉପବାସ, ସେହି ସମୟ ହିଁ ବାସ୍ତବିକ ବିପ୍ଳବର ସମୟ ଥିଲା । ଆଜି ବୁଝ ଜନକୁ ଜନେ ଯେକୌଣସି ଅବସ୍ଥା ଭିତରକୁ ଫୋପାଡ଼ି ଦେବାକୁ କେହି ଦ୍ୱିଧାବୋଧ କରୁନଥିଲେ । ସକାଳ ୫ଟାରେ ଆମେ ବାଲେଶ୍ୱର ଷ୍ଟେସନରେ ପହଞ୍ଚିଲୁଁ । ଷ୍ଟେସନରେ କୌଣସି ଗାଡ଼ି ବା କୁଲି ନ ଥାନ୍ତି, ପଚାରିବାରୁ ସମସ୍ତେ କହିଲେ 'ଆଜି ହରତାଳ ପରା !' ଆମେ ଆଶ୍ଚର୍ଯ୍ୟ ହୋଇଗଲୁଁ । ବିନା କର୍ମୀରେ ଶୂନ୍ୟେ ଶୂନ୍ୟେ ଗାନ୍ଧିଜୀଙ୍କ ବାର୍ତ୍ତା କିପରି ବିସ୍ତାରିତ ହୋଇ କାମ କରି ଯାଉଥାଏ, ତା'ର ନମୁନା ପ୍ରଥମେ ଆମେ ଦେଖିଲୁଁ । ସବୁଜଣଯାକ ଜିନିଷପତ୍ର ହାତରେ ନେଇ ମୋତିଗଞ୍ଜ ବଜାରକୁ ଆସିଲୁଁ । ଯେତେବେଳେ ଓକିଲ ସାହେବ ବୋଲି ଜଣେ ମୁସଲମାନ ବ୍ୟବସାୟୀ ଥିଲେ । ସେ ଆମକୁ ଡାକି ପଚାରିଲେ, 'ଆପଣମାନେ କିଏ ? କୁଆଡ଼େ ଆସିଛନ୍ତି ।' ଆମେ କହିଲୁଁ, 'ଆମେ ଆସିଛୁଁ କଂଗ୍ରେସ କାମ କରିବାପାଇଁ ।' ସେ ଆମକୁ ନିଜ ଦୋକାନରେ ବସାଇ ଗୋଡ଼ହାତ ଧୋଇବାକୁ ପାଣି ଦେଲେ । ତାଙ୍କ ଦୋକାନକୁ ଲଗି ଡାକ୍ତର କୃଷ୍ଣପ୍ରସାଦ ମହାନ୍ତିଙ୍କ ଡାକ୍ତରଖାନା । ଏ ହେଉଛନ୍ତି ପୁରୁଣାକାଳିଆ ଓଡ଼ିଆ ପାସ୍ ଡାକ୍ତର । ବାଟ ଗୁଲି କଟକକୁ ଯାଇ ଡାକ୍ତରୀ ପଢ଼ିଥିଲେ । ବଲାଙ୍ଗିର ପାଟଣାରେ କାମ କରି କିଛି ଟଙ୍କା କମାଇ ବାଲେଶ୍ୱରରେ ବ୍ୟବସାୟ ଚଳାଉଥିଲେ । ଇତିମଧ୍ୟରେ ସେ ଆସି ପହଞ୍ଚି ଗଲେ । ସେ ଡାକ୍ତରଖାନାକୁ ଖୋଲିଦେଇ ହଠାତ୍ ଆମ ପାଖକୁ ଆସି ଆମ ଆସିବା ଉଦ୍ଦେଶ୍ୟ ବୁଝିଲେ । ସେ ଅତି ଉତ୍ସାହ ପ୍ରକାଶ କଲେ । ମୁଁ ତାଙ୍କୁ ପଚାରିଲି, 'ଆମେ ରହିବୁ କେଉଁଠି !' ଡାକ୍ତରବାବୁ କିଛି ନ ବିଚାରି ହଠାତ୍ କହିଲେ,

'ମୋ ଡାକ୍ତରଖାନା ପଛ ପାଖରେ ଗୁଦାମ କୋଠରୀ ଅଛି, ସେଠି ରହନ୍ତୁ, ଘର ସାଫ୍ ଅଛି । କିଛି କରିବାକୁ ପଡ଼ିବ ନାହିଁ ।' ଆମେ ଲୁଗାପଟା ନେଇ ସେଇଠି ରଖିଲୁଁ । ଏତେ ସହଜରେ ରହିବାର ବ୍ୟବସ୍ଥା ହୋଇଯିବ ବୋଲି ଆମେ ଭାବି ନ ଥିଲୁଁ । ଖବର ନେଇ ବୁଝିଲୁଁ ଯେ, ସହରରେ ପୂର୍ଣ୍ଣ ହରତାଳ ହୋଇଛି । ବଜାରରେ କେତେଜଣ ବ୍ୟବସାୟୀ ଓ କରୁଣାକରଙ୍କ ବଡ଼ଭାଇ ନାରାୟଣ ପାଣିଗ୍ରାହୀ, ଡାକ୍ତର କୃଷ୍ଣପ୍ରସାଦ ମହାନ୍ତି, ଏହିମାନେ ଖବରକାଗଜରୁ କଂଗ୍ରେସର ନିର୍ଦ୍ଦେଶ ଓ ମହାତ୍ମା ଗାନ୍ଧୀଙ୍କ ବାର୍ତ୍ତା ଜାଣି ଏହା କରାଇଛନ୍ତି । ବର୍ତ୍ତମାନ ପରିଷ୍କାର ଜଣାଗଲା, କୃଷ୍ଣପ୍ରସାଦ ମହାପାତ୍ର ପ୍ରଥମେ ଯେ ଖବରବୁଝି ଯାଇଥିଲେ, ତାହା କେବଳ ଏକେଲା, ଶିକ୍ଷିତ ମହଲର ଖବର । ମହାତ୍ମା ଗାନ୍ଧୀଙ୍କ ବାର୍ତ୍ତା ଅଲକ୍ଷିତ ଭାବରେ ସାଧାରଣ ଜନତା ବା ଯେଉଁମାନେ ସେବା ବା ସାଧାରଣ ଜୀବନର କିଛି ଧାର ଧାରୁ ନଥିଲେ, ସେମାନଙ୍କ ଭିତରେ କିପରି ଏକ ଅଦ୍ଭୁତ ପ୍ରଭାବ ବିସ୍ତାର ଆପେ ଆପେ କରିଥିଲା, ତାହା ଅତି ବୁଦ୍ଧିମାନ୍ ଲୋକ ମଧ୍ୟ ଆଗରୁ ଜାଣିପାରୁ ନ ଥିଲେ ।

ଲୁଗାପଟା ରଖିଦେଇ ସେଦିନ ସନ୍ଧ୍ୟାରେ ସଭା ହେବାପାଇଁ ନାଗରା ଦେବାର ବନ୍ଦୋବସ୍ତ କଲୁଁ । ନାଗରା ସାଙ୍ଗରେ ଆମେ ଗୁରିଆଡ଼େ ଯାଇ ସଭାର ବିଜ୍ଞାପନ ଦେଲୁଁ । ଖାଇବେଳେ ଆମ ବସାରେ ବିଶ୍ରାମ ନେଲୁଁ । ମୋ ପାଖରେ ଟଙ୍କାଏ କେତେ ପଇସା ଥାଏ । କରୁଣାକରଙ୍କ ଭାଇ ନାରଣ ବାବୁ ସହରର ଜଣେ ବ୍ୟବସାୟୀ ଥିଲେ ମଧ୍ୟ ଭୈରବର କଳା ଜଣେ ଜମିଦାରଙ୍କ ତହସିଲଦାରଭାବରେ ସେହି ସହରରେ ଥିଲେ । ସେମାନେ କେହି ତାଙ୍କଠାକୁ ଯାଇ ନ ଥିଲେ । ସ୍ୱରାଜ୍ୟ କାମ ବୋଲନ୍ତେ ଘରଦ୍ୱାର ଛାଡ଼ି ସେହି କାମରେ ଲାଗିବା ସେତେବେଳେ ବୁଝାଉଥାଏ । ଅନ୍ତତଃ ମୋ ସମ୍ପର୍କରେ ଯେଉଁମାନେ ଆସୁଥିଲେ, ସେମାନଙ୍କୁ ସେହି ପ୍ରତିଜ୍ଞାରେ ଆବଦ୍ଧ କରାଉଥାଏଁ । ବାସ୍ତବିକ ସେତେବେଳେ ମୋର ଯେଉଁ ଧାରଣା ଥିଲା, ତାହା ଅଭିଜ୍ଞତା ଫଳରେ ଆହୁରି ଦୃଢ଼ୀଭୂତ ହୋଇଅଛି । ଘର ସଂସାର ନ ଛାଡ଼ିଲେ ବିପ୍ଲବାତ୍ମକ କାର୍ଯ୍ୟ ସଫଳତାର ସହିତ କରିହେବ ନାହିଁ । ସ୍ୱରାଜ୍ୟପାଇଁ କାମ ଯେ ଏକ ବିଶାଳ ବିପ୍ଲବାତ୍ମକ କାମ, ତାହା କେବଳ ସେହି ସମୟରେ ଉପଲବ୍ଧ କରାହେଉଥିଲା । ଧୀରେ ଧୀରେ ତାହା ଶିଥିଳ ହୋଇଯାଇ ଦେହସହା ହୋଇଗଲା, ଫଳରେ କାମ ମଧ୍ୟ ଆଉ ବିପ୍ଲବାତ୍ମକ ହୋଇ ରହିଲା ନାହିଁ ।

ଆମ ଭିତରେ କେହି ବକ୍ତା ନ ଥିଲେ । କୌଣସିଠି କେହି କେବେ ବକ୍ତୃତା ଦେଇ ନ ଥିଲେ । ଏପରି କି ସ୍କୁଲ୍ କଲେଜର ଡିବେଟିଙ୍ଗ ସୋସାଇଟିରେ ମଧ୍ୟ ଆମେ କେହି ଭାଗ ନେଇ ନ ଥିଲୁଁ । ଯେଉଁମାନେ ଅଗ୍ରଣୀ ହୋଇ ଦେଶକାମରେ ବାହାରିଲେ, ସେମାନେ କେହି ଛାତ୍ରଜୀବନର କୌଣସି ଆନ୍ଦୋଳନରେ ସାମିଲ୍

ହୋଇ ନ ଥିଲେ । ବକ୍ତୃତା ଦେଇ ନ ଜାଣିବା ଆମକୁ ଏକ ମହାଶଙ୍କାର ବିଷୟ ହେଲା । ତଥାପି ଆମେ ସାହସ ବାନ୍ଧି ସନ୍ଧ୍ୟା ପର୍ଯ୍ୟନ୍ତ ଅପେକ୍ଷା କଲୁଁ । ସନ୍ଧ୍ୟାବେଳେ ବିରାଟ ସଭା ପରମିଟ୍ କୋଠି ହତାରେ ହେଲା । ପ୍ରାୟ ଛଅହଜାର ଲୋକ । ଜଣେ ଦୁଇଜଣ ମୁକ୍ତାର ଛଡ଼ା ଆଉ ଶିକ୍ଷିତ ଲୋକ କେହି ନ ଥିଲେ । ସେଦିନ ସଭାରେ ଅଭିରାମ ନନ୍ଦ ସଭାପତି ହୋଇଥିଲେ । ସେ ଜଣେ ଇଂରାଜୀ ଅଶିକ୍ଷିତ, ମାତ୍ର କର୍ମଠ ଉତ୍ସାହୀ ବ୍ୟକ୍ତି । ସେ ମୋହରିର କାମ କରୁଥିଲେ । ପ୍ରଥମେ କୃଷ୍ଣପ୍ରସାଦ ମହାପାତ୍ର ବକ୍ତୃତା ଦେଲେ । ତାତ୍ପର୍ଯ୍ୟ—କାହିଁକି ହରତାଳ ହୋଇଛି, ସେହି ତାରିଖରେ ରାଉଲଟ୍ ଆଇନ ବିରୁଦ୍ଧରେ ମହାତ୍ମାଗାନ୍ଧୀ ୧୯୧୯ରେ ସତ୍ୟାଗ୍ରହ ଘୋଷଣା କରିଥିଲେ । ତା'ରି ଫଳରେ ୧୩ ତାରିଖରେ ପଞ୍ଜାବର ଜାଲିଆନାବାଲା-ବାଗରେ ଶହ ଶହ ନିରୀହ ଜନତାକୁ ମାରି ଦିଆଗଲା, ନୂତନ ପ୍ରବର୍ତ୍ତିତ ଶାସନ-ସଂସ୍କାର କିଛି ନୁହେଁ, ସ୍ୱରାଜ୍ୟ ଆବଶ୍ୟକ ଓ ସେଥିପାଇଁ ଅହିଂସ ଅସହଯୋଗର ସୂତ୍ରପାତ ଇତ୍ୟାଦି ବିଷୟ ସେ ବୁଝାଇଥିଲେ । ତା'ପରେ ମୁଁ କହିଥିଲି । ସଭାରେ ବକ୍ତୃତା ଦେବା ଏହି ମୋର ପ୍ରଥମ । ନିର୍ଭୀକତା ଓ ପ୍ରାଣ ଦେବା ପାଇଁ ପ୍ରସ୍ତୁତ ହୋଇ ସ୍ୱରାଜ୍ୟ-ସଂଗ୍ରାମରେ ଯୋଗ ଦେବାକୁ ମୁଁ ଜନତାକୁ ଆହ୍ୱାନ କରିଥିଲି । ପରାଧୀନତା ଭିତରେ ଜନସାଧାରଣ କି ଦୁଃଖ ଭୋଗ କରୁଛନ୍ତି, ତାହା ମୁଁ ବର୍ଣ୍ଣନା କରିଥିଲି । ଶେଷରେ କଂଗ୍ରେସ କାମ ପାଇଁ ସାହାଯ୍ୟ କରିବାକୁ ଅର୍ଥଭିକ୍ଷା କରିଥିଲି । ସେଦିନ ସଭାରେ ୧୬ଟଙ୍କା କେତେଅଣା ସଂଗୃହୀତ ହୋଇଥିଲା । ସଭାରେ ପ୍ରବଳ ଉତ୍ସାହ ଥିଲା । 'ଜୟ, ମହାତ୍ମାଗାନ୍ଧୀଙ୍କ ଜୟ' ନିନାଦରେ ସଭା କମ୍ପି ଉଠୁଥିଲା । ଏ ଦୃଶ୍ୟ ଦେଖି ଆମ୍ଭେମାନେ ମଧ୍ୟ ଅଭିଭୂତ ହୋଇଯାଇଥିଲୁଁ ।

ସେଦିନ ବାଲେଶ୍ୱର ଜିଲ୍ଲା ସ୍କୁଲରେ ହରତାଳ ହୋଇଥାଏ । ଅନେକ ଛାତ୍ର ସଭାକୁ ଆସିଥିଲେ । ସଭା ଶେଷରେ ବିଶ୍ୱନାଥ ହୋତା, ନୀଳାମ୍ବର ଦାସ ପ୍ରମୁଖ ଛାତ୍ରମାନେ ମୋତେ ଆସି ପଚାରିଲେ—ଆଜି ଆମେ ଧର୍ମଘଟ କରିଛୁଁ—ଏଣିକି ସ୍କୁଲରେ ପଢ଼ିବୁ କି ନାଁ ? ମୁଁ ସେମାନଙ୍କ ଘରର ଅବସ୍ଥା ବିଷୟରେ ପଚାରିଥିଲି । ଯେତେବେଳେ ଜାଣିଲି ଯେ, ସେମାନେ ପରିବାର-ଭରଣ-ପୋଷଣ ପାଇଁ ମୁରବି-ମାନଙ୍କର ଆଶାର କେନ୍ଦ୍ର ହୋଇ ରହିଛନ୍ତି, ସେମାନଙ୍କୁ ପଢ଼ା ଛାଡ଼ିଦେବା ପାଇଁ ହଠାତ୍ କହିବାକୁ ମୋର ସାହସ ହେଲା ନାହିଁ । ଗାନ୍ଧିଜୀ କ'ଣ କହୁଛନ୍ତି ଓ କଂଗ୍ରେସ କ'ଣ କହୁଛି, ଏହା ହିଁ ବୁଝାଇଥିଲି । ପ୍ରାୟ ୭।୮ ଜଣ ବରାବର ପଢ଼ା ଛାଡ଼ିଦେଇ ଆସିଲେ ବୋଲି କହି ଆମ ବସାରେ ରହିଲେ; ମାତ୍ର ସେମାନଙ୍କ ଭିତରୁ ଅନେକ ପୁଣି ଫେରିଗଲେ । ଫେରିସିବାବାଲଙ୍କ ଭିତରେ ଜଣେ ପରେ ରେଳ-ବିଭାଗର ବଡ଼ ହାକିମ ହେଲେ, ଆଉ ଜଣକେତେ ୱକିଲ ହେଲେ, ଆଉ କେତେଜଣ ଯାଇ

ଘରେ ରହିଲେ । ମାତ୍ର ନୀଳମଣି ଓ ବିଶ୍ୱନାଥ ବରାବର ଦେଶକାମ କରିବାକୁ ରହିଲେ; ଏ ଦୁହେଁ ଜିଲ୍ଲାସ୍କୁଲରେ ଦ୍ୱିତୀୟ ଶ୍ରେଣୀରେ ପଢ଼ୁଥିଲେ ।

ବସାରେ ନିଜ ହାତରେ ରାନ୍ଧି ଖାଉଥାଉଁ । ୭ତାରିଖ ପରେ ୮ ତାରିଖ ପୁଣି ଏକ ସଭା ଆହ୍ୱାନ କଲୁ । ସେ ଦିନ ମଧ୍ୟ ବହୁ ଲୋକର ସମାଗମ ହୋଇଥିଲା । ଖୁବ୍ ଉତ୍ତେଜନାପୂର୍ଣ୍ଣ ବକ୍ତୃତା ମୁଁ ଓ ମୋର ବନ୍ଧୁମାନେ ଦେଇଥିଲୁ । ଏଣିକି ଆମ ମୁହଁ ଖୋଲିଗଲାଣି । ଆମ ବକ୍ତୃତା ଭଲ ହେଉଛି ବୋଲି ଶୁଣି ଆମେ ଉତ୍ସାହିତ ହେଲୁ । ଆମମାନଙ୍କ ପରି ନୂତନ ବକ୍ତାମାନଙ୍କୁ ଲକ୍ଷ୍ୟ କରି ସେ ସମୟରେ ପଣ୍ଡିତ ଗୋପବନ୍ଧୁ ପରିହାସ କରି କହିଥିଲେ, "ଏତ ଏପରି ଏକ ବ୍ୟାପାର ଯେ, 'ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଙ୍ଘୟତେ ଗିରିଂ । ବାଚାଳ ତ ହେଲ, ଏଥର ଗିରି ଲଙ୍ଘନ କର ।" ଆଠ ତାରିଖ ଦିନ ସଭାରେ ଷାଠିଏ ଟଙ୍କା କେତେ ଅଣା ସଂଗୃହୀତ ହୋଇଥିଲା । ବର୍ତ୍ତମାନ ଟଙ୍କାର ଅଭାବ ନ ଥାଏ, କର୍ମୀର ଅଭାବ ମଧ୍ୟ ପୂରଣ ହୋଇ ଆସୁଥାଏ । ଏହି ୮ ତାରିଖ ଦିନ ସୁରେନ୍ଦ୍ରନାଥ ଦାସ ( ସର୍ଦ୍ଦାରି ) ସଭାସ୍ଥଳରେ ମୋତେ ଚୁପ୍ ଚୁପ୍ କରି ଡାକି ପଚାରିଲେ, "ମୁଁ ଚାକିରି ଛାଡ଼ିଦେବି ନା ?" ସେ ସେତେବେଳେ ପୋଲିସ ସବ୍‌ଇନ୍‌ସପେକ୍ଟରର ପାହାଆର ସରକାରୀ ଚାକିରି କରୁଥିଲେ । ମୁଁ ତାଙ୍କୁ ଉତ୍ତର ଦେଇଥିଲି, 'ନିଜ ମନକୁ ବୁଝାଇ ଯାହା ସ୍ଥିର କର ।' ତହିଁ ପରଦିନଠାରୁ ସେ ଆସି ଆମ ବସାରେ ରହିଲେ ।

ସେତେବେଳେ କଂଗ୍ରେସରେ କାମ କରୁଥିବା ଲୋକେ ଯେଉଁଠି ରହୁଥିଲେ ଓ ଯେଉଁଠି ଅଫିସ ରହୁଥିଲା, ତାକୁ ସ୍ୱରାଜ୍ୟାଶ୍ରମ ବୋଲି ନାମ ଦେଇଥିଲେ । ଆମ ବସାରେ ବର୍ତ୍ତମାନ ଅନେକ କର୍ମୀ ଆସିଲେଣି ଓ କଂଗ୍ରେସ ଅଫିସ ଖୋଲା ହେଲାଣି । ଏଣୁ ଏହାକୁ ସ୍ୱରାଜ୍ୟାଶ୍ରମ ନାମ ଦେଇ ସାଇନ୍‌ବୋର୍ଡ ମରାଯାଉ ବୋଲି ମୋର କେତେଜଣ ସଙ୍ଗୀ ପ୍ରସ୍ତାବ କଲେ । ମାତ୍ର ସମସ୍ତେ ଯାହା କରୁଛନ୍ତି, ସେଥିରୁ କିଛି ନା କାରଣରେ ହେଉ ପଛକେ, ଟିକିଏ ଅଲଗା କରି କିଛି କରିବା, ଏହି ଯେ ମୋ ମନର ଗତି । ତଦନୁସାରେ ସମସ୍ତଙ୍କୁ ଏକମତ କରାଇ ଆମର 'ସ୍ୱରାଜ୍ୟ ମନ୍ଦିର' ନାମ ରଖାଗଲା । ସଙ୍କେତ ଲଗାଇ ଅରଟ ଚାଲୁ କଲୁ । ଆମେ ଯେତେବେଳେ କଟକରୁ ଆସିଛୁ, ଲୋକେ ଭାବୁଥା'ନ୍ତି ଆମେ ସୂତାକଟା ଇତ୍ୟାଦି ସବୁ ଜାଣୁ; ମାତ୍ର ଆମେ କିଛି ଜାଣି ନ ଥାଉଁ । ସେଇଠି ସବୁ ନିଜେ ନିଜେ ଶିଖିଲୁ । 'ଉପରେ ପଡ଼ିଲେ ବଜାଇ ଶିଖନ୍ତି' ଏ କଥା ଆମେ ଅଙ୍ଗେ ନିଭେଇଛୁ ।

ବାଲେଶ୍ୱର ଜିଲ୍ଲା କଂଗ୍ରେସ-କମିଟି ଗଠିତ ହେଲା । ସଭାପତି ଶ୍ରୀ ବିପିନ-ବିହାରୀ ଦାସ ହେଲେ ଓ ମୁଁ ସମ୍ପାଦକ ନିଯୁକ୍ତ ହେଲି । ବିପିନବାବୁ ଜଣେ ଅତି ବଡ଼

ଜମିଦାର ପରିବାରର ଲୋକ; ତାଙ୍କ ପୂର୍ବପୁରୁଷରେ ତାଙ୍କର ବହୁ ଜମିଦାରୀ ନିଲାମ ହୋଇଯାଇଛି । ସେ ପିଲାଦିନୁ ବଳାପରେ ବଢ଼ି କୁପଥଗାମୀ ହୋଇଯାଇଥିଲେ । ତାଙ୍କୁ ଆମେ ବାଟକୁ ଆଣିଥିଲୁ । ସେଥିପାଇଁ ସେ ଅବାଟ ମାଡ଼ି ନାହାନ୍ତି ।

ଆମର କାମ ଥାଏ, ସେତେବେଳେ ନିଶା ଦୋକାନରେ ପିକେଟିଂ କରିବା, ବିଦେଶୀ ଲୁଗା ବନ୍ଦ କରିବା, କଂଗ୍ରେସ-ସଭ୍ୟ ସଂଗ୍ରହ ଓ ତିଳକ ସ୍ୱରାଜ୍ୟ ପାଣ୍ଠି ସଂଗ୍ରହ କରିବା । 'ସ୍ୱରାଜ୍ୟ ମନ୍ଦିର'ର ଖାଇଖର୍ଚ୍ଚର ବ୍ୟବସ୍ଥା କରିବା ପାଇଁ ମୁଷ୍ଟିଭିକ୍ଷା ସଂଗ୍ରହ କରିବା ମଧ୍ୟ ଏକ କାମ ଥାଏ । ବଡ଼ ବଡ଼ ମଦଦୋକାନ ଆଗରେ ପିକେଟିଂ ଚାଲିଥାଏ ଓ ସକାଳୁ ଝୁଲି କାନ୍ଧରେ ପକାଇ ମୁଷ୍ଟିଭିକ୍ଷା ସଂଗ୍ରହ ମଧ୍ୟ ଚାଲିଥାଏ । ବିଦେଶୀ ଲୁଗା ଦୋକାନ ଆଗରେ ପିକେଟିଂ ନିତ୍ୟନୈମିତ୍ତିକ ବ୍ୟାପାର । ବିଦେଶୀ ଲୁଗା କଲିକତାରୁ କୌଣସି ବ୍ୟବସାୟୀ ନାମରେ ରେଳରେ ଆସୁଥିବାର ଖବର ପାଇଲେ, ଏପରି ବ୍ୟବସ୍ଥା କରୁ ଯେ, ଷ୍ଟେସନରୁ ଦୋକାନ ପର୍ଯ୍ୟନ୍ତ ମାଲ ଆସିପାରେ ନାହିଁ । ପ୍ରଥମେ କୁଲି ଯେପରି ମାଲ ନ ଉଠାଇବେ, ସେଥିପାଇଁ ଚେଷ୍ଟା ହୁଏ, ଦୈବାତ୍ କୁଲି ଆମ କଥା ନ ମାନିଲେ ଗାଡ଼ିବାଲା ଯେପରି ନ ରହିବେ, ତା'ର ବ୍ୟବସ୍ଥା କରୁ । ଗାଡ଼ି ଆଗରେ ଶୋଇ ପିକେଟିଂ କରିବା, କୁଲିମାନଙ୍କର ଗୋଡ଼ ହାତ ଧରିବା, ଏହିସବୁ ଆମର କର୍ମ-କୌଶଳ ଥାଏ ।

ଏହିସବୁ କାମ ଛଡ଼ା 'ସ୍ୱରାଜ୍ୟ ସମାଚାର' ନାମରେ ଖଣ୍ଡିଏ ସାପ୍ତାହିକ ପତ୍ରିକା ଲିଥୋରେ ଛପାଇ ବାହାର କରିବାର ବ୍ୟବସ୍ଥା କରିଥିଲୁ । ଫୁଲସ୍କ୍ୟାପ ସାଇଜ୍ ଆଠ ପୃଷ୍ଠାର ଏହି ପତ୍ରିକା ଜିଲ୍ଲାର ସବୁ ଅଞ୍ଚଳକୁ ବିତରଣ ପାଇଁ ପଠା ଯାଉଥିଲା । ସେତେବେଳେ ବାଲେଶ୍ୱରରେ ଅତି ଅଳ୍ପ ଲୋକେ ଖବରକାଗଜ ପଢ଼ୁଥିଲେ । ବୋଧହୁଏ ଜଣେ ଦୁଇଜଣ ଗ୍ରାହକ ହୋଇ କଲିକତା-କାଗଜ ଅଣାଉଥିଲେ । କଂଗ୍ରେସ ପାଣ୍ଠିରୁ ଅର୍ଥ ଦେଇ କଲିକତାର ଦୁଇଟି କାଗଜ ସର୍ଭେଣ୍ଟ ଓ ଆନନ୍ଦବଜାର ପତ୍ରିକା ଏବଂ ସାପ୍ତାହିକ ସମାଜର ଏଜେଣ୍ଟ କରାଇ ଦେଇଥିଲି । ଧୀରେ ଧୀରେ ଏସବୁ କାଗଜ ବେଶୀ ବିକ୍ରି ହେଲା । ଏସବୁ ଖବର କାଗଜ ଅସହଯୋଗ ଆନ୍ଦୋଳନକୁ ସମର୍ଥନ କରୁଥିଲେ ।

ଜିଲ୍ଲାସାରା ଏକପ୍ରକାର ସଂଗଠନର ବ୍ୟବସ୍ଥା ୭।୮ ଦିନରେ ହୋଇଗଲା । କୃଷ୍ଣପ୍ରସାଦ ମହାପାତ୍ର ବନ୍ଧୁଙ୍କୁ ଓ ତାଙ୍କୁ ସାହାଯ୍ୟ କରିବାପାଇଁ ନୀଳାମ୍ବରଙ୍କୁ ଏବଂ କରୁଣାକର ପାଣିଗ୍ରାହୀ ନଳେଶ୍ୱରଙ୍କୁ ଓ ତାଙ୍କୁ ସାହାଯ୍ୟ କରିବାପାଇଁ ବିଶ୍ୱନାଥଙ୍କୁ ପଠାଇ ଦେଲି । ବାଲେଶ୍ୱରରେ ମୁଁ ରହିଲି । ମୋ ସହିତ ସୁରେନ୍ଦ୍ର ରହିଲେ । ସୋରରେ ନନ୍ଦକିଶୋର ଦାସ ଥାଆନ୍ତି । ସେ ସୋର ଅଞ୍ଚଳର କାମ ଦେଖୁଥାଆନ୍ତି ।

ଭଦ୍ରଖରେ ଅନେକ କର୍ମୀ, ବିଶେଷତଃ କଲେଜ ଛାଡ଼ି ଆସିଥିବା ଛାତ୍ର ବାହାରେ କାମ କରୁଥାନ୍ତି । ଶ୍ରୀ ବାଞ୍ଛାନିଧି ମହାନ୍ତି ଓକିଲାତି ପଢ଼ା ଛାଡ଼ି ଭଦ୍ରଖ କାମର ଭାର ନେଇଥିଲେ । ତାଙ୍କ ସାଙ୍ଗକୁ ଘନଶ୍ୟାମ ସାହୁ, ଉପେନ୍ଦ୍ରନାଥ ପୁଣ୍ଡା ଓ ମୌଲବି ମହମ୍ମଦ ହନିଫ୍ ପ୍ରମୁଖ ଅନ୍ୟମାନେ ଥିଲେ । ଘନଶ୍ୟାମ ଓ ଉପେନ୍ଦ୍ର କଲେଜ ଛାଡ଼ି ଆସିଥିଲେ । ହନିଫ୍ ମିଆଁ ଅବକାଶ ସବ୍‌ଇନ୍‌ସ୍‌ପେକ୍ଟର କାମ ଛାଡ଼ି ଆସି ଯୋଗ ଦେଇଥିଲେ ।

ବାଞ୍ଛାନିଧି ବାବୁ ଓକିଲାତି ପଢ଼ିବା ଆଗରୁ ଅଳ୍ପଦିନ ପାଇଁ ଭଦ୍ରଖ ସ୍କୁଲରେ ଆମର ଶିକ୍ଷକ ଥିଲେ । ତେଣୁ ସେ ମୋର ମାନ୍ୟ ହେଲେ; ମାତ୍ର କର୍ତ୍ତବ୍ୟ-ବୋଧରେ ଅକୁଣ୍ଠିତ ଚିତ୍ତରେ ସେ ମୋ ନିର୍ଦ୍ଦେଶମାନ ପାଳନ କରୁଥିଲେ ।

ସୁବୋଧଚନ୍ଦ୍ର ଦେ କଲେଜ ଛାଡ଼ି ଆସି ଘରେ ବସିଥିଲେ । ବାଲେଶ୍ୱରରେ କାମ ଆରମ୍ଭ ହେଲା ମାତ୍ରକେ ସେ ଆସି ଆମ ସହିତ ଯୋଗ ଦେଲେ ଓ ପୂର୍ଣ୍ଣପ୍ରାଣରେ କାମ କଲେ ।

ଭୈରବଚନ୍ଦ୍ର ମହାପାତ୍ର ଜିଲ୍ଲା କଂଗ୍ରେସ କମିଟି ଅଫିସ ଜିମାରେ ଥିଲେ । ଏହା ଛଡ଼ା ଅନ୍ୟାନ୍ୟ କେତେକ କର୍ମୀ ବାହାରପଟ କାମରେ ଯୋଗ ଦେଇଥିଲେ । ମୋତେ ଜିଲ୍ଲାସାରା ସବୁଆଡ଼େ ବୁଲି କାମ ଦେଖିବାକୁ ପଡ଼ୁଥାଏ । କଂଗ୍ରେସର କାର୍ଯ୍ୟକ୍ରମ ଥାଏ ୧୯୨୧ ସାଲ ଜୁନ୍ ମାସ ମଧ୍ୟରେ ଭାରତରେ କୋଟିଏ କଂଗ୍ରେସ ସଭ୍ୟ ସଂଗ୍ରହ, ତିଲକ ସ୍ୱରାଜ୍ୟ-ପାଣ୍ଠି ପାଇଁ କୋଟିଏ ଟଙ୍କା ସଂଗ୍ରହ ଓ କୋଟିଏ ଅରଟ ଚାଲୁ ନିଶ୍ଚୟ କରିବାକୁ ପଡିବ । ସେତେବେଳେ ମୁଁ ଏତେ ଉତ୍ସାହରେ ଥାଏ ଯେ, ଅନେକ ସଭାରେ ମୁଁ ଘୋଷଣା କରିଥିଲି 'ମୋ ଜମିଦାରୀରେ ମୁଁ ଆଇନଗତ ମାଲିକ । ଯଦି କୋଟିଏ ଟଙ୍କା ନ ହୋଇପାରିବ, ତାହା ହେଲେ ମୁଁ ତାକୁ ତିଲକ ସ୍ୱରାଜ୍ୟ ପାଣ୍ଠିକୁ ଦେଇଦେବି ।' ବାସ୍ତବିକ୍ ସେତେବେଳେ ମୋର ସେପ୍ରା ନିଷ୍ପତ୍ତି ଥିଲା ।

ଚାରିଆଡ଼େ ଲାଗିପଡ଼ି କଂଗ୍ରେସ ସଭ୍ୟ ସଂଗ୍ରହ, ଅର୍ଥ ସଂଗ୍ରହ ଓ ଅରଟ ପ୍ରଚାର ଚାଲିଲା । ଏହା ସାଙ୍ଗେ ସାଙ୍ଗେ ନିଶା ନିବାରଣ ଓ ବିଦେଶୀ ଲୁଗା ବର୍ଜ୍ଜନର ପ୍ରଚାର ମଧ୍ୟ ଚାଲିଥାଏ ।

ଯେଉଁ ସମୟର କଥା ମୁଁ କହୁଛି, ସେତେବେଳେ ବାଲେଶ୍ୱରରେ ମଦ ପିଇବା ଗୋଟିଏ ସାଧାରଣ କଥା ଥିଲା । କେତେଜଣ ପ୍ରତିଷ୍ଠିତ ଓକିଲ, କେତେକ ସ୍କୁଲ ଶିକ୍ଷକ ଓ ଅନ୍ୟାନ୍ୟ କେତେକ ବାବୁ ଖୁସ୍ପା ପ୍ରକାଶ୍ୟ ଭାବରେ ମଦ

ପିଉଥିଲେ । ପିକେଟିଂ ଫଳରେ ଏ ଅନାସ୍ଥାର ଆଖିରେ ଦେଖିବା ଭଳି କମିଗଲା । ଏପରିକି କିଛୁଦିନ ପରେ ଏପରି ଖବରରେ କମିଗଲା ଯେ, ଯେଉଁମାନେ ଅତ୍ୟନ୍ତ ମଦ୍ୟପ ସେମାନେ ଲୁଚିକରି ମଦ ଅଣାଇ ଖାଇଲେ । ଏଥିରେ ସେମାନେ ଅଭ୍ୟାସ ଛାଡ଼ିଦେଲେ ବୋଲି ଲୋକଙ୍କ ଧାରଣା ହୋଇ ଯାଇଥିଲା । ଏହି ମଦ ଦୋକାନ ପିକେଟିଂ ସମ୍ପର୍କରେ ଗୋଟିଏ କଥା ଯାହା ମୋର ଓ କେତେକ ସହକର୍ମୀଙ୍କ ଅଭିଜ୍ଞତାରୁ ବାରମ୍ବାର ଆସିଛି; ତାହା ଉଲ୍ଲେଖ କରିବାକୁ ମନ ହେଉଛି । ପ୍ରତ୍ୟେକ ମଦଦୋକାନ ପାଖରେ ବେଶ୍ୟାଙ୍କ ନିବାସ ଥାଏ । ମଦ ଦୋକାନ ଆଗରେ ଛିଡ଼ାହୋଇ ମଦ୍ୟପମାନଙ୍କୁ ଅନୁରୋଧ କରି ଫେରାଇବା ପାଇଁ ଉଦ୍ୟମ କରିବା ଫଳରେ ବେଶ୍ୟାନିବାସମାନଙ୍କୁ ମଧ୍ୟ ଯେଉଁମାନେ ଯିବାକୁ ଚାହୁଁଥିଲେ, ସେମାନେ ସଙ୍କୋଚବଶତଃ ଯାଉ ନ ଥିଲେ । ଫଳରେ ସେମାନଙ୍କ ବ୍ୟବସାୟରେ ବଡ଼ ଆଘାତ ଲାଗୁଥାଏ । ତେଣୁ ସେମାନେ ଉତ୍ତ୍ୟକ୍ତ ହୋଇ ଆମ ଉପରକୁ ଛେପ, ଖଙ୍କାର ଏବଂ ମୂତ୍ର ମଧ୍ୟ ଫୋପାଡୁଥିଲେ । ଦେହସାରା ଦୁର୍ଗନ୍ଧ ହୋଇ ମଧ୍ୟ ଆମେ ସେହିପରି ଛିଡ଼ା ହୋଇଥାଉ; ବରଂ ସେମାନଙ୍କୁ ମାଆଭଉଣୀ କହି ବୁଝାଉଥାଉ ।

ମୁଷ୍ଟିଭିକ୍ଷା ସଂଗ୍ରହ, ନିତାନ୍ତ ହୀନ ଅବସ୍ଥାରେ ପିକେଟିଂ ଏ ସବୁ ଯେ ପ୍ରାୟ ବର୍ଷେକାଳ ଆମକୁ କରିବାକୁ ପଡ଼ିଥିଲା, ତା' ଫଳରେ ଆମର ସହନଶୀଳତା ଗୁଣର ଅଭ୍ୟାସ ହେଉଥିଲା । ମନର କୋଣ ସବୁ ଘଷିମାଜି ହୋଇ ସମାନ ହୋଇଗଲା ପରି ହୋଇ ଯାଉଥିଲା । ହଠାତ୍ ଅପମାନସୂଚକ କଥା ଶୁଣି ରାଗିଯିବା, ଏ ଦୁର୍ବଳତା ପ୍ରାୟ ଚାଲିଗଲା କହିଲେ ଚଳେ । ଦେଶକାମ ପାଇଁ ସବୁପ୍ରକାର ଅବସ୍ଥାକୁ ଉତ୍ସାହ ସହକାରେ ସହିନେବା, ଏ ଗୁଣ ମଧ୍ୟ ହାସଲ ହେଉଥାଏ । କର୍ମକୁଶଳତା ପାଇଁ ଏ ପ୍ରକାର ବ୍ୟାବହାରିକ ଶିକ୍ଷା ନିତାନ୍ତ ଆବଶ୍ୟକ । ଏହା ମୋର ସେହି ଅଭିଜ୍ଞତାରୁ ମୁଁ ଭଲ କରି ବୁଝିଛି ।

ସହରର କାମ ଏହିପରି ଚାଲିଥାଏ । ଗ୍ରାମରେ ମଧ୍ୟ ସେହି ପ୍ରକାର ଅଭିଜ୍ଞତା । ସହରର ଶ୍ରେଷ୍ଠ ବ୍ୟବସାୟୀମାନେ ଓ ମଧ୍ୟବିତ୍ତ ଶ୍ରେଣୀର ଲୋକେ କଂଗ୍ରେସକୁ ସାହାଯ୍ୟ କରୁଥିଲେ; ମାତ୍ର ଗାଁ'ରେ ଯାହାର ଟିକିଏ ହେଲେ ଜମିଦାରୀ ଅଛି, ସେ କଂଗ୍ରେସ ଯେମିତି ତା' ଇଲାକାରେ ନ ପଶୁ, ସେଥିପାଇଁ ପ୍ରାଣପଣ ଉଦ୍ୟମ କରୁଥିଲେ । ଜନସାଧାରଣଙ୍କର ଅତି ଉତ୍ସାହ ଓ ସହାନୁଭୂତି ଥାଏ; ମାତ୍ର ଜମିଦାର, ପୋଲିସ୍ ଏମାନଙ୍କ ଭୟରେ ସେମାନେ ଏତେ ଭୀତ ଯେ, ସେମାନଙ୍କ ଉତ୍ସାହ ଓ ସହାନୁଭୂତି କୌଣସି ପ୍ରକାର ପ୍ରକାଶ୍ୟ ଆକାର ଧରୁ ନ ଥାଏ । ପ୍ରଥମେ ଗାଁ ଅଞ୍ଚଳକୁ ଗଲେ କେହି ରହିବାପାଇଁ ଜାଗା ଦେଉ ନ ଥିଲେ । ସମସ୍ତେ ଜମିଦାର କଚେରୀ ବା ଘରଆଡ଼କୁ ହାତ ବଢ଼ାଇ ଦେଇ ସେଇଠିକି ଯିବାପାଇଁ କହୁଥାଆନ୍ତି; ମାତ୍ର ସଞ୍ଜ

ଡାକିଲେ ହଜାର ହଜାର ଲୋକ ଉପସ୍ଥିତ ହେଉଥାଆନ୍ତି । ସଭାରେ କଂଗ୍ରେସ ସଭ୍ୟ ହେବାପାଇଁ କହିଲେ ସମସ୍ତେ ପଡ଼ିଯାଆନ୍ତି ।

ଯେ ଜନ କର୍ମୀସଙ୍ଘ ସଦା କେହି ଉପସ୍ଥିତ ଥାଆନ୍ତି; ତେବେ ସମସ୍ତେ ଏପରି ମ୍ରିୟମାଣ ହୋଇ ବସନ୍ତି ଯେ, ନେପରି କି କାହାର ଜୀବନ ନାହିଁ; ମାତ୍ର କେହି ନ ଥିଲେ ସମସ୍ତେ ଉତ୍ସାହ ପ୍ରକାଶ କରି ଆମକୁ ମଧ୍ୟ ଉତ୍ସାହିତ କରୁଥାଆନ୍ତି । ଉତ୍ତର ବାଲେଶ୍ୱର ଗସ୍ତରେ ଯେତେବେଳେ ମୁଁ ପ୍ରଥମେ ଯାଏଁ, ସେତେବେଳେ ସାଙ୍ଗରେ ଚୁଡ଼ା ଗୁଡ଼ ନେଇ ଯିବାକୁ ହୋଇଛି । ଗଛମୂଳେ ରୋଷେଇ କରି ଖାଇଛୁଁ । ଅନାହାରରେ ମଧ୍ୟ ଅନେକ ଦିନ କଟାଇଛୁଁ । କରୁଣାକର, ବିଶ୍ୱନାଥ ଓ ନୀଳାମ୍ବର ପ୍ରଭୃତି ମାସ ମାସ କାଳ ଭାତ ଖାଇବାକୁ ପାଇ ନାହାନ୍ତି । ଅନେକ ଦିନ କୋଳି ଖାଇ ରହିଯାଇଛନ୍ତି । ସେ ସମୟକାର ଗୋଟିଏ ଘଟଣା ମୁଁ କେବେ ଭୁଲି ପାରିବି ନାହିଁ । ଥରେ କରୁଣାକର ଓ ଅନ୍ୟ କେତେକ କର୍ମୀ ଜଙ୍ଗଲେଶ୍ୱର ଅଞ୍ଚଳରେ ଗସ୍ତ କରୁଥିଲୁଁ । ସେଇଠି ମୋତେ ଜ୍ୱର ଓ କରୁଣାକରଙ୍କୁ ଅମାଶୟ ହେଲା । ଜ୍ୱର ମୋତେ ୧୦୪ ଡିଗ୍ରୀ ପର୍ଯ୍ୟନ୍ତ ହେଉଥାଏ, କରୁଣାକରର ନାଲିଝାଡ଼ା ମଧ୍ୟ ସେହିପରି ଉତ୍କଟ । ବାଲେଶ୍ୱର ଚାଲି ଆସିବା ଛଡ଼ା ଅନ୍ୟ ବାଟ ନାହିଁ । ଅନ୍ୟ କର୍ମୀମାନଙ୍କୁ ଭିନ୍ନ ଭିନ୍ନ ଅଞ୍ଚଳକୁ ପଠାଇଦେଇ କରୁଣାକର ଓ ମୁଁ ସକାଳ ପ୍ରାୟ ୭ଟା ବେଳେ ବସ୍ତା ଷ୍ଟେସନକୁ ବାହାରିଲୁ । ସେଠା ଗାଡ଼ି ଧରି ବାଲେଶ୍ୱର ଆସିବୁ; ବସ୍ତା ଷ୍ଟେସନ ୧୮ ମାଇଲ ବାଟ । କମ୍ ବାଟ ପଡ଼ିବ ବୋଲି ବିଲବାଟେ ଆସିଲୁ । ମାତ୍ର ସେଥିରେ ବାଟବଣା ହେବାରୁ ଆହୁରି ବେଶି ବାଟ ପଡ଼ିଲା । ବିଲ-ବାଟ ଅର୍ଥ ହେଉଛି, ଗଛ ବୃକ୍ଷ କିଛି ନାହିଁ । ଖରେ ବାଟ ଯାଉଥାଏ, ଝାଡ଼ାଫେରି ବସୁଥାଏ, ପାଖେଇବାପାଇଁ ପାଣି ନ ଥାଏ, ଏପରି କରୁଣାକର ଚାଲିଥାଏ । ମୋ ଦେହରେ ଭରି ଜର ଥାଏ, ପ୍ରଚଣ୍ଡ ପିପାସା । ଦିନ ଏଗାରଟା ବାରଟା ବେଳକୁ ଖରା ଏଡ଼େ ଟାଣ ହେଲା ଯେ, ଆମେ ଛଟପଟ ହୋଇଗଲୁଣି । ଦୁହେଁଯାକ 'ଆତ୍ମା ଶରୀରଠାରୁ ପୃଥକ୍' ଏହି ବିଷୟ ଆଲୋଚନା କରି ଚାଲିଛୁଁ, ପାଖରେ ଅଛି ଦୁଇଟି ମାତ୍ର ପଇସା । ବାଟରେ ଜଣେ ସାନ୍ତାଳ ମୂଲିଆ ବିଲରେ କାମ କରୁଥାଏ । ତା' ଠାରେ ଗୋଟିଏ ଠେକିରେ ପାଣି ଥିବା ପରି ଜଣାଗଲା । ତାକୁ ପାଣି ମାଗିବାରୁ ସେ ବିରକ୍ତ ହେଲା, କହିଲା 'ତୁମକୁ ଦେବି ତ ମୁଁ କ'ଣ କରିବି !' କରୁଣାକର ତାକୁ ପଇସାଟିଏ ଦେବାରୁ ସେ ପାଣି ମୁନ୍ଦାଏ ଦେଲା—ସେଥିରୁ ସେ ଟିକିଏ ପିଇଲା, ମୁଁ ଟିକିଏ ପିଇଲି । ଆଉ ଟିକିଏ ଦୂର ଗଲାପରେ ଜଣେ ମୂଲିଆଠାରୁ ଅବଶିଷ୍ଟ ଥିବା ପଇସାଟିଏ ଦେଇ ମନ୍ଦାଏ ତୋରାଣି ପିଇ ଦୁହେଁ ଚାଲିଲୁଁ । ସେଦିନ ଆମେ ପ୍ରାୟ ସୁନିଶ୍ଚିତ ଜାଣିଥିଲୁ ଯେ, ବାଟରେ ଆମେ ମରିଯିବୁ; ମାତ୍ର ଶରୀର କଷ୍ଟରେ ବିଚଳିତ ହେବୁ ନାହିଁ ବୋଲି ଆମର ଦୃଢ଼ ପଣ । ଶେଷରେ ପ୍ରାୟ ଦୁଇଟା ବେଳକୁ ବସ୍ତା ଷ୍ଟେସନ ଧରିଲୁଁ । ତା'ର

ମାଇଲକ ପୂର୍ବରୁ ବାଟରେ ଜଣେ ଲୋକର ଘର ପଡ଼ିଲା । କରୁଣାକର ହଠାତ୍ ଘର ଭିତରକୁ ପଶିଯାଇ ତାର ବଡ଼ାହୋଇଥିବା ନୋରିଶିକୁ ପିଇଗଲା । ମୋତେ ଅତି ସଙ୍କୋଚବୋଧ ହେଉଥାଏ ଓ କରୁଣାକର ପ୍ରତି ରାଗ ହେଉଥାଏ ଯେ, ସେ ସବୁ ପିଇଗଲା, ମୋତେ ଦେଲାନାହିଁ । ଘରର ମାଲିକ ବିସ୍ମିତ ଓ ଅବାକ୍ ହୋଇ ଅନାଇଥାଏ । ସେ ଦେଖିଲା, ଆମେ ଅତି କ୍ଷୁଧିତ ଓ କ୍ଲାନ୍ତ । ସେ ଆମ ଦୁଇଜଣଙ୍କୁ ଖାଇବାକୁ ଓ ପିଇବାକୁ ଦେଇଥିଲା । ସେ ଜଣେ ସ୍କୁଲ ଶିକ୍ଷକ । ଯାହାହେଉ ବାଲେଶ୍ୱରରେ ପହଞ୍ଚିଲୁ । ଆଶ୍ଚର୍ଯ୍ୟର ବିଷୟ ଯେ, ବାଲେଶ୍ୱରରେ ପହଞ୍ଚିବା ପରେ ମୋର ଜର ନାହିଁ କି କରୁଣାକରର ଝାଡ଼ା ନାହିଁ ।

ଜିଲ୍ଲାର ଅନେକ ଅଞ୍ଚଳରେ ପାଣିର ଏତେ ଅଭାବ, ତା' ମୋ କଳ୍ପନାର ଅତୀତ ଥିଲା । ପିଇବା ପାଇଁ ପାଣି ଆଣିବାକୁ ଲୋକେ ସାତ ଆଠ ମାଇଲ ଦୂର ଯାଆନ୍ତି । କେଉଁଠି ଖଣ୍ଡେ ଖଣ୍ଡେ ଗ୍ରେଟ ଗଡ଼ିଆରେ ଝାଡ଼ାଫେରି ପାଞ୍ଚନ୍ତି, ବାସନ ମାଜନ୍ତି, ସେହି ପାଣି ମଧ୍ୟ ପିଅନ୍ତି । ଯେଉଁ ସବୁ ଅଞ୍ଚଳରେ ପାଣିର ନିତାନ୍ତ ଅସୁବିଧା ଥିଲା, ସେଠି ତାର କିଛିଟା ପ୍ରତିକାର ମୋ ଅଭିଜ୍ଞତା ଫଳରେ ଜିଲ୍ଲାବୋର୍ଡ଼ କରିଥାରେ ପରେ କରିଥିଲା ।

ପରେ ଦେଶସାରା ଯେଉଁ ଜାଗୃତି ଦେଖାଦେଲା, ତାହା ହେଉଛି ସେହି ଅସୁବିଧା ଭିତରେ ଗଠିତ କରି କଂଗ୍ରେସକୁ ଚଳାଇବାର ଫଳ । ମୋର ପ୍ରଥମ ଗସ୍ତ ପରେ ମୁଁ ଉପଲବ୍ଧି କଲି ଯେ, ଜମିଦାରମାନଙ୍କ ବିରୋଧରେ ମଧ୍ୟ ପ୍ରଚାର କରିବାକୁ ହେବ । ସମସ୍ତ ସହକର୍ମୀ ଏଥିରେ ସମ୍ମତ ହେଲେ । ସେହି ଅନୁସାରେ ଇଂରେଜ ସରକାର ଓ ତାଙ୍କର ପୋଷକ ସମସ୍ତଙ୍କ ବିରୋଧରେ ପ୍ରଚାର ଚାଲିଲା । ଏପରି କି ଯେଉଁଠି ଯାହା କିଛି ଅନ୍ୟାୟ, ସେଠି ତାର ବିରୋଧରେ ପ୍ରଚାର ହେଲା ଆମ କାମ ।

ନାନାବିଧ ଉପାୟରେ ପ୍ରଚାର କାର୍ଯ୍ୟ ଚାଲିଥାଏ । ସଭା ସମିତିରେ ବକ୍ତୃତା ଦେବା, ଘର ଘର ବୁଲି କହିବା, ସଙ୍ଗୀତ ଦଳମାନ ଗଠନ କରି ଜାତୀୟ ସଙ୍ଗୀତ ବୋଲି ଗ୍ରାମଆଡ଼େ ବୁଲିବା, କୀର୍ତ୍ତନ କରିଥାରେ ଜାତୀୟତା ପ୍ରଚାର—ଏସବୁ ଏକ ସଙ୍ଗରେ ଚାଲିଥାଏ । ବାଞ୍ଛାନିଧି ବାବୁ ଜଣେ ସୁଗାୟକ ଓ ସୁଲେଖକ ମଧ୍ୟ ଥିଲେ । ନାନାପ୍ରକାର ସୁର, ନାନାପ୍ରକାର ଗୀତ ରଚନା କରି ସେ ସଙ୍ଗୀତ ଦଳମାନ ସୃଷ୍ଟି କରୁଥିଲେ । ଜିଲ୍ଲାସାରା ଗ୍ରାମଆଡ଼େ ବାଞ୍ଛାନିଧି ବାବୁଙ୍କ ଗାନ ବୋଲା ହେଉଥାଏ । ସେ ଗାନ ସବୁ ଏକ ଅଦ୍ଭୁତ ଉନ୍ମାଦନା ଆଣିଥାଏ ।

ପଣ୍ଡିତ ଗୋପବନ୍ଧୁ ଆମ ଜିଲ୍ଲାର ଅନେକ ଅଞ୍ଚଳରେ ଗସ୍ତ କରିଥିଲେ । ବିହାରରୁ ମଝହରୁଲ୍ ହକ୍ ମଧ୍ୟ ଓଡ଼ିଶା ଗସ୍ତରେ ଆସି ଭଦ୍ରକକୁ ଆସିଥିଲେ ।

ସେତେବେଳେ ସ୍ୱରାଜ୍ୟ ଆନ୍ଦୋଳନ ସହିତ ଖିଲାଫତ୍ ଆନ୍ଦୋଳନ ଯୋଗ ହୋଇ-ଥିବାରୁ ମୁସଲମାନମାନେ ଅତି ଉତ୍ସାହରେ ମାତି ଥାଆନ୍ତି । ଭଦ୍ରକ ଓଡ଼ିଶା ଭିତରେ ମୁସଲମାନମାନଙ୍କର ଏକ କେନ୍ଦ୍ରସ୍ଥଳ ଥିବାରୁ ସେଠାରେ ଆନ୍ଦୋଳନର ଉନ୍ମାଦନା ବେଶୀ ଥାଏ ।

ଜୁନ୍ ୩୦ ତାରିଖ ହୋଇଗଲା; କଂଗ୍ରେସ ନିର୍ଦ୍ଧାରଣ ଅନୁସାରେ ସଭ୍ୟ ସଂଗ୍ରହ, ପାଣ୍ଠି ସଂଗ୍ରହ ଓ ଚରଖା ପ୍ରଚଳିତ ହେଲା । ଓଡ଼ିଶାରେ ସଭ୍ୟ ସଂଗ୍ରହ ଯଥାବିଧି ହୋଇଥିଲା; ମାତ୍ର ପାଣ୍ଠି ସଂଗ୍ରହ ନିର୍ଦ୍ଧାରଣ ଅନୁସାରେ ହୋଇପାରିଲା ନାହିଁ । ମୁଷ୍ଟିଭିକ୍ଷା ଚାଉଳକୁ ଲଗାଇ ମୋର ମନେ ହୁଏ ମୋଟ ଚାଳିଶ ହଜାର ଟଙ୍କାସରିକି ଆଦାୟ ହୋଇଥିଲା । ଚରଖା ପ୍ରଚାର ମଧ୍ୟ ସେପରି କିଛି ହୋଇପାରି ନ ଥିଲା । ସେ ଦିଗରେ ଉତ୍ସାହ ମଧ୍ୟ ବେଶୀ ଦେଖାଯାଇ ନଥିଲା । କିନ୍ତୁ ସମଗ୍ର ଦେଶପାଇଁ ନିର୍ଦ୍ଧାରିତ ସଂଖ୍ୟାର ସଭ୍ୟ, ଅର୍ଥ ଓ ଚରଖା ହୋଇଯାଇଥିଲା ।

ପୁଣି ନିଖିଳ ଭାରତ କଂଗ୍ରେସ କମିଟିର ପ୍ରସ୍ତାବ ହେଲା ଯେ, ସେପ୍‌ଟେମ୍ବର ମାସ ଭିତରେ ବିଦେଶୀ ବସ୍ତ୍ର ପୂର୍ଣ୍ଣଭାବରେ ବର୍ଜ୍ଜନ କରିବାକୁ ହେବ । ପ୍ରଥମରୁ ମୁଁ ନିଖିଳ ଭାରତ କଂଗ୍ରେସ କମିଟିର ସଭ୍ୟ ନିର୍ବାଚିତ ହୋଇଥିବାରୁ ବରାବର ଏହାର ବୈଠକରେ ଯୋଗ ଦେବାକୁ ଯାଉଥାଏ । ବମ୍ବେଠାରେ ଏ ବୈଠକ ହୋଇଥିଲା । ପଣ୍ଡିତ ଗୋପବନ୍ଧୁ, ନିରଞ୍ଜନ, ଭାଗୀରଥିବାବୁ ଓ ମୁଁ ଯାଇଥିଲୁ । ସେଠାରେ ବିଦେଶୀ ବସ୍ତ୍ରର ଏକ ବିଶାଳ ସ୍ତୂପରେ ମହାତ୍ମା ଗାନ୍ଧୀ ଅଗ୍ନିଦାନ କରିଥିଲେ । ଲକ୍ଷ ଲକ୍ଷ ଟଙ୍କାର ବିଦେଶୀ ଲୁଗା ପୋଡ଼ି ଭସ୍ମ ହୋଇଗଲା । ସେଠୁଁ ଫେରି ଆମ ଓଡ଼ିଶାର ଚାରିଆଡ଼େ ବିଦେଶୀ ଲୁଗା ପୋଡ଼ା ଆରମ୍ଭ ହେଲା । ବାଲେଶ୍ୱରରେ ସବୁଆଡ଼େ ଲୁଗା ପୋଡ଼ା ସାଙ୍ଗେ ସାଙ୍ଗେ ଏପରି ପିକେଟିଂ ବ୍ୟବସ୍ଥା କରିଥିଲୁ ଯେ, ଅନ୍ତତଃ ଛଅ ମାସ ପାଇଁ ବିଦେଶୀ ଲୁଗା ଆମ ଜିଲ୍ଲାକୁ ଆଣି-ଦେଇ ନଥିଲୁଁ । ପ୍ରତ୍ୟେକ ରେଲ ଷ୍ଟେସନରେ ସ୍ୱେଚ୍ଛାସେବକ ରଖାଇ ପିକେଟିଂ କରାଉଥିଲୁଁ । ପ୍ରତ୍ୟେକ ଲୁଗା ଗାଣ୍ଠିକୁ ଭଲକରି ତଦାରଖ କରି ଛାଡ଼ୁଥିଲୁଁ । ଯଦି କେହି ବ୍ୟବସାୟୀ କୌଣସି ସୂତ୍ରରେ ବିଦେଶୀ ଲୁଗା ଆଣିଲା, ତେବେ ତାକୁ ଏପରି ବାସନ୍ଦ କରାଉଥିଲୁଁ ଯେ, ସେ ଶହ ଶହ ଟଙ୍କା ଜରିମାନା ଦେଇ ଓ ଲୁଗାକୁ ପୋଡ଼ାଇ ମୁକ୍ତିଲାଭ କରୁଥିଲା ।

ଜଳେଶ୍ୱରରେ ଜଣେ ବ୍ୟବସାୟୀ ଜିଦ୍ କରି ବିଦେଶୀ ଲୁଗା ଆଣିବାରୁ ତାକୁ ଏପରି ବାସନ୍ଦ କରାହୋଇଥିଲା ଯେ, ତାଙ୍କ ଧାନ କଲରେ ଧର୍ମଘଟ ହେବା ସାଙ୍ଗେ ସାଙ୍ଗେ ଘରେ ଚାକର-ବାକର ସୁଦ୍ଧା କେହି ରହିଲେ ନାହିଁ । କରୁଣାକର

ଓ ସେଠାକାର ସ୍ଥାନୀୟ ସହାୟକ ନରେନ୍ଦ୍ର ଘୋଷ ଏହାଙ୍କୁ ଏପରି ସଫଳତାର ସହିତ କରାଇଥିଲେ ଯେ, ସେ ବ୍ୟବସାୟୀ ଅବଶେଷରେ ମୋ'ଠାରେ ପହଞ୍ଚିଲେ । ମୁଁ ଜଳେଶ୍ୱର ଯାଇ ତା'ର ଲୁଗା ଗାଣ୍ଠି କୁ ମୋହର ଦେଇ ବନ୍ଦ କରି ତାଙ୍କଠାରୁ ଅର୍ଥଦଣ୍ଡ ଆଦାୟ କରି ବିଷୟର ମୀମାଂସା କରି ଆସିଥିଲି ।

ଏହି ସମୟରେ ମୋର ସାନଭାଇ କାହ୍ନୁଚରଣ, ସେ ଭଦ୍ରଖ ସ୍କୁଲରେ ପଢୁଥିଲା, ସେ ପଢ଼ା ଛାଡ଼ି ଏହି ଜଳେଶ୍ୱର ଇଲାକାରେ କରୁଣାକରଙ୍କ ଅଧୀନରେ କାମ କରୁଥିଲା । ଏ ମଧ୍ୟ ବାବାଙ୍କର ମୋ ପ୍ରତି ଆହୁରି ବିରକ୍ତ ହେବାର କାରଣ ହୋଇଥିଲା । ମାତ୍ର ସେତେବେଳେ ମୁଁ ଘର, ବାପ, ମାଆ, ସ୍ତ୍ରୀ ସବୁ ଏକାବେଳକେ ଭୁଲି ଯାଇଥିଲି । ମୋର ଦୃଢ଼ତା ଦେଖି କେହି ମଧ୍ୟ ମୋ ପାଖ ପଶୁ ନ ଥିଲେ ।

ସରକାରୀ କଚେରୀ ବର୍ଜ୍ଜନ କାର୍ଯ୍ୟ ମଧ୍ୟ ଦ୍ରୁତ ଗତିରେ ଚାଲିଥାଏ । ଜିଲ୍ଲାର ଅନେକ ସ୍ଥାନରେ ଗ୍ରାମ-ପଞ୍ଚାୟତ ସବୁ ସ୍ଥାପନ ହୋଇ ସାରିଥାଏ । ପଞ୍ଚାୟତର ନିଷ୍ପତ୍ତିରେ ଅସନ୍ତୁଷ୍ଟ ହେଲେ ତା ବିରୋଧରେ ଅପିଲ କରିବାଲାଗି ସମସ୍ତ ଜିଲ୍ଲା ପାଇଁ ଗୋଟିଏ ପଞ୍ଚାୟତ କାଏମ୍ ହୋଇଥାଏ । ସେଥିରେ ମୁଖ୍ୟ ମୁଁ ଥାଏ । ବାଞ୍ଛାନିଧି ବାବୁଙ୍କ ସହିତରେ ଭଦ୍ରଖରେ ଜମିଦାରମାନେ କେହି ଖଜଣା ବାକି ନାଲିସ୍ କଲେ ନାହିଁ । ସେମାନେ ସମସ୍ତେ ଖଜଣା ବାକି ତାଲିକା କଂଗ୍ରେସ ଅଫିସରେ ଦେଇ ଦେଲେ । ଏହା ଫଳରେ ଭଦ୍ରଖରେ ଦ୍ୱିତୀୟ ହାକିମଙ୍କ କୋର୍ଟ ଅନେକ ମାସ ପର୍ଯ୍ୟନ୍ତ ବନ୍ଦ ହୋଇଯାଇଥିଲା । କଂଗ୍ରେସ ଅଫିସ ଖଜଣା ବାକି ତାଲିକାମାନ ରଖିନେଲା ସତ; ମାତ୍ର କାମରେ ବେଶୀ କିଛି କରିପାରିଲା ନାହିଁ ।

ଶ୍ରୀଜଙ୍ଗ ଗ୍ରାମରେ ପଞ୍ଚାୟତ ଶ୍ରୀ ଗୌରମୋହନ ଦାସଙ୍କ ଉଦ୍ୟମରେ ସଫଳତାର ସହିତ କାମ ଚାଲିଥାଏ । ସେଠି ଜମି ବିକ୍ରି ବନ୍ଧକ ରେଜିଷ୍ଟ୍ରି ମଧ୍ୟ ପଞ୍ଚାୟତରେ ହେଉଥାଏ । ଏହାଛଡ଼ା ବହୁତ ସତ୍ୱାସତ୍ୱ ବିଷୟକ ମୋକଦ୍ଦମା ଓ ଫୌଜଦାରୀ ମୋକଦ୍ଦମା ମଧ୍ୟ ଆମ୍ଭେମାନେ ଲାଗିପଡ଼ି ଫଇସଲା କରି ଦେଉଥାଉଁ । ମୋକଦ୍ଦମା ରଫା କରିବାରେ ମୋର ବେଶ୍ ସୁଖ୍ୟାତି ହୋଇଯାଇଥିଲା । ଏହି ସମ୍ପର୍କରେ ମୋର ଏକ ଅଭ୍ୟାସ ହୋଇଗଲା ଯେ, କୌଣସି ବିଷୟରେ ଏକାଧିକ ପକ୍ଷର ବିବାଦ ହେଲେ ମୁଁ ଏପରି ମତ ପ୍ରକାଶ କରେ, ଯାହା ପୁରାପୁରି କୌଣସି ମତର ସମର୍ଥକ ହୁଏ ନାହିଁ ବା ପୁରାପୁରି କାହାରି ବିରୋଧରେ ଯାଏ ନାହିଁ । ଅନେକ ପଞ୍ଚାୟତରେ ସତ୍ୱାସତ୍ୱ ବିବାଦ ନିଷ୍ପତ୍ତି ନେବାରେ ଲାଗିଲି । ବୁଝାଇ ସୁଝାଇ ନ୍ୟାୟରେ ଲୋକଙ୍କୁ ଚଳାଇବା ଲୋକ ଅତି ଅଳ୍ପ, ଏହା ସେ ସମୟରେ ପରିଷ୍କାର ଦେଖାଗଲା ।

ତା'ଛଡ଼ା ଆମେ ସମସ୍ତେ କର୍ମୀ, କେହିଂ ସଂସାର କରିନାହୁଁ । ତେଣୁ ଆମର ବିଷୟଜ୍ଞାନ ଅତି କମ୍ ଥିଲା । ତା ଫଳରେ ସେତେବେଳେ ଅନେକ ବଡ଼ ଓ ସ୍ଥାୟୀ କାମ କରିବାର ସୁବିଧା ହାତକୁ ଆସି ଖସିଗଲା । ଗାନ୍ଧିଜୀ ଓଡ଼ିଶା ଗସ୍ତବେଳେ ଓଡ଼ିଶାର ଦାରିଦ୍ର୍ୟ ଦେଖି ଏପରି ଅଭିଭୂତ ହୋଇଥିଲେ ଯେ, ସେ ଓଡ଼ିଶା ପ୍ରତି ସମସ୍ତ ଭାରତର ଦୃଷ୍ଟି ଆକର୍ଷଣ କରିଥିଲେ । ଓଡ଼ିଶାରେ ସାଧାରଣ ପ୍ରଚାର କାର୍ଯ୍ୟ ଓ ଖଦୀ କାର୍ଯ୍ୟ ପାଇଁ ମନେହୁଏ, ପ୍ରାୟ ୭୦ ହଜାର ଟଙ୍କା ସାହାଯ୍ୟ ସେ କରାଇ ଦେଇଥିଲେ । ସେଥିରୁ ଆମ ଜିଲ୍ଲା ମୋ ଉଦ୍ୟମରେ ପ୍ରାୟ ୧୦ ହଜାର ଟଙ୍କା ପାଇଥିଲା । ଆମର ଟିକିଏ ବେଶୀ ବିଷୟ ଜ୍ଞାନ ଥିଲେ ଏହାକୁ ମୂଳଧନ କରି ବା ସଞ୍ଚିତ ଭାବରେ ଖର୍ଚ୍ଚ କରି ଏତଦ୍ଦ୍ୱାରା ସ୍ଥାୟୀ କାମ କିଛି କରିଦେଇ ପାରିଥାନ୍ତୁ । ମାତ୍ର ଏ ଅର୍ଥଦ୍ୱାରା କେବଳ ଯାହା ପ୍ରଚାର କାର୍ଯ୍ୟ ହୋଇପାରିଥିଲା ଓ ସାଧାରଣଙ୍କ ଭିତରେ ଜାଗୃତି ଜନ୍ମାଇ ଦିଆହୋଇଥିଲା, ଆଉ ବେଶୀ କିଛି ହୋଇ ନ ଥିଲା । କେବଳ ବାଲେଶ୍ୱର ସ୍ୱରାଜ ମନ୍ଦିରକୁ ଗୋଟିଏ ଗଠନମୂଳକ କେନ୍ଦ୍ର କରିବାର ଉଦ୍ୟମ ହୋଇଥିଲା । ଏଠି ଆଖପାଖ ସାହିରେ ସୂତା କଟାଇ ତାକୁ ତନ୍ତରେ ବୁଣାଇ ବିକି କରାଉଥିଲୁଁ । ମନ୍ଦିରରେ ସାତଟି ତନ୍ତ ଚାଲୁଥିଲା । ମୁଁ ଏଇଠି ତନ୍ତକାମ ଶିଖିଥିଲି ଓ ବାଲେଶ୍ୱରରେ ଥିବା ସମୟରେ ପ୍ରତିଦିନ ସୂତାକଟା ଛଡ଼ା ତନ୍ତରେ ମଧ୍ୟ କିଛି ସମୟ ବୁଣୁଥିଲି । ପ୍ରଥମେ ମୋ ହାତବୁଣା ଟୁଇଲ ଚାଦର ଖଣ୍ଡେ କୃଷ୍ଣବାବୁ ଡାକ୍ତର ୧୦ ଟଙ୍କା ଦେଇ ନେଇଥିଲେ ।

ସ୍ୱରାଜ ମନ୍ଦିରର ଖଦି କାମ ୩/୪ ବର୍ଷ କାଳ ଚାଲି ଶେଷରେ ବନ୍ଦ ହେଲା । ସେ ବିଷୟରେ ପରେ ଆଲୋଚନା କରିବ ।

ଏଠାରେ ଆଉ ଗୋଟିଏ ବିଷୟ ଉଲ୍ଲେଖ କଲେ ସେ ସମୟର କଂଗ୍ରେସ କମିଟି ସମ୍ବନ୍ଧରେ ସାଧାରଣଙ୍କର ଏକ ଧାରଣା ହେବ । ଆମ ଜିଲ୍ଲା କଂଗ୍ରେସ କମିଟି ବୈଠକକୁ ମଫସଲରୁ ସଭ୍ୟମାନେ ଆସିବାବେଳେ, କିଛି କିଛି ଅର୍ଥ ସଂଗ୍ରହ କରି ଆଣି ଜିଲ୍ଲା କଂଗ୍ରେସ କମିଟିରେ ଜମା ଦେଉଥିଲେ । ଜିଲ୍ଲା କଂଗ୍ରେସ କମିଟି ବୈଠକ ପୂର୍ବରୁ ସଭ୍ୟମାନଙ୍କ ସଂଗୃହୀତ ଅର୍ଥ ଜମା ନେବା ଏକ କାମ ଥିଲା । ଜିଲ୍ଲା କଂଗ୍ରେସ କମିଟିରେ ବାଞ୍ଛାନିଧି ବାବୁ, ହନିଫ୍ ବାବୁ, ଘନଶ୍ୟାମ, କରୁଣାକର, ସୁବୋଧ ଏହିମାନେ ପ୍ରଧାନ ଥିଲେ । କର୍ମୀମାନଙ୍କ ଭିତରେ ନୀଳାମ୍ବର, ବିଶ୍ୱନାଥ, ବଂଶୀଧର ରଥ, ଉପେନ୍ଦ୍ର ଏମାନେ ପ୍ରଧାନ ଥିଲେ । ଆମ ସମସ୍ତଙ୍କ ଭିତରେ ଏକ ସଙ୍ଗରେ ନାନା ଅସୁବିଧା ଭିତରେ କାମ କରିବା ଫଳରେ ଏକ ପ୍ରକାର ପାରିବାରିକ ସ୍ନେହ ଜାତ ହୋଇଥିଲା । ଆମେ ସମସ୍ତେ ଘରଦ୍ୱାର ଛାଡ଼ି ଏକ ନୂତନ ପରିବାର ସୃଷ୍ଟି କରିଥିଲୁଁ । ଆମ ଭିତରେ ନାନା ବିଷୟରେ ମତଭେଦ

ହୁଏ, ଏପରି କି ଗାଳି ଦିଆଦେଇ ହେଉଁ; ମାତ୍ର ସେ ସବୁ ମୁହୂର୍ତ୍ତିକ ପାଇଁ । ପୁଣି ସମସ୍ତେ ମିଳାମିଶି ଏକ ସଙ୍ଗରେ ଅତି ବନ୍ଧୁତାର ସହିତ ଚାଲୁ । ଏ ବାୟୁମଣ୍ଡଳ କଥା ଭାବିଲେ ମନେହୁଏ, ତାହା ଆଜିସୁଦ୍ଧା କଂଗ୍ରେସରେ ଥାଆନ୍ତା କି ? ମାତ୍ର ତା' ବୋଧହୁଏ ହେବାର ନୁହେଁ । କିନ୍ତୁ ମୋର ସେହି ସମସ୍ତକାର ସହକର୍ମୀମାନେ, ଯେଉଁମାନେ ବଞ୍ଚିଛନ୍ତି ଓ ଯେଉଁମାନେ ଗଲେଣି, ସେମାନେ ବଞ୍ଚିଥିବା ପର୍ଯ୍ୟନ୍ତ ସମସ୍ତଙ୍କ ସହିତ ଆଜିସୁଦ୍ଧା ସେହିପରି ଭ୍ରାତୃଭାବ ଅଛି; ସେମାନଙ୍କର ମଧ୍ୟ ମୋ ପ୍ରତି ସେହିପରି ଭ୍ରାତୃଭାବ ଅଛି ବୋଲି ମୁଁ ଭାବୁଛି, ଘଟଣାଚକ୍ରରେ ରାଜନୈତିକ କାମ ଦୃଷ୍ଟିରୁ ଆମେ ପରସ୍ପରଠାରୁ ଦୂରକୁ ଚାଲିଯାଇଥିଲେ ମଧ୍ୟ !

କିନ୍ତୁ ଏ ପ୍ରକାର ବାୟୁମଣ୍ଡଳ ପ୍ରାଦେଶିକ କଂଗ୍ରେସ କମିଟିରେ ନ ଥିଲା— ପ୍ରଥମ କଥା, ପ୍ରାଦେଶିକ କଂଗ୍ରେସ କମିଟି ଖୁବ୍ ଟାଣୁଆ କମିଟି ନ ଥିଲା । ଫଳରେ ଜିଲ୍ଲା କଂଗ୍ରେସ କମିଟିଯାକ ପ୍ରାୟ ସ୍ୱାଧୀନ ଥିଲେ । ପ୍ରାଦେଶିକ କମିଟିଠାରୁ କଂଗ୍ରେସ ନିର୍ଦ୍ଧାରଣ ବିଷୟରେ ବିଶେଷ କିଛି ସୂଚନା ମିଳୁ ନ ଥିଲା; ତଥାପି ପ୍ରାଦେଶିକ କଂଗ୍ରେସ କମିଟି ପଣ୍ଡିତ ଗୋପବନ୍ଧୁଙ୍କ ଉଦାର ହୃଦୟ ଯୋଗୁଁ ଆମ ସମସ୍ତଙ୍କର ଏକ ଉତ୍ସାହର କେନ୍ଦ୍ର ଥିଲା ।

ପ୍ରାଦେଶିକ କଂଗ୍ରେସ କମିଟିରେ ନୂତନ ଅବସ୍ଥାର ଉପଯୋଗୀ କରି ସମସ୍ତଙ୍କୁ ନଜର କରି ସମସ୍ତଙ୍କୁ କର୍ମ-ପ୍ରବର୍ତ୍ତନା ଦେବା ଲୋକ ଯାହା କେବଳ ଗୋପବନ୍ଧୁ ଥିଲେ । ମାତ୍ର ତାଙ୍କର ଅନେକ ପୁରାତନ ସହକର୍ମୀ ଥିଲେ, ଯେଉଁମାନଙ୍କ ବିରୋଧରେ ବହୁତ କିଛି ଆମେ ସେହିମାନଙ୍କ ଗୁରୁମାନଙ୍କଠାରୁ ଶୁଣିଥିଲୁ । ଅନ୍ତତଃ ମଧ୍ୟ ସେମାନଙ୍କୁ କାର୍ଯ୍ୟରେ ସେପରି ଦମ୍ଭାକାଂକ୍ଷ ଦେଖିବାକୁ ପାଇଲୁ ନାହିଁ । ଏହି ହେତୁରୁ ପ୍ରାଦେଶିକ କଂଗ୍ରେସ କମିଟିରେ ଅନେକ ବିଷୟରେ ଟିକିଏ ଟଣାଟଣି ହୋଇଛି; ମାତ୍ର ସେପରି ଯେ କୌଣସି କମିଟିରେ ବା ଯେଉଁଠି ପାଞ୍ଚଜଣ ଏକାଠି ବସି ବିଚାର କରନ୍ତି, ସେଠି ହୋଇଥାଏ । ଗୋପବନ୍ଧୁ ଚୌଧୁରୀ ଡେପୁଟି ମାଜିଷ୍ଟ୍ରେଟ କାମ ଛାଡ଼ି ଆସିଥିବାରୁ ସମସ୍ତଙ୍କ ଆଖି ତାଙ୍କ ଉପରେ ପଡ଼ିଥାଏ । ରାୟବାହାଦୂର ଗୋକୁଳାନନ୍ଦ ଚୌଧୁରୀଙ୍କ ପୁଅ, ଜଣେ ଡେପୁଟି ମାଜିଷ୍ଟ୍ରେଟ, ଯେଉଁଥିପାଇଁ କେତେ ଶିକ୍ଷିତ ଯୁବକ ଜୀବନ ଲେଖେଇ ଦେଉଛନ୍ତି । ସେ ସବୁ ଛାଡ଼ି କଂଗ୍ରେସରେ ମିଶିବା ଅବଶ୍ୟ ଏକ ବଡ଼ କଥା; ମାତ୍ର ଗୋପବନ୍ଧୁ ଚୌଧୁରୀ କେବେହେଲେ ଏ ତ୍ୟାଗର ଅହଂଭାବ ପୋଷଣ କରି ନିଜକୁ ଅନ୍ୟମାନଙ୍କ ଉପରେ ସେତେବେଳେ ଚପାଉ ନଥାନ୍ତି । ସେତେବେଳେ ପ୍ରାୟ ସବୁଥିରୁ ସେ ଅଲଗା ରହିଲା ପରି ଥାଆନ୍ତି । ଭାଗୀରଥି ବାବୁ ପ୍ରାଦେଶିକ କଂଗ୍ରେସ କମିଟିର ସମ୍ପାଦକ କାର୍ଯ୍ୟ ଅତି ଦକ୍ଷତାର ସହିତ ଚଳାଉଥାନ୍ତି । ସେ ଉଦୀୟମାନ ଓକିଲ ଥିଲେ । ଓକିଲାତି ଛାଡ଼ି ସେ କଂଗ୍ରେସରେ ପୂର୍ଣ୍ଣପ୍ରାଣ ଦେଇ କାମ

କରୁଥିଲେ । ତାଙ୍କର ମଧ୍ୟ ଗୋପବନ୍ଧୁଙ୍କ ପ୍ରତି ଯଥେଷ୍ଟ ସମ୍ମାନ ଥିଲା; ମାତ୍ର ସେ ଗୋପବନ୍ଧୁଙ୍କ ପୁରୁଣା ସହକର୍ମୀମାନଙ୍କ ପ୍ରତି ଆକୃଷ୍ଟ ନ ଥିଲେ । ନିରଞ୍ଜନ ପଟ୍ଟନାୟକ କଲିକତାରେ ଓକିଲାତି ପଢ଼ା ଛାଡ଼ି ଆସିଥିଲେ । ସେ ଲେଖା ପଢ଼ାରେ ପାରଙ୍ଗମ ଥିଲେ । ଟିକିନିଖି କରି ସବୁକଥା ଆଲୋଚନା କରିବା ତାଙ୍କର ଅଭ୍ୟାସ ଥିଲା ଓ ସେ ଅଭ୍ୟାସ ପ୍ରଶଂସନୀୟ, ସେଥିରେ ସନ୍ଦେହ ନାହିଁ । ତେଣୁ ନିରଞ୍ଜନ କମିଟିରେ ବେଶୀ ଭାଗ ନେଉଥିଲେ । ଏହା ସମ୍ଭବ ଯେ, ତାଙ୍କର ଟିକିନିଖି ଆଲୋଚନା ଅନେକଙ୍କୁ ସୁଖ ଲାଗୁ ନ ଥିବ; ମାତ୍ର ତାଙ୍କର ଗୋପବନ୍ଧୁଙ୍କ ପ୍ରତି ପ୍ରଗାଢ଼ ଭକ୍ତି ଥିଲା । ସେ ମଧ୍ୟ ଗୋପବନ୍ଧୁଙ୍କ ପୁରାତନ ସହକର୍ମୀମାନଙ୍କ ପ୍ରତି ଆକୃଷ୍ଟ ନ ଥିଲେ ।

ମୁଁ ଏ ବିଷୟରେ କିଛି ଲେଖି ନ ଥାନ୍ତି । ମାତ୍ର ଲୋକେ ରେ, ଗୋପନ ପ୍ରଚାରରେ ଏ କଥାକୁ ଗୋପବନ୍ଧୁଙ୍କ ପୁରାତନ ସହକର୍ମୀମାନଙ୍କ ଭିତରୁ କେତେକ ଏପରି କରି ଥୋଇଦେଇଛନ୍ତି ଯେ, ସେ ବିଷୟରେ ମୋତେ ଯାହା ଜଣା, ତାହା ସାଧାରଣଙ୍କୁ ଜଣାଇବା ଦରକାର ପଡ଼ୁଛି ।

ଗୋପବନ୍ଧୁ ମଧ୍ୟ ନିଜେ କେତେଥର ବଡ଼ ଟଣାଟଣିରେ ପଡ଼ିଛନ୍ତି । ପୁରାତନ ସହକର୍ମୀ ଏକ ଦିଗରେ, ଅନ୍ୟ ଦିଗରେ ନୂତନ ସହକର୍ମୀଦଳ । ନିଜର ହୃଦୟର ଜୋରରେ ସେ ଏ ଟଣାଟଣିରୁ ପାର୍ ପାଇଛନ୍ତି । ଥରେ ଦୁଇଥର ସେ ପ୍ରାଦେଶିକ କଂଗ୍ରେସ କମିଟିର ବୈଠକରେ ବାଧା ପକାଇଛନ୍ତି, ତାଙ୍କୁ କେହି କିଛି କହିଲା ବୋଲି ତାହା ନୁହେଁ—ଯେତେବେଳେ ସେ ନିଜର ପୁରାତନ ସହକର୍ମୀ ଓ ନୂତନ ସହକର୍ମୀଙ୍କ ଭିତରେ ତରଜୁ ଠିକ୍ ରଖିପାରୁ ନ ଥିଲେ, ସେତେବେଳେ ନିଜର ଅଶ୍ରୁରେ ସେ ଅବସ୍ଥାର ସମାଧାନ କରୁଥିଲେ—ଏହା ହିଁ ହେଉଛି ପ୍ରକୃତ କଥା ।

ଗୋପବନ୍ଧୁଙ୍କ ଜଣେ ପୁରାତନ ସହକର୍ମୀ ସମ୍ବଲପୁରରେ ଓ ଅନ୍ୟ ଜଣେ ସିଂହଭୂମିର ଚକ୍ରଧରପୁରରେ ଯେପରି ଭାବରେ କାର୍ଯ୍ୟ କରୁଥିଲେ, ସେ ବିଷୟରେ ବିରୁଦ୍ଧ ସମାଲୋଚନା ପ୍ରାଦେଶିକ କଂଗ୍ରେସ କମିଟିରେ ହୋଇଛି । ନିଖିଳ ଭାରତ କଂଗ୍ରେସ କମିଟିରୁ ଓଡ଼ିଶାପାଇଁ ଯେଉଁ ଅର୍ଥ ସାହାଯ୍ୟ ଆସୁଥିଲା, ତାକୁ ବିତରଣ କଲାବେଳେ ଗୋପବନ୍ଧୁଙ୍କ ପୁରାତନ ସହକର୍ମୀମାନେ ଯେପରି ଆଚରଣ କରୁଥିଲେ, ତା'ର ମଧ୍ୟ ବିରୁଦ୍ଧ ସମାଲୋଚନା ହୋଇଛି । ଏହିପରି ଅନେକ ବିଷୟରେ ଟିକିଏ ଟିକିଏ ଟଣାଟଣି ହୋଇଛି—ମାତ୍ର ତାହା ସାମାନ୍ୟ ।

ମୋଟ ଉପରେ ବିଚାର କଲେ ଜଣାଯିବ ଯେ, ଓଡ଼ିଶାର ସମବେତ କର୍ମଠ ରାଜନୀତିକ ଜୀବନ ନୂଆ ହୋଇ ଆରମ୍ଭ ହେଉଥିବା ସ୍ଥଳେ, ସେତେବେଳେ

ଯେତେଦୂର ସମ୍ଭବ ମିଳିମିଶି ସମସ୍ତେ କାର୍ଯ୍ୟ କରୁଥିଲେ ଓ ତାହା କେବଳ ସମ୍ଭବ ହୋଇଥିଲା ପଣ୍ଡିତ ଗୋପବନ୍ଧୁଙ୍କ ହୃଦୟବତ୍ତା ଯୋଗୁଁ—ଏ ବିଷୟରେ ଏତିକି ।

୬

ସେପ୍ଟେମ୍ବର ୩୦ ତାରିଖ ପୂର୍ବର ଗୋଟିଏ ଘଟଣା ଉଲ୍ଲେଖଯୋଗ୍ୟ । ମୁଁ ଆମ ସ୍ୱରାଜ୍ୟ ମନ୍ଦିରରେ ବସି ଲୁଗା ବୁଣୁଥାଏଁ । ଏହି ସମୟରେ କିଏ ଖବର ଦେଲା ଯେ ଜଣେ ଗାଡ଼ିବାଲା ଷ୍ଟେସନରେ ଥିବା ସ୍ୱେଚ୍ଛାସେବକମାନଙ୍କ ପିକେଟିଂ ନ ମାନି ଜିଦ୍‌କରି ବିଦେଶୀ ଲୁଗା ଗାଡ଼ିରେ ଆଣୁଛି ଓ ଆସି ଆମ ଅଫିସ ଆଗ ରାସ୍ତାରେ ହେଲାଣି । ମୁଁ ହଠାତ୍ ତନ୍ତରୁ ଉଠିପଡ଼ି ଦୌଡ଼ିଯାଇ ମନ୍ଦିର ସାମନା ରାସ୍ତାରେ ସେ ଗାଡ଼ି ଆଗରେ ଶୋଇପଡ଼ିଲି । ମୋ ସଙ୍ଗରେ ଭୈରବ, ଅଭିରାମ, ନନ୍ଦ ପ୍ରଭୃତି ଆଉ ତିନି ଚାରିଜଣ ମଧ୍ୟ ସେହିପରି ଶୋଇପଡ଼ିଲେ । 'ରାସ୍ତା ଅବରୋଧ' ଅପରାଧରେ ଆମେ ସମସ୍ତେ ଧରାହେଲୁଁ ଓ ପ୍ରତ୍ୟେକଙ୍କୁ ୨୫ ଟଙ୍କା ଜରିମାନା, ନ ଦେଲେ ୧୫ ଦିନ କରି ବିନାଶ୍ରମ ଜେଲ ହେଲା । ଜେଲ ଏହି ଅଯମାରମ୍ଭ । ଜେଲରେ ଲୁହାବାଟି, ବାଲିମିଶା ଚାଉଳ, କମ୍ବଳ କାରବାର ଏସବୁର ସୂଚନା ମିଳିଲା । ମାତ୍ର ଅଳ୍ପଦିନ ପାଇଁ । ଜରିମାନା ନ ଦେଇ ଆମେ ଜେଲ ବରଣ କଲୁଁ । ଏ ପ୍ରଥମ ଅଭିଜ୍ଞତା ଅତି କୁତୂହଳପ୍ରଦ । ଯାହା ହେଉ ଆମ ଜେଲଯିବା ଫଳରେ ସେ ଗାଡ଼ିବାଲା ଓ ଲୁଗା ବ୍ୟବସାୟୀ ଗାଣ୍ଡି ବନ୍ଦକରି କଂଗ୍ରେସ ଆଦେଶ ଶିରୋଧାର୍ଯ୍ୟ କରିଥିଲେ ।

୭

ବର୍ତ୍ତମାନ ସେପ୍ଟେମ୍ବର ୩୦ ତାରିଖ ହୋଇଗଲା । ମହାତ୍ମା ଗାନ୍ଧୀ ନିର୍ଦ୍ଦେଶ ଦେଲେ ଯେ, ସବୁ ଦେଶରେ ସବିନୟ ଆଇନ ଅମାନ୍ୟପାଇଁ କ୍ଷେତ୍ର ପ୍ରସ୍ତୁତ କରାହେଉ । ସେଥିପାଇଁ ଅନେକଗୁଡ଼ିଏ ସର୍ତ୍ତ ସେ ଦେଇଥିଲେ । ଲୁଗା ବିଷୟରେ ଅରଟ ଦ୍ୱାରା ସ୍ୱାବଲମ୍ବୀ ଯେ ଅଞ୍ଚଳ ହୋଇଥିବ, ଯେଉଁ ନିଶାବିବର୍ଜିତ ହୋଇଥିବ, ହିନ୍ଦୁ ମୁସଲମାନ ଏକତା ଥିବ, ଲୋକେ ଅହିଂସାପରାୟଣ ଥିବେ, ଏପରି ଅଞ୍ଚଳରେ ସବିନୟ ଆଇନ ଅମାନ୍ୟ ଚାଲିଥିବାବେଳେ ଅନ୍ୟସବୁ ଅଞ୍ଚଳରେ ପୂର୍ଣ୍ଣ ଶାନ୍ତି ପରିରକ୍ଷିତ ହେବ । ଏହି ନିର୍ଦ୍ଦେଶ ଅନୁଯାରେ ଆମ ପ୍ରାଦେଶିକ କଂଗ୍ରେସ କମିଟି ସବୁ ଜିଲାକୁ ନିର୍ଦ୍ଦେଶ ଦେଲେ କ୍ଷେତ୍ର ପ୍ରସ୍ତୁତ କରିବାପାଇଁ । ତଦନୁସାରେ ବାଲେଶ୍ୱରରେ ଆମେ ଏକ ଅଞ୍ଚଳ ପ୍ରସ୍ତୁତ କଲୁ । ବସ୍ତା ଥାନାରେ ସାର୍ଥା ଅଞ୍ଚଳକୁ ଆମେ ବାଛିଥାଉଁ । ସେତେବେଳେ ଚାରିଆଡ଼େ ଲୋକଙ୍କର ପ୍ରବଳ ଉତ୍ସାହ । ଜନତା ଅତି ଉତ୍‌କ୍ଷିପ୍ତ ଅବସ୍ଥାରେ ଥାଏ । ବହୁଦିନର ଜଡ଼ତା ଭାଙ୍ଗିଯାଇ ଏକ ନୂତନ ଆଶାରେ ସାଧାରଣ ଲୋକ ମାତି ଥାଆନ୍ତି । ଚତୁର୍ଦ୍ଦିଗ 'ଜୟ ମହାତ୍ମା ଗାନ୍ଧିଙ୍କ ଜୟ' ନିନାଦରେ ଝଙ୍କାରିତ ହେଉଥାଏ । ସେତେବେଳେ ମୁଁ କେତେଆଡ଼େ କହିଛି ଯେ, ଯଦି ନିର୍ଦ୍ଦେଶ ଆସେ, ଏକାଦିନେ ଏକାବେଳେ ସବୁ ଥାନାକୁ ଦଖଲ କରିନେବୁଁ,

ବ୍ରିଟିଶ୍ ସରକାରଙ୍କର ସାଧ ନାହିଁ ତାକୁ ଅଟକାଇବାକୁ; ମାତ୍ର ସେତେବେଳେ ଗାନ୍ଧିଜୀ ଯେଉଁ ସର୍ତ୍ତିମାନ ଦେଇଥିଲେ, ତାକୁ ପୂରଣ କରିବା ଦାଗରେ ଆମର ଦୃଷ୍ଟି ନ ଥିଲା; କେବଳ ସେ ସବୁର ପ୍ରଚାର ଛଡ଼ା ଅନ୍ୟ କିଛୁ ହୋଇ ନ ଥିଲା; ଲୋକଙ୍କ ଉତ୍ସାହରେ ଆମେ ସନ୍ତୁଷ୍ଟ ଥିଲୁଁ । ତା' ଛଡ଼ା ସବଶସ୍ତ୍ର ଆଇନ ଅମାନ୍ୟ କଅଣ, ତା'ର ରୂପରେଖ କପରି ସେ ସମ୍ବନ୍ଧରେ ଆମର କାହାରି କିଛି ଧାରଣା ନ ଥାଏ। ଗୋଟିଏ ପ୍ରତିଷ୍ଠିତ ଶାସନର ଦମନନୀତି ଆଗରେ ଛିଡ଼ା ହେବାପାଇଁ ଯେଉଁ ଧୈର୍ଯ୍ୟ, ସଂଯମ ଓ ତ୍ୟାଗ ଦରକାର, ତା' ମଧ୍ୟ କଳ୍ପନାକୁ ଆସୁ ନ ଥିଲୁଁ । ମୁଁ ବର୍ତ୍ତିମାନ ଭାବି ଦେଖୁଛି ଯେ, ସେତେବେଳେ ଯଦି ଗାନ୍ଧିଜୀ ଆଖିବୁଜି ଆଇନ ଅମାନ୍ୟପାଇଁ ନିର୍ଦ୍ଦେଶ ଦେଇ ଥାଆନ୍ତେ, ତେବେ ସର୍ବନାଶ ଘଟି ଯାଇ ଥାଆନ୍ତା ; ଯେ ଜାଗରଣ ସେତେବେଳେ ଅଙ୍କୁରିତ ହୋଇଥିଲା, ତାହା ପ୍ରଚଣ୍ଡ ଦମନନୀତିରେ ପୋଡ଼ି ଭସ୍ମ ହୋଇ ଥାଆନ୍ତା । ଲୋକେ ପୁଣି ସେ ପୁରୁଣା ନିରାଶାର ଜଡ଼ତା ଭିତରକୁ ଫେରି ଯାଇଥାନ୍ତେ । ସୌଭାଗ୍ୟର ବିଷୟ ଯେ, ଜଣେ ସୁଦକ୍ଷ ନେତା ଆମର ଥିଲେ, ସେ କୌଣସିମତେ ଆଇନ ଅମାନ୍ୟ ପାଇଁ ନିର୍ଦ୍ଦେଶ ଦେଇ ନ ଥିଲେ ।

ସେତେବେଳେ କାହିଁକି ନିର୍ଦ୍ଦେଶ ଆସୁ ନାହିଁ ବୋଲି ଅତ୍ୟଧିକ ଉଦ୍‌ବେଗ ଓ ଆନୁସଙ୍ଗିକ ବିରକ୍ତି ଜାତ ହେଉଥିଲା, ଆଜି ବୁଝୁଛି ତାହାଥିଲା ଅପରିପକ୍ୱ ଉତ୍ସାହର ପରିଣତି ।

ମୋର ମନେଅଛି, ସେହି ସାର୍ଥାରୁ ଥରେ କୋଡ଼ିଏ ପଚିଶ ଜଣ ଲୋକ ବାଲେଶ୍ୱର ଆସି ସ୍ୱରାଜ ମନ୍ଦିରରେ କହୁଥାନ୍ତି କ'ଣ କରିବା, କିଛି ଆଦେଶ ତ' ଆସିଲା ନାହିଁ, ଆମେ ସବୁ ତିଆର । ଆମ ଗାଁର ଜେଲ ଯିବେ ବୋଲି ବସିଛନ୍ତି, କଅଣ କହୁଛନ୍ତି ? ମୁଁ ଏ କଥା ଶୁଣି ମନ ଭିତରେ ଅସ୍ଥିର ହେଉଥାଏ ଯେ, କାହିଁକି କିଛି ଆଦେଶ ଆସୁନାହିଁ; ମାତ୍ର ମୁହଁରେ ସେମାନଙ୍କୁ ବୁଝାଇ କହିଲି ଯେ, ଅପେକ୍ଷା କରିବାକୁ ହେବ । ଇତିମଧ୍ୟରେ ସୂତାକଟା ଜୋର୍‌ସୋରରେ ଚାଲିଥାଏ । ସୂତାକଟା ପ୍ରଭୃତି ଖାଲି କଥାର କଥା ହୋଇଥାଏ--ତା' ଉପରେ ଦୃଷ୍ଟି ନ ଥାଏ ।

ଏହିପରି ଦେଶସାରା ଯେତେବେଳେ ବାତୁଳ ଉନ୍ମାଦନା, ସେତେବେଳେ କଲିକତାରେ ସି. ଆର. ଦାସ ପ୍ରମୁଖ ନେତା ଓ ହଜାର ହଜାର ସ୍ୱେଚ୍ଛାସେବକ ଗିରଫ୍ତାର ହୋଇଗଲେ । ସ୍ୱେଚ୍ଛାସେବକ ଦଳମାନ ବେଆଇନ ଘୋଷିତ ହୋଇଗଲା । ପ୍ରଥମେ ଏହି ଆଦେଶ ଅମାନ୍ୟ କରିବାପାଇଁ ଗାନ୍ଧିଜୀ ଆଦେଶ ଦେଲେ, ମାତ୍ର ଯେ ଅମାନ୍ୟ କରି ସ୍ୱେଚ୍ଛାସେବକ-ଦଳଭୁକ୍ତ ହୋଇ କାରାବରଣ କରିବାକୁ ଯିବ,

ସେ ଖଦଡ଼ ପିନ୍ଧୁଥିବ, ସୂତା କାଟୁଥିବ, ନିଶା ଖାଉ ନ ଥିବ, ହିନ୍ଦୁ-ମୁସଲମାନ ଭେଦଭାବ ନ ଥିବ, ଏପରି ଅନେକ ସର୍ତ୍ତ ଗାନ୍ଧିଜୀ ନିରୂପଣ କରିଥିଲେ । ଏସବୁ ସର୍ତ୍ତ ଖାଲି ମୁହଁର କଥା ହୋଇଗଲା । ନାଁ ଲେଖାଇ ଜେଲଯିବା ହେଲା ମୂଳକଥା । କଲିକତାରେ ଦଳକ ପରେ ଦଳେ ଜେଲ ଯିବାର ଖବର ପ୍ରତିଦିନ ମିଳୁଥାଏ । ତେଣେ ମାଲବାରରେ ମୋପ୍ଲା ବିଦ୍ରୋହିର ଓ ମୋପ୍ଲାମାନଙ୍କ ପ୍ରତି ହେଉଥିବା ଅତ୍ୟାଚାରର ଲୋମହର୍ଷଣକାରୀ କାହାଣୀମାନ ଶୁଣାଯାଉଥାଏ । ଉନ୍ମାଦନା ବଢ଼ିବାରେ ଲାଗିଥାଏ । ଏହି ସମୟରେ ବାଲେଶ୍ୱରରେ ଅବକାରୀ ଦୋକାନ ପଟ୍ଟା ଦେବାପାଇଁ ନିଲାମ ଡକା ହେବାର ତାରିଖ ଦିନ ଆମେ ସେଠି ପିକେଟିଂ କରିଥିଲୁଁ । ମାଜିଷ୍ଟ୍ରେଟଙ୍କ କଚେରୀ ଆଗରେ କେହି ଲୋକ ନିଲାମ ଧରି ନାହିଁ ବୋଲି ଜୋର କରିଥିଲୁଁ । ଏଥିରେ ପ୍ରାୟ ୨୫ ଜଣ ପର୍ଯ୍ୟନ୍ତ ଗିରଫ ହୋଇ ଜେଲ ଯାଇଥିଲେ । ସେଥିରେ ସୁବୋଧ ଅଗ୍ରଣୀ ଥିଲା । ଆମ ଏ ପିକେଟିଂ ଫଳରେ ସେଦିନ ନିଲାମ ଡାକ ବନ୍ଦ ହୋଇ ଯାଇଥିଲା ଓ ମୋର ମନେହୁଏ, ସେ ବର୍ଷ ପ୍ରକାଶ୍ୟ ନିଲାମ ଡାକ ନ ହୋଇ ଲୁଚିଲୁଚି କରି ସେ କାମ କରି ନେଇଥିଲେ ।

ଆଇନ ଅମାନ୍ୟ କରି ଜେଲ ଯିବାପାଇଁ ବାତାବରଣ ତିଆରି ହୋଇ ଯାଇଥିଲା । ଉପରୋକ୍ତ ଘଟଣା ତାର ଏକ ଉଦାହରଣ । ଅବଶେଷରେ କଂଗ୍ରେସର ବାର୍ଷିକ ଅଧିବେଶନ ଅହମଦାବାଦରେ ହେଲା । ଏ କଂଗ୍ରେସରେ ଯୋଗ ଦେବାପାଇଁ ଓଡ଼ିଶାରୁ ୧୬୭ ଜଣ ଯାଇଥିଲେ । ଓଡ଼ିଶା ଇତିହାସରେ ଏହା ଏକ ଅଭିନବ ଘଟଣା । ୧୬୭ ଜଣ ମଧ୍ୟରୁ ଅନେକ ଅନ୍ୟଠାରୁ ଅର୍ଥ ସଂଗ୍ରହ କରି ଅହମଦାବାଦ ଯାଇଥିଲେ । ବାଲେଶ୍ୱରରୁ ୫୩ ଜଣ ଏ କଂଗ୍ରେସକୁ ଯାଇଥିଲେ ।

ଅହମଦାବାଦ କଂଗ୍ରେସର ନିର୍ବାଚିତ ସଭାପତି ଥିଲେ ହକିମ୍ ଅଜମଲ ଖାଁ । ଅଭୂତପୂର୍ବ ଉନ୍ମାଦନା ଭିତରେ କଂଗ୍ରେସ ଅଧିବେଶନ ଚାଲିଥାଏ । କଂଗ୍ରେସ ମହାତ୍ମା ଗାନ୍ଧୀଙ୍କ ଉପରେ ଆଇନ ଅମାନ୍ୟ ଆନ୍ଦୋଳନର ଭାର ପୁରାମାତ୍ରାରେ ଦେଲେ ।

ବିପୁଳ ଉତ୍ସାହ ନେଇ ଓଡ଼ିଶାର ପ୍ରତିନିଧିମାନେ ଫେରିଲେ । ୧୯୨୨ ଜାନୁୟାରିଠାରୁ ଜୁନ ପର୍ଯ୍ୟନ୍ତ ଓଡ଼ିଶା ପକ୍ଷରେ ପ୍ରଚଣ୍ଡ ରାଜନୀତିର ସମୟ । ଏହି ସମୟରେ ପ୍ରଦେଶବ୍ୟାପୀ ଗୃହଦାହ, ମାରାତ୍ମକ ବ୍ୟାଧିପରି ବ୍ୟାପିଗଲା । ମୋଟ ପ୍ରାୟ ୨୫,୦୦୦ ଘର ପୋଡ଼ି ଯାଇଛି । ଏହି ସମୟରେ କନିକାର ଜମିଦାର ଇଲାକାରେ ମେଳି ହୋଇ ଘରଲୁଟି, ଗୁଳି ଓ ଅକଥନୀୟ ଅତ୍ୟାଚାର ହୋଇଯାଇଛି । ଏହି ସମୟ ଭିତରେ ଓଡ଼ିଶାର ବରିଷ୍ଠ ନେତାମାନେ ଜେଲ ଯାଇଛନ୍ତି ।

ଏସବୁର କଥିତ ବିବରଣ ଲେଖିବା ଦରକାର ଏବଂ ତତ୍‌ସହିତ ମୋର ସମ୍ପର୍କ ମଧ୍ୟ ଜଣାଇବା ଦରକାର ।

**ପ୍ରଥମ ଘରପୋଡ଼ି**—କଟକରେ ଏହା ପ୍ରଥମେ ଆରମ୍ଭ ହୁଏ । ସହରର ସାହି ସାହି ଧୁ ଧୁ କରି ଦିନ ଦି'ପହରେ ନିଆଁ ଲଗିଯାଉଥାଏ । କିପରି ଲାଗୁଥାଏ ଓ କିଏ ଲଗାଉଥାଏ, ଏହା ଏକ ରହସ୍ୟର ବିଷୟ ହୋଇ ରହିଥାଏ । ଜନସାଧାରଣଙ୍କ ବିଶ୍ୱାସ ଯେ, ପୋଲିସ ତରଫରୁ ଏହା ଲଗାହେଉଥିଲି, ଉଦ୍ଦେଶ୍ୟ ଏହି ଯେ, ଅସହଯୋଗ ଆନ୍ଦୋଳନ ଫଳରେ ଅରାଜକତା କିପରି ବୃଦ୍ଧି ପାଇଛି, ତାହା ପ୍ରମାଣ କରିବା । କେତେକ ପୋଲିସ କର୍ମଚାରୀ ପ୍ରଥମେ ପ୍ରଚାର କରିଥିଲେ ଯେ, କଂଗ୍ରେସବାଲାମାନେ ଲୋକଙ୍କ ଘରେ ନିଆଁ ଲଗାଇ ଦେଉଛନ୍ତି; ମାତ୍ର ଜନମତ ପ୍ରମାଣ ଓ ବିଶ୍ୱାସ ସହିତ ଘୋଷଣା କଲେ ଯେ, କେତେକ ପୋଲିସ କର୍ମଚାରୀ ଏହାର କର୍ତ୍ତା । ଏଣୁ ସାହି ଭିତରକୁ ପୋଲିସ-କନେଷ୍ଟବଳଙ୍କୁ ସୁଦ୍ଧା କେହି ପୂରିବାକୁ ଦେଉ ନ ଥାନ୍ତି । ଘରପୋଡ଼ି ସଙ୍ଗେ ସଙ୍ଗେ ପୋଲିସ କନେଷ୍ଟବଳଙ୍କ ଉପରେ ମାଡ଼ ମଧ୍ୟ ଚାଲିଥାଏ । ପୋଲିସ କର୍ମଚାରୀଙ୍କୁ ମାରିଥିବା ଅପରାଧରେ ଏହି ସମୟରେ ଅନେକଙ୍କୁ ଜେଲ ଦିଆହୋଇଛି ।

ଥରେ ମୁଁ କଟକ ବ୍ରହ୍ମଚର୍ଯ୍ୟାଶ୍ରମରେ ଥାଏ । ସନ୍ଧ୍ୟାବେଳେ ତେଲିଙ୍ଗା ବଜାରରେ ଧୁ ଧୁ କରି ନିଆଁ ଲାଗିଲା । ଏତେ ଜୋରରେ ନିଆଁ ଜଳୁଥାଏ ଯେ, ଆଶ୍ରମ-କୋଠା ଉପରକୁ ତାହା ଦେଖା ଯାଉଥାଏ । ଲୋକ କୋଳାହଳ ମଧ୍ୟ ଶୁଣାଯାଉଥାଏ । ଏ ଦୃଶ୍ୟ ଦେଖି ମୁଁ ଅଭିଭୂତ ହୋଇଗଲି । ଏ ସମୟରେ ଆମର କର୍ତ୍ତବ୍ୟ କଅଣ, ଏ ପ୍ରଶ୍ନ ମୋ ମନରେ ଉଠିଲା । ପଣ୍ଡିତ ଗୋପବନ୍ଧୁ ସେହିଦିନ କଟକ ଅତିଥି ଥାନ୍ତି ଓ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ସହ ବମ୍ବେ ଯିବାପାଇଁ ପ୍ରସ୍ତୁତ ହେଉଥାଆନ୍ତି । ମୁଁ ଯାଇ ତାଙ୍କୁ କହିଲି –'ଏ ଘରପୋଡ଼ି ଏପରି ବ୍ୟାପିଲି, ଏଥିରେ ଆମର କଅଣ କରିବାର କିଛି ନାହିଁ ?' ସେ ମୋ କଥା ଶୁଣି ଗାଲରେ ହାତ ଦେଇ ଅନେକ ସମୟ ଭାବିଲେ; ତାପରେ ଧୀରେ ଧୀରେ କହିଲେ, 'ବୁଝିଲି ହରେକୃଷ୍ଣ, ମୁଁ କରିବି କଅଣ ? ସତ୍ୟବାଦୀ ସ୍କୁଲକୁ ଜାତୀୟ ବିଦ୍ୟାଳୟ କରିଦେଇ ମୁଁ ମହାବ୍ୟସ୍ତ—ବିଦ୍ୟାଳୟଟି ବନ୍ଦ ହେବା ଉପରେ—କେବଳ ଅର୍ଥାଭାବ ଯୋଗୁଁ । ଲିଙ୍ଗରାଜଙ୍କୁ ନେଇ ଆଜି ବମ୍ବେ ଯାଉଛି, ସେଠାରେ କିଛି ଅର୍ଥ ସଂଗ୍ରହପାଇଁ । ତୁମେ ଯାହାସବୁ ପାରୁଛ କର ।' ମୁଁ ତାଙ୍କର ଅସୁବିଧା ବୁଝି ପାରିଲି । ସମସ୍ତଙ୍କ ସହିତ ଆଲୋଚନା କଲି—ସମସ୍ତେ କହିଲେ, 'ଏସବୁ ତ ପୋଲିସ କରୁଛି, ଆମର ତ ଅସହଯୋଗ ଆନ୍ଦୋଳନ ଚାଲିଛି—ଆମେ କଅଣ କରିବା ।' ଏ କଥା ମୋତେ କିଛି ସୁଖ ଲାଗିଲା ନାହିଁ । ମୁଁ ଭାବିଲି, ସମୁଦାୟ ଓଡ଼ିଶା-ବ୍ୟାପାର ଚିନ୍ତା କରିବାର

ଅଧିକାର ବା ଯୋଗ୍ୟତା ମୋର ନାହିଁ । ମୋର କର୍ମକ୍ଷେତ୍ର ବାଲେଶ୍ୱରପାଇଁ ମୋତେ କିଛି କରିବାକୁ ହେବ । ସେହିଦିନ ମୁଁ ବାଲେଶ୍ୱର ଫେରିଲି । ଦୁଇ ତିନି ଦିନ ହେବ ବାଲେଶ୍ୱରରେ ମଧ୍ୟ ଘରପୋଡ଼ି ଆତଙ୍କ ସୃଷ୍ଟି ହୋଇଛି । ରାତିସାରା କେହି ଶୋଉ ନାହାନ୍ତି । ସମସ୍ତେ ହୋ ହୋ ହେଉଛନ୍ତି । ଗୋଟିଏ ଦୁଇଟି ଘରେ ନିଆଁ ମଧ୍ୟ ଲଗିଲାଣି । ମୁଁ ସ୍ପଷ୍ଟ ଭାଷାରେ ଭାବିଲି ଯେ, ରାଜନୀତିକ ଆନ୍ଦୋଳନର ଗତି ଯାହା ହେଉ ପଛକେ ଏ ଅବସ୍ଥାରେ ଲୋକଙ୍କୁ ସାହାଯ୍ୟ କରିବାକୁ ହେବ । ମୁଁ ମନ ସ୍ଥିର କରି ସେ ସମୟକାର ଜିଲ୍ଲା ମାଜିଷ୍ଟ୍ରେଟ ଶ୍ୟାମଲାଲ ଗୁପ୍ତା ଓ ପୋଲିସ ସାହେବ ହଡ଼ସନ ସାହେବଙ୍କ ଠାକୁ ଦୁଇଖଣ୍ଡ ଚିଠି ଲେଖିଲି । ସେ ଚିଠି ଦୁଇଖଣ୍ଡର ମର୍ମ ଏହି—ଆମ ଭିତରେ ରାଜନୈତିକ ମତଭେଦ ଯାହା ହେଉ ପଛକେ, ଏ ଯେଉଁ ଘରପୋଡ଼ି ଓ ତଜ୍ଜନିତ ଆତଙ୍କ, ସେଥିରୁ ଲୋକଙ୍କୁ ରକ୍ଷା କରିବା ଆପଣଙ୍କର ଓ ଆମର କର୍ତ୍ତବ୍ୟ । ମାନବିକତା ଦୃଷ୍ଟିରୁ ଏଥିରେ ପରସ୍ପର ସହଯୋଗ ଅତି ଆବଶ୍ୟକ । ଆଜି ସନ୍ଧ୍ୟା ପାଞ୍ଚଟାବେଳେ ମ୍ୟୁନିସିପାଲିଟି ଅଫିସ ପକ୍ଷ ପଡିଆକୁ ଏକ ସାଧାରଣ ସଭା ଡାକୁଛି—ଏଥିରେ ସରକାରୀ କର୍ମଚାରୀ ତଥା ସରକାର ପକ୍ଷ ଲୋକ ଯୋଗ-ଦେଲେ ଆପଣମାନଙ୍କର କିଛି ଆପତ୍ତି ନାହିଁ ବୋଲି ଆପଣମାନେ ସେମାନଙ୍କୁ ଜଣାଇ ଦିଅନ୍ତୁ; ଆଉ ମଧ୍ୟ ଆପଣମାନେ ଏ ସଭାରେ ଯୋଗ ଦିଅନ୍ତୁ । ଲୋକଙ୍କୁ ବିପଦରୁ ରକ୍ଷା କରିବାକୁ ହେବ, ଆମେ ସମସ୍ତେ ସ୍ଥିର କରିବା । ଏ ଚିଠି ଦୁଇଖଣ୍ଡ ଜିଲ୍ଲାର ଦୁଇ ହାକିମଙ୍କ ଉପରେ ଖୁବ୍ ପ୍ରଭାବ ପକାଇଥିଲା । ସେମାନେ କଚେରୀରେ ନୋଟିସ ଦେଇଦେଲେ ଯେ, ସେଦିନ ସଭାକୁ ସରକାରୀ କର୍ମଚାରୀ ବା ଅନ୍ୟ କେହି ଗଲେ ସେମାନଙ୍କର କିଛି ଆପତ୍ତି ନାହିଁ । ସେଦିନ ସଭା ଖୁବ୍ ବଡ଼ ହୋଇଥିଲା । ସରକାରୀ ଉପାଧ୍ୟାୟ ବ୍ୟକ୍ତି ଓ ସରକାରୀ କର୍ମଚାରୀମାନେ ଯୋଗ ଦେଇଥିଲେ । ପୋଲିସ ସାହେବ ଆସିଥିଲେ । ମୁଁ ସଭାରେ ଭଲ କରି ବୁଝାଇ କହିଲି ଯେ, କଂଗ୍ରେସ ଅସହଯୋଗ ନୀତି ଅବଲମ୍ବନ କରିଛି, ସେଥିରୁ ସେ ଟଳେ ମାତ୍ର ଟଳିବ ନାହିଁ; ମାତ୍ର ବର୍ତ୍ତମାନ ଯେତେବେଳେ ଗୋଟାଏ ଆକସ୍ମିକ ବିପଦ ଆସି ପଡ଼ିଛି, ଯେତେବେଳେ ଗରିବ ଦେଶବାସୀ ନିଜର ବାସଗୃହରୁ ବଞ୍ଚିତ ହେବାପାଇଁ ବସିଛନ୍ତି; ସେତେବେଳେ ଜିଲ୍ଲା ମାଜିଷ୍ଟ୍ରେଟ ଓ ପୋଲିସ୍‌ସାହେବ, ଯେଉଁମାନେ ମନୁଷ୍ୟ, ଯେଉଁମାନଙ୍କର ହୃଦୟ ଅଛି, ସେମାନଙ୍କ ସହିତ ମିଶି ଏ ବିପଦର ପ୍ରତିକାର କରିବାକୁ ହେବ । ଏହା ହେଉଛି ଆପଦ୍ଧର୍ମ । ଏହାପରେ ମୁଁ ପ୍ରସ୍ତାବ କଲି ଯେ, ସହରର ସଂରକ୍ଷଣ ସମିତି ବୋଲି ଗୋଟିଏ ସମିତି ଗଠିତ ହେଉ । ତାର ସଭାପତି ଜିଲ୍ଲା ମାଜିଷ୍ଟ୍ରେଟ, ଉପସଭାପତି ପୋଲିସ ସାହେବ, ମୁଁ ସମ୍ପାଦକ ଓ ଆଉ ଦଶଜଣ ସ୍ଥାନୀୟ ଭଦ୍ରଲୋକ ନିର୍ବାଚିତ ହୁଅନ୍ତୁ । ଏହା ସର୍ବସମ୍ମତିକ୍ରମେ ମଞ୍ଜୁର ହେଲା । ଏ ସମିତିରେ କଂଗ୍ରେସ ଓ ବେକଂଗ୍ରେସ ସମସ୍ତେ ରହିଲେ । ଏହାର କାମ ହେବ, ସହରସାରା ସରକାରୀ ଓ ବେସରକାରୀ ପହରାର ବନ୍ଦୋବସ୍ତ କରାଇବା ।

ଯେଉଁମାନେ ଗରିବ ଓ ମଜୁରିଦାର, ଘରଭଡ଼ା ଘର ଜଗି ଦିନରେ କାମକୁ ଯାଇପାରୁ ନାହାନ୍ତି, ସେମାନଙ୍କୁ ମଜୁରି ଦେବା ଓ ଯେଉଁମାନେ ଅତି ଗରିବ ରାତିରେ ବତି ଜଳାଇ ଘର ଜଗିବା ପାଇଁ ସମର୍ଥ ନୁହନ୍ତି, ସେମାନଙ୍କୁ ତେଲ ସାହାଯ୍ୟ କରିବା ଓ ସହରର ଅନେକ ସ୍ଥଳରେ ପାଣିମାଠିଆ ଯୋଗାଡ଼ କରି ରଖିବା, ଏହା ମଧ୍ୟ ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା ।

ସଭା ଶେଷ ହେବା ମାତ୍ରକେ ଚାନ୍ଦା ସଂଗ୍ରହର ଉଦ୍ୟମ କଲି । ଜିଲ୍ଲା-ମାଜିଷ୍ଟ୍ରେଟ ୧୦ ଟଙ୍କା ଓ ପୋଲିସ ସାହେବ ୧୦ ଟଙ୍କା ପ୍ରଥମେ ଚାନ୍ଦା ଦେଇଥିଲେ । ତା'ପରେ ଅନ୍ୟମାନେ କିଛୁ କିଛୁ ଦେଲେ । ଏ ସିଦ୍ଧାନ୍ତର ପୂରାପୂରି କାମ ମୋ ଉପରେ ପଡ଼ିଗଲା । ଜିଲ୍ଲା ହାକିମମାନେ ସେ ବିଷୟରେ ମୋ ଉପରେ ପୂରା ବିଶ୍ବାସ ଓ ନିର୍ଭର କରୁଥିଲେ । ସହରସାରା ଗରିବଙ୍କ ତାଲିକା ନେଇ ତେଲ ବାଣ୍ଟିବା ଓ କାହାକୁ କାହାକୁ ମଜୁରି ଦେବା, ପାଣିମାଠିଆ ସବୁଆଡ଼େ ଯୋଗାଇ ରଖିବା, ଏସବୁ କାମ ସ୍ବରାଜ୍ୟ ମନ୍ଦିରର କର୍ମୀମାନେ କରିବାରେ ଲାଗିଲେ । ପୋଲିସ କର୍ମଚାରୀ ଓ କଂଗ୍ରେସ କର୍ମୀ ଏକତ୍ର ସବୁଆଡ଼େ ଦିନ ରାତି ପହରା ଦେବାରେ ଲାଗିପଡ଼ିଲେ । ଡାକ୍ତର କୃଷ୍ଣ ପ୍ରସାଦ ମହାନ୍ତି ଓ ମୁଁ ରାତିସାରା ସହରତମାମ ପୋଲିସ ଇନସପେକ୍ଟର ଓ ସବ୍‌ଇନ୍‌ସପେକ୍ଟରଙ୍କ ସହିତ ବୁଲିଲୁଁ ।

ଏ ଉଦ୍ୟମ ଫଳରେ ଘରେ ନିଆଁ ଲଗି ପାରିଲା ନାହିଁ—ଗୋଟିଏ ଦୁଇଟି ସ୍ଥଳରେ ଘରେ ନିଆଁ ଲଗାଉଥିବାବେଳେ ଆମେ ଅପରାଧୀକୁ ଧରିଲୁ । ମଜାର କଥା ଏହି ଯେ, ଏହି ଅପରାଧୀ ଆମ ସହିତ ଇଂରାଜୀରେ କଥାବାର୍ତ୍ତା କରି କଚେରୀରେ ଏପରି ବ୍ୟବହାର କଲେ ଯେ, ସେମାନଙ୍କୁ ପାଗଳ ବୋଲି କହି ଛାଡ଼ିଦିଆଗଲା । ଏ କାମରେ ସରକାରୀ ହାକିମମାନେ ଆମକୁ ଏପରି ବିଶ୍ବାସ କରୁଥିଲେ ଯେ, ଆମକୁ ଅପରାଧୀମାନଙ୍କୁ ଧରିବାପାଇଁ ଅନୁମତି ଦେଇଦେଲେ ଓ ସେମାନଙ୍କୁ ମଧ୍ୟ ଅଟକ କରି ରଖିବାପାଇଁ ଅନୁମତି ଦେଇଦେଲେ । ଆମେ କେତେଜଣଙ୍କୁ ଧରିଆଣି ଆମ ଆଶ୍ରମରେ ଅଟକାଇ ତାଙ୍କ ଚାରିପାଖେ ଲୋକ ଜଗାଇ ରଖିଥିଲୁଁ; ମାତ୍ର କେହି କଚେରୀରେ ଦଣ୍ଡ ପାଇଲେ ନାହିଁ । ଘରେ ନିଆଁ ଲଗୁ ନ ଥାଏ ସତ; ମାତ୍ର ଆତଙ୍କ ବନ୍ଦ ହେଉ ନ ଥାଏ । ବରଂ ତାହା ସହରରୁ ଜିଲ୍ଲାସାରା ବ୍ୟାପିବାକୁ ଆରମ୍ଭ କଲା । ଏ ବିଷୟକୁ ଆମେ ଲାଗିପଡ଼ି ଅନୁସନ୍ଧାନ କରିବାରେ ଲାଗିଲୁଁ । ଏହା ନିର୍ଦ୍ଦିଷ୍ଟ ଭାବରେ ଜଣାପଡ଼ିଲା ଯେ, ଦୁଇଜଣ ଭଦ୍ରଲୋକଙ୍କ ଘରେ ବାହାରୁ ଆସିଥିବା କେତେଜଣ ଦୁଷ୍ଟ ଲୋକ ରହି ଘରପୋଡ଼ି ଆତଙ୍କ ସୃଷ୍ଟି କରୁଥିଲେ ଓ ଘର ମଧ୍ୟ ପୋଡ଼ୁଥିଲେ । ଉକ୍ତ ଦୁଇଜଣ ଭଦ୍ରଲୋକ କଟକର ଜଣେ ଉଚ୍ଚପଦସ୍ଥ ପୋଲିସ କର୍ମଚାରୀଙ୍କର ଅତି ବିଶ୍ବାସୀ ଲୋକ ଥିଲେ । ଏହି ସହର ସଂରକ୍ଷଣ ସମିତି କାମ କରୁଥିବାବେଳେ ଜଣେ

ଡେପୁଟି ମାଜିଷ୍ଟ୍ରେଟଙ୍କ ଠାରୁ ଶୁଣିଲି ଯେ, ସେତେବେଳକାର ଭାରତ ସରକାରଙ୍କ ତରଫରୁ ନିମ୍ନଲିଖିତ ମର୍ମରେ ଏକ ଗୋପନୀୟ ନିର୍ଦ୍ଦେଶ ସବୁ ହାକିମମାନଙ୍କ ପାଖକୁ ଦିଆହୋଇଛି ;—

"ଭାରତର ଲୋକେ ମୋଗଲ ମରହଟ୍ଟାଙ୍କ ଜବରଦସ୍ତ ଶାସନରେ ଅଭ୍ୟସ୍ତ । ସେମାନଙ୍କୁ ଭୋଟ ଅଧିକାର ଦେବାଦ୍ୱାରା ଓ ଏ ଦେଶରେ ପ୍ରଜାତନ୍ତ୍ର ଶାସନ ଧୀରେ ଧୀରେ ଆରମ୍ଭ କରିବା ଫଳରେ, ସାଧାରଣ ଜନତା ଯେଉଁ କ୍ଷମତା ଟିକିଏ ଟିକିଏ ପାଉଛନ୍ତି, ସେଥିରେ ଉନ୍ମତ୍ତ ହୋଇଯାଉଛନ୍ତି ଓ ଆଇନ ଶୃଙ୍ଖଳା ମାନୁ ନାହାନ୍ତି । ଏଣୁ ଜବରଦସ୍ତ ଭାବରେ ଲୋକଙ୍କର ଅଶୃଙ୍ଖଳ ମନୋଭାବକୁ ଓ କାରବାରକୁ ଦମନ କରିବାକୁ ହେବ । ଏଥିପାଇଁ ଯଦି ଆଇନ ବିଚାରରେ କିଛି ଫାଙ୍କ ରହିଯାଏ, ତେବେ ସେଥିପ୍ରତି ଦୃଷ୍ଟି ଦିଆଯିବ ନାହିଁ । (Any loop-hole injustices sould be overlooked) ।" ଏ ଗୋପନୀୟ ନିର୍ଦ୍ଦେଶ ଆସିଥିବା ଶୁଣିଲି । ତେଣେ ଆମ ଦ୍ୱାରା ଧରା ହେଉଥିବା ଘରପୋଡ଼ି ଆସାମୀମାନଙ୍କୁ ପାଗଳ ବୋଲି କହି କଚେରୀରୁ ଛୁଟି ଦିଆ ହେଉଛି । ସବୋପରି ପୋଲିସ ସାହେବ ହଡ଼ସନ୍ ମୋ ସହିତ କାରବାର କରି ମୋଠି ତାଙ୍କର ଖୁବ ବିଶ୍ୱାସ ହୋଇ ଯାଇଥିଲେ । ସେ ବାଲେଶ୍ୱର ପୋଲିସ ଇନ୍‌ସପେକ୍ଟର ଓ ମୁଁ ତାଙ୍କୁ ଯେତେ କହିଲୁ ଯେ, ବାହାରର ଲୋକ ଦୁଇଜଣ ଭଦ୍ରଲୋକଙ୍କ ଘରେ ରହି ଏ କାମ କରୁଥିବାର ଯଥେଷ୍ଟ ପ୍ରମାଣ ମିଳୁଛି, ସେ କିଛି ପ୍ରତିକାର ନ କରି ବାରମ୍ବାର ମୋତେ ହସି ହସି କହୁଥିଲେ, 'ତୁମେ ଜଣେ ଯୁବକ, ଦେଶକୁ ସ୍ୱାଧୀନ କରିବ ବୋଲି ବାହାରିଛ । ଘରପୋଡ଼ିରେ କାହିଁକି ବ୍ୟସ୍ତ ହୋଇ ପଡ଼ୁଛ ! ଆୟର୍ଲାଣ୍ଡରେ କେତେ କେତେ ଅତ୍ୟାଚାର ସେ ଦେଶର ଲୋକେ ସହୁଛନ୍ତି ? ତୁମ ଦେଶର ଲୋକେ ତ ସେହିପରି ସହିବା ପାଇଁ ପ୍ରସ୍ତୁତ ହେବା ଉଚିତ । ଏ ଘରପୋଡ଼ି ବ୍ୟାପାର କାହିଁକି ଓ କିପରି ହେଉଛି ମୁଁ ଜାଣେ; ମାତ୍ର ପ୍ରତିକାର କରିବାର ମୋର ସାଧ୍ୟ ନାହିଁ । ଏଣୁ ତୁମମାନଙ୍କ ଉଦ୍ୟମରେ ଘର ନ ପୋଡ଼ିଲେ ମୁଁ ଖୁସିହେବ ।"

ଥରେ ମୁଁ କେତେକ ସ୍ୱେଚ୍ଛାସେବକ ନେଇ ରାତି ୧୨ଟା ବେଳେ ଉପରୋକ୍ତ ଦୁଇଜଣ ଭଦ୍ରଲୋକଙ୍କ ଭିତରୁ ଜଣକ ବାହାର ଘର ଘେରାଉ କଲୁଁ । ଆମେ ଘେରିଯାଇ ସିଟିକିଲି ମାରନ୍ତେ ସେ ଘରଭିତରୁ ଅଠ ଦଶ ଜଣ ଲୋକ ତିଆଁମାରି ଇଆଡ଼େ ସିଆଡ଼େ ପଳାଇଲେ । ଭିତରେ ଦେଖିଲୁଁ ଯେ, ନାନା ପ୍ରକାର ଖାଦ୍ୟ ଜିନିଷ ଓ ପିଇବା ଜିନିଷ ସେଠାରେ ଅଛି । ଠିକ୍ ଏହା ପରଦିନ ଠାରୁ ବାଲେଶ୍ୱରରେ ଘରପୋଡ଼ି ଆତଙ୍କ ବନ୍ଦ ହେଲା । ମୋଟ ଦୁଇଟି ଗ୍ରେଟ ଗ୍ରେଟ ଘର ପୋଡ଼ି ଯାଇଥିଲା । ଏହା ପରେ ପରେ ସବୁଆଡ଼େ ଘରପୋଡ଼ି ବନ୍ଦ ହୋଇଗଲା ।

ତାହାପରେ ସହର ସଂରକ୍ଷଣ ସମିତିର ଏକ ରିପୋର୍ଟ ଲେଖି ସଭାପତି ଓ ଉପସଭାପତିଙ୍କ ନିକଟକୁ ଦସ୍ତଖତ କରାଇବା ପାଇଁ ଗଲି । ସେମାନେ କହିଲେ, 'କାମ ତସରିଗଲା, ରିପୋର୍ଟ କଅଣ ?' ହିଉସନ୍ ସାହେବ ଜଣେ ଆଇରିଶ୍ ଥିଲେ ଓ ତାଙ୍କ ସହିତ ମୋର ବନ୍ଧୁତା ହୋଇଯାଇଥିଲା । ତେଣୁ ତାଙ୍କୁ ଜିଦ୍ କରି କହିଲି, ରିପୋର୍ଟରେ ଦସ୍ତଖତ କରିବା ପାଇଁ । ସେ ରିପୋର୍ଟଟି ରଖିଲେ ପଢ଼ିବା ପାଇଁ । ମାସ କେତୁଦିନ ପରେ ମୁଁ ଜେଲ୍ ଚାଲିଗଲି । ଜେଲ୍‌ରୁ ଫେରିବାବେଳକୁ ହିଉସନ୍ ଆତ୍ମହତ୍ୟା କରି ମରି ଯାଇଛନ୍ତି । ଏଣୁ ସେ ରିପୋର୍ଟ ଅପ୍ରକାଶିତ ରହିଗଲା ।

ଏହି ଘରପୋଡ଼ି ସମୟରେ କଟକର ରିଜର୍ଭ ପୋଲିସ ସମସ୍ତେ ଧର୍ମଘଟ କରି ଘୋଷଣା କରିଥିଲେ ଯେ, ସେମାନେ ଏତେ ଲୋକନିନ୍ଦା ସହି କାମ କରିପାରିବେ ନାହିଁ । ତତ୍କାଳୀନ କଟକର ପୋଲିସ ସୁପରିଣ୍ଟେଣ୍ଡେଣ୍ଟଙ୍କ ଉଦ୍ୟମରେ ଏ ଧର୍ମଘଟର ଅବସାନ ହୋଇଥିଲା । ଏ ଘଟଣା ସାଇମନ କମିଶନ ରିପୋର୍ଟରେ ଉଲ୍ଲିଖିତ ହୋଇଛି ।

ଓଡ଼ିଶାରେ ଘରପୋଡ଼ି ଚାଲିଥିବାବେଳେ କନିକା-ମେଳି ମଧ୍ୟ ଆରମ୍ଭ ହେଲା । କନିକାରାଜା ସେତେବେଳେ ଉତ୍କଳ ସମ୍ମିଳନୀର ଜଣେ ପ୍ରଧାନ ନେତା । ସରକାରଙ୍କଠାରେ ତାଙ୍କର ପ୍ରଭୂତ ପ୍ରତିପତ୍ତି । ସେତେବେଳକାର ନେତା ମଧୁବାବୁଙ୍କର ସେ ପଟ୍ଟଶିଷ୍ୟ । କନିକା ଜମିଦାରୀରେ ଇଂରେଜ ସରକାରଙ୍କର କିଛି ସମ୍ପର୍କ ନ ଥିଲା, ଯାହା କିଛି ହେଉଥିଲା ତାହା ରାଜସରକାରଙ୍କଦ୍ୱାରା । ସର୍ବମୋଟ ୬୪ପ୍ରକାର କର ପ୍ରଜାମାନଙ୍କୁ ଦେବାକୁ ପଡ଼ୁଥିଲା । ସରକାରୀ ବନ୍ଦୋବସ୍ତ ନ ହୋଇ ରାଜସରକାର ନିଜେ ନିଜେ ବନ୍ଦୋବସ୍ତ କରିଯାଉଥାଆନ୍ତି । ଏସବୁ ସରକାରୀ ଆଇନ ବିରୋଧରେ ହୋଇଯାଉଥାଏ । ୧୯୨୨ ମସିହାରେ ପୁଣି ଜମି ବନ୍ଦୋବସ୍ତ କରି ଖଜଣା ବଢ଼ାଇବାର ପ୍ରସ୍ତାବ ରାଜସରକାରଙ୍କ ତରଫରୁ ହେଲା । ଏହା ପୂର୍ବରୁ ୧୯୨୦ ମସିହା ଦୁର୍ଭିକ୍ଷରେ ଜିଲ୍ଲା କଲେକ୍ଟରଙ୍କ ବିରୋଧରେ କନିକାରାଜା ସରକାରଙ୍କଠାରୁ ଆଦେଶ ନେଇ ଆସିଥିଲେ ଯେ, ତାଙ୍କ ଇଲାକାରେ ଦୁର୍ଭିକ୍ଷ ସାହାଯ୍ୟର ବନ୍ଦୋବସ୍ତ ସେ କରିବେ । ଏହି ଆଦେଶ ବଳରେ ନିଜ ଇଲାକାରେ ଥିବା ମହାଜନମାନଙ୍କ ଗଚ୍ଛିତ ଧାନ ସବୁ ରାଜସରକାର ଖରିଦ କରିନେଲେ । କେତୁଦିନ ପରେ ପୁଣି ସେହି ଧାନ ସେହିମାନଙ୍କୁ ବିକି କରି ହେଲା । କିଣା ଦରଠାରୁ ବିକାଦର ବେଶୀ ଥିବାରୁ ଲୋକଙ୍କ ଆଖିରେ ଠେକିଲା । ଏଥିରେ ଧାନ ମହାଜନମାନେ ଉଚ୍ଛିନ୍ନ ହୋଇଗଲେ । ତେଣେ ମଧ୍ୟ ଦୁର୍ଭିକ୍ଷଗ୍ରସ୍ତ ଲୋକେ ବେଶୀ କିଛି ସାହାଯ୍ୟ ପାଇଲେ ନାହିଁ । ଏହା ଏକ ଗଭୀର ଅସନ୍ତୋଷର କାରଣ ହୋଇ ରହିଥାଏ । ଏହି ସମୟରେ ପୁଣି ଖଜଣା ବୃଦ୍ଧିର ପ୍ରସ୍ତାବ ଘଟଣାକୁ ଆହୁରି ଗୁରୁତର କରିଦେଲା ।

ଅନ୍ୟ ସମସ୍ତ ହୋଇଥିଲେ ବୋଧହୁଏ. ପ୍ରଚ୍ଛପତ୍ତି ଜୋରରେ ଏ ସବୁ ଚଳିଯାଇ ପାରିଥାନ୍ତା; ମାତ୍ର ଅସହଯୋଗ ଆନ୍ଦୋଳନ ଦେଶବ୍ୟାପୀ ଯେ ସାଧାରଣ ଜାଗୃତ ଆଣି ଦେଇଥିଲା, ତାହା ଫଳରେ ଅନ୍ୟାୟ ବିରୋଧରେ ଛିଡ଼ା ହେବାର ସାହସ ପ୍ରାୟ ସର୍ବତ୍ର କିଛି କିଛି ପ୍ରକାଶ ପାଇଥିଲା । ପ୍ରଜାମାନେ ରାଜାଙ୍କ ବନ୍ଦୋବସ୍ତରେ ରାଜି ନ ହୋଇ ସରକାରୀ ବନ୍ଦୋବସ୍ତ ଚାହିଁଲେ । ରାଜାଙ୍କ ତରଫରୁ ପ୍ରଜାମାନଙ୍କୁ ଜବତ କରିବାପାଇଁ ନାନାପ୍ରକାର କୌଶଳ ଚାଲିଲା । ବର୍ଦ୍ଧିତ ହାରରେ ଖଜଣା ନ ଦେଲେ ରାଜାଘର ଖଜଣା ନେବେ ନାହିଁ ବୋଲି କହିବାରୁ ପ୍ରଜାମାନେ କେନ୍ଦ୍ରାପଡ଼ା ସରକାରୀ ଟ୍ରେଜେରୀରେ ଖଜଣା ଆଇନ ଅନୁସାରେ ଦାଖଲ କଲେ । ମୋଟ କଥା ପ୍ରଜାଙ୍କର ଆପତ୍ତି ସରକାରଙ୍କଠାରେ ରାଜାଙ୍କ ବିରୋଧରେ ଥିଲା; ମାତ୍ର ଚତୁରତା ସହିତ ରାଜପକ୍ଷ ଏହାକୁ ଅସହଯୋଗ ଆନ୍ଦୋଳନର ଏକ ଅଙ୍ଗ ବୋଲି ସରକାରଙ୍କୁ ବିଶ୍ୱାସ ଜନ୍ମାଇ ଦେଲେ । ଥରେ ରାଜା ପାଟଣାରେ ଲାଟଭବନରେ ଅତିଥି ହୋଇଥିବାବେଳେ ଏଣୁ ଇଲାକାରୁ ତାର ଯାଇ ପହଞ୍ଚିଲା ଯେ, ହଜାର ହଜାର ପ୍ରଜା ରାଜପ୍ରାସାଦ ଲୁଟ୍ କରିବାକୁ ଆସୁଛନ୍ତି । ଏପରି ଅନେକ କୌଶଳ ପ୍ରୟୋଗ ଦ୍ୱାରା ସରକାରଙ୍କର ଧାରଣା ହୋଇଗଲା ଯେ, ପ୍ରଜାମାନେ ଭୟଙ୍କର ଭାବରେ ରାଜଦ୍ରୋହୀ ହୋଇଉଠିଛନ୍ତି ଓ ରାଜଭକ୍ତ ରାଜା ବିଦ୍ରୋହୀ ପ୍ରଜାମାନଙ୍କ ଦ୍ୱାରା ଅତ୍ୟାଚାରିତ ହେଉଛନ୍ତି । ଏଣୁ ପ୍ରଜାମାନଙ୍କୁ ଦବାଇବା ପାଇଁ ସରକାରଙ୍କ ତରଫରୁ ବୈଧ, ଅବୈଧ ସମସ୍ତ ଉପାୟ ଅବଲମ୍ବନ କରାଯାଇଥିଲା । ଜଣେ ଦୁଇଜଣ ବଡ଼ ସରକାରୀ ହାକିମ ଏଥିରେ ପ୍ରଭୂତ ସାହାଯ୍ୟ କରିଥିଲେ । ଶୁଣାଯାଏ, ସେ ସମୟକାର ଜଣେକ କଟକ କଲେକ୍ଟର ବି.ଏନ୍. ରାୟ ପ୍ରକୃତ କଥା ରିପୋର୍ଟ କରିଥିବାରୁ ତାଙ୍କୁ ହଠାତ୍ ବଦଳି କରିଦିଆଗଲା । ଏସବୁ ଆନ୍ଦୋଳନ ପ୍ରଥମେ କଟକ ଜିଲ୍ଲା ଛମୁକା ଅଞ୍ଚଳରେ ଆରମ୍ଭ ହୋଇଥିଲା । କମିଶନର ସାହେବ ଅବସ୍ଥା ତଦନ୍ତ କରିବାପାଇଁ ଯାଇଥିଲେ । ତାଙ୍କଠାକୁ ଶହ ଶହ ପ୍ରଜା ଆପତ୍ତି କରିବାପାଇଁ ଆସୁଥିବାବେଳେ କମିଶନର ସାହେବଙ୍କୁ ବୁଝାଇ ଦିଆଗଲା ଯେ, ପ୍ରଜାମାନେ ଆକ୍ରମଣ କରିବାକୁ ଆସୁଛନ୍ତି । କଟକରୁ ବନ୍ଧୁକଧାରୀ ପୋଲିସ ଗଲେ, ଗୁଳି ହେଲା, ଦୁଇଜଣ ମଲେ । ଏ ଦୁଇଜଣଙ୍କ ପିଠିରେ ଗୁଳି ବାଜିଥିଲା । ଏଥିରେ ସୁଦ୍ଧା କେହି ବୁଝିଲେ ନାହିଁ । ସେତେବେଳେ କନିକା ରାଜା ଓ ଇଂରେଜ ସରକାର ଏକ ଜିନିଷ ହୋଇଯାଇଥିଲେ । କନିକା ରାଜାଙ୍କ ବିରୋଧରେ କହିବା ରାଜଦ୍ରୋହ ଅପରାଧରେ ଆସିଯାଉଥିଲା । ବନ୍ଧୁକଧାରୀ ପୋଲିସ କେବଳ ଯେ ଗୁଳିକରି କ୍ଷାନ୍ତ ହେଲେ, ତା' ନୁହେଁ, ଘର ଘର ଲୁଟିକଲେ, ବହୁ ଧର୍ମଲୋକ ପଥର ଭିକାରୀ ହୋଇଗଲେ; ବହୁ ସ୍ତ୍ରୀଲୋକ ଅତ୍ୟାଚାରିତା ହେଲେ । ଏପରି ଆତଙ୍କ ସୃଷ୍ଟି କରାହେଲା ଯେ, କେତେକ ଗର୍ଭବତୀ ସ୍ତ୍ରୀ ପଳାଇ ଯାଇ ବଣରେ ପ୍ରସବ କରିପକାଇଲେ । ଖଣ୍ଡେଇତ-ରାୟ, ଅଶ୍ୱିନୀକୁମାର ପଲେଇ ଏମାନଙ୍କର ଶହ ଶହ ମାଣ ଜମି ବେଦଖଲ

କରିହୋଇ ଏମାନଙ୍କୁ ରାଜ୍ୟରୁ ବାହାର କରି ଦିଆହେଲା । ଏମାନଙ୍କ ପରିବାର ବର୍ତ୍ତମାନ ସୁଦ୍ଧା ଅତି ଦରିଦ୍ର ଅବସ୍ଥାରେ ଜୀବନ ଚଳାଉଛନ୍ତି ।

ଏସବୁ କଟକ ଜିଲ୍ଲାରେ ଚାଲିଥିବାବେଳେ କନିକାରାଜାଙ୍କ ବାଲେଶ୍ୱର ଜିଲ୍ଲାରେ ଥିବା ପାଞ୍ଚମୁକା ଇଲାକାରେ ମଧ୍ୟ ହୁଲୁସ୍ଥୁଲ ପଡ଼ିଥିଏ; ମାତ୍ର ଏ ଜିଲ୍ଲାର ପୋଲିସ ସାହେବ ହଡ଼ସନ ସବୁ କଥା ବୁଝି ସେପରି ଅତ୍ୟାଚାର କରିଇବାକୁ ଦେଇନାହାଁନ୍ତି । ଥରେ ସେ ମୋତେ କହିଲେ, "ମହତାବ, ତୁମେ ପ୍ରତିଜ୍ଞା କର ଯେ, ତୁମେ କନିକା ଇଲାକାକୁ ବର୍ତ୍ତମାନ ଯିବ ନାହିଁ । ମୁଁ ଏଠି କୌଣସି ଅତ୍ୟାଚାର କରିଇବାକୁ ଦେବି ନାହିଁ । ବାସ୍ତବିକ ତୁମେ ସବୁ ନିର୍ବୋଧ, ବୁଝିପାରୁ ନାହିଁ ଯେ, ତୁମେମାନେ ପ୍ରଜାମାନଙ୍କସହ ଯୋଗ ଦେବାରୁ ରାଜା ଚାଲିକରେ ବିଶୁଦ୍ଧ ପ୍ରଜା ଆନ୍ଦୋଳନକୁ ଏକ ରାଜଦ୍ରୋହୀ ଆନ୍ଦୋଳନ କରି ଦେଇ ପ୍ରଜାଙ୍କୁ ଦବାଉଛି । ମୁଁ ଜାଣିଛି, ଏଥିରେ ରାଜା ଦୋଷୀ; ମାତ୍ର ତା'ର ଉପର ମହଲରେ ପ୍ରତିପତ୍ତି ଅଛି; ତେଣୁ ତୁମେ ସବୁ ଯାଇ କନିକା-ପ୍ରଜାମାନଙ୍କ ସହିତ ଯୋଗ ଦେଲେ ମୁଁ ଅସହାୟ ହୋଇପଡ଼ିବ ।"

ମୁଁ ତାଙ୍କୁ ପ୍ରତିଶ୍ରୁତି ଦେଇଥିଲି ଯେ, ମୁଁ ବା କେହି କଂଗ୍ରେସର ଲୋକ କନିକା ଇଲାକାକୁ ଯିବୁ ନାହିଁ । ଆମେ କେହି ଗଲୁ ନାହିଁ, ଅପରନ୍ତୁ ଚେଷ୍ଟା କଲୁ ଯେପରି କନିକାରଜାଙ୍କ ଚାଲିକ ଧରାପଡ଼େ ।

ସେ ସମୟର ଅତ୍ୟାଚାର ଓ ସରକାରଙ୍କ ବେଆଇନ କାରବାର ବର୍ତ୍ତମାନ କଳ୍ପନା କରିହେବ ନାହିଁ । ଛମୁକା ଇଲାକାରେ ଗୁଳି, ଲୁଟତରାଜ ହେବାପରେ ପ୍ରାୟ ୧୫୦ ଲୋକ ଗିରଫ୍ତାର ହୋଇ ସେମାନଙ୍କ ବିଚାର ରାଜାଙ୍କ ନଅରରେ ହେଲା । ଜଣେ ଡେପୁଟି ରାଜାଙ୍କର ଅତିଥି ହୋଇ ରହି ସେଠାରେ ଏହି ମକଦ୍ଦମା ବିଚାର କଲେ । କେହି ଓକିଲ ନାହାନ୍ତି, ପରାମର୍ଶଦାତା ନାହାନ୍ତି, ନିରୀହ ଲୋକେ ଏକ-ତରଫା ବିଚାରରେ ଦଣ୍ଡ ପାଇଲେ । ସେମାନଙ୍କୁ ରାଜକନିକାରୁ ସିଧା କେନ୍ଦ୍ରାପଡ଼ା ସବ୍-ଜେଲକୁ ପଠାଇଦାର କଥା; ମାତ୍ର ତା' ନ ହୋଇ ଦେଢ଼ଶହ ଲୋକଙ୍କୁ ହାତକଡ଼ି ପକାଇ ଦଉଡ଼ିରେ ବାନ୍ଧି ଛମୁକାରୁ ଚାନ୍ଦବାଲି, ଚାନ୍ଦବାଲିରୁ ପାଞ୍ଚମୁକା ଇଲାକାବାଟେ ଭଦ୍ରଖ ବାଟେ କଟକ ନିଆଗଲା । ଏହା କେବଳ କରିହୋଇଥିଲା ପାଞ୍ଚମୁକାରେ ଆତଙ୍କ ସଞ୍ଚାର ପାଇଁ । ସେତେବେଳକାର ଭଦ୍ରଖ ସବ୍‌ଡିଭିଜନ୍ ଅଫିସର ମଧ୍ୟ କନିକାରାଜାଙ୍କ ପ୍ରଭାବରେ ପଡ଼ିଥିଲେ । କନିକାର ୭୦ ବର୍ଷର ଜଣେ ପ୍ରଜାକୁ ବିଚାର କରି ତାଙ୍କୁ ବେତମାଡ଼ପାଇଁ ଆଦେଶ ଦେଇ ସେ ସବ୍‌ଡିଭିଜନ ଅଫିସର ଭଦ୍ରଖଠାରୁ ୩୨ ମାଇଲଦୂର ଘଣ୍ଟେଶ୍ୱରରେ କନିକା-ରାଜ-କଚେରୀରେ ସେ ଦଣ୍ଡକୁ କାର୍ଯ୍ୟରେ ପରିଣତ କରିଥିଲେ । ଆଜି ମଧ୍ୟ ପାଞ୍ଚମୁକା

ଇଲକାର ୭୮ ଜଣ ମୁଖ୍ୟ ପ୍ରଜାଙ୍କୁ ୧୦୭ ଦଫାରେ ଗିରଫ୍ତାର କରି ବିଚାର କଲେ । ଏମାନେ ମକଦ୍ଦମା ଲଢ଼ିଥିଲେ । ଏହି ମକଦ୍ଦମା ହାଇକୋର୍ଟ ପର୍ଯ୍ୟନ୍ତ ଗଲା । ହାଇକୋର୍ଟ ବିଚାରପତିମାନେ ରାୟଦେଲେ ଯେ, କନିକା ଆନ୍ଦୋଳନ ଏକ ଶୁଦ୍ଧ ପ୍ରଜା ଆନ୍ଦୋଳନ, ଏଥିରେ ରାଜଦ୍ରୋହ କିଛି ନାହିଁ; ମାତ୍ର ଏହା ହେବା ବେଳକୁ କେତେ ଅତ୍ୟାଚାର କନିକା ପ୍ରଜା ଓ ସମଗ୍ର ଓଡ଼ିଶା ସହି ଗଲେଣି; ତା'ର ନିର୍ଣ୍ଣୟ କରିବା ପାଇଁ ଏକ ସ୍ୱତନ୍ତ୍ର ପୁସ୍ତକ ଦରକାର । କଟକରେ ୧୪୪ ଧାରା ନୋଟିସ୍ ଜାରି ହୋଇଥାଏ । କେହି କନିକା ଇଲକାକୁ ଯାଇପାରିବେ ନାହିଁ । ସେ ସମୟରେ କେବଳ ଲକ୍ଷ୍ମୀନାରାୟଣ ସାହୁ କନିକା ଯାଇ ଲୁଟ୍ ଇତ୍ୟାଦିର ବିବରଣୀ କିଛି ପ୍ରକାଶ କରିଥିଲେ । ଅପରନ୍ତୁ ସେ ସମୟକାର ବହୁ ପରିଚିତ ତଥାକଥିତ ସାଧାରଣସେବୀ କନିକା ରାଜସରକାରଙ୍କୁ ସମର୍ଥନ କରି ବିବୃତିମାନ ଦେଇଥିଲେ ।

ଭଦ୍ରକ ସବ୍‌ଡିଭିଜନ ଅଫିସର ୧୪୪ ଧାରା ନୋଟିସ ଜାରି କରିଥାନ୍ତି ଯେ, କନିକା ସମ୍ପର୍କରେ ସଭା ସମିତି ହୋଇପାରିବ ନାହିଁ । ଏହି ସମୟରେ ଭଦ୍ରଖରେ ଏକ ସମ୍ମିଳନୀ ହେବାର ଥାଏ । ସଭାପତି ହିସାବରେ ଗୋପବନ୍ଧୁ ଦାସ ଆସୁଥାଆନ୍ତି । ତାଙ୍କ ସାଙ୍ଗରେ ଭଗୀରଥି ମହାପାତ୍ର ଆସୁଥାଆନ୍ତି । ଭଦ୍ରଖ ଷ୍ଟେସନରେ ରେଲଗାଡ଼ି ପହଞ୍ଚିବା ମାତ୍ରକେ ୧୪୪ ଧାରା ନୋଟିସ ଜାରି ହେଲା ଯେ, ଏମାନେ ଗାଡ଼ିରୁ ଓହ୍ଲାଇ ପାରିବେ ନାହିଁ, ମାତ୍ର ଏହି ନୋଟିସ ଜାରି ହେବାପୂର୍ବରୁ ସେମାନେ ଗାଡ଼ିରୁ ଓହ୍ଲାଇ ପ୍ଲାଟ୍‌ଫର୍ମ ବାହାରକୁ ଆସିଯାଇଥିଲେ । ଏଣୁ ଏମାନଙ୍କୁ ନେଇ ମୁଁ ଭଦ୍ରଖ ଆଶ୍ରମକୁ ଆସିଲି । ତେଣେ ୧୪୪ ଧାରା ଅନୁସାରେ ଆଉ ଏକ ଆଦେଶ ଜାରି ହୋଇଥାଏ ଯେ, ସଭା-ସମିତି ହୋଇଁ ପାରିବ ନାହିଁ କିମ୍ବା କନିକା ବିଷୟରେ କିଛି ଆଲୋଚିତ ହୋଇପାରିବ ନାହିଁ । ହଡ୍‌ସନ୍ ସାହେବ ସେ ସମୟରେ ଭଦ୍ରଖରେ ଥାଆନ୍ତି । ମୁଁ ତାଙ୍କୁ ଦେଖାକଲି । ତାଙ୍କୁ ବୁଝାଇ କହିଲି ଯେ, ଆମେ ଏକ ହତାବନ୍ଦୀ ଜାଗାରେ ସଭା କରୁଛୁ ଓ ଏଥିରେ ସର୍ବସାଧାରଣଙ୍କ ପ୍ରବେଶ ନାହିଁ । କେବଳ ଯେଉଁମାନେ ଟିକେଟ୍ ପାଇବେ, ସେହିମାନେ ଯିବେ । ଏଥିରେ ପୋଲିସ ସାହେବ ରାଜି ହୋଇ ସଭା ହେଉ ବୋଲି ମୋତେ କହିଲେ ।

ତେଣୁ ଆଶ୍ରମ ସାମନାରେ ଏକ ମସ୍‌ଜିଦ ହତା ମଧ୍ୟରେ ସଭା ହେଲା । ସେ ସଭାରେ କନିକା ଅତ୍ୟାଚାରର ନିନ୍ଦାବାଦ କରି ଏକ ପ୍ରସ୍ତାବ ମୁଁ ଆଗତ କଲି । ବହୁ ଲୋକସମାଗମ ହୋଇଥିଲା । ପଣ୍ଡିତ ଗୋପବନ୍ଧୁଙ୍କ ଭାଷଣ ଅତି ହୃଦୟସ୍ପର୍ଶୀ ହୋଇଥିଲା । ଏ ସଭା ସରିଗଲା । ଗୋପବନ୍ଧୁ ଓ ଭଗୀରଥି ବାବୁ କଟକ ଫେରିଲେ ।

ଇତିମଧ୍ୟରେ ଆମ ନିଜ ଭିତରେ ଟିକିଏ ଗୋଲମାଲ ହୋଇଥିଲା । ଅସହଯୋଗ ଆନ୍ଦୋଳନ ଚାଲିଥିବାବେଳେ ମୁଁ କାହିଁକି ପୋଲିସଙ୍କ ସହିତ ମିଳାମିଶା

କରୁଛି, ଏଥିପାଇଁ ମୋ ଉପରେ ଏକ ନିନ୍ଦାବାଦ ପ୍ରସ୍ତାବ ଆମ ଜିଲ୍ଲା କଂଗ୍ରେସ କମିଟିରେ ଜଣେ ସହକର୍ମୀ ଆଣିଥିଲେ । ମୋର ମନେହୁଏ, ମୁଁ ତାଙ୍କୁ ସମର୍ଥନ କରି ପାଞ୍ଚଘଣ୍ଟା କାଳ କହିଥିଲି । ଘରପୋଡ଼ି ଓ କନିକା ବ୍ୟାପାରକୁ ଅସହଯୋଗ ବାହାରେ ରଖିବାର ପ୍ରୟୋଜନୀୟତା ବୁଝାଇଥିଲି; ମାତ୍ର ମୋର କେତେକ ସହକର୍ମୀ ନାନାପ୍ରକାର ଯୁକ୍ତି ଦେଖାଇ ପ୍ରମାଣ କରିବାକୁ ଚେଷ୍ଟା କରିଥିଲେ ଯେ, ମୁଁ ଅନ୍ୟାୟ କରୁଛି । ଏତେ ଆଲୋଚନା ଓ ମତଭେଦ ହେଲା ଯେ—ଶେଷରେ ମୁଁ ପ୍ରସ୍ତାବ କଲି, "ଏ ବିଷୟକୁ ପ୍ରାଦେଶିକ କଂଗ୍ରେସ କମିଟିକୁ ପଠାଯାଉ । ସେଠାରେ ଯାହା ସିଦ୍ଧାନ୍ତ ହେବ, ତାହାହିଁ ସମସ୍ତେ ଗ୍ରହଣ କରନ୍ତୁ ।" ପ୍ରାଦେଶିକ କଂଗ୍ରେସ କମିଟିର ବୈଠକ ବାଲେଶ୍ୱରରେ ବସିଲା । ସେଠି ମଧ୍ୟ ସେହିପରି ଦୀର୍ଘ ସୁବିସ୍ତୃତ ଆଲୋଚନା ହେଲା । ଭୋଟ୍ ନିଆ ହେବାରେ ଉଭୟ ତରଫରେ ସମାନ ଭୋଟ୍ ହେଲା । ଶେଷରେ ସଭାପତି ପଣ୍ଡିତ ଗୋପବନ୍ଧୁ ମୋତେ ସମର୍ଥନ କରି ଭୋଟ୍ ଦେଇ କହିଲେ ଯେ, ନିଜର ଆଚରଣଦ୍ୱାରା ହରେକୃଷ୍ଣ ପ୍ରମାଣ କରୁଛି ଯେ, ତାଙ୍କର ଉଦ୍ଦେଶ୍ୟ ସାଧୁ ଥିଲା; ତେଣୁ ନୀତିରେ କିଛି ବ୍ୟାଘାତ ଘଟିଥିଲେ ମଧ୍ୟ ତାହା ମାର୍ଜନୀୟ ।

ଏ କଥା ଏଇଠି ମେଣ୍ଟିଗଲା । ଆଉ ଏ କଥା ଉଠି ନାହିଁ, ମାତ୍ର କେତେ ସହକର୍ମୀ ମୋର କାର୍ଯ୍ୟକଳାପକୁ ଯେ ସୁଖ ପାଉ ନ ଥିଲେ, ଏଥିରେ ସନ୍ଦେହ ନାହିଁ । ସେ ଯାହାହେଉ ବର୍ତ୍ତମାନ ଆଉ ଗୋଟିଏ ଦୁଃସମୟ ଆସି ପହଞ୍ଚିଲା । ୧୪୪ ଧାରା ଅମାନ୍ୟ କରି ଭଦ୍ରଖରେ ସଭା କରିଥିବା ଅପରାଧରେ ପଣ୍ଡିତ ଗୋପବନ୍ଧୁ ଓ ଭାଗୀରଥି ଧରାହୋଇ ବାଲେଶ୍ୱରକୁ ବିଚାରପାଇଁ ଆସିଲେ । ମୁଁ ସେ ସମୟରେ ପୋଲିସ ସାହେବଙ୍କ ସହିତ ଦେଖା କରି ଯିବାରୁ ସେ ମୁଖ ବିକୃତ କରି କହିଲେ, "ମୁଁ ଆଉ ତୁମ ସହିତ ଦେଖା କରିବି ନାହିଁ । ବର୍ତ୍ତମାନ ଉପର ମହଲରେ ପ୍ରଚାର ହେଉଛି, ମୁଁ ତୁମଦ୍ୱାରା ପ୍ରଭାବିତ ହେଉଛି ଓ ମୋର କଂଗ୍ରେସ ପ୍ରତି ସହାନୁଭୂତି ଅଛି । ମୁଁ ବାରମ୍ବାର କହିଲି ଯେ, କନିକା ରାଜାର ରୟତଙ୍କ ପ୍ରତି ସାବଧାନ ହୁଅ; ମାତ୍ର ମାନିଲ ନାହିଁ । ମୁଁ କିଛି କରିପାରିବି ନାହିଁ ।"

ବାଲେଶ୍ୱରରେ ଗୋପବନ୍ଧୁ ଓ ଭାଗୀରଥିଙ୍କୁ ଛଅମାସ କରି ଜେଲ ହେଲା । ବୋଲିବା ବାହୁଲ୍ୟ ଯେ, ସେମାନେ ଅସହଯୋଗ ନୀତି ଅନୁସାରେ ଆତ୍ମସମର୍ଥନ କରି ନ ଥିଲେ । ଏମାନଙ୍କୁ ହାତକଡ଼ି ଦେଇ ଅଣ୍ଟାରେ ଦଉଡ଼ି ବାନ୍ଧି ଯେତେବେଳେ ବାଲେଶ୍ୱର କଚେରିରୁ ଜେଲକୁ ଚଲାଇ ନିଆ ହେଉଥାଏ, ସେତେବେଳେ ସମସ୍ତେ ଅଭିଭୂତ । ହାତକଡ଼ି ପଡ଼ିଲାବେଳେ ଭାଗୀରଥିଙ୍କୁ ଗୋପବନ୍ଧୁ କହିଲେ, 'ଭାଗୀରଥି, ଏ ତ' ଅସ୍ମାରମ୍ଭ, ଅପରେ କିଂ ଭବିଷ୍ୟତି ।' ଏହା ପରେ କଟକର ଡାକ୍ତର ଏକରାମ ରସୁଲ ପ୍ରମୁଖ ମୁଖ୍ୟ କଂଗ୍ରେସ ଲୋକମାନେ ସମସ୍ତେ ଧରାହେଲେ ।

ଗୋପବନ୍ଧୁ ଓ ଭଗୀରଥି ବେଆଇନ ଦଳର ନେତା ବୋଲି ତାଙ୍କ ବିରୋଧରେ ଆଉ ଏକ ମୋକଦ୍ଦମା ଚାଲିଲା । ଏ ମୋକଦ୍ଦମାରେ କନିକା ମେଳି ଓ ଘରପୋଡ଼ିରେ ପୋଲିସଙ୍କୁ ପିଟାପିଟି ଏହିମାନେ କରିଛନ୍ତି ବୋଲି ସାକ୍ଷ୍ୟ ଦିଆ ହୋଇଥିଲା । ଗୋଟିଏ କରୁଣ କାହାଣୀ ଏଠାରେ ଉଲ୍ଲେଖ କରିବାର ଯୋଗ୍ୟ । ଘରପୋଡ଼ି ସମୟରେ ଲୋକେ ଜଣେ ପୋଲିସ କନେଷ୍ଟବଲଙ୍କୁ ଖୁବ୍ ମାଡ଼ ମାରି ରକ୍ତାକ୍ତ କରି ଦେଇଥାନ୍ତି । ସେ ବେହୋସ ହୋଇପଡ଼ିଥିଲା । ଗୋପବନ୍ଧୁ ଏ ଖବର ପାଇ ସ୍ୱେଚ୍ଛାସେବକ ପଠାଇ ତାଙ୍କୁ ଆଶ୍ରମକୁ ଅଣାଇ ନିଜେ ମୁହଁରେ ପାଣି ସିଞ୍ଚି ହୋସ କରାଇଥିଲେ । କିଛି ତାଙ୍କୁ ଖାଇବାକୁ ଦେଲେ । ତା'ପରେ ତା'ର ଲୁଗାପଟା ରକ୍ତରେ ଭିଜିଯାଇଥିବାରୁ ତାଙ୍କୁ ନିଜର ଲୁଗାଖଣ୍ଡେ ପିନ୍ଧିବାକୁ ଦେଲେ । ସେ ଲୁଗା ଖଣ୍ଡି ଖଦଡ଼ ଥିଲା, ଏହା କହିବା ନିଷ୍ପ୍ରୟୋଜନ । ଗୋପବନ୍ଧୁଙ୍କ ବିରୋଧରେ ସାକ୍ଷ୍ୟ ଦେଇ ଏହି କନେଷ୍ଟବଲ କହିଥିଲା ଯେ, ଗୋପବନ୍ଧୁ ତାଙ୍କୁ ମାରି ମାରି ଖଦଡ଼ ପିନ୍ଧାଇଥିଲେ ।

ଏହିପରି ସାକ୍ଷ୍ୟରେ ଗୋପବନ୍ଧୁ ଓ ଭଗୀରଥିଙ୍କୁ ଦୁଇବର୍ଷ, ଡାକ୍ତର ଏକରାମଙ୍କୁ ଦେଢ଼ବର୍ଷ ଓ ଅନ୍ୟାନ୍ୟମାନଙ୍କୁ ଏକ ବର୍ଷ କରି ଜେଲ ହୋଇଥିଲା । ଭାଗ୍ୟକୁ ଏମାନଙ୍କୁ ସେତେବେଳକାର ଜେଲ ନିୟମାନୁସାରେ ସ୍ୱତନ୍ତ୍ର ଶ୍ରେଣୀର ବନ୍ଦୀରୂପେ ରଖିବା ପାଇଁ ମାଜିଷ୍ଟ୍ରେଟ ଆଦେଶ ଦେଇଥିଲେ । ଏମାନେ କିଛିକାଳ କଟକ ଜେଲରେ ରହି ତା'ପରେ ହଜାରିବାଗ ଜେଲକୁ ନିଆଗଲେ । ଏ ସମୟରେ ଓଡ଼ିଶାରେ କାମ କରିବାବାଲା କେହି ନାହାନ୍ତି । ମୁଁ ଏକା ଏ ପାଖ ସେ ପାଖ ହେଉଥାଏଁ । ଧନକୁବେର କନିକାର ଅତ୍ୟାଚାର ଅସହ୍ୟ ହୋଇପଡ଼ୁଥାଏ ।

ଏ କାହାଣୀକୁ ପୂର୍ଣ୍ଣ କରିବା ପାଇଁ ତେଣେ ମହାତ୍ମାଗାନ୍ଧୀ ଧରା ହୋଇଗଲେ । ବର୍ଦ୍ଦୋଲିଠାରେ ସେ ସତ୍ୟାଗ୍ରହ କରିବେ ବୋଲି ସ୍ଥିର କରି ସେହିଠାରେ ଥିଲେ । ବଡ଼ଲାଟଙ୍କୁ ଚରମ ପତ୍ର ମଧ୍ୟ ଲେଖି ଦେଇଥିଲେ; ମାତ୍ର ଯୁକ୍ତ ପ୍ରଦେଶର ଚୌରି-ଚୌରିଠାରେ ଜନତା ଉତ୍‌କ୍ଷିପ୍ତ ହୋଇ ପୋଲିସ-କର୍ମଚାରୀଙ୍କୁ ପୋଡ଼ି ମାରିଦେବା ଓ ଥାନା ଲୁଟ୍ କରିବା ଇତ୍ୟାଦି ହିଂସାତ୍ମକ କାର୍ଯ୍ୟ କରିବାରୁ ଗାନ୍ଧିଜୀ ସତ୍ୟାଗ୍ରହ ବନ୍ଦ କରିଥିଲେ । ଏଥିପାଇଁ ଦେଶସାରା ଏକ ଉତ୍କଟ ହତାଶାଭାବ ବ୍ୟାପିଗଲା । ଆମେ ମଧ୍ୟ ନିରାଶ ହୋଇଗଲୁ । ମୁଁ ସେ ସମୟରେ ବିରକ୍ତ ହୋଇ ଗାନ୍ଧିଙ୍କ ବିରୋଧରେ ମଧ୍ୟ ମନେ ମନେ ଭାବିଲି, ଏତେ ବଡ଼ ଉତ୍ସାହ, ଏତେ ଅତ୍ୟାଚାର, ଅଥଚ ଏ ସମୟରେ ସତ୍ୟାଗ୍ରହ ବନ୍ଦ—ଏହା ମୁଁ ସହଜରେ ହଜମ କରିପାରିଲି ନାହିଁ । ସେହି ସମୟରେ ଇ. ଆଇ. ଆର ରେଳ-କର୍ମଚାରୀମାନଙ୍କର ବିଶାଳ ଧର୍ମଘଟ ଚାଲିଥାଏ । ରେଳ ଅତି ଅସୁବିଧାରେ ଯିବା ଆସିବା କରୁଥାଏ । ତଥାପି ସେଥିରେ

ନିଖିଳ ଭାରତ କଂଗ୍ରେସ-କମିଟିକୁ ମୁଁ ଯାଇଥିଲି । ସେଠାରେ ଗାନ୍ଧିଜୀଙ୍କ କଥା ଶୁଣି ମୋ ମନ ମାନିଲା ଯେ ସତ୍ୟାଗ୍ରହ ବନ୍ଦ କରିବା ଠିକ୍ ହୋଇଛି । ମାତ୍ର ଆମ ଓଡ଼ିଶାରେ ଆମେ କରିବୁ କଅଣ ? ଏଠି ଯେ ଉତ୍କଟ ଅତ୍ୟାଚାର ! ଆଉ କେହି ନାହାନ୍ତି । ସେଠୁ ଫେରିଲି, ଯେତେ ଦୂର ପାରେ ମୋ କର୍ମୀ ଖରଚ କରି ସମସ୍ତଙ୍କୁ ଉତ୍ସାହ ଦେଉଥାଏ । ଇତିମଧ୍ୟରେ ଗାଁନ୍ଧିଙ୍କୁ ୬ ବର୍ଷ ଜେଲ ହେଲା । ଏଥିରେ ମୁଁ ବଡ ନିରୁତ୍ସାହ ହୋଇପଡ଼ିଲି ।

ସେ ସମୟରେ ପଣ୍ଡିତ ମଦନମୋହନ ମାଲବ୍ୟ ଅତି ସାହସ ସହକାରେ ସ୍ଥାନେ ସ୍ଥାନେ ଅତ୍ୟାଚାର ବିରୋଧରେ ପ୍ରତିବାଦ କରୁଥାଆନ୍ତି । ନିଜେ ମଧ୍ୟ ସ୍ଥାନ ଛଅ ଥର ୧୪୪ ଧାରା ଆଦେଶ ଅମାନ୍ୟ କରି ହାରିଲେଣି । ଅନ୍ୟ ଉପାୟ ନ ଦେଖି ମୁଁ ନିରଞ୍ଜନ ପଟ୍ଟନାୟକଙ୍କ ପାଖକୁ ଲେଖିଲି ଯେ ସେ ଓ ମୁଁ ମାଲବ୍ୟଙ୍କ ପାଖକୁ ଲକ୍ଷ୍ନୌ ଯିବା ଦରକାର । ସେ ରାଜି ହେଲେ । ଦୁହେଁ ଲକ୍ଷ୍ନୌ ଗଲୁଁ । ସେଠାରେ ମାଲବ୍ୟଙ୍କ ସହିତ ଦେଖା କରି ତାଙ୍କୁ ଓଡ଼ିଶାର ସମସ୍ତ ହାଲ ଜଣାଇଲୁଁ । ଭାରତ ସରକାରଙ୍କ ଯେଉଁ ଗୋପନୀୟ ନିର୍ଦ୍ଦେଶ କଥା ପୂର୍ବେ ଉଲ୍ଲେଖ କରାଯାଇଛି, ତାହା ତାଙ୍କୁ ଜଣାଇଲି । ଘରପୋଡ଼ି, କନିକା ଅତ୍ୟାଚାର, ଏ ସବୁ ତାଙ୍କୁ ପୁଙ୍ଖାନୁପୁଙ୍ଖ ରୂପେ ଜଣାଇଲି । ସେ ଧୀର ଭାବରେ ସବୁ ଶୁଣିଲେ । ସେ ଜିଦ୍ କଲେ ଯେ ସେ ଗୋପନୀୟ ନିର୍ଦ୍ଦେଶର ଅସଲ ଖଣ୍ଡ, କୌଣସି ପ୍ରକାରେ ଓ ଛଦ୍ମବେଶରେ କନିକା ଇଲାକାକୁ ଯାଇ ସେଠି କଅଣ ହୋଇଛି ସବୁ ସମ୍ବାଦ ତାଙ୍କୁ ଦେବାପାଇଁ । ତାଙ୍କଠାରୁ ଆମେ ଶୁଣିଲୁଁ ଯେ ଅନ୍ୟ ପ୍ରଦେଶମାନଙ୍କରେ ମଧ୍ୟ ସେହିପରି ଗୋପନ ଆଦେଶ ଦିଆହୋଇଛି, ମାତ୍ର ମୂଳ କାଗଜ କେଉଁଠାରୁ ବାହାରିଛି, ତାହା ସେ ପାଉନାହାନ୍ତି । ବିଭିନ୍ନ ପ୍ରଦେଶର ସମସ୍ତ ଅତ୍ୟାଚାରର ବିବରଣୀ ସଂଗ୍ରହ କରି ସେ ବିଲାତରେ ଏ ସବୁର ବିରୋଧରେ ଆନ୍ଦୋଳନ କରିବାର କଳ୍ପନା କରୁଥିଲେ । ଆମେ ନିତାନ୍ତ ଜିଦ୍ କଲୁଁ ଯେ, ସେ ଥରେ ଓଡ଼ିଶା ଆସନ୍ତୁ । ସେ ରାଜି ହେଲେ ଓ ଦରକାର ପଡ଼ିଲେ ୧୪୪ ଧାରା ଅମାନ୍ୟ କରି କନିକା ଭିତରକୁ ଯିବେ ବୋଲି କହିଲେ । କେଉଁ ଠିକଣାକୁ ସେ ପତ୍ର ଦେବେ ଓ କେଉଁବାଟେ ସେ କନିକା ଯିବେ, ଏ ସବୁ ଠିକ୍ କରି ଆମେ ଉତ୍ସାହିତ ହୋଇ ଫେରିଲୁ । ମୁଁ ସିଧା କଟକ ଗଲି । ଆଗରୁ କୃଷ୍ଣବାବୁ ଡାକ୍ତରଙ୍କ ନିକଟକୁ ତାର କରିଥିଲି ଯେ, ସେ ମୋତେ ବାଲେଶ୍ୱର ଷ୍ଟେସନରେ ଦେଖା କରିବେ । ତଦନୁସାରେ ରାତି ବାରଟାବେଳକୁ ସେ ଷ୍ଟେସନକୁ ଏକ୍‌ସପ୍ରେସ ଗାଡ଼ିକୁ ଆସିଥିଲେ । ମୁଁ ଗାଡ଼ିରୁ ଓହ୍ଲାଇ ତାଙ୍କ ସହିତ ଅତି ଗୋପନରେ ମାଲବ୍ୟଙ୍କ ଆସିବା ଖବର ଦେଇ କିପରି କଅଣ ବନ୍ଦୋବସ୍ତ କରିବାକୁ ହେବ, କହିଗଲି ।

କଟକ ଷ୍ଟେସନରେ ସକାଳେ ପହଞ୍ଚି ଗାଡ଼ିରୁ ଓହ୍ଲାଇବା ମାତ୍ରକେ ଜଣେ ଲୋକ ମୋତେ ପଚାରିଲା, "ମାଳବ୍ୟଜୀ କେବେ ଆସୁଛନ୍ତି, କନକା କେବେ ଯିବେ ?" ମୁଁ ବିସ୍ମିତ ହେଲି ଓ ଜାଣିପାରିଲି ଯେ ଗୁପ୍ତଚର ଆମ ପଛରେ ଲାଗିଛନ୍ତି । କଟକରୁ ବନ୍ଦୋବସ୍ତ କରି ବାଲେଶ୍ୱର ଫେରିଲି । ଫେରିବା ମାତ୍ରକେ ମୁଁ ୧୦୮ ଦଫାରେ ଧରା ହେଲି । ଏହା ପରେ ମାଳବ୍ୟଜୀ ଏଆଡ଼େ କିଛି ଚିଠି ନ ପାଇ ଚିଠି ଦେଇଥିଲେ । ମାତ୍ର ଏଠୁଁ କିଛି ଚିଠି ଗଲା ନାହିଁ । ସେ ଆଉ ଆସିପାରିଲେ ନାହିଁ । ସେତେବେଳକାର ଓଡ଼ିଶାର ବୀଭତ୍ସ ଅତ୍ୟାଚାର ସେହିପରି ନିର୍ବିବାଦରେ ଚାଲିଗଲା । ସେ କଥା ବର୍ତ୍ତମାନ ସୁଦ୍ଧା ଭାବିଲେ ରୋମାଞ୍ଚ ଜାତ ହୁଏ ।

## ଜେଲ ଜୀବନ ଆରମ୍ଭ

କାର୍ଯ୍ୟବିଧି ଆଇନର ୧୦୮ ଧାରା ଅନୁସାରେ ରାଜଦ୍ରୋହାତ୍ମକ କାର୍ଯ୍ୟରୁ ନିବୃତ୍ତ ରଖିବାପାଇଁ ଜଣକୁ ଏକବର୍ଷ ପର୍ଯ୍ୟନ୍ତ ଜାମିନରେ ରଖିବା ବା ଜାମିନ ନ ଦେଲେ ଜେଲରେ ରଖିବାର ବିଧି । ଏହି ଦଫା ଅନୁସାରେ ମୁଁ ଦୁଇହଜାର ଟଙ୍କା ଜାମିନରେ ଏକବର୍ଷ ସକାଶେ କାହିଁକି ନ ରଖାଯିବି, ଏଥିପାଇଁ ପ୍ରଥମେ ସମନ୍ ହେଲା । ସମନ୍ ଅନୁସାରେ କଚେରୀରେ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ଠାରେ ହାଜର୍ ହେଲି-ମାତ୍ରକେ ପୁଣି ଅନ୍ୟ ତାରିଖରେ ହାଜର ହେବାପାଇଁ ଜାମିନ ଦେବାକୁ ଆଦେଶ ହେଲା, ମାତ୍ର ମୁଁ ଜାମିନ ଦେଲିନାହିଁ । ଜିଲ୍ଲା ମାଜିଷ୍ଟ୍ରେଟ ମୋର ପରିଚିତ ଥିଲେ । ଅତି ବ୍ୟସ୍ତ ହୋଇ ମୋତେ ଜାମିନ ଦେବାପାଇଁ ଜିଦ୍ କଲେ; ମାତ୍ର ମୁଁ ଅସହଯୋଗ ନୀତି ଅନୁସାରେ ତାଙ୍କ ଅନୁରୋଧ ରକ୍ଷା କରିପାରିଲି ନାହିଁ । ବିଚାରାଧୀନ ଅବସ୍ଥାରେ ଜେଲରେ ରହିଲି । ୧୯୨୨ ସାଲ ଜୁଲାଇ ମାସ ୧୦ ତାରିଖରେ ତତ୍କାଳୀନ ବାଲେଶ୍ବର ଜିଲ୍ଲା ମାଜିଷ୍ଟ୍ରେଟ ଶ୍ୟାମଲାଲ ଗୁପ୍ତଙ୍କ କୋର୍ଟରେ ବିଚାର ହେଲା । ମାତ୍ର ୧୯୨୧ ସାଲ ଆଦ୍ୟରେ ମୁଁ ଯେଉଁସବୁ ବକ୍ତୃତା ଦେଇଥିଲି ବା 'ସ୍ୱରାଜ ସମାଚାର'ରେ ଯାହା ଲେଖିଥିଲି, ତାହା ହିଁ ସବୁ ମୋ ବିରୋଧରେ ଉପସ୍ଥାପିତ ହେଲା । ୧୯୨୨ ସାଲର ଘଟଣା ଭିତରେ କନିକା ଅତ୍ୟାଚାର ବିରୋଧରେ ବକ୍ତୃତା ଦେବା ମୋ ବିରୋଧରେ ଅଭିଯୋଗ ରୂପେ ଆଗତ ହୋଇଥିଲା । ବୋଲିବା ବାହୁଲ୍ୟ ଯେ, ମୋକଦ୍ଦମା ଶୁଣାଣୀ ବେଳେ ଆତ୍ମପକ୍ଷ ସମର୍ଥନ କରି କିଛି କହି ନ ଥିଲି । ଶୁଣାଣୀ ଶେଷରେ ମୋର ଯାହା କହିବାର କଥା, ତାହା ଇଂରେଜୀରେ ଲେଖିକରି ନିମ୍ନଲିଖିତ ମତେ ଦେଇଥିଲି :—

"ଜଣେ ଅସହଯୋଗ ଆନ୍ଦୋଳନକାରୀ ହିସାବରେ ମୋ ବିରୁଦ୍ଧରେ ୧୦୮ ଦଫାରେ ଯେଉଁ ମୋକଦ୍ଦମା ଚାଲିଛି, ସେ ସମ୍ପର୍କରେ ସାଧାରଣଙ୍କ ଆଗରେ ସବୁ ସତକଥା ଉପସ୍ଥାପିତ କରିବା ମୋର ଏକାନ୍ତ କର୍ତ୍ତବ୍ୟ । ଏହାଦ୍ୱାରା ହିଁ ମୋତେ ସମସ୍ତେ ଠିକ୍ ବୁଝି ପାରିବେ । ଅନ୍ତତଃ କେହି ଭୁଲ ବୁଝିବେ ନାହିଁ । ମୋ ନିକଟରେ ଘଟଣା ସମ୍ପର୍କୀୟ ଯେଉଁ ତଥ୍ୟସବୁ ଅଛି, ତାହା ମୁଁ ବର୍ଣ୍ଣନା କଲେ ବିଚାରକାରୀ ମାଜିଷ୍ଟ୍ରେଟ ଓ ମୋର ପୋଲିସ ବନ୍ଧୁଙ୍କୁ ବିନା ଶ୍ରମରେ ସାକ୍ଷ୍ୟ ସଂଗ୍ରହ କରିବାଟା

ସହଜ ହୋଇପଡ଼ିବ । ମୁଁ ୧୯୨୧ ସାଲ ସେପ୍ଟେମ୍ବର ମାସରୁ ଯେଉଁସବୁ ପ୍ରଚାର କରୁଛି ଓ ଲେଖା ଲେଖୁଛି, ତାହା ରାଜଦ୍ରୋହାତ୍ମକ ବୋଲି ବାଲେଶ୍ୱରର ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ ଓ ପୋଲିସ ଇନ୍‌ସପେକ୍ଟର ରିପୋର୍ଟ କରିଛନ୍ତି । ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ, ସେମାନେ ଘଟଣା ସମ୍ପର୍କରେ ପୂର୍ଣ୍ଣ ଅଜ୍ଞ । ବାସ୍ତବରେ ସେମାନେ ଯାହା କହୁଛନ୍ତି, ସେହି କଥା ମୁଁ ୧୯୨୦ ସାଲ ଏପ୍ରିଲ ୬ ତାରିଖଠାରୁ କହିଆସୁଛି । 'ରାଜଦ୍ରୋହ' ଏହି ଶବ୍ଦ ଉପରେ ମୁଁ ବିଶେଷ ଆଲୋଚନା କରିବାକୁ ଯାଉନାହିଁ; କିନ୍ତୁ ଦୃଢ଼ତାର ସହିତ ମୁଁ ଏହା କହିପାରେ ଯେ, ମୁଁ ଯାହା ପ୍ରଚାର କରିଛି ବା କାର୍ଯ୍ୟ କରିଛି ତାହା ୧୨୪ଏ ଦଫାରେ ଦଣ୍ଡନୀୟ । ମହାତ୍ମ ଗାନ୍ଧୀଙ୍କର ବାଣୀ ମୁଁ ବାଲେଶ୍ୱର ଜିଲ୍ଲାରେ ପ୍ରଚାର କରିବାର ଯେ ସୌଭାଗ୍ୟ ପାଇଛି, ସେହି ବାଣୀ ପ୍ରଚାର କରି ନିଜେ ଗାନ୍ଧିଜୀ ସେହି ଦଫାରେ ଦଣ୍ଡିତ ହୋଇଛନ୍ତି । ମୋର ଯାହା ଦୃଢ଼ ବିଶ୍ୱାସ ଓ ମତ, ତାହା ମୁଁ ପ୍ରଚାର କରୁଛି ଏବଂ ତାହା ବିଚାର କରି ଗ୍ରହଣ କରିବାକୁ ମୁଁ ଲୋକମାନଙ୍କୁ ଆହ୍ୱାନ କରୁଛି । ମୋର ମତ ଗ୍ରହଣ କରିବାକୁ ମୁଁ କାହାକୁ ହେଲେ ଜବରଦସ୍ତି କରି ନାହିଁ । ମୋର ଏହି ମତ—ବର୍ତ୍ତମାନ ସରକାର ଏତେ ଧର୍ମହୀନ ଓ ସ୍ୱେଚ୍ଛାଚାରୀ ଯେ, ତାକୁ ମୁହୂର୍ତ୍ତେ ହେଲେ ରହିବା ପାଇଁ ଦେବା ଉଚିତ ନୁହେଁ ଏବଂ ଏଥିପାଇଁ କୌଣସି ବାଧା ଦେବା କାହାରି ମଧ୍ୟ ଉଚିତ ନୁହେଁ । ଏ ସରକାର ଅତି ଶୀଘ୍ର ଅପସରିଯାଉ, ଏହି ଧାରଣା ମୋ ମନରେ ପ୍ରତିକ୍ଷଣରେ ଦୃଢ଼ୀଭୂତ ହେଉଛି ।

"ରୁଷର ଏକଛତ୍ର ଶାସନର ଅତ୍ୟାଚାର ଓ ଦମନନୀତି ମୁଁ ଇତିହାସରେ ପଢ଼ିଛି । ଇଟାଲୀ ରାଜ୍ୟର ଅତ୍ୟାଚାର କାହାଣୀ ମୁଁ ମଧ୍ୟ ଇତିହାସରୁ ପଢ଼ିଛି । ମୁସଲମାନ ଓ ମୋଗଲ ଶାସନର ବର୍ବରତା ମୁଁ ମଧ୍ୟ ଇତିହାସରୁ ପଢ଼ିଛି । ଆୟର୍ଲଣ୍ଡରେ ବ୍ରିଟିଶ ସାମ୍ରାଜ୍ୟବାଦର ନୃଶଂସ ଅତ୍ୟାଚାର ସମ୍ବନ୍ଧରେ ମୁଁ ନିକଟରେ ଡି. ଭେଲେରାଙ୍କ ଲେଖାପଢ଼ିଛି । ଶତ ଶତ ବର୍ଷ ବ୍ୟାପୀ ଦାସତ୍ୱ ଓ ଲାଞ୍ଛନା ପାଇ-ଆସିଥିବା ୩୩ କୋଟି ଲୋକ ବିଶିଷ୍ଟ ଗୋଟିଏ ବିରାଟ ଜାତିର ଜନ୍ମଗତ ଦାବୀ ଓ ସ୍ୱାଧୀନତା ପିପାସାକୁ ଚୂର୍ଣ୍ଣ କରିବା ପାଇଁ ଯେଉଁ ସଂଗଠିତ ଅତ୍ୟାଚାର ଓ କୌଶଳ-ପୂର୍ଣ୍ଣ ଶୋଷଣ ଚାଲିଛି, ସେପରି କୌଣସି ଯୁଗରେ କୌଣସି ଦେଶର ଇତିହାସରେ ଶୁଣା ନାହିଁ କିମ୍ବା ଘଟି ନାହିଁ । ସମଗ୍ର ମାନବ ସମାଜର ଏକପଞ୍ଚମାଂଶ ଲୋକଙ୍କୁ ନିଜର ସ୍ୱାର୍ଥସିଦ୍ଧି ପାଇଁ କେତେକ ମୁଷ୍ଟିମେୟ ଲୋକଙ୍କ ଦ୍ୱାରା ଗଠିତ ଏକ ସରକାର ଚିର ଦାସତ୍ୱ ନିଗଡ଼ରେ ବାନ୍ଧି ରଖିବା ପାଇଁ ଯେଉଁ ଚେଷ୍ଟା ଚଳାଉଛନ୍ତି, ଯେ କୌଣସି ଆତ୍ମସମ୍ମାନବୋଧ ବିଶିଷ୍ଟ ଲୋକ ତା'ର ପ୍ରତିରୋଧ ନିଜର ଜୀବନ ବିନିମୟରେ ମଧ୍ୟ କରିବା ଉଚିତ । ପୃଥିବୀର ଏହି ଏକପଞ୍ଚମାଂଶ ଲୋକଙ୍କ ଉପରେ ଦଳେ ଲୋକ ଯେଉଁ ନିର୍ମମ ଶୋଷଣ ଚଳାଉଛନ୍ତି, ତା ବିରୋଧରେ ଅଭିଯାନ କରିବା

ପ୍ରତ୍ୟେକ ଭାରତବାସୀର କର୍ତ୍ତବ୍ୟ । ଅସହଯୋଗ ଆନ୍ଦୋଳନର ରାଜନୈତିକ ଦୃଷ୍ଟି କୋଣକୁ ଛାଡ଼ିଦେଲେ ମଧ୍ୟ ଅନ୍ତତଃ ମାନବିକତା ଦୃଷ୍ଟିରୁ ଯେଉଁ ମନୁଷ୍ୟ ନିଜ ଜୀବନର ମୂଲ୍ୟ ବୁଝିଛି, ଏ ଅଭିଯାନରେ ଭାଗ ନେବା ତାର କର୍ତ୍ତବ୍ୟ । ମନୁଷ୍ୟ-ଜୀବନ ଖାଇବା ପିଇବା, ଶୋଇବା ପାଇଁ ସୀମାବଦ୍ଧ ନୁହେଁ କିମ୍ବା ଅର୍ଥ ଉପାର୍ଜନ କରିବା ବା ନିଜର ଅନ୍ତରର ବାଣୀକୁ ସଙ୍କୁଚିତ କରି କାମ କରିବା ପାଇଁ ଉଦ୍ଦିଷ୍ଟ ନୁହେଁ । ସେ ଜୀବନର ଲକ୍ଷ୍ୟ ଅତି ମହାନ୍ ଓ ଆଦର୍ଶମୟ । ଅସହଯୋଗ ଆନ୍ଦୋଳନ ଏହାର ପଥ ପରିଷ୍କାର କରିଦେଇଛି । ଅସହଯୋଗ ଆନ୍ଦୋଳନର ଜଣେ ସାଧାରଣ କର୍ମୀ ହିସାବରେ ମୋର କର୍ତ୍ତବ୍ୟ ଜାଣିବା ପାଇଁ ମୁଁ ଯଥାସାଧ୍ୟ ଚେଷ୍ଟା କରିଛି ଏବଂ କାର୍ଯ୍ୟ କରିବା ପୂର୍ବରୁ ମଧ୍ୟ ମୁଁ ଭଲଭାବରେ ଜାଣିଛି ଯେ, ମୋର ଏହି କାର୍ଯ୍ୟପାଇଁ ମୁଁ ୧୨୪ଏ ଦଫାରେ କିମ୍ବା ଏହି ଅତ୍ୟାଚାରୀ ଶୋଷକମାନଙ୍କ ମନଇଚ୍ଛା ଯେକୌଣସି ଦଫାରେ ଦଣ୍ଡନୀୟ ।

"ଏହା ମଧ୍ୟ ମୁଁ କହିଦେବାକୁ ଚାହେଁ ଯେ, ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଏହି ଶୋଷଣ ନୀତିକୁ ଯେଉଁମାନେ ସମର୍ଥନ ବା ସାହାଯ୍ୟ କରୁଛନ୍ତି, ସେମାନେ ଭଗବାନଙ୍କ ନିକଟରେ ଦ୍ରୋହୀ ଏବଂ ନିଜର ବିବେକ ଠାରେ ଅପରାଧୀ । ସେମାନେ ଅର୍ଥ ଲାଳସା, ସମ୍ଭୋଗ ପିପାସାକୁ ତୃପ୍ତି କରିବା ଉଦ୍ଦେଶ୍ୟରେ ନିଜର ବିବେକ ଓ ଆତ୍ମାକୁ ବିକି ଦେଇଛନ୍ତି । ଏହା ଅତି ଲଜ୍ଜାର ବିଷୟ । ମୁଁ ସାମରିକ, ବେସାମରିକ ସମସ୍ତ ସରକାରୀ କର୍ମଚାରୀମାନଙ୍କୁ ଅନୁରୋଧ କରିଆସିଛି, ସେମାନେ କାର୍ଯ୍ୟଛାଡ଼ି ଏହି ଶୋଷଣକଳକୁ ଅଚଳ କରିଦେବାକୁ । କାରଣ ଏହି ସରକାର ଅଧୀନରେ ମନୁଷ୍ୟର ଆତ୍ମସମ୍ମାନ ନଷ୍ଟ ହେଉଛି ଏବଂ ମନୁଷ୍ୟତା ମଧ୍ୟ ଲୋପ ପାଉଛି । ୧୯୨୧ ଏପ୍ରିଲ ୭ ତାରିଖଠାରୁ ଜିଲ୍ଲାର ସମସ୍ତ ଅଞ୍ଚଳରେ ମୁଁ ଏହିସବୁ ସମ୍ପର୍କରେ ପ୍ରଚାର କରିଆସୁଛି ଓ ପ୍ରଚାର ପତ୍ର ବାଣ୍ଟିଛି ।

"ମୁଁ ବରାବର ଏହି କାର୍ଯ୍ୟ ଚଳାଇବାର ସମ୍ଭାବନା ଅଛି । ଏହି ସାକ୍ଷ୍ୟ ସଂଗ୍ରହ କରିବା ପାଇଁ ମୋର ପୋଲିସ ବନ୍ଧୁମାନଙ୍କୁ ବହୁତ ପରିଶ୍ରମ ପଡ଼ିଥିବ; କାରଣ ଗତ ମେ ମାସର ମଧ୍ୟଭାଗରୁ ମୁଁ କୌଣସି ଗୋଟିଏ ସଭାରେ ଭାଷଣ ଦେଇନାହିଁ କିମ୍ବା ଖଣ୍ଡିଏ ହେଲେ ପ୍ରଚାରପତ୍ର ବାଣ୍ଟି ନାହିଁ । ଏହାପୂର୍ବରୁ ମୁଁ ପ୍ରତ୍ୟେକ ସପ୍ତାହରେ ସଭା ସମିତି କରି ଭାଷଣ ଦେଉଥିଲି ଓ ପ୍ରତି ପନ୍ଦର ଦିନରେ ପ୍ରଚାରପତ୍ର ବାଣ୍ଟୁଥିଲି । କିନ୍ତୁ ମୋ ଉପରେ ୧୪୪ ଧାରା ଜାରି କରି ମୋର ଦୁଇଟିଯାକ ହାତଛପା କଳ ପୋଲିସ ଜବତ କରି ନେଇଯିବା ଦିନଠାରୁ ମୋର ପ୍ରଚାରପତ୍ର କାର୍ଯ୍ୟ ବନ୍ଦ ରହିଛି । ଏହା ପରେ ମୋ କାର୍ଯ୍ୟରେ ମୁଁ ଆଉ ଅଗ୍ରସର ହୋଇପାରିନାହିଁ । ଅତଏବ ଏହାପରେ ମୁଁ ତଥାକଥିତ

ରାଜଦ୍ରୋହ ସମ୍ପର୍କରେ ପ୍ରଚାର କରିବାର ସମ୍ଭାବନା କେଉଁଠି ଅଛି ? ମୁଁ ରାଜଦ୍ରୋହ ସମ୍ପର୍କରେ ପ୍ରଚାର କରିଥିବାର ଯେଉଁ ଭୁଲ ତାରିଖ ରିପୋର୍ଟ କରାଯାଇଛି ଉପରୋକ୍ତ ଘଟଣାବଳୀରୁ କପରି ଭାବରେ ମକଦ୍ଦମା ଚାଲୁଛି ଓ ମ୍ୟାଜିଷ୍ଟ୍ରେଟ ଏଥିରେ କପରି ନ୍ୟାୟ ବିଚାର କରୁଛନ୍ତି, ସେ ସବୁ କଥାର ଭିତରି ରହସ୍ୟ ସବୁ ସ୍ପଷ୍ଟ ବୁଝିପଡ଼ୁଛି । ଯାହା ହେଉ, ମୁଁ ଏତିକି କହିଦେବାକୁ ଚାହେଁ ଯେ, ମୁଁ ବଞ୍ଚି ରହିଥିବା ପର୍ଯ୍ୟନ୍ତ ଏହି କାର୍ଯ୍ୟ ଚଳାଇବି, ଯେଉଁଦିନ ପର୍ଯ୍ୟନ୍ତ ବଳପୂର୍ବକ ଏହି କାର୍ଯ୍ୟରୁ ମୋତେ କ୍ଷାନ୍ତ କରା ନ ଯାଇଛି, ସେତେଦିନ ପର୍ଯ୍ୟନ୍ତ ମୁଁ କାର୍ଯ୍ୟ ନିଶ୍ଚୟ କରିବି । କେବଳ ଯେ ଏହି ସରକାର ଚାଲିଗଲେ ମୋର ଏହି କାର୍ଯ୍ୟ ଶେଷ ହୋଇଯିବ, ତାହା ନୁହେଁ, ଯେତେଦିନ ପର୍ଯ୍ୟନ୍ତ ମନୁଷ୍ୟର ନ୍ୟାଯ୍ୟ ଅଧିକାର ଉପରେ କୌଣସି ବ୍ୟକ୍ତିବିଶେଷ ବା ଦଳ ହସ୍ତକ୍ଷେପ କରିବେ, ସେତେଦିନ ପର୍ଯ୍ୟନ୍ତ ମୋର ଏହି ସଂଗ୍ରାମ ଚାଲୁ ରହିବ । ଏହି ବର୍ବର ଶୋଷଣ ବିରୁଦ୍ଧରେ, ସଂଗ୍ରାମ କରିବା ମୋର ସ୍ୱତଃସିଦ୍ଧ କଥା । ନିଜେ ବଞ୍ଚିବା ଓ ଅନ୍ୟମାନଙ୍କୁ ବଞ୍ଚିବାର ସୁଯୋଗ ଦେବା— ଏହି ଯେଉଁ ମହାଶିକ୍ଷା ଗାନ୍ଧିଜୀଙ୍କଠାରୁ ମୁଁ ପାଇଛି, ତାକୁ ମୁଁ ଶରୀରରେ ପ୍ରାଣ ଥିବା ପର୍ଯ୍ୟନ୍ତ ପ୍ରଚାର କରିବି । ମୋର ଏହି କାର୍ଯ୍ୟକୁ ରାଜଦ୍ରୋହ କୁହାଯାଇ-ପାରେ କିମ୍ବା ଅନ୍ୟ ଯେକୌଣସି ଆଖ୍ୟା ଦିଆଯାଇପାରେ ଓ ସେଥିଲାଗି ମୋ ପ୍ରତି ଯେକୌଣସି ଦଣ୍ଡବିଧାନ କରାଗଲେ ମଧ୍ୟ ମୁଁ ତାହା ବରଣ କରିବାକୁ ପ୍ରସ୍ତୁତ ଅଛି । ଏହି ସଂଗ୍ରାମ ମୁଁ ମୋର ଜୀବନ ବିନିମୟରେ ମଧ୍ୟ ନିଶ୍ଚୟ ଚଳାଇବି ।

"ମୁଁ ଏଠାରେ ଆଉ ଗୋଟିଏ କଥା ସ୍ପଷ୍ଟ କହିଦେବାକୁ ଚାହେଁ ଯେ, ହିଂସାରେ ମୋର ବିଶ୍ୱାସ ନାହିଁ । ମୁଁ କେବେହେଲେ ହିଂସାର ପ୍ରଚାର କରିନାହିଁ ବା ହିଂସାତ୍ମକ କାର୍ଯ୍ୟକୁ ପ୍ରଶ୍ରୟ ଦେଇ ନାହିଁ । ବାଲେଶ୍ୱର ଜିଲ୍ଲାରେ ଅସହଯୋଗ ଆନ୍ଦୋଳନ ଲାଗି ମୁଁ ପୁରାପୁରି ଦାୟୀ ଏବଂ ଏହି ଆନ୍ଦୋଳନରେ ଆଜି ପର୍ଯ୍ୟନ୍ତ ହିଂସାର କଳଙ୍କ ଲାଗିନାହିଁ । ଅସହଯୋଗ ଆନ୍ଦୋଳନରେ କେଉଁଠି ହିଂସାତ୍ମକ କାର୍ଯ୍ୟ ଘଟିଛି ବା ମୁଁ କେଉଁଠି ହିଂସାର ପ୍ରଚାର କରିଛି, ଏକଥା ପ୍ରମାଣିତ କରିବା ପାଇଁ ମୁଁ ଏହି ଜିଲ୍ଲାର ଅନ୍ୟ ସ୍ଥାନରେ ଥିବା ମୋର ସମସ୍ତ ପ୍ରତିପକ୍ଷ ଲୋକଙ୍କୁ ଆହ୍ୱାନ କରୁଛି । ମୋର ଦୃଢ଼ ବିଶ୍ୱାସ, କେବଳ ମାତ୍ର ଅହିଂସା ଦ୍ୱାରା ହିଁ ଆମେ ଆମ ସଂଗ୍ରାମରେ ବିଜୟ ଓ ସଫଳତା ହାସଲ କରିପାରିବୁ ।

"ମୁଁ କେବେ ହେଲେ ବର୍ଣ୍ଣଗତ ବିଦ୍ୱେଷ ପ୍ରଚାର କରିନାହିଁ ଏବଂ ମୁଁ ଏହାର ଘୋର ବିରୋଧୀ । ମୁଁ ସରକାର ବୋଲି ଯାହାକୁ କହୁଛି, ସେଥିରେ ମଧ୍ୟ ଭାରତୀୟମାନେ ଅନ୍ତର୍ଭୁକ୍ତ । ଯେଉଁମାନେ ସେହି ସରକାର ଗଢ଼ିଛନ୍ତି ଓ ଅନ୍ୟ ଯେଉଁମାନେ ସେହି ସରକାରକୁ ସମର୍ଥନ କରୁଛନ୍ତି, ମୁଁ ସେହିମାନଙ୍କୁ ଲକ୍ଷ୍ୟ କରି କହୁଛି" ।

"ଅଭିନ ଅନୁଯାୟୀ ଭଲ ବ୍ୟବହାର ସମ୍ପର୍କରେ ଜାମିନ୍ ଦେବାପାଇଁ ଯେଉଁ ବ୍ୟବସ୍ଥା ରହିଛି, ମୁଁ ସେଥିରେ କଦାପି ଏକମତ ନୁହେଁ । ଏହା ମୋର ବିବେକ ଓ ନୀତିବିରୁଦ୍ଧ । ମୁଁ ଯେ କୌଣସି ଦୀର୍ଘ କାରାଦଣ୍ଡ ବରଣ କରିବାକୁ ପ୍ରସ୍ତୁତ; କିନ୍ତୁ ମୁଁ ଜାମିନ୍ ଦେବ ନାହିଁ ।"

ମୋକଦ୍ଦମା ବିଚାର ପରେ ଜିଲ୍ଲା ମାଜିଷ୍ଟ୍ରେଟ୍ ଜୁଲାଇ ୧୩ ତାରିଖରେ ରାୟ ଦେଲେ ଯେ, ବର୍ଷକ ପାଇଁ ସଦାଚରଣ ସକାଶେ ଟ ୧୦୦୦୍‌ର ଦୁଇଟି ଜାମିନ୍ ଦେବାକୁ ହେବ, ନଚେତ୍ ଏକବର୍ଷ ସଶ୍ରମ କାରାଦଣ୍ଡ ଭୋଗ କରିବାକୁ ହେବ । ଏ ଆଦେଶଟି ମୋତେ ଶୁଣାଇଁ ଦେଇ ବାରମ୍ବାର ମୋତେ ଅନୁରୋଧ କଲେ ଓ ବୁଝେଇଲେ ଯେ, ଜାମିନ୍ ଦେଇଦେବା ହିଁ ଉଚିତ, ମାତ୍ର ମୁଁ ନାସ୍ତି କଲି । ସନ୍ଧ୍ୟା ପର୍ଯ୍ୟନ୍ତ ମୋତେ ସମୟ ଦେଲେ । ତାଙ୍କ ଅଫିସ୍ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ପଠାଇ ମୋତେ ପୁଣି ପ୍ରବର୍ତ୍ତାଇଲେ । ମୁଁ କହି ପଠାଇଲି, ବ୍ରିଟିଶ ସରକାରଙ୍କ ଅଙ୍ଗ ହୋଇ ନିଜ ଦେଶ ଲୋକଙ୍କ ଉପରେ ନାନା ପ୍ରକାର ପୈଶାଚିକ ଅତ୍ୟାଚାର କରିବାରେ ଭାଗୀ ହୋଇ ଯଦି ବିବେକର ଦଂଶନ ମାଜିଷ୍ଟ୍ରେଟ୍ ସାହେବ ଅନୁଭବ ନ କରୁଛନ୍ତି, ତେବେ ମୋତେ ଜେଲ୍ ଦେଇ ପୁଣି ଜାମିନ୍ ଦେବାପାଇଁ ବାରମ୍ବାର ଅନୁରୋଧ କରି ନିଜର ବିବେକ ସହିତ ରଫାନାମା କରିବାର ଆବଶ୍ୟକତା କିଛି ନାହିଁ ।

ମୁଁ ଜେଲ୍ ଗଲି । ସେତେବେଳେ 'କ', 'ଖ', ବା 'ଗ' ଶ୍ରେଣୀ ବନ୍ଦୀ ଏପରି କିଛି ନ ଥିଲା । ରାଜନୈତିକ ବନ୍ଦୀମାନଙ୍କୁ ଏକ ସ୍ୱତନ୍ତ୍ର ଶ୍ରେଣୀ କରି ରଖା-ଯିବାର ଆଦେଶ ଦେବାପାଇଁ ବିଚାରକମାନଙ୍କର ଅଧିକାର ଥିଲା । ବିଚାରକମାନେ ଯଦି କିଛି ଲେଖି ନ ଥିଲେ, ତାହାହେଲେ ସାଧାରଣ କଏଦୀ ଭାବରେ ରହିବାକୁ ପଡ଼ୁଥିଲା । ମୋ ବିଷୟରେ ମାଜିଷ୍ଟ୍ରେଟ୍ କିଛି ଲେଖି ନ ଥିଲେ । ଏ ବିଷୟ ତାଙ୍କୁ ମନେ ପକାଇ ଦେଇ କହିବାକୁ ମୋର କେତେକ ବନ୍ଧୁ ମୋତେ ପ୍ରବର୍ତ୍ତାଇ ଥିଲେ । ମାତ୍ର ଜେଲରେ ସବୁ ପ୍ରକାର କଷ୍ଟ ସହିବା ଉଚିତ ବୋଲି ମୁଁ ସେଥିରେ ରାଜି ହେଲିନାହିଁ । ଏଣୁ ସାଧାରଣ କଏଦୀ ଭାବରେ ମୁଁ ରହିଲି । ଦୁଇ ତିନି ଦିନ ପରେ ବାଲେଶ୍ୱର ଜେଲରୁ ମୁଁ କଟକ ଜେଲକୁ ବଦଳି ହେଲି । ସକାଳ ଗାଡ଼ିରେ ଅଧା କଂପିଆ ଓ ହାତକଟା ଜାମା ପ୍ରଭୃତି ଜେଲ ପୋଷାକ ପିନ୍ଧି ବାଲେଶ୍ୱରରୁ କଟକ ଆସିବାକୁ ବାହାରିଲି । ବଡ଼ ସଂକୋଚବୋଧ ହେଉଥାଏ । ଏଣେ ହାତରେ ହାତ-କଡ଼ି ଓ ଗୋଡ଼ରେ ବେଡ଼ି । ଏସବୁ ପୋଷାକ ପିନ୍ଧି ଜେଲରୁ ଷ୍ଟେସନ କିପରି ଚାଲି ଆସି ହୋଇଥିଲି, ତାହା ବର୍ତ୍ତମାନ ହୁଏତ ଅକଳ୍ପନୀୟ ହୋଇପାରେ, ମାତ୍ର ସେତେବେଳେ ତାହା ଖେଳ ପରି ଥିଲା । ବାଲେଶ୍ୱର ଷ୍ଟେସନରେ ସେହି ଗାଡ଼ିରେ

ବିହାର ଓଡ଼ିଶା ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ ମେମ୍ବର ସଚ୍ଚିଦାନନ୍ଦ ସିଂହ ଆସି ପହଞ୍ଚିଥିଲେ । ତାଙ୍କୁ ମୁଁ ଦୂରରୁ ଦେଖିଥିଲି । ଏବେ ସେ ଘଟଣା ସମ୍ବନ୍ଧରେ ସେ ଓଡ଼ିଶାର ଲାଟ୍ ମହାମାନ୍ୟ.ଅସଫ ଅଲିଙ୍କଠାକୁ ଖଣ୍ଡିଏ ଚିଠିରେ ନିମ୍ନଲିଖିତମତେ ଲେଖିଛନ୍ତି:—

"ସେତେବେଳେକାର ଆଉ ଏକ ବିଶିଷ୍ଟ ଘଟଣା ମୋର ଆଜି ସୁଦ୍ଧା ଜ୍ୱଳନ୍ତ ଭାବରେ ମନେଅଛି । ୧୯୨୧ ସାଲ ଅଗଷ୍ଟ ମାସରେ ମୁଁ ସରକାରୀ ଗସ୍ତରେ ପ୍ରଥମ ଥର ପାଇଁ ଓଡ଼ିଶା ଆସିଥିଲି । ବାଲେଶ୍ୱରରେ ପହଞ୍ଚି ସେଠାରୁ କଟକ ପର୍ଯ୍ୟନ୍ତ କେନାଲ ପଥରେ ଯାତ୍ରା କରିଥିଲି । ଦିନେ ସକାଳେ ଚିଫ୍ ଇଞ୍ଜିନିୟର ଓ ସ୍ଥାନୀୟ ପୋଲିସ ସୁପରିଣ୍ଟେଣ୍ଡେଣ୍ଟଙ୍କ ସହ ବାଲେଶ୍ୱର ଷ୍ଟେସନରେ ଓହ୍ଲାଇବା ମାତ୍ରକେ ତୁମର ବର୍ତ୍ତମାନ ପ୍ରଧାନମନ୍ତ୍ରୀ ମୋର ପ୍ରିୟ ବନ୍ଧୁ ମହତାବଙ୍କୁ ମୁଁ ଆକସ୍ମିକ ଭାବରେ ପ୍ଲାଟଫର୍ମରେ ଭେଟିଥିଲି । ତାଙ୍କ ହାତରେ ସେତେବେଳେ ହାତକଡ଼ି ପଡ଼ିଥିଲା ଓ ବୋଧହୁଏ ଗୋଡ଼ରେ ମଧ୍ୟ ଗୋଡ଼ ବେଡ଼ି ପଡ଼ିଥିଲା ଓ କେତେଗୁଡ଼ିଏ ପୋଲିସ କନେଷ୍ଟବଲ ତାଙ୍କୁ ଘେରି ଜଗି ରହିଥିଲେ । ତାଙ୍କୁ ଏହିପରି ଦୁର୍ଦ୍ଦଶାଗ୍ରସ୍ତ ଅବସ୍ଥାରେ ଦେଖି ମୁଁ ସ୍ତମ୍ଭୀଭୂତ ହୋଇପଡ଼ିଲି । ବାଲେଶ୍ୱରର ତତ୍କାଳୀନ ଜିଲ୍ଲା ମାଜିଷ୍ଟ୍ରେଟ ରାୟ ବାହାଦୂର ଖାତିରିରେ ମୋତେ ପାଛୋଟି ନେବା ଉଦ୍ଦେଶ୍ୟରେ ପ୍ଲାଟଫର୍ମରେ ଠିଆହୋଇ ରହିଥିଲେ; କିନ୍ତୁ ମହତାବଙ୍କର ଏପରି ଅବସ୍ଥା ଓ ସେ କରୁଣ ଦୃଶ୍ୟ ମୋ ମନରେ ଏତେ ଆଘାତ ଆଣିଥିଲା ଯେ, ଏପରିକି ମୁଁ ଗାର୍ଡ ଅଫ୍ ଅନର ପରିଦର୍ଶନ କରିବାକୁ ଖାତିର୍ ନ କରି ହଠାତ୍ ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ଡକାଇ ମହତାବଙ୍କୁ ଏପରି ନିଷ୍ଠୁର ଦଣ୍ଡ ଆଦେଶ ହୋଇଥିବାର କାରଣ ଓ ତା'ର ପୂର୍ଣ୍ଣ ବିବରଣୀ ଦେବାକୁ କୈଫିୟତ ମାଗିଥିଲି । ଆଉ ମଧ୍ୟ ସେମାନଙ୍କୁ ପଚାରିଲି, ମହତାବ କ'ଣ କୌଣସି ନରହତ୍ୟା ଅପରାଧ କରିଛନ୍ତି, ଯେଉଁଥିପାଇଁ ତାଙ୍କୁ ଏପରି କଠିନ ଦଣ୍ଡ ଆଦେଶ ହୋଇଛି ଓ ତାଙ୍କ ପ୍ରତି ଏପରି ଅମାନୁଷିକ ବ୍ୟବହାର କରାଯାଉଛି ।" ସେମାନେ କୈଫିୟତ୍ ଦେଇ କହିଲେ, ମହତାବ କେତେକ ଅହିଂସାତ୍ମକ କାର୍ଯ୍ୟ କରିଥିବାରୁ ତାଙ୍କୁ ଏ ଦଣ୍ଡ ଆଦେଶ ହୋଇଛି । ଏହା ଶୁଣିବା ମାତ୍ରକେ ହଠାତ୍ ମୋ ମନରେ ସାହସ ଓ ବଳ ବଢ଼ିଗଲା ଓ ମହତାବ୍‌ଙ୍କ ଠାରୁ ଅତି ଶୀଘ୍ର ଗୋଡ଼ ବେଡ଼ି କାଢ଼ିନେବାକୁ ମୁଁ ସେମାନଙ୍କୁ ଆଦେଶ ଦେଲି । ତାଙ୍କୁ ଭଦ୍ରଲୋକ ଭାବରେ ନେବା ପାଇଁ ଓ ସେହି ଅନୁସାରେ ବ୍ୟବହାର କରିବାପାଇଁ ମଧ୍ୟ ନିର୍ଦ୍ଦେଶ ଦେଲି । ଭାଗ୍ୟବଶତଃ ସେମାନେ ତତ୍‌କ୍ଷଣାତ୍ ମୋର ଆଦେଶ ପାଳନ କରିଥିଲେ, ତା' ନ ହୋଇଥିଲେ ବୋଧହୁଏ ବିଭ୍ରାଟ ଘଟିଥାନ୍ତା । ମୁଁ ଅନୁମାନ କରେ, ବର୍ତ୍ତମାନ ସୁଦ୍ଧା ତୁମର ପ୍ରଧାନମନ୍ତ୍ରୀ ସେ ଘଟଣାଟି ମନେ ରଖିଥିବେ ।"

ଉଦ୍ଧୃତ ଷ୍ଟେସନଠାରେ ଶ୍ରୀ ଜଗନ୍ନାଥ ଦାସଙ୍କ ସହିତ ଦେଖା ହୋଇଥିଲା । ସେ ମୋ ରୂପ ଦେଖି ଅଭିଭୂତ ହୋଇଥିଲେ । ସ୍ୱତଃପ୍ରବୃତ୍ତ ହୋଇ ତାଙ୍କଠାରେ ଖଣ୍ଡେ ବାଇବଲ ଥିଲା, ସେ ମୋତେ ପଢ଼ିବା ପାଇଁ ଦେଲେ ଓ ବଡ଼ ସହାନୁଭୂତି ପ୍ରକାଶ କରିଥିଲେ ।

କଟକରେ ପ୍ରାୟ ଦୁଇଟାବେଳେ ପହଞ୍ଚି ଜେଲ୍‌କୁ ଗଲି । ବାଟରେ ବର୍ଷାବର ହାତକଡ଼ି ପଡ଼ିଥାଏ । ଜେଲ୍ ନିୟମାନୁସାରେ ପ୍ରଥମେ ଡାକ୍ତରମାଇନା ହେବା ପର୍ଯ୍ୟନ୍ତ ଅଲଗା ଜାଗାରେ ରଖନ୍ତି, ତାକୁ ଅବ୍‌ଜର୍ଭେସନ୍ ଓ୍ୱାର୍ଡ କହନ୍ତି । ସେଇଠି ଯାଇ ରହିଲି । ସେଠି ନାନା ପ୍ରକାର କଏଦୀ ଥାଆନ୍ତି । କୁଷ୍ଠରୋଗୀ, ଯକ୍ଷ୍ମାରୋଗୀ, ସବୁ ଥାଆନ୍ତି । ଅତି ଅସଭ୍ୟ ବ୍ୟବହାର କରୁଥାନ୍ତି । ସେମାନଙ୍କ ସାଙ୍ଗରେ ୨।୩ ଦିନ ରହିବାପରେ ମୋତେ ପୁଣି ଅନ୍ୟତ୍ର ରଖାଗଲା । ଜେଲରଙ୍କ ଅନୁମତି ନେଇ ଅନ୍ୟ ଓ୍ୱାର୍ଡରେ ଗୋପବନ୍ଧୁ ବାବୁ ଓ ଭଗୀରଥି ବାବୁଙ୍କୁ ଦେଖା କରିଥିଲି । ଅତି ଅଳ୍ପ ସମୟ ପାଇଁ । ଗୋପବନ୍ଧୁ ପଚାରିଲେ, "ତୁମର ଉପବୀତ କାହିଁ ?" ମୁଁ କହିଲି ବୁଆଡ଼େହଜି ଗଲାଣି ।" ସେ ଗମ୍ଭୀର ହୋଇଯାଇ କହିଲେ 'ନାଁ ନାଁ, ଏ ବିପଦରେ ସେହି ଏକା ସାର, ତାକୁ ସମ୍ଭାଳ ।" ଅର୍ଥାତ୍ ଧର୍ମାଚରଣ ଉପରେ ଜୋର୍ ଦେଇଥିଲେ । ୨।୩ ଦିନ ପରେ ସେମାନେ ହଜାରିବାଗ୍ ବଦଳି ହୋଇଗଲେ । ମୋର ସ୍ୱାସ୍ଥ୍ୟ ଭଲ ଥିବା ଯୋଗୁଁ କଠିନ ଶ୍ରମର କାମ ଦେବାକୁ ଆଦେଶ ହେଲା । ପ୍ରଥମେ ୧୨ ସେର ନଡ଼ିଆ କତା ରସି ବଳିବାକୁ ଦିଆହେଲା । ମୁଁ ସାଧ୍ୟମତେ ଚେଷ୍ଟାକଲି, ଏ କାମ କରିବାକୁ; ମାତ୍ର ସେ ୦।୮ରୁ ବେଶୀ କରିପାରୁ ନ ଥାଏ । ମୋ ହାତ ପାପୁଲି ଏତିକରେ ମଧ୍ୟ ଫାଟିଯାଇ ରକ୍ତ ବାହାରିଲା । ଦିନେ ସନ୍ଧ୍ୟାବେଳେ ଜମାଦାର ସାହେବ ଆସି ତର୍ଜନ ଗର୍ଜନ କରନ୍ତି କାମ କରୁନାହିଁ ବୋଲି । ଆମ କଏଦୀଙ୍କ ସରଦାର ରୂପେ ଜାଲ୍ ନୋଟ୍ ତିଆରି କରୁଥିବା ଅପରାଧରେ ଦଣ୍ଡିତ ଯାଜପୁରର ଜଣେ କଏଦୀ ମୁକରର ଥିଲେ । ସେ ଜମାଦାରଙ୍କର ଖୁବ ପ୍ରିୟ ଥିଲେ । ଏ ସରଦାର ମୋତେ ଗୋପନରେ ବୁଝାଇଥିଲେ ଯେ ଜମାଦାରଙ୍କୁ କିଛି ଅର୍ଥ ଦେବାର ବନ୍ଦୋବସ୍ତ କଲେ ସେ କାମ ଲାଗି ଆଉ ତାଗିଦା କରିବେ ନାହିଁ । ମୁଁ ତାଙ୍କୁ କହିଥିଲି, 'ଯଦି ଟଙ୍କା ଦେବାର ଥାଆନ୍ତା', ତେବେ ମୁଁ ଏଠିକି ଆସିଥାନ୍ତି କାହିଁକି ?' ଏହି ପଦକ ମୋତେ ଅନେକ ଥର ଅନେକ ଘଟଣାରେ କଟକ ଜେଲ୍‌ରେ କହିବାକୁ ପଡ଼ିଛି । କିଛିଦିନ ପରେ ମୋତେ ଜ୍ୱର ହେଲା । ଡାକ୍ତରଖାନାକୁ ଗଲି । ସେଠି ଦୁଇଦିନକାଳ କିଛି ନ ଖାଇ ପଡ଼ି ରହିଲି । ସାଗୁ ଟିକିଏ ସୁଦ୍ଧା କେହି ଦେଲେ ନାହିଁ, ଅଥଚ ଏଣେ ଜ୍ୱର ପ୍ରତିଦିନ ହେଉଛି । ଥରେ ଡାକ୍ତରଙ୍କୁ ମୁଁ କହିଲି କିଛି ଔଷଧ ଦେବାପାଇଁ ଓ ବାର୍ଲିର ବନ୍ଦୋବସ୍ତ କରିବାକୁ । ସେ ରୁକ୍ଷ ସ୍ୱରରେ କହିଲେ, ଜେଲ୍‌ଖାନା ଆସିଛ ତ' କିଛି ଟଙ୍କା

ଖରଚ କର, ମୁଫତ୍ ବନ୍ଦୋବସ୍ତ କେଉଁଠି ହେଲଣି ? ତାଙ୍କୁ ମଧ୍ୟ କହିଥିଲି 'ଟଙ୍କା ଖରଚ କରିବାର ଥିଲେ ମୁଁ ଏଠିକି କାହିଁକି ଆସିଥାଆନ୍ତି ।' ଦିନେ ଗୁରିଦିନ ସେହିପରି ପଡ଼ି ପଡ଼ି, ବୋଧହୁଏ, ପୂର୍ଣ୍ଣ ଉପବାସ ହେତୁ ଜ୍ୱର ଆଉ ଆସିଲା ନାହିଁ । ତା ପରେ ମୁଁ ମୋର ସ୍ଥାନକୁ ଆସିଲି, ଯେଉଁଠି ମୁଁ ଥିଲି, ସେଠି ଘରପୋଡ଼ି ସମ୍ପର୍କରେ, ପୋଲିସକୁ ମାରିଥିବା ବା ଅବରୋଧ କରିଥିବା ଅପରାଧରେ ଅନେକ ବନ୍ଦୀ ଓ କନକା ମେଳି ସମ୍ପର୍କରେ ସମସ୍ତ ବନ୍ଦୀ ଥାଆନ୍ତି । ଏଥିକି ସୁବିଧା ହୋଇଥାଏ ଯେ, ଏମାନଙ୍କ ସାଙ୍ଗରେ ରହିବା ଫଳରେ ପ୍ରଥମ ଦୁଇ ଦିନଦିନର ଯେ ଅଭିଜ୍ଞତା, ଅସଭ୍ୟ ଭାଷାରେ ଗାଳି, ଅତି ଅପରିଷ୍କାର ଖାଦ୍ୟରେ ଚଳିବା ଇତ୍ୟାଦି, ତାହା ଆଉ ଘଟିଲା ନାହିଁ । ଘରପୋଡ଼ି ବନ୍ଦୀ ଓ କନକା ବନ୍ଦୀଙ୍କ ଭିତରୁ କେତେକ ଜେଲ କର୍ତ୍ତୃପକ୍ଷଙ୍କୁ ଉତ୍କୋଚ ଦେଇ ପ୍ରତିଦିନ ଦୁଧ ପାଉଥିଲେ ଓ କିଛି କାମ କରୁ ନ ଥିଲେ ।

ଏଇଠି ଆମ ପୋଷାକର ଉଲ୍ଲେଖ କରିବା ଦରକାର । ଦୁଇଖଣ୍ଡ ଜଙ୍ଘିଆ, ଯାହା ମୋର ଜଙ୍ଘର ଅଧେ ପର୍ଯ୍ୟନ୍ତ ଆସୁଥିଲା, ଦୁଇଖଣ୍ଡ ହାତ ନ ଥିବା ଜାମା ଓ ଖଣ୍ଡେ ଗ୍ରେଟ କନା ମିଳିଥାଏ ଗାମୁଛା କରିବାପାଇଁ । ଆଉ ଖଣ୍ଡେ ଟୋପି । ତିନିକୋଣିଆ ଏକଇଞ୍ଚ ମୋଟା କାଠ ଖଣ୍ଡିକରେ କଏଦୀ ନମ୍ବର, କେତେମାସ ସଜା, ଜେଲ ହେବା ତାରିଖ ତା ଉପରେ ଗରମ ଲୁହାରେ ଦଗା ହୋଇଥାଏ । ସେ ଫଳକା ଲୁହାଛଡ଼ରେ ଗୁନ୍ଥାହୋଇ ମାଳ ପରି ବେକରେ ପଛପାଖରେ ଏପରି ଆଣ୍ଠି ଦିଆ ହୋଇଥାଏ ଯେ, ସେ କାଠମାଳ ଆଉ ବାହାରି ପାରିବ ନାହିଁ । ଅନେକ ଚତୁର କଏଦୀ ଏହାକୁ ଏପରି କରାଇ ନେଇଥାନ୍ତି ଯେ, ରାତିରେ ଶୋଇବାର ସୁବିଧା ପାଇଁ ତାକୁ ଖୋଲି ରଖିଦଅନ୍ତି, ପୁଣି ସକାଳୁ ପିନ୍ଧି ନିଅନ୍ତି । ମୋର ମାଳକୁ ଜଣେ ଏହିପରି ସଜାଡ଼ି ଦେଇଥିଲା । ଥରେ ମୁଁ ଗାଧୁଆବେଳେ ଏହି ମାଳାକୁ କାଢ଼ି ରଖିଦେଇ ଗାଧୋଉଥିଲି । ଡେପୁଟି ଜେଲର ଆସିଗଲେ ଓ ମୋତେ ଅଙ୍ଗୁଳି ଦେଖାଇ ସାଙ୍ଗରେ ଥିବା ଜମାଦାରଙ୍କୁ ପଚାରିଲେ, ଏହାର ମାଳା କାହିଁ ? ଜମାଦାର ହଠାତ୍ ମୋ ପାଖକୁ ଆସି ଧକ୍କାଏ ମାରି କହିଲେ, 'ମାଳ କାଢ଼ି ପକାଇଲୁ ।' ତୁରନ୍ତ ମିସ୍ତ୍ରୀ ଡକାଇ ବେକ ପଛଆଡ଼େ ଲୁହା ଛଡ଼ର ଦୁଇମୁହଁ ଝଳାଇଦେଲେ । ଆଉ ତାହା ଶେଷ ପର୍ଯ୍ୟନ୍ତ ବାହାରି ନାହିଁ ।

ଏହାଛଡ଼ା ଆଉ ଦୁଇଖଣ୍ଡ ଲୁହା ଥାଳି, ଖଣ୍ଡେ ବଡ଼ ଆଉ ଖଣ୍ଡେ ଟିକିଏ ସାନ ମିଳିଥାଏ । ଖଣ୍ଡିକରେ ଖାଇବାପାଇଁ ଓ ଆଉ ଖଣ୍ଡିକରେ ପାଣି ପିଇବା ପାଇଁ ବା ଲୋଟା ପରି କାରବାର କରିବା ପାଇଁ । ସେଇଥିରେ ପାଣି ନେଇ

ଝାଡ଼ାଫେରି ଯିବାକୁ ହୁଏ । ଅନେକ ପୁରୁଣା କସ୍ତୁରୀ ଇଟା ଗୁଣ୍ଡିରେ ଭଲକରି ମାଜି ଏ ଲୁହାଥାଳକୁ ଜକ୍ ଜକ୍ କରି ରଖିଥାଆନ୍ତି । ମୋତେ ଅନ୍ତତଃ ଘଣ୍ଟାଏ ଏହା ପଛରେ ଧନ୍ ଲଗିବାକୁ ପଡ଼ୁଥିଲା, ଏହାକୁ ସାଫ୍ ରଖିବା ପାଇଁ । ଝାଡ଼ା ଫେରିବା ପାଇଁ ପାଇଖାନାର ବନ୍ଦୋବସ୍ତ ଏପରି ଯେ ସମସ୍ତେ ଏକ ସାଙ୍ଗରେ ଏକା ସମୟରେ ଝାଡ଼ା ଫେରିଯିବେ, ପରଦାର ବ୍ୟବସ୍ଥା ନାହିଁ । ପ୍ରତ୍ୟେକ ପ୍ରତ୍ୟେକଙ୍କୁ ଦେଖି ପାରୁଥିବେ । ପ୍ରଥମେ ମୋତେ ବଡ଼ ସଙ୍କୋଚ ହୋଇଥିଲା; ମାତ୍ର କିଛିଦିନ ପରେ ଅଭ୍ୟସ୍ତ ହୋଇଗଲି ।

ଖାଇବାକୁ ମିଳୁଥିଲା ଭାତ, ଡାଲି, ଶାଗ ଓ ତେନ୍ତୁଳି । ସ୍ୱାସ୍ଥ୍ୟ ଦିଗରୁ ଦେଖିବାକୁ ଗଲେ ଏ ଖାଦ୍ୟ ମନ୍ଦ ନ ଥିଲା । ମାତ୍ର ଅତି ଅପରିଷ୍କାର ଭାବରେ ତିଆରି । ଭାତରେ ଏତେ ଗୋଡ଼ି ଯେ ଚୋବାଇ ଖାଇବାର ଜୋ ନ ଥିଲା । ଭାତକୁ ପ୍ରଥମେ ପାଣିରେ ଧୋଇନେଇ ତାପରେ ମୁଁ ଖାଉଥିଲି । ଜେଲଖାନାରେ ରୋଟି ମିଳିବା ସେତେବେଳେ ଏକ ମହା ଅନୁଗ୍ରହର ବିଷୟ ଥିଲା । ଆମର ସେ ଯାଜପୁରର ଲୋକ, ଯେ ସରଦାର ଥିଲେ, ସେ ରାତିରେ ମୋତେ ଖଣ୍ଡେ ଖଣ୍ଡେ ରୋଟି ଦେଉଥିଲେ । ସେ ରୋଟି ଖଣ୍ଡେ ଖଣ୍ଡେ ଦେଇ ତାଙ୍କୁ ବରାବର ମନେ ରଖିବା ପାଇଁ କହୁଥିଲେ । ସେ ମୋତେ କହୁଥିଲେ ଯେ, ଚୁରି କାମ ନ କରି ଯେ ଦଣ୍ଡ ହେଉନାହିଁ, ଏହା ତାଙ୍କରି ଯୋଗୁଁ, ସେ ଜମାଦାରଙ୍କୁ କହି ସମ୍ଭାଳି ନେଉଛନ୍ତି । ନଚେତ୍ ହାତକଡ଼ି, ବେଡ଼ି ଏସବୁ ହୋଇପାରନ୍ତାଣି ।

ଜେଲରେ ଘରପୋଡ଼ି ସମ୍ବନ୍ଧରେ ଓ କନକା ମେଳି ସମ୍ବନ୍ଧରେ ଆହୁରି ଅନେକ କଥା ଜାଣିଲି । କନକା ଅତ୍ୟାଚାରର ବୀଭତ୍ସତା ବାହାରେ ଯେତିକି ଜାଣିଥିଲି, ତାଠାରୁ ବେଶୀ ଭୁକ୍ତଭୋଗୀଙ୍କଠାରୁ ଶୁଣିଲି । ସ୍ୱାମୀକୁ ଛୁଡ଼ା କରାଇ ତା’ ଆଗରେ ତା’ ସ୍ତ୍ରୀର ସମ୍ମାନ ହରଣ, ଜଣେ ଜଣେ ସ୍ତ୍ରୀଲୋକଙ୍କ ପ୍ରତି ଏକାଦି-କ୍ରମେ ୨୦।୨୫ ଜଣ ପୁରୁଷଙ୍କର ପାଶବିକ ଅତ୍ୟାଚାର, ଯାହାଫଳରେ ଅନେକ ବେହୋସ ହୋଇ ପଡ଼ିଯାନ୍ତି । ଘର ଲୁଟ୍‌ର ପରିମାଣ, ଜଣକ ଘରୁ ୫୮୦,୦୦୦ ଲୁଟ୍ । ଏ ସବୁ ଶୁଣି ମୋର ରକ୍ତ ଗରମ ହୋଇଯାଉଥାଏ । ଯେଉଁ ସ୍ୱାମୀ ଆଗରେ ତାର ସ୍ତ୍ରୀର ସମ୍ମାନ ହରଣ କରାହୋଇଥିଲା, ସେ ଅତ୍ୟାଚାରୀକୁ ତରବାରୀରେ ହାଣିଦେବା ପାଇଁ ଯାଉଥିଲା; ମାତ୍ର ତରବାରୀ ଅକସ୍ମାତ୍ ଦ୍ୱାରବନ୍ଧ ଉପରେ ବାଜି ଖସିଗଲା—ପୋଲିସକୁ ମାରିବାକୁ ଯାଉଥିବା ଅପରାଧରେ ତାକୁ ଦୁଇବର୍ଷ ଜେଲ ହୋଇଛି । ସେ ପାଗଳ ପ୍ରାୟ ହୋଇଥାଏ । ରାତିରେ ଶୋଇ ‘ମାର ମାର’ ବୋଲି ପ୍ରତିଦିନ ଚିତ୍କାର କରୁଥାଏ । ସେ କଥା ବର୍ତ୍ତମାନ ସୁଦ୍ଧା ମନେପଡ଼ିଲେ ରୋମାଞ୍ଚ ଜାତ ହୁଏ । ଏତେ ଅତ୍ୟାଚାର ! ଜୀବନ ଥିଲେ ଏହାର ପ୍ରତିକାର କରିବ, ଏହା ମୋ ବ୍ରହ୍ମ ଡାକୁଥାଏ ।

ବାହାରେ ଯେଉଁ ଅତ୍ୟାଚାର ଯେପରି ବ୍ୟାପ୍ତ ଥିଲା, ଭିତରେ ସେହି ଅତ୍ୟାଚାରଭୁକ୍ତ ଲୋକମାନଙ୍କ ସହିତ ରହିବାରୁ କାରାଦଣ୍ଡର ପ୍ରଥମ ଅବସ୍ଥାର କର୍କଶତା ବହୁ ପରିମାଣରେ ଲଘୁ ହୋଇ ଯାଇଥିଲା । ମାତ୍ର ଯେତେବେଳେ ମନେ ପଡ଼ୁଥାଏ ବର୍ଷେକାଳ ରହିବାକୁ ହେବ, ସେତେବେଳେ ବଡ଼ ଅସ୍ଥିର ବୋଧହୁଏ । ଆଉ ମଧ୍ୟ ମନ ଭିତରେ ଯେ ସବୁ ଦୁର୍ବଳତା ବାହାରର କର୍ମୋଚ୍ଛ୍ୱାସ ଯୋଗେ ଲୁଚି ହୋଇ ରହିଥିଲା, ସେ ସବୁ ଧୀରେ ଧୀରେ ମୁଣ୍ଡ ଟେକିବାରେ ଲାଗିଲେ । ଘର କଥା, ବାବାଙ୍କ କଥା, ମୋ ସ୍ତ୍ରୀ କଥା, ମୋର ସାନଭାଇର କଥା, ମୋ ଭଉଣୀ କଥା ଏସବୁ ମନେ ପଡ଼ିବାରେ ଲାଗିଲା । ବର୍ଷକରୁ ବେଶୀ ହେବ ସେମାନଙ୍କୁ ଦେଖିନାହିଁ । ପୁଣି ବର୍ଷେ ଜେଲରେ ଯିବ—କେବେ ସେମାନଙ୍କୁ ଦେଖିବି, ଭାବି ପ୍ରାଣ ଆକୁଳ ହୋଇଉଠେ । ଅତି ଛୋଟ ଛୋଟ କଥା ଯାହା ବାହାରେ କେବେ ମନେ ପଡ଼େନାହିଁ, ସେ ସବୁ ଚିନ୍ତା ମନକୁ ଘାରିଦେଲା । ମାତ୍ର କଟକ ଜେଲରେ ଏହି ସୁବିଧା ଥାଏ ଯେ ଏ ସବୁ ଚିନ୍ତା ମନକୁ ଗ୍ରାସ କଲା ମାତ୍ରକେ ମୁଁ କନିକା ବନ୍ଦୀ ଓ ଅନ୍ୟ ବନ୍ଦୀମାନଙ୍କ ସହିତ ଅତ୍ୟାଚାର କାହାଣୀ ଶୁଣିବା ଆରମ୍ଭ କରିଦିଏ । ଫଳରେ ପ୍ରତିହିଂସାର ଭାବ, ନିଷ୍ପୀଡ଼ିତଙ୍କ ପ୍ରତି ସହାନୁଭୂତିରେ ବ୍ୟକ୍ତିଗତ ଚିନ୍ତା ଦବିଯାଏ ।

ମାତ୍ର କଟକ ଜେଲରେ ବେଶୀଦିନ ମୁଁ ରହିଲି ନାହିଁ । ମାସେ ଖଣ୍ଡେ ରହିବା ପରେ ମୋତେ ଭାଗଲପୁର ସେଣ୍ଟ୍ରାଲ ଜେଲକୁ ବଦଳି କରିଦେଲେ । କଟକ ଜେଲରେ ଯେଉଁମାନଙ୍କ ସହିତ ମୋର ଆଳାପ ପରିଚୟ ହୋଇଯାଇଥିଲା; ସେମାନଙ୍କଠାରୁ ବିଦାୟ ନେବା ଅତି ଦୁଃଖମୟ ହୋଇଥିଲା । ସେମାନଙ୍କ ଭିତରୁ କେତେକ କାନ୍ଦି ପକାଇଲେ । ସେଇଠି ମୁଁ କନିକା ବନ୍ଦୀଙ୍କୁ କହି ଆସିଥିଲି ଯେ, କନିକା ପ୍ରଶ୍ନ ମୋ ଜୀବନର ଏକ ପ୍ରଶ୍ନ ହୋଇ ରହିବ । ମୁଁ ସାଧାରଣ କାର୍ଯ୍ୟ କରୁଥିବା ପର୍ଯ୍ୟନ୍ତ କନିକା ପ୍ରଜାଙ୍କ ଖବର ବୁଝୁଥିବି ଓ ସେମାନଙ୍କୁ ସାହାଯ୍ୟ କରୁଥିବି ।

କଟକ ଜେଲରୁ ବାହାରି ଭାଗଲପୁର ଜେଲ୍‌ରେ ପହଞ୍ଚିବା ପର୍ଯ୍ୟନ୍ତ ମଝିରେ ପ୍ରାୟ ଦୁଇଦିନ ଅତି ଦୁଃଖମୟ ବୋଧ ହୋଇଥିଲା । ରେଲ୍‌ରେ ଯାଉଁ ଯାଉଁ ଭଦ୍ରଖ ଷ୍ଟେସନ ଆଗରୁ ଆମ ଗାଁ'କୁ ପଡ଼ିଥିବା ରାସ୍ତାକୁ ରେଲ୍ ଅତିକ୍ରମ କଲାବେଳେ, ମୁଁ ସେ ରାସ୍ତାକୁ ଚାହିଁଦେବା ମାତ୍ରକେ ଏତେ କରୁଣାର ଭାବ ମୋ ମନରେ ଜାଗି ଉଠିଲା ଯେ, ମୋ ଛାତି ଫାଟିଯିବା ଭଳି ହୋଇଗଲା । ଛିକ ଛିକ କେତେ କଥା ଯେ ମନେ ପଡ଼ିଗଲା, ପ୍ରତ୍ୟେକଟି ମୋ ମନକୁ ବ୍ୟାକୁଳ କରିବାର ଏତେ ବଳପରିକର ଥିଲେ ଯେ, ମୁଁ ନିଜକୁ ନିଜେ ସମ୍ଭାଳି ପାରୁ ନ ଥାଏ । ଦୁର୍ବଳତା ପୁଣି ବେଳେ

ବେଳେ ଏତେ ବଳଶାଳୀ ହୁଏ ! ବର୍ଷେକାଳ ଜୁଆଡ଼େ ଯାଇ ରହିବ, ତାପରେ ଯାଇ ଯା' ହେବ, ଏହା ଭାବିଲା ବେଳକୁ ହୃଦୟ ଶୁଖିଯାଉଥାଏ । ଏଣେ ଘରକଥା ଭାବୁଁ ଭାବୁଁ ଗାଡ଼ି ଯାଇ ବାଲେଶ୍ୱର ଷ୍ଟେସନରେ ପହଞ୍ଚିଲା । ଷ୍ଟେସନରେ ଆମ ସ୍ୱରାଜ୍ୟ ମନ୍ଦିରର ଜଣେ କର୍ମୀଙ୍କୁ ଦେଖିଲି । ତାଙ୍କୁ ଦେଖିବା ମାତ୍ରକେ ମୋର ଏ ନୂତନ ପରିବାର କଥା ସବୁ ମନେ ପଡ଼ିଲା । ଏମାନଙ୍କ ସହିତ ବର୍ଷକ ପରେ ଦେଖା ହେବ, ଏହା ଭିତରେ କଅଣ ହୋଇଯାଇଥିବ—କିଏ ଜାଣେ ? ମୁଁ ଯେଣେ ଗୁହୁଁଥାଏ, ମୋ ମନରେ ଏକ କରୁଣା ଭାବର ଉଚ୍ଛ୍ୱାସ ଉଠୁଥାଏ ।

ଅତି ବ୍ୟଥିତ ଭାବରେ ଭାଗଲପୁରରେ ପହଞ୍ଚିଲି । କଚେରୀରୁ ଜେଲକୁ ନେବାବେଳେ ଓ ରେଲ୍‌ଷ୍ଟେସନରୁ ଜେଲକୁ ନେଲାବେଳେ ବରାବର ହାତକଡ଼ି ଓ ଅଣ୍ଟାରେ ଦଉଡ଼ି ବନ୍ଧା ହୋଇଥାଏ । କଟକରେ ଏ ଜିନିଷଟି ମୋତେ କିଛି ବୋଧ ହୋଇନାହିଁ । ମାତ୍ର ଭାଗଲପୁରଠାରେ ଯେତେବେଳେ ଶୁଣିଲି ଯେ, ଷ୍ଟେସନଠାରୁ ଜେଲ୍ ୩ ମାଇଲରୁ ବେଶୀ, ଦୁର୍ବଳତାବଶତଃ ମୁଁ ମୋ ସାଙ୍ଗରେ ଥିବା ସିପାହୀମାନଙ୍କୁ ଅନୁରୋଧ କଲି ହାତକଡ଼ି ନ ଦେବାପାଇଁ; ମାତ୍ର ସେମାନେ ନିୟମ ଲଙ୍ଘନ କରିବେ ନାହିଁ ବୋଲି ବିନୀତ ଭାବରେ କହିଲେ । ଅଗତ୍ୟା ମୋତେ ସେହିପରି ଯିବାକୁ ହେଲା ।

ସେ ଜେଲ୍‌ରେ ମୋଟ ପରି ରାଜନୈତିକ ଅପରାଧରେ ବନ୍ଦୀ ପ୍ରାୟ ଦେଢ଼ ଶହ ଥିଲେ । ବିହାର ଓଡ଼ିଶା ପ୍ରଦେଶର ସବୁଆଡ଼ର ରାଜନୈତିକ ବନ୍ଦୀଙ୍କୁ ଆଣି ଏଇଠି ଏକାଠି ରଖିଥିଲେ । ମୁଁ ସେଠାକୁ ଯିବାବେଳକୁ ଓଡ଼ିଶାର ଶ୍ରୀ ଗୋବିନ୍ଦ ମିଶ୍ର ସେଠାରେ ଥିଲେ । ମାତ୍ର ଜେଲ୍ ଦଣ୍ଡ ସ୍ୱରୂପ ତାଙ୍କୁ ସେଲ୍‌ରେ ରଖା ହୋଇ-ଥିବାରୁ ତାଙ୍କ ସହିତ ମୋର ଦେଖା ହୋଇନାହିଁ । ମୁଁ ଯାଇ ଶୁଣିଲି ଯେ, ଜେଲରେ ଗୋବିନ୍ଦ ମିଶ୍ରଙ୍କୁ ଅତି ନିର୍ଯ୍ୟାତନା ଭୋଗିବାକୁ ହୋଇଛି । ସେଠି ହଜାରିବାଗ ଜିଲାର ଜଣେ ଓକିଲ ଶ୍ରୀ ରାମନାରାୟଣ ସିଂହ ଓ ଆଉ ଜଣେ ଓକିଲାତି ପଢ଼ା ଛାଡ଼ି ଆସିଥିବା ବନ୍ଦୀ ଶ୍ରୀ ବଜରଙ୍ଗ ସହାୟ ମଧ୍ୟ ଥିଲେ । ଏହାଛଡ଼ା ସାନ୍ତାଲପ୍ରଗଣାରୁ ଆଦିମ ଅଧିବାସୀ ପ୍ରାୟ ଅଧିକାଂଶ ଥିଲେ । ଅନେକ ଧନୀ ବ୍ୟବସାୟୀ ମଧ୍ୟ ଏମାନଙ୍କ ଭିତରେ ଥିଲେ ।

ମୁଁ ଯାଇ ସେଠାରେ ପହଞ୍ଚିବା ବେଳକୁ ରାଜନୈତିକ ବନ୍ଦୀ ଓ ଜେଲ କର୍ତ୍ତୃପକ୍ଷଙ୍କ ମଧ୍ୟରେ ଖୁବ୍ ଟଣାଟଣି ଲାଗିଛି । ଜେଲ୍‌ର ଯାବତୀୟ ନିୟମ ପାଳନ କରିବାକୁ ଜେଲ୍ କର୍ତ୍ତୃପକ୍ଷ ବାଧ୍ୟ କରୁଥାଆନ୍ତି, ତେଣେ ବନ୍ଦୀମାନେ ଧରିବସିଥାନ୍ତି ଯେ କେତେକ ନିୟମ ଯାହା ଆତ୍ମସମ୍ମାନ ବିରୁଦ୍ଧ, ତାହା ସେମାନେ ପାଳନ କରିବେ

ନାହିଁ । ଏପରି ଅମ୍ବସମ୍ମାନ ବିରୁଦ୍ଧାତ୍ମକ ନିୟମ ଭିତରୁ ଗୋଟିଏ ହେଉଛି ସରକାର ସଲାମ ଆଦେଶ । ପ୍ରତି ସୋମବାର ଦିନ ଫାଇଲ ହୁଏ; ଅର୍ଥାତ୍ ପ୍ରତ୍ୟେକ ଓ୍ୱାର୍ଡ଼ରେ କୟିଦମାନେ ଧାଡ଼ି ହୋଇ ବସିଥାଆନ୍ତି, ସୁପରିଣ୍ଟେଣ୍ଡେଣ୍ଟ ଆସିବାମାତ୍ରକେ ଜମାଦାର ସରକାର ସଲାମ ଆଦେଶ ଦିଅନ୍ତି ଓ ସମସ୍ତେ ଛିଡ଼ା ହୁଅନ୍ତି । ସୁପରିଣ୍ଟେଣ୍ଡେଣ୍ଟ କୟିଦୀ ଧାଡ଼ି ଆଗରେ ପ୍ରତ୍ୟେକଙ୍କ ଉପରେ ଦୃଷ୍ଟି ପକାଇ ଯାଆନ୍ତି । ତାଙ୍କ ଦୃଷ୍ଟିକୁ ସାହାଯ୍ୟ କରିବାପାଇଁ କୟେଦିମାନେ ବାଆଁ ହାତରେ ନିଜର ଟିକେଟ (ଏଥିରେ କୟେଦୀ ଜୀବନର ଯାବତୀୟ ଜେଲ ଆଦେଶ ଲେଖାଥାଏ) ଟେକି ରଖିଥିବ ଓ ଡାହାଣ ହାତରେ ତଳ ଓଠକୁ ଟାଣି ଦାନ୍ତକୁ ଦେଖାଇ ରହିଥିବ । ଗୋଡ଼ ପାଖରେ ଲୁହା ଥାଳି ବାଟି ଡେରି ହୋଇଥିବ । ଏ ପ୍ରକାର ନିୟମର ଉଦ୍ଦେଶ୍ୟ ହେଉଛି ଯେ, ସୁପରିଣ୍ଟେଣ୍ଡେଣ୍ଟ ସାହେବ ବିନା କୌଣସି ପରିଶ୍ରମରେ, ଏପରିକି କଥା ପଦେ ପୁଛି କହିବାର କଷ୍ଟ ନ କରି ଅତି ଅଳ୍ପ ସମୟରେ କୟେଦୀର ଥାଳି ବାଟି ସବୁ ଅଛି କି ନାହିଁ, ତା ପ୍ରତି କି କି ଆଦେଶ ହୋଇଛି, ତା'ର ଦାନ୍ତ ସଫା ଅଛି କି ନାହିଁ ଇତ୍ୟାଦି ସବୁ ଦେଖି ବୁଲିଯିବେ । ମାତ୍ର ଏ ନିୟମକୁ ପାଳନ କରିବା ଭଦ୍ରଲୋକ ପକ୍ଷରେ କଠିନ । ଯେଉଁ ଭଙ୍ଗୀ କରି ଏ ନିୟମ ଅନୁସାରେ ଛିଡ଼ା ହେବାକୁ ହୁଏ, ତାହା ଏତେ ଲଜ୍ଜାଜନକ ଯେ, ବାସ୍ତବିକ କଠିନ ଶରୀର କ୍ଳେଶର ଭୟ ଛଡ଼ା ଅନ୍ୟ କିଛିରେ ତାହା କରିବାକୁ ଅତି ସଙ୍କୋଚ ବୋଧ ହେବ । ରାଜନୈତିକ ବନ୍ଦୀମାନେ ଶରୀରକ୍ଳେଶ ଅର୍ଥାତ୍ ମାଡ଼ ଇତ୍ୟାଦିକୁ ଭୟ କରନ୍ତି ନାହିଁ । ତେଣୁ ଏଥିପାଇଁ ସଂଘର୍ଷ ଲାଗିଥାଏ, ଆଉ ଏକ ବିରୋଧର କାରଣ ଥାଏ ଜେଲରେ କାମ କରିବା । ରାଜନୈତିକ ବନ୍ଦୀମାନଙ୍କୁ ଧାନ କୁଟିବା ଓ ଗହମ ପେଷିବା ଏ ଦୁଇଟି କାମ ଦିଆଯାଇଥାଏ । ଜେଲ ନିୟମ ମୁତାବକ ଉଚିତ୍ତା ଅନୁସାରେ ଯାହାର ଓଜନ ଠିକ୍ ଅଛି, ତାକୁ କଠିନ ପରିଶ୍ରମ, ଯାହାର ଓଜନ ଟିକିଏ କମ୍ ତାକୁ ମଧ୍ୟମ ପରିଶ୍ରମ ଓ ଯାହାର ଓଜନ ଅତି କମ୍, ତାକୁ ହାଲୁକା ପରିଶ୍ରମ ଦିଆହୁଏ । ରାଜନୈତିକ ବନ୍ଦୀମାନେ ଧରି ବସିଥାଆନ୍ତି ଯେ, ଏ ନିୟମାନୁସାରେ ସେମାନେ କାମ କରିପାରିବେ ନାହିଁ । ଯେତିକି ସମ୍ଭବ ହେବ ସେମାନେ ସେତିକି କାମ କରିବେ ।

ଏଇ ଦୁଇ ମୁଖ୍ୟ କାରଣରୁ ସଂଘର୍ଷ ଅତି ଉତ୍କଟ ଧରଣରେ ଚାଲୁଥାଏ । ମୁଁ ନିଜ ମନ ଭିତରେ ଠିକ୍ କଲି ଯେ ସରକାର ସଲାମ ଆଦେଶ ଓ ଫାଇଲ ଦିନ ସେ ପ୍ରକାର ଭଙ୍ଗୀ କରି ଛିଡ଼ାହେବେ, ଏହା ମୁଁ କରିବି ନାହିଁ । କିନ୍ତୁ ଜେଲ ନିୟମାନୁସାରେ କାମ କରିବି, କାମ ବିଷୟରେ ମୋର ସେଠାରେ ନୂତନ ବନ୍ଦୀମାନଙ୍କ ସହିତ ଉତ୍କଟ ମତାନ୍ତର ହେଲା । ମୋର କହିବାର କଥା ଥିଲା ଯେ, ଆମେ ଯେତେବେଳେ କାରାବରଣ କରିଛୁଁ, ସେତେବେଳେ କେବଳ ଆତ୍ମସମ୍ମାନ ବିରୋଧୀ

ନିୟମ ଛଡ଼ା ଅନ୍ୟ ସବୁ ପାଳନ କରିବୁ ବୋଲି ପସନ୍ଦ କରୁଁ । ଶରୀରକ୍ଳେଶ ଭୟରେ କାମ ନ କରିବା ଓ ସେହି ହେତୁ ଜେଲ ନିୟମ ଭଙ୍ଗ କରିବା ଦ୍ୱାରା ଆମେ ଆମର କାରାବରଣକୁ କେତେକ ପରିମାଣରେ ନିରର୍ଥକ କରିଦେଇଛୁଁ । ମାତ୍ର ମୁଁ କାହାରିକୁ ରାଜି କରାଇ ପାରିଲି ନାହିଁ । ଏହା ଫଳରେ ଆମ ଭିତରେ କିଛି ସଂଘର୍ଷ ହେଲା ନାହିଁ; କାରଣ ଆମର ଯୁକ୍ତି ଭିନ୍ନ ହେଲେ ସୁଦ୍ଧା କାର୍ଯ୍ୟତଃ ଆମେ ଏକ ସ୍ଥାନରେ ପହଞ୍ଚିଗଲୁଁ । ମୋତେ ମୋର ସ୍ୱାସ୍ଥ୍ୟ ଅନୁସାରେ କଠିନ କାମ ଦିଆହେଲା । ମୋ ସାଙ୍ଗକୁ ଜଣେ ମଧ୍ୟମ କାମ କରିବାବାଲା ଓ ଆଉ ଜଣେ ହାଲୁକା କାମ କରିବାବାଲା, ଏପରି ତିନିଜଣଙ୍କ ପାଇଁ ଦୈନିକ ୭୫ ସେର ଧାନ କୁଟିବା ପାଇଁ ଆଦେଶ ହେଲା । ସେତେବେଳେ ମୁଁ ଭାବିଲି ଯେ ଏ କାମ କରିଦେଇହେବ; ମାତ୍ର ୯ଘଣ୍ଟା ଅତି କଠିନ ପରିଶ୍ରମ କରି ମଧ୍ୟ ୪୦ ସେର ସୁଦ୍ଧା ଧାନ ଆମେ ତିନିଙ୍କରେ କୁଟି ପାରିଲୁ ନାହିଁ । ମୁଁ ଯେ କାମ କରିବି ବୋଲି କହି ହେଉଥିଲି, ସେଥିପାଇଁ ମୋର ବନ୍ଧୁମାନେ ମୋତେ ଥଟ୍ଟା କଲେ, ମାତ୍ର ଜିଦ୍‌ର ସହିତ ମୁଁ କାମ ପୂରା କରିବି ବୋଲି ଚେଷ୍ଟା କରୁଥାଏ । ଦୁଇ ତିନିଦିନ କାମ ହେବାରୁ ପ୍ରଥମେ ୪ଦିନ ପାଇଁ ରାତି ହାତକଡ଼ି ଦଣ୍ଡ ହୁକୁମ ହେଲା । ଅର୍ଥାତ୍ ସନ୍ଧ୍ୟାବେଳେ ହାତକଡ଼ି ପକାଇ ଦିଆହୁଏ ଓ ସକାଳୁ ପୁଣି ଖୋଲି ନିଆହୁଏ । ରାତି ସାରା ମଶା ଖାଇଯାଉଥାନ୍ତି । ତାକୁ ସହ୍ୟ କରି ହାତକଡ଼ି ପିନ୍ଧି ପଡ଼ିରହୁଥାଏ । ଏ ଦଣ୍ଡ ଶେଷ ହେବା ବେଳକୁ ମଧ୍ୟ ମୁଁ ପୂରା କାମ କରିପାରୁ ନାହିଁ । ତେଣୁ ତାପରେ ମାସକ ପାଇଁ ଗୋଡ଼ରେ ଲୁହା ଝଞ୍ଜିର ବେଡ଼ି ପଡ଼ିବାର ଦଣ୍ଡ ହେଲା । ମୋ ପରି ଅନ୍ୟାନ୍ୟମାନଙ୍କୁ ମଧ୍ୟ ଦଣ୍ଡ ହେଉଥାଏ । ଏସବୁ ଦଣ୍ଡ ସାଙ୍ଗେ ସାଙ୍ଗେ ପ୍ରତି ସୋମବାର ଦିନ ସରକାର ସଲାମ ଆଦେଶ ଅମାନ୍ୟ ପାଇଁ ଠେଲା ପେଲା, ମାରଧର ଚାଲିଥାଏ, । ଗୋଡ଼ରେ ବେଡ଼ି ପିନ୍ଧି ଦୌଡ଼ିବାର ଅଭ୍ୟାସ ସେତେବେଳେ କରୁଥିଲି ।

ଏହି ସମୟରେ ମୁଁ ଆଉ ଏକ କାମରେ ମନ ନିଯୋଗ କରିଥିଲି । ସେ ହେଉଛି ପ୍ରାଣାୟାମ ସାଧନା । ଆମ ସଙ୍ଗରେ ଜଣେ ପରମହଂସ ସନ୍ନ୍ୟାସୀ ଥିଲେ । ସେ ଦାନାପୁର ସୈନ୍ୟ ଛାଉଣୀରେ ଅହିଂସାର ତତ୍ତ୍ୱ ବୁଝାଇଥିବାରୁ ତାଙ୍କୁ ଦୁଇବର୍ଷ ସଶ୍ରମ କାରାଦଣ୍ଡ ହୋଇଥିଲା । ସେ ଜଣେ ଜ୍ଞାନୀ ଓ ସାଧକ ଥିଲେ । ତାଙ୍କୁ ରାତିସାରା ବସିରହି ଧ୍ୟାନ କରୁଥିବାର ଦେଖି, ମୁଁ କିଛି ଶିଖିବି ବୋଲି କହିଲି । ସେ ତାଙ୍କ ନିଜ ତତ୍ତ୍ୱାବଧାନରେ ଆସନ ପ୍ରାଣାୟାମ ଇତ୍ୟାଦି ଶିଖାଇଥିଲେ । କଲେଜରେ ସି. ଆଇ. ଡି. ନାଇଡୁଙ୍କଠାରୁ ଶିକ୍ଷା ପାଇବା ପରେ ଏ ଥିଲା ସେ ଦିଗରେ ଦ୍ୱିତୀୟ ଉଦ୍ୟମ । ଏତଦ୍ଦ୍ୱାରା ଏତିକି ଅନ୍ତତଃ ଲାଭ ହୋଇଥିଲା ଯେ, ଜେଲ ନିର୍ଯ୍ୟାତନା ଆଡ଼ୁ ମନ ହଟିଆସି ଅନ୍ୟ ଏକ ଦିଗରେ ମନ ନିବଦ୍ଧ ରହିଲା । ତେଣୁ ହାତକଡ଼ି ବେଡ଼ି ବେଶୀ କିଛି ମନେ ହେଉ ନ ଥିଲା । ଝଞ୍ଜିର ବେଡ଼ିରୁ



ସତ୍ୟାଗ୍ରହୀ ମହ୍ତାବ



ବିଶ୍ୱକବି ରବୀନ୍ଦ୍ରନାଥଙ୍କ ସହ ମଦ୍ରଛାବି

ଦଣ୍ଡକାଳ ଏକମାସ ଶେଷ ହେଲ । ଏଥିମଧ୍ୟରେ ମୁଁ ପ୍ରାଣପଣେ ଚେଷ୍ଟା କରୁଛୁ ୭.୫ ସେର ଧାନ ଅନ୍ୟ ଦୁଇଜଣ ସାଥିଙ୍କ ସହ କୁଟି ଦେବାପାଇଁ; ମାତ୍ର ସେ ହେଉନାହିଁ । ଏପଟେ ମୋତେ ପ୍ରତିଦନ ଟିକଏ ଜ୍ୱର ହେବାକୁ ଲଗିଲଣି । ଥରେ କାଶିଦେଲ ମାତ୍ରକେ ରକ୍ତ ବାହାର ପଡ଼ିଲ, ତଥାପି ମୁଁ ପୁରା ଦମ୍‌ରେ କାମ କରୁଥାଏ । ଶେଷରେ ମୁଁ ଜେଲର୍‌ଙ୍କୁ କହିଲି ଯେ, ଢିଙ୍କି କାମ ପରିବର୍ତ୍ତେ ଚକ ପେଷା କାମ ମୋତେ ଦିଆ ହେଉ । କାରଣ ଢିଙ୍କିରେ ତିନିଜଣ ମିଶି କାମ କରୁଥାନ୍ତି । ଅନ୍ୟ ଦୁଇ ଜଣ ହେଲା କଲେ ମୁଁ ମଧ୍ୟ ଦାୟୀ ହୋଇ ଯାଉଥାଏ । ଚକରେ ମୁଁ ଏକାଏକା କାମ କରିବ । ଜେଲର୍ ଏଥିରେ ରାଜି ହୋଇ ମୋ ଟିକଟରେ ଢିଙ୍କିକାମ ପରିବର୍ତ୍ତେ ୨୦ ସେର ଗହମ-ପେଷା କାମ ଲେଖିଦେଲେ । ମୁଁ ଖୁସି ହୋଇ ପ୍ରଥମେ ଦିନେ ଦୁଇଦିନ କାମ ପରିବର୍ତ୍ତନର ଆନନ୍ଦ ଅନୁଭବ କଲି, ମାତ୍ର ଏଥିରେ ମଧ୍ୟ ମୁଁ ୧୦।୧୨ ସେରରୁ ବେଶୀ ପେଷି ପାରିଲି ନାହିଁ, ମୋତେ ବଡ଼ ଲଜ୍ଜା ବୋଧ ହେଉଥାଏ । ଏ କାମ ନ କରି ପାରିବାରୁ ଦଣ୍ଡା ବେଡ଼ି ଅର୍ଥାତ୍ ଲୁହାଛଡ଼ ଦୁଇଖଣ୍ଡରେ ଗୋଡ଼ରେ ବେଡ଼ି ପଡ଼ିଲ—ଏକମାସ ପାଇଁ ।

ଏହି ସମୟରେ ମୋତେ ନାଲ ଝାଡ଼ା ହେଲ । ଡାକ୍ତରଖାନାକୁ ଗଲି । ଡାକ୍ତରବାବୁ ଇଷତ୍ ହାସ୍ୟ କରି କହିଲେ କାମକୁ ପାରୁନାହିଁ ବୋଲି ବାହାନା ବାହାର କରୁଛ । ମୁଁ ଆଉ କିଛି ନ କହି ମୋର କିଛି ହୋଇ ନାହିଁ ବୋଲି ଶୁଣାଇ ଦେଇ ଚାଲି ଆସିଲି । ଦିନେ ଦୁଇଦିନ ଉପବାସ ପରେ ଦେହ ଭଲ ହୋଇ-ଯାଇଥିଲ ।

ଇତିମଧ୍ୟରେ ବିହାର-ଓଡ଼ିଶା ବ୍ୟବସ୍ଥା ସଭାରେ ଆମ ଦୁର୍ଦ୍ଦଶା ବିଷୟରେ କିଛିତ୍ ଆନ୍ଦୋଳନ ଚାଲିଥାଏ ।

ଆମ ଆନ୍ଦୋଳନର କର୍ତ୍ତା ଥିଲେ ଭଦ୍ରକର ଚୌଧୁରୀ ଭାଗବତପ୍ରସାଦ ସାମନ୍ତରାୟ ମହାପାତ୍ର । ଥରେ ଲଟ ସଭାରେ ମୋ ସମ୍ବନ୍ଧରେ ସେ ବକ୍ତୃତା ଦେଇ କହିଥିଲେ, ଘରପୋଡ଼ି ସମୟରେ ମୁଁ କପରି ଜିଲ୍ଲା ହାକିମମାନଙ୍କୁ ସାହାଯ୍ୟ କରିଥିଲି ଏବଂ ସେ ସମୟର ପୋଲିସ ସାହେବ ତାଙ୍କ ଆଗରେ ମୋ ବିଷୟରେ ଯାହା ପ୍ରଶଂସା କରିଥିଲେ, ତାହା ସେ ବ୍ୟକ୍ତ କରିଥିଲେ । ପଣ୍ଡିତ ଗୋପବନ୍ଧୁ ଦାଶଙ୍କ ଭୂୟସୀ ପ୍ରଶଂସା କରି ଆମ୍ଭମାନଙ୍କୁ ଜେଲ୍‌ରୁ ଛାଡ଼ିଦେବା ପାଇଁ ଭାଗବତବାବୁ ବକ୍ତୃତା ଆଲୋଚନାବେଳେ କହିଥିଲେ । ସେତେବେଳେ ଜେଲ୍ ଭିତରେ ବହି, ଖବରକାଗଜ ନାହିଁ । କେବଳ ଗୀତା, ଭାଗବତ ଓ ଅନ୍ୟ ଧର୍ମ ପୁସ୍ତକ ବ୍ୟତୀତ ଆଉ କିଛି ମିଳୁ ନ ଥିଲା । ସାନ୍ତାଲ ପ୍ରଗଣାର ଜଣେ ଧନୀ ବ୍ୟବସାୟୀ ଯେ ଆମ

ସାଙ୍ଗରେ ଥିଲେ, ସେ କୌଣସି ସୂତ୍ରରେ ଦୁଇ ଚାରିଜଣ ଓ୍ୱାର୍ଡ଼ରଙ୍କୁ ହାତକରି ଲୁଚାଇ ମଝିରେ ମଝିରେ ଖଣ୍ଡେ ଖଣ୍ଡେ ଖବରକାଗଜ ଅଣାଉଥିଲେ ଓ ବାହାର ସହିତ ଚିଠିପତ୍ର ସମ୍ବନ୍ଧ ରଖିଥିଲେ ।

ଖାଇବା ବିଷୟରେ ଜେଲ ଭିତରେ ଯେ ଏତେ ଦୁର୍ବଳତା ପ୍ରକାଶ ପାଏ, ତାହା ଯେଉଁଠି ଅନୁଭବ କଲି । ଆମକୁ ସକାଳଓଳି ଭାତ, ଡାଲି, ଶାଗ ଓ ଉପରଓଳି ରୋଟି, ଡାଲି, ଶାଗ ଦିଆ ହେଉଥାଏ । ସକାଳୁ ଖାଇବାପାଇଁ ଭାତରେ ହଳଦୀ ପକାଇ ଖିଚଡ଼ି କରି ଦିଆହେଉଥାଏ, ମାତ୍ର ଏକରକମର ଖାଇବା ସବୁଦିନେ ପସନ୍ଦ ହେଉ ନ ଥାଏ । ନାନାପ୍ରକାରର ଜିନିଷ ଖାଇବାପାଇଁ ଇଚ୍ଛା ହେଉଥାଏ । ବାହାରେ କେଉଁଦିନ କେଉଁଠି ଭଲ ଖିଆ ହୋଇଥିଲା, ସେ ସବୁ ମନେପଡ଼େ, ବିଶେଷତଃ ମିଠା ଓ ତେଲିଆ ଜିନିଷ ଖାଇବାପାଇଁ ଇଚ୍ଛା ହେଉଥାଏ । ସାମ୍ବାଲପୁରଗଡ଼ର ବ୍ୟବସାୟୀ ଓ୍ୱାର୍ଡ଼ର ଜଣଆରେ ବାହାରୁ ମିଠାଇ କିଛି କିଛି ମଗାଉ ଥିଲେ । ସେ ପୁଣି ଅସୁଥିଲା ଓ୍ୱାର୍ଡ଼ରର ପଗଡ଼ି ତଳେ—ଅର୍ଥାତ୍ ୨।୪ଟା ମାତ୍ର । ତାକୁ ମହାପ୍ରସାଦ ପରି ଟିକିଏ ଟିକିଏ ସମସ୍ତେ ଖାଉଥିଲେ । ଯେ ନ ପାଉଥିଲା, ସେ ରାଗି ଅସ୍ଥିର ହେଉଥିଲା । ଥରେ ଦୁଇଥର ଏହାକୁ ଖାଇବାପାଇଁ ମୁଁ ବ୍ୟାକୁଳ ହୋଇଥିଲି—ମାତ୍ର ନିଜକୁ ନିଜେ ଲଜ୍ଜିତ ମନେ କରି ଆଉ କିଛି ଖାଇବାର ଇଚ୍ଛା ପୋଷଣ କରି ନ ଥିଲି ।

ଆମେ ଭାଗଲପୁରରେ ଥିବା ସମୟରେ ବାହାରେ ସି. ଆର୍. ଦାସ ଓ ମୋତିଲାଲ ନେହେରୁଙ୍କ ସ୍ୱରାଜ୍ୟଦଳ ଆନ୍ଦୋଳନ ଆରମ୍ଭ ହେଲା । ଗୟା କଂଗ୍ରେସରେ କଂଗ୍ରେସ ଦୁଇଦଳ ହୋଇଗଲା । ଏସବୁ ସମ୍ବାଦ ଆମେ ଜେଲରେ ପାଇ କେତେ ଯେ ବ୍ୟଥିତ ହୋଇଛୁ, ତା'ର ସୀମା ନାହିଁ । ଦେଶସାରା ଅତ୍ୟାଚାରର ତାଣ୍ଡବ ଲୀଳା—ଆମେ ସବୁ ଅତ୍ୟାଚାରରେ ସଢ଼ୁଛୁ ଜେଲ୍ ଭିତରେ—ଏହି ସମୟରେ କଂଗ୍ରେସରେ ପ୍ରବଳ ମତଭେଦ ଆମକୁ ବିରାଗ କରିଦେଇଥିଲା । ଆମର ମନ ହେଉଥାଏ, ଯେପରି ଆମ କଥା ବାହାରେ ଯେଉଁମାନେ ଅଛନ୍ତି, ସେମାନେ ଭୁଲିଗଲେ । ଅସହଯୋଗ-ଆନ୍ଦୋଳନ ଗୟା-କଂଗ୍ରେସ ପରେ ଶେଷ ହେଲା ବୋଲି ଆମେ ଧରିନେଲୁଁ । ତେଣିକି ଜେଲ୍ ଅତି ଦୁର୍ବହ ହୋଇପଡ଼ିଲା । ନିତାନ୍ତ ଆଦର୍ଶବାଦୀ ଛଡ଼ା ଅନ୍ୟ ସମସ୍ତେ ଜେଲ୍‌ରେ ଅସୀମ ଯନ୍ତ୍ରଣା ଅନୁଭବ କଲେ ।

ଭାଗଲପୁରକୁ ଏକ ରାଜନୀତିକ ସମ୍ମିଳନୀରେ ସଭାପତି ହୋଇ ପଣ୍ଡିତ ଜବାହରଲାଲ ନେହେରୁ ସେହି ସମୟରେ ଯାଇଥିଲେ । ସେ ଆମ୍ଭମାନଙ୍କୁ ଜେଲ୍‌ରେ ସାକ୍ଷାତ୍ କରିଥିଲେ । ଆମର ବେଡ଼ି ଦେଖି ସେ ଅଭିଭୂତ ହୋଇଯାଇଥିଲେ ଓ

ଆବେଗରେ କହି ପକାଇଥିଲେ, 'ଆପଣମାନଙ୍କୁ ଶୀଘ୍ର ମୁକ୍ତ କରିବାର ବ୍ୟବସ୍ଥା ହେବ ।' ଏଥିରେ ଆମ୍ଭେମାନେ ଆଶ୍ୱସ୍ତ ହୋଇଥିଲୁଁ—ମାତ୍ର ତାହା ହୋଇ ନ ଥିଲା । ପୁରା ଜେଲ ଦଣ୍ଡ ଆମେ ଭୋଗିଥିଲୁଁ ।

ସେତେବେଳେ ମୋ ପାଖରେ ତିନିଖଣ୍ଡ ମାତ୍ର ବହି ଥାଏ—ଖଣ୍ଡିଏ 'ତିଲକ ଗୀତା', 'ଖଣ୍ଡିଏ ବାଇବେଲ' ଓ ଆଉ ଖଣ୍ଡିଏ ରବୀନ୍ଦ୍ରନାଥଙ୍କ 'ଶାନ୍ତି ନିକେତନ' । 'ତିଲକ ଗୀତା'କୁ ମୁଁ ଭଲ କରି ପଢ଼ିଥିଲି । ସେଥିରୁ ପ୍ରଭୂତ ଆଶ୍ୱାସନା ପାଇଥିଲି । ରବୀନ୍ଦ୍ରନାଥଙ୍କ ଲେଖା ଓ ତାଙ୍କର ଧର୍ମାଲୋଚନା ମୋତେ ଶାନ୍ତି ଦେଉଥିଲା ।

ପାଞ୍ଚ ଛ'ମାସ ଏହିପରି ଗଲା ପରେ ଥରେ ମୁଁ ଭାବିଲି, ସୁପରିଣ୍ଟେଣ୍ଡେଣ୍ଟଙ୍କୁ କୁହାଯାଉ ଯେ ଆମେ ଅତି ଚେଷ୍ଟା କରି ମଧ୍ୟ କାମ କରି ପାରୁନାହୁଁ, ଆମକୁ ଲେଖାପଢ଼ା କାମ ଦେଲେ ଆମେ ସନ୍ତୋଷଜନକ ଭାବରେ କରି ପାରିବୁଁ । ଆମ ଭିତରେ ସମସ୍ତେ ଏକମତ ହୋଇ ମୁଁ ସୁପରିଣ୍ଟେଣ୍ଡେଣ୍ଟଙ୍କୁ କହିବାର ସ୍ଥିର ହେଲା । ଦିନେ ମୁଁ ତାଙ୍କୁ କହିଲି । ସେ କହିଲେ, 'ମୁଁ ଜାଣେ, ସେ ସବୁର ଗୂଢ଼ାର୍ଥ । ତୁମେ ସବୁ ଜିଦ୍ କରି କାମ କରୁ ନାହଁ । ଇଚ୍ଛାକଲେ ଏ ସାମାନ୍ୟ କାମ ତୁମେମାନେ କରିଦେଇ ପାରିବ ।' ମୁଁ ନମ୍ରଭାବରେ କହିଲି, ମୁଁ ଧୀରେ ଧୀରେ କାମ ବଢ଼ାଉଛି ଓ ନିଷ୍ଠା ସହକାରେ କାମ କରୁଛି— ମାତ୍ର ଅଭ୍ୟସ୍ତ ନ ଥିବାରୁ ପୂରା କାମ ହୋଇପାରୁ ନାହିଁ ।' ସୁପରିଣ୍ଟେଣ୍ଡେଣ୍ଟ ତା' ପରେ କହିଲେ, 'ଅଚ୍ଛା, ତୁମେ ଲାଗିପଡ଼ି ଦିନେ ପୂରା କାମ କରିଦିଅ । ତା'ପରେ ମୁଁ ତୁମକୁ ଲେଖାପଢ଼ା କାମଦେବି ।' ମୁଁ ଏଥିରେ 'ହିଁ' ଭରି କାମରେ ଲାଗିଗଲି । ମାତ୍ର ୧୫ ସେରଠାରୁ ବେଶୀ ଗହମ ପେଷି ପାରିଲି ନାହିଁ । ତା'ପରେ ଆମେ ଦୁଇ ତିନିଜଣ ମିଶି ୨୦ ସେର ଗହମ ପେଷି ସୁପରିଣ୍ଟେଣ୍ଡେଣ୍ଟଙ୍କୁ କହିଲୁଁ । ସେ ମୋ ଟିକଟ ନେଇ କମ୍ବଳ କାରଖାନାରେ ଏକାଉଣ୍ଟେଣ୍ଟଙ୍କ ସହକାରୀ ରୂପେ କାମ କରିବାର ଆଦେଶ ଦେଲେ । ତା'ପରେ ପ୍ରତ୍ୟେକେ ସେହିପରି ଅନ୍ୟଙ୍କ ସାହାଯ୍ୟରେ ପୂରାକାମ କରିଦେଇ କମ୍ବଳ କାରଖାନା ଅଫିସ୍‌ରେ କାମ କରିବାର ଆଦେଶ ପାଇଲେ । ଧୀରେ ଧୀରେ ଏହିପରି ଜେଲ କର୍ତ୍ତୃପକ୍ଷଙ୍କ ସହିତ ସଂଘର୍ଷ କମିଗଲା । ଆମେ ମଧ୍ୟ ସାଧୁଭାବରେ କମ୍ବଳ-କାରଖାନାରେ କାମ କରିବା ଫଳରେ ସେମାନେ ଖୁସି ହୋଇଯାଇଥିଲେ । ଭାଗଲପୁର ଜେଲ୍‌ର କମ୍ବଳ-କାରଖାନା ଅତି ବଡ଼ । ସେଇଠୁ ସବୁଆଡ଼କୁ କମ୍ବଳ ଯୋଗାହୁଏ । ହଜାର ହଜାର ଟଙ୍କାର ନାନାବିଧ ମାଲ କିଣା ଖରିଦ୍ ବିକ୍ରି ହୁଏ । ଏଥିରେ ବହୁତ ଚୋରି ହୁଏ । ଓ୍ୱାର୍ଡରମାନଙ୍କ ଜରିଆରେ ବାହାରକୁ ଜିନିଷ ପଠାଇ ଦେଇ ବିକ୍ରି କରି କଏଦୀମାନେ ନାନାପ୍ରକାର ଜିନିଷ ମଦ, ଅଫିମ, ଗଞ୍ଜେଇ ପର୍ଯ୍ୟନ୍ତ ମଗାନ୍ତି । ଏଥିରେ ଜେଲ୍‌କର୍ତ୍ତୃପକ୍ଷ ବଡ଼ ବ୍ୟସ୍ତ ହେଉଥିଲେ ।

ଆମେ କାମ କରିବା ଫଳରେ ଏ ସବୁ କମିଗଲା । ମୁଁ ଏହି ଅଫିସ୍‌ରେ କାମ କରି ହିସାବପତ୍ର ରଖିବା, ଟାଇପ୍ କରିବା ଇତ୍ୟାଦି ବହୁପ୍ରକାର କାମ ଶିଖିଥିଲି । ମାସେଖଣ୍ଡେ କାମ କରିବାପରେ ଏକାଉଣ୍ଟାଣ୍ଟ ସୁରେନ୍ ବାବୁଙ୍କର ମୁଁ ଖୁବ୍ ବିଶ୍ୱାସଭାଜନ ହୋଇଗଲି । ସେ ପୁରାପୁରି ମୋ ଉପରେ ନିର୍ଭର କରିବାରେ ଲାଗିଲେ । ଏଣେ ସୁପରିଣ୍ଟେଣ୍ଡେଣ୍ଟଙ୍କ ମତାମତର ପରିବର୍ତ୍ତନ ହୋଇଯାଇଥିଲା । ରାତିରେ ପଢ଼ିବାପାଇଁ ଲଣ୍ଠନ ଗୋଟିଏ ମୋତେ ଦେଲେ । ଆଉ ମଧ୍ୟ ଲେଖିବାପାଇଁ କାଗଜ, କଲମ ଓ କାଳି ଇତ୍ୟାଦି ମୋତେ ଦେଲେ । ମୁଁ 'ଅଜବ ଦୁନିଆ' ନାମକ ଏକ ଉପନ୍ୟାସ ଏହି ଜେଲରେ ଲେଖିଥିଲି । ସେତେବେଳକାର ଭାବ-ପ୍ରବଣତା ଏଥିରେ ଏପରି ପରିସ୍ଫୁଟ ହୋଇଥିଲା ଯେ ବାହାରେ ତାକୁ ମୋର କେତେକ ବନ୍ଧୁ ପଢ଼ି କାନ୍ଦିପକାଇଲେ । ସେ ଉପନ୍ୟାସଟିର ଭାଷା ମଧ୍ୟ ଅଲଗା ପ୍ରକାରର ଥିଲା । ସେ ଭାଷା ଓ ଭାବପ୍ରବଣତା ଆଜି ମୋଠି ନାହିଁ । କାରଣ ସେତେବେଳେ ପ୍ରାଣ ବେଶି ସରଳ ଥିଲା ଓ ସଂସାରର ଅଭିଜ୍ଞତା ଫଳରେ ଏତେ କଠିନ ହୋଇ ନ ଥିଲା ।

ଏ ଉପନ୍ୟାସ ଛଡ଼ା ଇଂରେଜୀରେ 'Free Thinking' ବୋଲି ଖଣ୍ଡେ ବହି ଲେଖିଥିଲି । ଏହା ମଧ୍ୟ ଭଲ ହୋଇଥିଲା ବୋଲି ମୋର ବନ୍ଧୁମାନେ କହୁଥିଲେ । ଏଥିରୁ କେତେକ ଅଂଶ ଲକ୍ଷ୍ମୀନାରାୟଣ ସାହୁ ତାଙ୍କ ସମ୍ପାଦିତ 'Star of Utkal'ରେ ଦିନାକେତେ ଛପାଇଲେ । ତା'ପରେ ଏହା କେଉଁଠି ହଜିଗଲା, ଆଉ ମିଳିଲା ନାହିଁ । 'ଅଜବ ଦୁନିଆ'କୁ ଛପାଇବି ବୋଲି ରଖିଥିଲି—ମାତ୍ର ୧୯୩୦ ଆନ୍ଦୋଳନରେ ପୋଲିସ୍ ଆମ 'ସ୍ୱରାଜ ମନ୍ଦିର' ଖାନତଲାସ କରି ସେ ପାଣ୍ଡୁଲିପିଟି ଜବତ କରିନେଲେ ଓ ଶେଷରେ ତାକୁ ପୋଡ଼ିଦେଲେ । ଏଣୁ ସେ ସମସ୍ତକାର ଲେଖା, ତା'ର ମୂଲ୍ୟ ଯାହା ହେଉ ପଛକେ, ସାଧାରଣଙ୍କ ଆଗରେ ରଖି ପାରିଲି ନାହିଁ ।

ମୋର କାରାମୁକ୍ତ ହେବାକୁ ତିନି ଚାରିମାସ ଥାଏ, ଏହି ସମୟରେ ମୋର ସହକର୍ମୀ ଶ୍ରୀ ମଥୁରାମୋହନ ବେହେରା ଏକ ବର୍ଷ ଜେଲଦଣ୍ଡ ପାଇ ଭାଗଲପୁର ଆସିଲେ । ତାଙ୍କଠାରୁ ଶୁଣିଲି, ଲୋକେ ବନ୍ଦୋବସ୍ତ କର୍ମଚାରୀମାନଙ୍କୁ ଏପରି ବର୍ଜ୍ଜନ କରିଛନ୍ତି ଯେ, ଅମୀନ ଓ କାରକୁନମାନେ ଗାଁରେ ବସିବାକୁ ଜାଗା ପାଉନାହାନ୍ତି । ବନ୍ଦୋବସ୍ତ ଏକ ଅତି ଅପ୍ରିୟ ଜିନିଷ । ଏଥିରେ ଖଜଣା ବଢ଼େ—ଆଉ ମଧ୍ୟ ଲୋକେ ନାନାପ୍ରକାର ହଇରାଣ ହୁଅନ୍ତି । ଏଣୁ ଏହାକୁ ସେତେବେଳେ ବର୍ଜ୍ଜନ କରାହୋଇଥିଲା । ଏଥିରେ ମଥୁରାବାବୁ ଅଗ୍ରଣୀ ଥିବାରୁ ତାଙ୍କୁ ଜେଲ୍ ହୋଇଥିଲା, ମାତ୍ର ବନ୍ଦୋବସ୍ତ ବର୍ଷକ ପାଇଁ ସ୍ଥଗିତ ରହିଥିଲା । ମଥୁରାବାବୁ ଆସିବା ପରେ ମୁଁ ଜଣେ ଓଡ଼ିଆସଙ୍ଗୀ ପାଇଲି ।

କଠିନ କାମରୁ ଅବ୍ୟାହତ ପାଇବା ମାତ୍ରକେ ମନ ଅନ୍ୟଆଡ଼େ ଗତି କଲା । ଜେଲ୍ ଆସିବାଦିନୁ ମୋର ବନ୍ଧୁମାନଙ୍କ ନିକଟକୁ ଚିଠି ଦେଇନାହିଁ କି ଚିଠି ପାଇନାହିଁ; କାରଣ ସେତେବେଳେ ଚିଠି ଦେବା ନେବାର ବ୍ୟବସ୍ଥା ଅତି କଠିନ ଥିଲା । ଏଣେ ଯେଉଁ ଅଫିସରେ ମୁଁ କାମ କରୁଛି ସେଠାରେ ଲଫାପା ଓ ପୋଷ୍ଟକାର୍ଡ଼ ମୋ ଜଣଆରେ ବନ୍ଧୁରି ସିବା ଆସିବା କରୁଥାଏ । ଚିଠି ଲେଖିବାର ଲୋଭ ହେଲା, ମାତ୍ର ଚିଠି ବାହାରକୁ ଯିବ କିପରି ? ଦିନେ ଏକାଉଣ୍ଟାଣ୍ଟଙ୍କୁ ପଚାରିଲି ଯେ ମୁଁ ଚିଠି ଦେବାକୁ ଚାହେଁ, ସେ ତାକୁ ବାହାରେ ପକାଇ ଦେବେ କି ନାହିଁ ? ସେ ହଠାତ୍ ରାଜି ହୋଇଗଲେ, ଆଉ ମଧ୍ୟ ମୋର ବନ୍ଧୁମାନଙ୍କର ଉତ୍ତର ତାଙ୍କର ଠିକଣାରେ ଆସିବାରି ଠିକ୍ ହୋଇଗଲା । ସେହି ଅନୁସାରେ ମୁଁ ଚିଠି ଦେଲି ଓ ଚିଠି ପାଇଲି । ଏହା ଥିଲି ଚୋରି ବ୍ୟାପାର । ପ୍ରାୟ ୧୫ ଦିନରେ ଥରେ ଚିଠି ଦେଉଥାଏ । ବାଲେଶ୍ୱର ସ୍ୱରାଜ୍ୟ-ମନ୍ଦିରର ସମସ୍ତ ଖବର ମୁଁ ଜାଣିପାରୁଥାଏ । ମୋର ମନେଅଛି ସେତେବେଳେ ଜଣେ କର୍ମୀ ମୋତେ ଲେଖିଥିଲେ, "ଗାନ୍ଧି କହିଥିଲେ, ବର୍ଷକ ଭିତରେ ସ୍ୱରାଜ୍ୟ ହେବ, ବର୍ଷେ ତ' ଗଲା, ଦୁଇବର୍ଷ ମଧ୍ୟ ଗଲା । ବର୍ତ୍ତମାନ କଂଗ୍ରେସରେ ଏପରି ଦଳାଦଳି ଯେ ମନ ଲାଗୁ ନାହିଁ । ଆମେ ସିନା ନିରର୍ଥକ ଭାବରେ କଲେଜଗୁଡ଼ ଜୀବନ ନଷ୍ଟକଲୁଁ । ବର୍ତ୍ତମାନ କାଉନ୍‌ସିଲ୍ କାର୍ଯ୍ୟକ୍ରମ ଚାଲିଲେ ଆମର ସେଠି ସ୍ଥାନ କାହିଁ ? ମୁଁ ତ' କଲେଜ ଥାର୍ଡ଼ ଇୟରର ପଢ଼ୁଥିଲି । ନୀଳାମ୍ବର, ବିଶ୍ୱନାଥ ଏମାନେ ତ' ଜିଲ୍ଲା ସ୍କୁଲରେ ପଢ଼ୁଥିଲେ । ଏମାନେ କରିବେ କଅଣ ? ବଡ଼ ନିରାଶରେ ଅଛୁ···' ଇତ୍ୟାଦି ।

ଏ ଚିଠିଖଣ୍ଡିକ ପାଇ ମୁଁ ନିଜେ ହତୋତ୍ସାହ ହୋଇଗଲି । ସେତେ-ବେଳକାର ବାହାରର ଚିତ୍ର ପରିଷ୍କାର ଭାବରେ ମୋ ଆଖି ଆଗରେ ନାଚିଲା । ମୁଁ ଭାବିଲି, ଉପରର ନେତାମାନେ କଅଣ ତଳ କର୍ମୀମାନଙ୍କୁ ସମ୍ପୂର୍ଣ୍ଣ ଭୁଲିଗଲେ । ମଝି ସମୁଦ୍ରରେ ସମସ୍ତଙ୍କୁ ଏପରି ଛାଡ଼ିଦେଇ ଯେ ଯାହା ମନୋବୃତ୍ତି ଅନୁସାରେ କୂଳ ଖୋଜି ବାହାରିଲେ । ଯାହାହେଉ, ନିଜକୁ ସଂଯତ କରି ସାହସ ଦେଇ ପତ୍ର ଲେଖିବାରେ ଲାଗିଲି । ଜୀବନବ୍ୟାପୀ ଦେଶସେବାବ୍ରତ ଗ୍ରହଣ କରିବାକୁ ହେବ— ସ୍ୱରାଜ୍ୟ ନ ହେବାଯାଏ ଆମର ବିଶ୍ରାମ ନାହିଁ, ଇତ୍ୟାଦି ପ୍ରକାର ସାନ୍ତ୍ୱନା ଦେଇ ପତ୍ର ଲେଖିଲି ।

ମାତ୍ର ମୋ ମନଭିତରେ ବଡ଼ ଅଶାନ୍ତି ଜାତ ହେଉଥାଏ । ବିଶେଷତଃ ଆମ ଓଡ଼ିଶା କଥା ଚିନ୍ତା କରି ମୁଁ ଅସ୍ଥିରତା ବୋଧ କରୁଥାଏ । ଆମର ରାଜନୀତିକ ଜୀବନ କିଛି ନ ଥିଲା କହିଲେ ଚଳେ । ଅସହଯୋଗ ଆନ୍ଦୋଳନ ଫଳରେ ଆମର ରାଜନୀତିର ଆରମ୍ଭ । ଗୋପବନ୍ଧୁଙ୍କୁ ଛାଡ଼ିଦେଲେ ବାକି ସମସ୍ତେ ଯୁବକ, ନୂଆକରି

ରାଜନୀତିରେ ଯୋଗ ଦେଇଛନ୍ତି । ଏପରି ସ୍ଥଳେ ବ୍ୟବସ୍ଥାପକସଭାର କାର୍ଯ୍ୟକ୍ରମ ଆରମ୍ଭ ହେଲେ ଆମେ ଓଡ଼ିଶାରେ କରିବୁ କଅଣ ? ଯାହା କିଛି ସୃଷ୍ଟି ହୋଇଥିଲା, ସବୁ ସିନା ଛାରଖାର ହୋଇଯିବ । ଏହି ଚିନ୍ତା ମୋତେ ବ୍ୟାକୁଳ କରୁଥାଏ ।

ଏ ଚିନ୍ତା ସାଙ୍ଗରେ ମିଶିଯାଉଥାଏ ମୋର ପାରିବାରିକ ଜୀବନର ଚିନ୍ତା । ଯେ ଆଦର୍ଶ ନେଇ, ବାବାଙ୍କୁ ମାନିନାହିଁ, ସ୍ତ୍ରୀକୁ ପଚାରି ନାହିଁ, ଭାଇ ଭଉଣୀ ସମସ୍ତଙ୍କୁ ପାଣେରି ଦେଇଛି, ସେ ଆଦର୍ଶ ମୋର ରହିବ କିପରି ? ପୁଣି ସିନା 'ବୈଷ୍ଣବ ହେବା ନୋହିଲା' କହି ଘରକରଣାରେ ମାତିବି ? ନ ହେଲେ ଅତି ଜୋର୍‌ରେ ବ୍ୟବସ୍ଥାପକସଭାର ସଭ୍ୟ ହୋଇଗଲେ ମଧ୍ୟ ପୂର୍ବ ସମସ୍ତ ଦେଇ ଜନତାର ସେବା କରିବାର ତ' ସୁବିଧା ରହିବ ନାହିଁ ? ଏସବୁ ପ୍ରଶ୍ନ ମନକୁ ଆଲୋଡ଼ନ କରୁଥାଏ । ଗାନ୍ଧିଜୀଙ୍କୁ ଛ' ବର୍ଷ ଜେଲ୍ ହୋଇଥାଏ । ଜେଲ୍‌ରୁ ମୁକ୍ତ ହେବା ବେଳକୁ ଆମେ ସବୁ ଦମ୍ ଧରି ରହିଥିବୁଁ ତ' ! ଏ ପ୍ରଶ୍ନ ମଧ୍ୟ ବାରମ୍ବାର ମନକୁ ଉଠୁଥାଏ ।

ଏହି ପ୍ରକାର ଜେଲ୍ ସମୟ ମୋର ଶେଷ ହୋଇ ଆସିଲା, ବାର ମାସରୁ ମାସେ କେତେଦିନ ନିୟମ ଅନୁସାରେ 'ମାର୍କା' ମିଳିଲା । ଖଲାସ ହେବାର ପନ୍ଦର ଦିନ ଆଗରୁ ମୁଁ ଭାବିଲି ଯେ, ଭାଗଲପୁରରୁ ସିଧା ହଜାରିବାଗ ଯାଇ ଗୋପବନ୍ଧୁଙ୍କ ସହିତ ଦେଖାକରି ବାଲେଶ୍ୱର ଫେରିବି, ମାତ୍ର ସେଥିପାଇଁ ପଇସା ନ ଥାଏ । ଯେଉଁ ଉପାୟରେ ମୁଁ ଚିଠିପତ୍ର ଦିଆ ନିଆ କରୁଥିଲି, ସେହି ଉପାୟରେ ମୋର ଇଚ୍ଛା ମୁଁ ବନ୍ଧୁମାନଙ୍କୁ ଜଣାଇଲି । ସେତେବେଳେ ଆମ 'ସ୍ୱରାଜ୍ୟ ମନ୍ଦିର'ରେ ଡ଼ଃ ଏଚ୍‌ଃ ପିଃ ରାଓ ନାମକ ଜଣେ ତେଲେଙ୍ଗା ଭଦ୍ରଲୋକ ରହି କର୍ମୀମାନଙ୍କୁ ଖୁବ୍ ସାହାଯ୍ୟ କରୁଥିଲେ । ସେ ମୋ ପାଖକୁ କୋଡ଼ିଏ ଟଙ୍କା ପଠାଇ ଦେଇଥିଲେ । ଏ ସମ୍ବାଦରେ ମୁଁ ଅତି ଆନନ୍ଦିତ ହେଲି ।

ଶେଷ ସମୟ କଟାଇବା ଅତି କଷ୍ଟକର ହୋଇଉଠିଲା । ଉଦ୍‌ବେଗର ସୀମା ନ ଥାଏ । ପ୍ରତି ଘଣ୍ଟା ଏକ ଏକ ଦିନ ପରି ଜଣାଯାଉଥାଏ । ପ୍ରତିଦିନ ସକାଳୁଁ ନିଦ ଭାଙ୍ଗିବା ମାତ୍ରକେ ଦିନ ଗଣା ଚାଲିଥାଏ । ଶେଷରେ ଭାଗଲପୁରରୁ ମୁକ୍ତ ହୋଇ ହଜାରିବାଗ ଗଲି । ସେଠାରେ ଜଣେ ଇଂରେଜ ଜେଲର୍ ଥାନ୍ତି । ନିରାପତ୍ତା କରି ଗୋପବନ୍ଧୁଙ୍କ ସହିତ ଦେଖା କରିଥିଲି । ସେ ମୋତେ ଦେଖି ଅଭିଭୂତ ହୋଇଗଲେ । ଦୀର୍ଘକାଳ ପରେ ଦେଖା । ତାଙ୍କ ଆଖି ଛଳ ଛଳ ହୋଇଗଲା । ମୁଁ ମଧ୍ୟ ଅଭିଭୂତ ହୋଇଗଲି । ସେ ମୋତେ ବ୍ୟବସ୍ଥାପକସଭା ସମ୍ବନ୍ଧରେ ମତ ପଚାରିଲେ । ମୁଁ ତାଙ୍କୁ କହିଥିଲି ଯେ ଗାନ୍ଧିଜୀଙ୍କୁ ଛାଡ଼ି ମୁଁ କୁଆଡ଼େ ଯିବି ନାହିଁ । ତାଙ୍କର ମତ ବ୍ୟବସ୍ଥା-ସଭା ପକ୍ଷରେ ଥିବାର ମୁଁ ଜାଣିଲି ।

ସେହିଦିନ ସେହି ଜେଲ୍‌ରୁ ପଣ୍ଡିତ ନୀଳକଣ୍ଠ ଷୋଳମାସ ଜେଲ୍‌ଭୋଗ କରି ମୁକ୍ତ ହୋଇଥାଆନ୍ତି । ଆମେ ଦୁହେଁଯାକ ଏକା ସାଙ୍ଗରେ ଆସିଲୁଁ । ତାଙ୍କଠାରୁ ଉତ୍ସାହ ପାଇବା ଭଳି କଥା କିଛି ଶୁଣି ନ ଥିଲି । ଗାନ୍ଧିଜୀ ଓ ତାଙ୍କ ନୀତି ବିରୁଦ୍ଧରେ ତୀବ୍ର ସମାଲୋଚନା ମୁଁ ପ୍ରଥମେ ନୀଳକଣ୍ଠ ବାବୁଙ୍କଠାରୁ ଶୁଣିଲି । ସେ ନିଜେ ଅତି ବିବ୍ରତ ଥିଲେ ପରି ମୋତେ ଜଣାଗଲେ । ଖଡ୍ଗପୁରରେ ଜଣେ ସହକର୍ମୀଙ୍କ ସହିତ ମୋର ଦେଖାହେଲା । ସେ ସେତେବେଳକୁ ପୋଲିସ ଚାକିରିର ଯୋଗାଡ଼ରେ ଥାଆନ୍ତି । ବର୍ତ୍ତମାନ ସେ ଜଣେ ପୋଲିସ ହାକିମ । ତାଙ୍କୁ ଦେଖି ମୁଁ ବଡ଼ ଦୁଃଖିତ ହେଲି । ସେ ନିଜର ଅନେକ ଅସୁବିଧା, ଘରର ତାଡ଼ନା ମୋତେ ବୁଝାଇଥିଲେ, ମାତ୍ର ଯେଉଁସବୁ ଅସୁବିଧା କଥା ସେ ମୋତେ କହିଲେ, ସେ ସବୁ ଅସୁବିଧା କଲେଜ ଛାଡ଼ିଲାବେଳେ ତାଙ୍କର ଥିଲା ଓ ତାକୁ ସବୁ ପଦାଘାତ କରି କେତେ କଷ୍ଟ ସହ୍ୟ କରି କଂଗ୍ରେସ କାମକୁ ସେ ବାହାରିଥିଲେ । କଂଗ୍ରେସର ସ୍ଥିତି ଯୋଗୁଁ ଓ ନିଜର ଆଦର୍ଶ ବଳ କମିଯିବାରୁ ସେହିସବୁ ପଦଦଳିତ ଅସୁବିଧା ବର୍ତ୍ତମାନ ମୁଣ୍ଡ ଟେକି ନିଜକୁ ପ୍ରତିଷ୍ଠିତ କରାଇଛନ୍ତି । ମୁଁ କିଛି ଯୁକ୍ତି କରି ନ ଥିଲି, ସେ ମୋତେ ଜେଲ୍‌ର ଖବର ସବୁ ପଚାରିଥିଲେ ।

ମୁଁ ବାଲେଶ୍ୱରରେ ଯେଉଁଦିନ ପହଞ୍ଚିବି ବୋଲି ଖବର ଦେଇଥିଲି— ତା'ର ଦିନେ ଆଗରୁ ଇଚ୍ଛା କରି ପହଞ୍ଚିଗଲି । ଏଣୁ ମୋତେ ଅଭ୍ୟର୍ଥନା କରିବା ପାଇଁ ଯେଉଁ ବିଶାଳ ଆୟୋଜନ ହେଉଥିଲା, ତାହା ବନ୍ଦ ହୋଇଗଲା ଓ ଉଦ୍ୟୋକ୍ତାମାନେ ଅତି ନିରୁତ୍ସାହିତ ହେଲେ । ବିଶେଷତଃ ଡାକ୍ତର କୃଷ୍ଣପ୍ରସାଦ ଅତି ବିରକ୍ତ ହେଲେ, ମାତ୍ର ମୋତେ ଏହା ଅତି ସୁଖ ଲାଗିଲା । କାରଣ ଦେଶର ଯେ ଅବସ୍ଥା ଓ ମୋ ମନର ଯେ ଦୁର୍ବଳତା, ସେଥିରେ ମୁଁ ଯାଇକି କେଉଁଠି ଛିଡ଼ା ହେବି ତା'ର ଠିକଣା ନ ଥାଏ । ଏପରି ସ୍ଥଳେ ସାଧାରଣଙ୍କ ଅଭ୍ୟର୍ଥନା ପାଇବାର ବାସ୍ତବିକ ଉପଯୁକ୍ତ ନୁହେଁ ବୋଲି ମୁଁ ନିଜ ମନକୁ ଭାବିଥିଲି । ବର୍ତ୍ତମାନ ପୁଣି ଏକ କଠିନ ସମସ୍ୟା ଭିତରେ ନିଜକୁ ଦେଖିବାକୁ ପାଇଲି ।

## ୧୯୨୩-୧୯୨୪

ବାସ୍ତବିକ ସେତେବେଳେ ସ୍ୱରାଜ୍ୟ କର୍ମୀମାନଙ୍କ ଭିତରେ ନିରୁତ୍ସାହ । ଉପରୁ କୌଣସି ବାଟ ଦେଖାଇବା ଭଳି ନେତୃତ୍ୱ ଅସୁନାହିଁ । ବରଂ ଉପରେ ଅତି ଉତ୍କଟ ମତଭେଦ ତଳେ ନିରୁତ୍ସାହ ଓ ବିଭ୍ରାଟ ଜନ୍ମାଉଥାଏ । ଏହି ସମୟରେ ଆମ ଓଡ଼ିଶାରେ ପ୍ରାଦେଶିକ କଂଗ୍ରେସ କମିଟି ଅଚଳ ଅବସ୍ଥାରେ ପଡ଼ିଥାଏ । ଶ୍ରୀ ଗୋପବନ୍ଧୁ ଚୌଧୁରୀ ଅଲକାଶ୍ରମ ନାମରେ ଏକ ଅନୁଷ୍ଠାନ ଓ ଜାତୀୟ ବିଦ୍ୟାଳୟ ଆରମ୍ଭ କରି ସେଇଠି କାମରେ ନିଯୁକ୍ତ ଥାଆନ୍ତି: ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ ଯେଉଁମାନେ ନିଯୁକ୍ତ ଥିଲେ, ସେମାନେ ଅର୍ଥାଭାବ ଓ ସାଧାରଣ ନିରୁତ୍ସାହଜନକ ଅବସ୍ଥା ବିରୋଧରେ ଯଥାଶକ୍ତି ଲଢ଼ାଇ କରିବାରେ ଲାଗିଥାନ୍ତି । ଅନ୍ୟତ୍ର ଯେଉଁଠି ସବୁ ଆଶ୍ରମ ଥିଲା, ସେ ସବୁ ମ୍ରିୟମାଣ ହୋଇପଡ଼ିଥାଏ । ପୁରୀର କଂଗ୍ରେସ-ନେତା ଅସହଯୋଗୀ ଓକିଲ ଶ୍ରୀ ଜଗବନ୍ଧୁ ସିଂହ ଲେଖିଦେଇ ପୁନର୍ବାର ଓକିଲାତି ଆରମ୍ଭ କରିବା ଫଳରେ ସେଠାର କର୍ମୀମାନଙ୍କ ଭିତରେ ବୈରାଗ୍ୟ ଆସି ଯାଇଥାଏ । ଗଞ୍ଜାମରେ ଶ୍ରୀ ନିରଞ୍ଜନ ପଟ୍ଟନାୟକ ଲାଗିପଡ଼ି କିଛି କିଛି କାମ କରୁଥା'ନ୍ତି । ବାଲେଶ୍ୱରରେ ସ୍ୱରାଜ୍ୟ ମନ୍ଦିର ମନ୍ଦ ଓ ମନ୍ଥର ଗତିରେ ଚାଲିଥାଏ । କେବଳ ଶ୍ରୀ ନନ୍ଦକିଶୋର ଦାସ ଅବସ୍ଥାଚକ୍ରରେ ପଡ଼ି ସତ୍ୟବାଦୀ ବିଦ୍ୟାଳୟରେ କାମ କରିବା-ପାଇଁ ଚାଲିଯାଇଥାନ୍ତି । ଅନ୍ୟଥା ବାଞ୍ଛାନିଧିବାବୁ, କରୁଣାକର, ନୀଳାମ୍ବର, ବିଶ୍ୱନାଥ ସୁବୋଧ ଏମାନେ ଜିଲ୍ଲାସାରା ବୁଲି ସମ୍ମିଳନୀ କରି ସାଧାରଣ ଜାଗୃତିକୁ ବଞ୍ଚାଇ ରଖିବା ପାଇଁ ଲାଗିଥା'ନ୍ତି । ସ୍ୱରାଜ୍ୟ-ମନ୍ଦିରରେ ଯେଉଁ ଖଦିକାମ ଚାଲିଥିଲା, ତାହା ବନ୍ଦ ହୋଇ ନ ଥାଏ, ମାତ୍ର ଅତି ଧିମେଇ ଧିମେଇ ଚାଲିଥାଏ ।

ଇତି ମଧ୍ୟରେ ଏକ ଦୁର୍ଘଟଣା ଘଟି ଯାଇଥାଏ । ଓଡ଼ିଶାରେ ଖଦି କାମ ପାଇଁ ନିଖିଳ ଭାରତ-କଂଗ୍ରେସ କମିଟି ଯେଉଁ ଟଙ୍କା ଦେଇଥିଲା, ତାହା ଗୋପବନ୍ଧୁ ଚୌଧୁରୀଙ୍କ ଜିମାରେ ଖଦି କାର୍ଯ୍ୟରେ ବିନିଯୁକ୍ତ ହୋଇଥିଲା, ମାତ୍ର ସେ ସମୟର ସୁବିଧା ନେଇ କେତେକ ଅସାଧୁ କର୍ମୀ ସେ ଟଙ୍କାକୁ ଆତ୍ମସାତ୍ କରି ଦେଇଥାନ୍ତି । ସେମାନଙ୍କ ବିରୋଧରେ ସରକାରୀ ଅଦାଲତକୁ ମଧ୍ୟ ଅସହଯୋଗ ହେତୁ ଯାଇ ହେଉ ନ ଥାଏ ।

ଏହିପରି ଅବସ୍ଥାରେ ଆମେ କେତେଜଣ କଟକରେ ଏକତ୍ର ହୋଇ ସବୁ କାମକୁ ଗୋଟାଇ ନେଇ କିଛି ହେଲେ ସଙ୍ଗଠିତ ଭାବରେ କରିବା ପାଇଁ ସ୍ଥିର କଲୁଁ । ନିରଞ୍ଜନ ପଟ୍ଟନାୟକ, ଗୋପବନ୍ଧୁ ଚୌଧୁରୀ, ନୀଳକଣ୍ଠ ଦାସ ଓ ମୁଁ ଏକତ୍ର ବିଚାର କରି ସ୍ଥିର କଲୁଁ ଯେ, ନିରଞ୍ଜନ ଖଦିକାମ ଭାରରେ ରହିବେ । ଗୋପବନ୍ଧୁ ଚୌଧୁରୀ ଗ୍ରାମ ସଙ୍ଗଠନ କାର୍ଯ୍ୟ କରିବେ ଓ ମୁଁ ପ୍ରଚାର କାର୍ଯ୍ୟ ତଥା ପ୍ରାଦେଶିକ କଂଗ୍ରେସ କମିଟିର କାମ ଦେଖିବି । ଏହି ଅନୁସାରେ କାମ ଚାଲିଲା । ନିରଞ୍ଜନ ଲାଗିପଡ଼ି ଖଦି କାମକୁ ବାଟରେ ପକାଇଲେ । ମୁଁ ସବୁ ଜିଲ୍ଲା ଯାଇ, ସବୁ ଆଶ୍ରମକୁ ଯାଇ କର୍ମୀମାନଙ୍କ ସହିତ କଥାବାର୍ତ୍ତା କରି ସାହସ ଓ ଉତ୍ସାହ ଦେବାପାଇଁ ଚେଷ୍ଟା କରିଥିଲି । କଟକ ସ୍ୱରାଜ୍ୟ-ଆଶ୍ରମକୁ ଜୀବନ୍ତ କରିବା ପାଇଁ ସେ ସମୟରେ ମୁଁ ଖୁବ୍ ଚେଷ୍ଟା କରିଥିଲି, ମାତ୍ର ମୋଦ୍ୱାରା ତାହା ହୋଇ ପାରିଲା ନାହିଁ । ଦିନେ ଆଶ୍ରମର ଏକ ବଇଠକ୍ ଡାକି ଟ ୧୨୦୦ଙ୍କା ଚାନ୍ଦା ସଂଗ୍ରହ କରିବି ବୋଲି ମନସ୍ଥ କଲି, ଏକାଦିନେ ଟ ୧୦୦ଙ୍କା ଚାନ୍ଦା ସଂଗ୍ରହ କଲି । ଶ୍ରୀ ଗଣେଶଲାଲ ପଣ୍ଡିତ ଟ ୧୦୦ଙ୍କା ଓ ଶ୍ରୀ କୁଳମଣି ସାମନ୍ତରାୟ ଟ ୧୦୦ଙ୍କା ଅକୁଣ୍ଠିତ ଚିତ୍ତରେ ଦାନ କରିଥିଲେ । ସେହିଦିନ ସେ ଟ ୨୦୦ଙ୍କା ଆଶ୍ରମରୁ କିଏ ଚୋରି କରି ନେଇଗଲା । ଯେଉଁମାନେ କର୍ମୀ ଥିଲେ, ସେମାନେ ଏ କଥାଟାକୁ ବଡ଼ ମନେ ନ କରି ଗୋଟିଏ ସାଧାରଣ ଘଟଣା ବୋଲି ମନେ କଲେ । ମୁଁ ଦେଖିଲି ଯେ, ଯେଉଁଠି ସାଧାରଣ ଦତ୍ତ ଅର୍ଥ ପ୍ରତି ଏତେ ତାଚ୍ଛଲ୍ୟ ଭାବ ସେଠି ମୋଦ୍ୱାରା କିଛି ହୋଇ ପାରିବ ନାହିଁ । ଏଣୁ ମୋତେ ପୁଣି ବାଲେଶ୍ୱରରେ ସୀମାବଦ୍ଧ ହୋଇ କାମ କରିବାକୁ ପଡ଼ିଲା ।

କଟକରେ ଥିବାବେଳେ ପ୍ରଚାର ଉଦ୍ଦେଶ୍ୟରେ 'ପ୍ରଜାତନ୍ତ୍ର' ନାମକ ଏକ ସାପ୍ତାହିକ ପତ୍ରିକା ବାହାର କରିଥିଲି । ଗାନ୍ଧିନୀତିର ଓ ଗଠନମୂଳକ କାମର ପ୍ରଚାର ଏହାର ମୂଳ ଉଦ୍ଦେଶ୍ୟ ଥିଲା । ଏଥିରେ ବିଜ୍ଞାପନ ଇତ୍ୟାଦି ବା ସାଧାରଣ ଖବର କିଛି ଦିଆ ଯାଉ ନ ଥିଲା । ଏହା ପ୍ରଥମେ 'ମୁକୁର' ପ୍ରେସରୁ ବାହାରୁଥିଲା । ଏହାର ମୁଦ୍ରକ ଓ ପ୍ରକାଶକ ଶ୍ରୀ ବୀରକିଶୋର ଦାସ ଥିଲେ । ସବୁ ଆଶ୍ରମକୁ ଏହାକୁ ପ୍ରଚାରପତ୍ର ହିସାବରେ ପଠାଯାଉଥିଲା । ମୁଁ କଟକ ଛାଡ଼ି ବାଲେଶ୍ୱର ଯିବାରୁ 'ପ୍ରଜାତନ୍ତ୍ର'କୁ ମଧ୍ୟ ବାଲେଶ୍ୱର ନେଇ ଯାଇଥିଲି । ସେଠି ଏହା ଟାଉନ ପ୍ରେସରେ ବାହାରିଲା । ବାଲେଶ୍ୱର ଜିଲ୍ଲାର ସବୁ ଥାନାରେ ସମ୍ମିଳନୀମାନ ଆୟୋଜନ କରା-ହେଲା । ବାହାରୁ ବଡ଼ ବଡ଼ ଲୋକଙ୍କୁ ଆଣି ସଭାପତି କରାହେଲା । ଏତଦ୍ଦ୍ୱାରା ସାଧାରଣ ଭିତରେ ତଥା କର୍ମୀମାନଙ୍କ ଭିତରେ ଉତ୍ସାହ ବଢ଼ିଥିଲା ।

ଜିଲ୍ଲାସାରା ଯେଉଁଠି ଯାହା କିଛି ଅତ୍ୟାଚାର ହେଉଥାଏ, ତାହା ବିରୋଧରେ ମୁଁ ଓ ମୋର ସହକର୍ମୀମାନେ ଲାଗି ପଡ଼ୁଥାଉ । ଯେତେବେଳେ ମୁଁ ଦୃଢ଼ଭାବରେ

କହୁଥାଏଁ ଯେ ଅତ୍ୟାଚାର ବିରୋଧରେ ଛିଡ଼ା ହେବା କଂଗ୍ରେସର କାର୍ଯ୍ୟକ୍ରମ । ଖାସ୍ କରି ଜମିଦାରୀ ଅତ୍ୟାଚାର ବିରୋଧରେ ନାନା ସ୍ଥାନରେ ଆମେ କାର୍ଯ୍ୟ କରିଥାଉଁ । ଜଣେ ଜମିଦାରଙ୍କ ଅମଲା ଜଣେ ପ୍ରଜାକୁ ମାରୁ ମାରୁ ମାରିପକାଇଲା । ଜମିଦାର ପୁଲିସ ସାହେବଙ୍କ ଠାରୁ ଆରମ୍ଭ କରି ସମସ୍ତଙ୍କୁ ବୋଧ କରି ଘଟଣାକୁ ଚପାଇ ଦେଲେ । ଆମେ ତାକୁ ତଦନ୍ତ କରି ସେ ବିଷୟରେ ଆନ୍ଦୋଳନ ଏପରି କରିଥିଲୁଁ ଯେ, ଶେଷରେ ସେ ମକଦ୍ଦମା ପୁଣି ଚାଲିଲା । ଲୋକଟିକୁ ମାରିଦିଆ ହୋଇଛି, ସତ୍ୟ ବୋଲି ପ୍ରମାଣିତ ହେଲା—ମାତ୍ର କିଏ ମାରିଛି ଏ ପ୍ରମାଣ ଅଭାବରୁ ମୁଦାଲା ଖଲାସ ହେଲେ । ଏହି ସମ୍ପର୍କରେ ଉପରିସ୍ଥ ହାକିମମାନେ ତଦନ୍ତ କରି ସନ୍ତୁଷ୍ଟ ହେଲେ ଯେ, ବାସ୍ତବିକ ହତ୍ୟାକାଣ୍ଡକୁ ପୋଲିସ ଲୁଚାଇ ଦେଇଥିଲେ । ଏହା ଫଳରେ ଉକ୍ତ ପୋଲିସ ସାହେବ ତାଙ୍କର କାର୍ଯ୍ୟକାଳ ଶେଷହେବା ପୂର୍ବରୁ ପେନ୍‌ସନ ନେଇ ଚାଲିଯିବାକୁ ବାଧ୍ୟ ହୋଇଥିଲେ । ଏହି ସବୁ କାମଦ୍ୱାରା ଆମେ କଂଗ୍ରେସକୁ ଜନପ୍ରିୟ କରୁଥାଉଁ ।

କୌଣସି ପ୍ରକାରେ ଲଗିପଡ଼ି ବାଲେଶ୍ୱର ଜିଲ୍ଲାର ସାଧାରଣ ଜାଗୃତି ବଞ୍ଚାଇଁ ରଖିବା ପରେ ଆମେମାନେ କିଛିଟା ସଫଳ ହୋଇଥିଲୁଁ ।

ଦୁଇ ବର୍ଷରୁ ବେଶୀ ହେବ ଘରକୁ ଯାଇନାହିଁ ଓ ସେହି କାରଣରୁ ମନ ଛଟପଟ ହେବାରୁ ମୁଁ କିଛିଦିନ ପାଇଁ ୧୯୨୩ ମସିହା ଶେଷ ଆଡ଼କୁ ଘରକୁ ଯାଇଥିଲି, ମାତ୍ର ସେଠାରେ କିଛି ହେଲେ ପରିବର୍ତ୍ତନ ଦେଖିଲି ନାହିଁ । ପୂର୍ବପରି ସମସ୍ତେ ମୋତେ ଘରକରଣା ଆଡ଼କୁ ଟାଣିବାକୁ ଚେଷ୍ଟା କଲେ । ମୁଁ ମନେ ମଧ୍ୟ ଟଣାଟଣିରେ ପଡ଼ିଗଲି । ଘରଲୋକଙ୍କୁ ସାଙ୍ଗରେ ନେବାର ଚେଷ୍ଟା କରିବି ନା ତେଣେ ମୋ ନିଜ ଆଚରଣ ଦ୍ୱାରା ଅନ୍ୟ କର୍ମୀମାନଙ୍କ ଭିତରେ ଟାଣ ବଜାୟ ରଖିବି, ଏହା ହିଁ ହେଲା ମୋ ପକ୍ଷରେ ବିଚାର୍ଯ୍ୟ ବିଷୟ । ମୁଁ ଭାବିଲି, ମୋତେ ଯେପରି ଘରଲୋକ ଟଣା ଓଟରା କରୁଛନ୍ତି, ଅନ୍ୟମାନଙ୍କୁ ତ ସେହିପରି ଆହୁରି ବେଶୀ ସେମାନଙ୍କ ଘରଲୋକ କରୁଥିବେ । ମୋର ତ ଘରଲୋକଙ୍କର ସୁସ୍ଥରେ ଚଳିବାପାଇଁ ଅଭାବ ନାହିଁ, ମାତ୍ର ଅନ୍ୟମାନଙ୍କର ତ ଅଚଳ ଅବସ୍ଥା । ଏପରିସ୍ଥଳେ ମୁଁ ଯଦି ଘରଲୋକଙ୍କ ପଛରେ ଲାଗିରହେ, ତେବେ ଅନ୍ୟମାନଙ୍କ ଭିତରେ ନିରୁତ୍ସାହ ଭାବ ଆଣିବାର ଏ ଏକ କାରଣ ହେବ; ତାହା ମୁଁ କଦାପି କରାଇ ଦେବି ନାହିଁ, କାହି ଅନ୍ୟ କାହାରି କଥା ନ ମାନି ମୁଁ ବାଲେଶ୍ୱର ଚାଲିଗଲି । ଏଥର କାହାରିକୁ ମୁଁ ଠକି ନାହିଁ, ବରଂ ଏଥର ମୋର ଟାଣ ଦେଖି ସମସ୍ତେ ବିସ୍ମିତ ହେଲେ । ମୋର ସ୍ତ୍ରୀ ଏତିକି-ବେଳେ ବୋଧହୁଏ ଭାବିଲା ଯେ ତାକୁ, ମୋର ବଶ୍ୟତା ସ୍ୱୀକାର କରିବାକୁ ହେବ । ହିନ୍ଦୁ ସହଧର୍ମିଣୀ, ତା'ର ଅନ୍ୟ ଚାର ନାହିଁ ? ତାକୁ ଯେ ଏପରି ବାଧ୍ୟ କରି ମୋର

ବଣତା ସ୍ୱୀକାର କରାଇଲି, ଏଥିପାଇଁ ମୋ ମନରେ ସବୁବେଳେ ଏକ କରୁଣାର ଭାବ ଆଜି ପର୍ଯ୍ୟନ୍ତ ରହିଛି । ଏଥିପାଇଁ ମୁଁ କେତେ ଦାୟୀ, ସମାଜ କେତେ ଦାୟୀ, ତା'ର ବିଚାର ଏଠାରେ କରିବାର ନୁହେଁ ।

ବାବା କିନ୍ତୁ ସେହିପରି ଟାଣ ଥାଆନ୍ତି । ମୁଁ ବାଲେଶ୍ୱର ଯିବାବେଳେ ତାଙ୍କୁ ଟଙ୍କା ମାଗିଲି । ସେ ରୁକ୍ଷଭାବରେ ମନା କରିଦେଲେ, ଟଙ୍କା ଯଦି ଦରକାର୍, ତେବେ ଜମିଦାରୀ ନିଜେ ବୁଝ, ଯେପରି ଇଚ୍ଛା ସେପରି ଖରଚ କର । ମୁଁ ସେହିପରି କେନ୍ତ ହସ୍ତରେ ଆସିଲି ।

ମୋର ଏକମାତ୍ର ଉଦ୍ଦେଶ୍ୟ ହୋଇଥାଏ, ବାଲେଶ୍ୱରରେ ଯେ ସହକର୍ମୀମାନଙ୍କ ଭିତରେ ଏକ ନୂତନ ପରିବାର ସୃଷ୍ଟି କରିଛି, ତାକୁ ବଜାୟ କରି ରଖିବା, ମାତ୍ର ସେଥିପାଇଁ ଅତିରିକ୍ତ ଅର୍ଥାଭାବ ମୋର ପ୍ରତିବନ୍ଧକ ହୋଇଥାଏ । ବାଲେଶ୍ୱର ସ୍ୱରାଜ୍ୟମନ୍ଦିରରେ ଆମ ସହକର୍ମୀମାନଙ୍କଭିତରେ ବସି ଠିକ୍ କଲୁଁ ଯେ, ସ୍ୱରାଜ ନ ହେବା ପର୍ଯ୍ୟନ୍ତ ଆମେ ଏହିପରି ଦୀନ ଜୀବନ ଯାପନ କରିବା, ଘରକରଣାରେ କେବେ ପଡ଼ିବା ନାହିଁ । ନିଜ ଭିତରେ ଏକ ସଂଘ ସ୍ଥାପନ କରି ସେଥିରେ ସମସ୍ତେ ଦସ୍ତଖତ କଲୁଁ । ବୋଲିବା ବାହୁଲ୍ୟ, ଏ ଦସ୍ତଖତର ମୂଲ୍ୟ କିଛିଦିନ ପରେ ଆଉ ରହିଲା ନାହିଁ ।

ଏହି ସମୟରେ ଆମ ଆଶ୍ରମ ଜୀବନରେ ଅନେକ ପରିବର୍ତ୍ତନ ଘଟିଲା । ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ଆଶ୍ରମବାସୀ ହେବାଦିନୁ ଆମେ କେହି ମାଛ ମାଂସ ଖାଉ ନ ଥିଲୁଁ । ଆଶ୍ରମରେ ମାଛ ମାଂସ ହେବାର ତ କଳ୍ପନା ବି ନ ଥିଲା । ବାହାରେ ମଧ୍ୟ କେଉଁଠି ଖାଉ ନ ଥିଲୁ, ମାତ୍ର ଧୀରେ ଧୀରେ ଏପରି ହେଲା ଯେ, କେବଳ ଆଶ୍ରମରେ ମାଛ ମାଂସ ଖିଆ ନ ହୋଇ ବାହାରେ ଅନ୍ୟତ୍ର ଖିଆ ଆରମ୍ଭ ହେଲା । ଏହା ମୋତେ ଅତି ଖରାପ ବୋଧ ହେଲା ଓ ମୁଁ ପ୍ରସ୍ତାବ କଲି ଯେ ଆଶ୍ରମରେ ମାଛ ମାଂସ ହେଉ, ମାତ୍ର ମୋର ଅନେକ ସହକର୍ମୀ ଏଥିରେ ପ୍ରବଳ ବାଧା ଦେଲେ, ମାତ୍ର ମୁଁ ଜିଦ୍‌କରି ଆଶ୍ରମରେ ନିଜେ ମାଂସ ଆଣି ରାନ୍ଧିଲି । ଏଥିରେ ଦୁଃଖିତ ଓ ବିରକ୍ତ ହୋଇ କେତେକ କର୍ମୀ ଆଶ୍ରମ ଛାଡ଼ି ଦେଇଥିଲେ । ମାତ୍ର ପୁଣି ଆମ ପରସ୍ପର ବନ୍ଧୁତା ସେମାନଙ୍କୁ ଟାଣି ଆଣିଥିଲା । ମୁଁ ସେତିକବେଳେ ଅନୁଭବ କରିଛି ଯେ, ଆମର ଦୁର୍ବଳତାକୁ ଲୁଚାଇବାପାଇଁ ନାନା ପ୍ରକାର ବାହାନା ଆମକୁ ଦେଖା ଯାଏ ଓ ସେ ଦୁର୍ବଳତାକୁ ବଜାୟ ରଖି ବାହାନା ଉପରେ ଅତି ଜୋର ଦିଆଯାଏ । ତା' ଛଡ଼ା ମାଛ ମାଂସ ଖାଇବାକୁ ଦୁର୍ବଳତା ବୋଲି ମନେ କରାଯିବ କେତେବେଳେ ନା ଯେତେବେଳେ ଶରୀର ପାଇଁ ପ୍ରାଣୀଜ ଛେନାଜାତୀୟ ଖାଦ୍ୟ,

ଦୁଧ ଓ ଦହି ପ୍ରଭୃତି ଯଥେଷ୍ଟ ମିଳୁଥିବ । ମାତ୍ର ଦୁଧ ଦହି ପ୍ରଭୃତି ନାହିଁ; ଏଣେ ମାଛ ମାଂସ ଖାଦ୍ୟ ବନ୍ଦ କରିବା ସ୍ୱାସ୍ଥ୍ୟ ପକ୍ଷରେ ହିତକର ନୁହେଁ ବୋଲି ମୋର ଧାରଣା । ଯାହାହେଉ ଆମେ ଯଦି ଅନ୍ୟତ୍ର ମାଛ ମାଂସ ଖାଉଥିଲୁଁ, ତେବେ ତାକୁ ଆଶ୍ରମରେ ଖାଇଲେ କ୍ଷତି କଅଣ ? ଏହା ହିଁ ମୋର ଯୁକ୍ତି ଥିଲା । ଏହାପରେ ଆଶ୍ରମରେ ଯେଉଁ ଏକ 'ଧାର୍ମିକ' ଆଚରଣ ଥିଲା, ତାହା ଧୀରେ ଧୀରେ ଅପସରିଗଲା—ଭଲ ପାଇଁ କି ମନ୍ଦ ପାଇଁ ତାହା ସମସ୍ତେ ବିଚାର କରନ୍ତୁ ।

ସେତେବେଳେ ଏପରି ଅର୍ଥାଭାବ ଯେ ଦିନ ଦିନ ଧରି ଆମେ ଉପବାସ ରହିଯାଉଛୁ । ଥରେ ଦୁଇଦିନ ଉପବାସ ରହିବା ପରେ ବାଲେଶ୍ୱରର ପଦ୍ମଲୋଚନ ସାହୁ ନାମକ ଜଣେ କଂଗ୍ରେସ ସମର୍ଥକ ନିଜର ତେରମାଣ ଜମି ଆମକୁ ରେଜଷ୍ଟ୍ରୀ ଦଲିଲ୍ ସୂତ୍ରେ ଦାନ କରିଥିଲେ । ଏହାକୁ ଆବାଦ କରି ଦୁଇ ତିନି ବର୍ଷକାଳ କିଛି ପାଇଲୁ । ମାତ୍ର ଶେଷରେ କିଛି ନ କରି ପାରିବାରୁ ଏହାକୁ ତାଙ୍କ ପୁଅକୁ ଫେରାଇ-ଦେଲୁ । ପଦ୍ମଲୋଚନ ସାହୁ ସେତେବେଳକୁ ମରିଯାଇଥିଲେ ।

ଅର୍ଥାଭାବ ଦୂର କରିବାର ଯେତେ ପନ୍ଥା ଖୋଜୁଥାଏଁ, କିଛି ମିଳୁ ନ ଥାଏ । ସେତେବେଳେ ଲକ୍ଷ୍ମୀନାରାୟଣ ସାହୁ ବାଲେଶ୍ୱର ଆସିଥିଲେ । ସେ ପରାମର୍ଶ ଦେଲେ ଯେ 'ପ୍ରଜାତନ୍ତ୍ର'କୁ ଅନ୍ୟ ପ୍ରେସରେ ନ ଛପାଇ ନିଜର ଏକ ପ୍ରେସ୍ କରାଯାଉ । ସେଇଥିରେ କିଛି ଲାଭ ହେବ, ଆଉ ମଧ୍ୟ ପତ୍ରିକାଟି ସୁରୁଖୁରୁରେ ବାହାରିବ । ଏହା କହି ସେ ଏକ ହ୍ୟାଣ୍ଡ ପ୍ରେସ ଓ ଅନ୍ୟାନ୍ୟ ଜିନିଷପାଇଁ ପାର୍ଶଲ ଲେଖିଦେଲେ; ଯାହାର ମୋଟ ଦାମ୍ ଟ ୧୬୦୦୯ । ଏ ଟଙ୍କା କୁଆଡ଼ୁ ଆସିବ ସେ ବିଷୟରେ କିଛି ସ୍ଥିରତା ନ ଥାଏ । ଦେଖାଯାଉ, ଯାହାହେବ ଏହିପରି ଅନ୍ଧକାର ଭିତରକୁ ଡିଆଁ ମାରିଲୁ । ପ୍ରାୟ ୧୫ ଦିନ ପରେ ପାର୍ଶଲ ଆସି ପହଞ୍ଚିଲା । ଟଙ୍କା ନାହିଁ, ଚେଷ୍ଟା କରି ମଧ୍ୟ କେଉଁଠାରୁ ମିଳୁ ନାହିଁ । କିଛିଦିନ ମାଲଗୋଦାମରେ ଅତିରିକ୍ତ ମାସୁଲ ପଡ଼ିବା ପରେ, ମୁଁ ଆଗ ଗାଁର ଜଣେ ମହାଜନଙ୍କଠାରୁ ଟ ୨୦୦୦୯ ଙ୍କାର ଏକ ହ୍ୟାଣ୍ଡ-ନୋଟ୍ ଲେଖି ଟଙ୍କା କରଜ କରି ପାର୍ଶଲ ଆଣିଲି । ଏ ଯେ ଟଙ୍କା କରଜ କଲି, ତାହା ବାବାଙ୍କ ସମ୍ପୂର୍ଣ୍ଣ ଅଜଣାରେ । ଏ ମହାଜନ ସହିତ ବାବାଙ୍କର ବନ୍ଧୁ ନ ଥିଲା । ଏଣୁ ମୋତେ ଅକ୍ତିଆରରେ ରଖିବା ଉଦ୍ଦେଶ୍ୟରେ ମହାଜନ ମୋତେ ସୁରୁଖୁରୁରେ ଟଙ୍କା ଦେଇଥିଲେ ଓ ମୁଁ ମଧ୍ୟ ତାଙ୍କ ଦୁର୍ବଳତା ଜାଣି ତାଙ୍କୁ ଟଙ୍କା ପାଇଁ ଅନୁରୋଧ କରିଥିଲି ।

ପ୍ରେସ୍ ଆସିଗଲା । ସ୍ୱରାଜ୍ୟ ମନ୍ଦିରରେ ଗୋଟାଏ କିଛି ନିର୍ଦ୍ଦିଷ୍ଟ କାମ ଲାଗିଲା । ଧୀରେ ଧୀରେ ଖଦି କାମ ଉଠିଗଲା । 'ପ୍ରଜାତନ୍ତ୍ର'କୁ ଧୀରେ ଧୀରେ ସାପ୍ତାହିକ ସମ୍ବାଦପତ୍ରରେ ପରିଣତ କଲୁ । ଏହାର ଗ୍ରାହକ ସଂଖ୍ୟା ବଢ଼ିବାରେ ଲାଗିଲେ ।

ଶ୍ରୀ ବଂଶୀଧର ରଥ ଓ ଶ୍ରୀ ବିଶ୍ୱନାଥ ହୋତା ଏହାର ପରିଚାଳନାର ଭାର ନେଇ ଖୁବ୍ ଦକ୍ଷତାର ସହିତ କାମ କରିଥିଲେ ।

ଏ ଖବରକାଗଜ କାମ ଛଡ଼ା ଜିଲ୍ଲା ସାରା ବୁଲି ଆଶ୍ରମ ସବୁକୁ ବଞ୍ଚାଇ ରଖିବାକୁ ପଡ଼ୁଥାଏ । ସେତେବେଳେ ଗୁଆମାଳରେ ଉପେନ୍ଦ୍ର ପଣ୍ଡାଙ୍କ ଅଧ୍ୟକ୍ଷତାରେ ଏକ ସୁନ୍ଦର ଜାତୀୟ ବିଦ୍ୟାଳୟ ଚାଲୁଥାଏ । ଜଳେଶ୍ୱର, ବସ୍ତା, ଭଣ୍ଡାରୀ ପୋଖରୀ, ଚାନ୍ଦବାଲି ପ୍ରଭୃତିରେ ଆଶ୍ରମମାନ ଚାଲିଥାଏ । ସବୁକୁ ବଜାୟ ରଖିବା ପାଇଁ ଯେତେ ଉଦ୍ୟମ ଦରକାର ତାହା ମୁଁ କରିଥିଲି । ମାତ୍ର ପାରିପାର୍ଶ୍ୱିକ ଅବସ୍ଥା ଆମ ବିରୁଦ୍ଧରେ ଗଲା । ଜନସାଧାରଣଙ୍କ ଭିତରେ ଉତ୍ସାହ ଥିଲେ ମଧ୍ୟ ଯେଉଁମାନେ ମଧ୍ୟବିତ୍ତ ଶ୍ରେଣୀର ଲୋକ, ଯାହାଙ୍କ ସମର୍ଥନରେ କଂଗ୍ରେସ ଅନୁଷ୍ଠାନ ଚାଲୁଥିଲା, ସେମାନେ ଶିଥିଳ ହୋଇ ପଡିଲେ । ଜନସାଧାରଣଙ୍କ ଉତ୍ସାହ ଏପରି ପ୍ରବଳ ନୁହେଁ ଯେ ତଦ୍ୱାରା କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟ କିଛି ସାହାଯ୍ୟ ପାଇବ । ମାତ୍ର ମୁଁ ବର୍ତ୍ତମାନ ବୁଝୁଛି ସେତେବେଳେ ଲାଗିପଡ଼ି ଆମେ ସେହି ଜନସାଧାରଣଙ୍କ ଭିତରେ କାମ କରିଥିଲେ କିଛି ସମୟ ପରେ ଆମେ ଜଙ୍ଗଲ ପାର ହୋଇ ସଡ଼କ ଧରିପାରିଥାନ୍ତୁ । ମାତ୍ର ସେଥିପାଇଁ ଯେ ମନର ବଳ ଓ ଅଗାଧ ଧୈର୍ଯ୍ୟ ଦରକାର, ତାହା ମୋର ନ ଥିଲା ବା ସେ ଦିଗରେ ମୋର କିଛି ଅଭିଜ୍ଞତା ନ ଥିଲା ।

ଅବସ୍ଥା ବିରୋଧରେ ଏହିପରି ଆମେ ଲଢ଼ୁଥାଉ; ତେଣେ ଖବରକାଗଜ ଜରିଆରେ ଜାଣିଲୁ ଯେ ଯେଉଁ ନେତାମାନେ ସି.ଆର. ଦାସଙ୍କ ବ୍ୟବସ୍ଥା ସଭାର କାର୍ଯ୍ୟକ୍ରମକୁ ସମର୍ଥନ ନ କରି ଗାନ୍ଧିଜୀଙ୍କ ଅହିଂସା ଅସହଯୋଗକୁ ସମର୍ଥନ କରୁଥିଲେ ସେମାନେ ଜିଲ୍ଲା ବୋର୍ଡ ଓ ମ୍ୟୁନିସିପାଲିଟି ପ୍ରଭୃତି ଜରିଆରେ ଗଠନମୂଳକ କାମ କରିବାର ଯୋଜନା ଠିକ୍ କରିଛନ୍ତି । ଏହି ଯୋଜନା ଅନୁସାରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଅହମ୍ମଦାବାଦ ମ୍ୟୁନିସିପାଲିଟିର ଚେୟାରମ୍ୟାନ ହୋଇଥିଲେ । ବାବୁ ରାଜେନ୍ଦ୍ରପ୍ରସାଦ ପାଟଣା ମ୍ୟୁନିସିପାଲିଟିର ଚେୟାରମ୍ୟାନ୍ ହୋଇଥିଲେ, ପଣ୍ଡିତ ଜବାହରଲାଲ ନେହେରୁ ଏଲାହାବାଦ ମ୍ୟୁନିସିପାଲିଟିର ଚେୟାରମ୍ୟାନ ହୋଇଥିଲେ ।

ଓଡ଼ିଶାରେ ମଧ୍ୟ ଏ କାର୍ଯ୍ୟକ୍ରମ ଆରମ୍ଭ ହେଲା । ପ୍ରଥମେ ଗୋପବନ୍ଧୁଙ୍କ ବ୍ୟବସ୍ଥାପକ ସଭାର କାର୍ଯ୍ୟକ୍ରମ ଚଳାଇବାପାଇଁ କଂଗ୍ରେସର ଦିଲ୍ଲୀଠାରେ ବସିଥିବା ବିଶେଷ ଅଧିବେଶନରେ ସ୍ୱରାଜ୍ୟ ଦଳ ଅନୁମତି ଦେଲେ । ତା ପୂର୍ବରୁ ବାରମ୍ବାର ନିଖିଳ ଭାରତ କଂଗ୍ରେସ କମିଟି ବସୁଥାଏ, ମାତ୍ର ଦୁଇ ମତାବଲମ୍ବୀଙ୍କ ଭିତରେ କେବଳ ବାଦାନୁବାଦ ହେଉଥାଏ । ବ୍ୟବସ୍ଥା ସଭା କାର୍ଯ୍ୟକ୍ରମ ଗୃହୀତ ହେଉ ନ ଥାଏ । ଶେଷରେ ଏକ ଅନୁମତିସୂଚକ ପ୍ରସ୍ତାବ ଗୃହୀତ ହେଲା, ତାହା ଫଳରେ ଚାରିଆଡ଼େ

ସ୍ୱରାଜ୍ୟ ଦଳ କାର୍ଯ୍ୟ ଆରମ୍ଭ କଲେ । ସେତେବେଳେ ଆମ ଓଡ଼ିଶାରେ ସ୍ୱରାଜ୍ୟ ଦଳ ପ୍ରଥମେ ସତ୍ୟବାଦୀ ବିଦ୍ୟାଳୟକୁ କେନ୍ଦ୍ର କରି ଆରମ୍ଭ ହେଲା । ସେଠାରେ ଉତ୍କଟ ଅର୍ଥାଭାବ ଓ ନିରାଶାଜନକ ପାରିପାର୍ଶ୍ୱିକ ଅବସ୍ଥାର ସମାଧାନପାଇଁ ଶିକ୍ଷକମାନେ ନିଜ ଭିତରେ ଠିକ୍ କରି ପଣ୍ଡିତ ନୀଳକଣ୍ଠଙ୍କୁ ବଡ଼ଲାଟ ସଭାପାଇଁ ଛିଡ଼ା କରାଇଲେ । ସେ ନିର୍ବାଚିତ ହୋଇଗଲେ, ମାତ୍ର ତଦ୍ୱାରା ସେ ଜାତୀୟ ବିଦ୍ୟାଳୟ କେତେଦୂର ଉପକୃତ ହୋଇଛି, ତାହା ସେହି ଶିକ୍ଷକମାନେ ଏକା ଜାଣିଥିବେ ।

ସ୍ୱରାଜ୍ୟ ଦଳକୁ ସେତେବେଳେ ମୁଁ ପସନ୍ଦ କରୁ ନ ଥିଲି । ମୁଁ ଭାବୁଥିଲି ଗାନ୍ଧୀ ଜେଲରେ ଥିବାସ୍ଥଳେ ତାଙ୍କ କାର୍ଯ୍ୟକ୍ରମକୁ ଓଲଟ ପାଲଟ କରିଦେବା ନ୍ୟାୟସଙ୍ଗତ ନୁହେଁ । ମାତ୍ର ତାଙ୍କର ଗଠନମୂଳକ କାର୍ଯ୍ୟକ୍ରମକୁ ଜିଲ୍ଲାବୋର୍ଡ଼ ମ୍ୟୁନିସିପାଲିଟି ଜରିଆରେ ପ୍ରଚାର କରାଇବାର ଯେଉଁ ଯୋଜନା, ତାକୁ ଯେତେଦୂର ସମ୍ଭବ ଚଳାଇବାପାଇଁ ମୁଁ ଚେଷ୍ଟା କରିଥିଲି । ପ୍ରଥମେ ବାଲେଶ୍ୱର ମ୍ୟୁନିସିପାଲିଟିର ନିର୍ବାଚନ ସମୟ ଆସିଗଲା । ସେତେବେଳକାର ବ୍ୟବସ୍ଥା ଏପରି ଥାଏ ଯେ, ଦୁଇ ତିନିଜଣ ଭଦ୍ରଲୋକ ବାଲେଶ୍ୱର ମ୍ୟୁନିସିପାଲିଟିକୁ ବହୁବର୍ଷ ହେଲା ଦଖଲ କରି-ବସିଥାନ୍ତି । କେବେହେଲେ ନିର୍ବାଚନ ହୁଏ ନାହିଁ । ଯଦି କେହି ନିର୍ବାଚନକୁ ବାହାରେ, ତେବେ ପେଞ୍ଚ କରି ତା'ର ପ୍ରାର୍ଥୀପତ୍ର କଟାଇ ଦିଅନ୍ତି ବା ତାଙ୍କ ନାଁ ଭୋଟର ତାଲିକାରେ ଦିଆଯାଏ ନାହିଁ । ଏହି ଅବସ୍ଥାରେ ମ୍ୟୁନିସିପାଲିଟିକୁ ଯିବାପାଇଁ ସ୍ଥିର କରିବାକୁ ହେଲା । ଦେଖିଲି ଯେ କୌଣସି ଜଣେ କଂଗ୍ରେସ ଲୋକର ନାମ ଭୋଟଦାତା ତାଲିକାରେ ନାହିଁ । ଏଣେ ନିର୍ବାଚନ ନିକଟ ହୋଇ ଆସିଲାଣି । ମୁଁ ଆନ୍ଦୋଳନ କଲି । ସେତେବେଳକାର ମନ୍ତ୍ରୀ ଗଣେଶ ଦତ୍ତ ସିଂହଙ୍କଠାକୁ ଲେଖିଲି । ଶେଷରେ ଆମେ ସାତ ଆଠ ଜଣ ଭୋଟର୍ ହେଲୁଁ । ଏତିକ ସଂଖ୍ୟାରେ ଗଲେ ମ୍ୟୁନିସିପାଲିଟିରେ କର୍ତ୍ତୃତ୍ୱ ରହିବ ନାହିଁ, ତଥାପି ଆମେ କେତେଜଣ ନିର୍ବାଚନରେ ଛିଡ଼ାହେଲୁ । ନିର୍ବାଚନ ବ୍ୟାପାରରେ ଏହି ହେଉଛି ମୋର ତଥା ସହକର୍ମୀମାନଙ୍କର ପ୍ରଥମ ଅଭିଜ୍ଞତା । ସାଧାରଣଙ୍କ ସହାନୁଭୂତି ହେତୁ ଆମେ ସମସ୍ତେ ଅତି ବେଶୀ ସଂଖ୍ୟାରେ ଭୋଟ୍ ପାଇ ନିର୍ବାଚିତ ହୋଇଗଲୁଁ, କେବଳ ଜଣେ ମାତ୍ର ହାରିଯାଇ-ଥିଲେ । ଯାହାହେଉ ସେତେବେଳେ ଆମେ ଭାବିଲୁଁ ଯେ, ପ୍ରତିଦିନ ନିଜ ନିଜ ଓ୍ୱାର୍ଡ଼ରେ ବୁଲି ଲୋକଙ୍କ ସୁବିଧା ଅସୁବିଧା ଦେଖିବା ଆମର କର୍ତ୍ତବ୍ୟ । ତଦନୁସାରେ ପ୍ରତିଦିନ ଓ୍ୱାର୍ଡ଼କୁ ଯିବା, ସମସ୍ତଙ୍କ ସହିତ ମିଶିବା ଆମର କାମ ହେଲା । ଏହା ଫଳରେ ଆମେ ସହରରେ ଜନପ୍ରିୟ ହୋଇଯାଇଥିଲୁଁ । ଆଉ ମଧ୍ୟ ମଧୁବାବୁ ମନ୍ତ୍ରୀ ହୋଇ ଯେଉଁ ମ୍ୟୁନିସିପାଲିଟି ଆଇନ ଓ ଜିଲ୍ଲାବୋର୍ଡ଼ ଆଇନ କରିଯାଇଥିଲେ, ତାହା ପ୍ରତିନିଧିମାନଙ୍କୁ ଯଥେଷ୍ଟ କ୍ଷମତା ଦେଇଥିଲା । ସେଥିପାଇଁ ସାଧାରଣ, ଯେଉଁମାନଙ୍କୁ ପୂର୍ବେ କେହି ପଚାରୁ ନ ଥିଲେ, ସେମାନଙ୍କର କିଛି କିଛି

ଉପକାର କରିବାରେ ସମର୍ଥ ହୋଇଥିଲୁଁ । ପ୍ରଥମ କଥା ଯେ ମ୍ୟୁନିସିପାଲିଟି କମିଶନର ସାଧାରଣଙ୍କ ଦୁଆରକୁ ଯାଇ ସୁବିଧା ଅସୁବିଧା ବୁଝିବାର କଥା, ଏହା ପ୍ରଥମେ ଲୋକ ଦେଖିଲେ । ତେଣୁ ଆମର ସୁଖ୍ୟାତି ହୋଇଥିଲା ।

ମ୍ୟୁନିସିପାଲିଟି ନିର୍ବାଚନ ପରେ, ନୂଆ ଆଇନ୍ ଅନୁସାରେ ଜିଲ୍ଲାବୋର୍ଡ଼ ନିର୍ବାଚନ ଆସିଗଲା । ଏଥିପାଇଁ ଆଗରୁ ସାବଧାନ ହୋଇ ଅନେକ ସମର୍ଥକଙ୍କୁ ଭୋଟ୍‌ଦାତା କରାଇଲୁ । ସେତେବେଳେ ଯେଉଁମାନେ ଜିଲ୍ଲାବୋର୍ଡ଼ରେ କର୍ତ୍ତୃତ୍ୱ କରି ଆସୁଥିଲେ, ସେମାନେ ଆମ୍ଭମାନଙ୍କୁ ପ୍ରବଳ ବାଧା ଦେଇଥିଲେ । ସେମାନଙ୍କ ହାତରେ ଧନବଳ ଥିଲା, ଆଉ ମଧ୍ୟ ବଡ଼ ବଡ଼ ଓକିଲ ଓ ଜମିଦାର ସେମାନେ ଥିଲେ । ଆମ ପକ୍ଷରୁ ଯେଉଁମାନେ ପ୍ରାର୍ଥୀ ହୋଇଥିଲେ, ସେମାନେ କେତେଜଣ କଂଗ୍ରେସକର୍ମୀ ଓ ଅନ୍ୟ କେତେକ ସାଧାରଣ ଶ୍ରେଣୀର ଲୋକ । ଜିଲ୍ଲା ସାରା ଭୋଟ୍ ପ୍ରଚାର ସଙ୍ଗଠିତ ଭାବରେ କରାଇ ଆମ ଭିତରୁ ପ୍ରାୟ ସମସ୍ତେ ନିର୍ବାଚିତ ହେଲେ । କେବଳ ବୋଧହୁଏ ଜଣେ ବ୍ୟର୍ଥ ହୋଇଥିଲେ । ମାତ୍ର ଆମେ ଜିଲ୍ଲାବୋର୍ଡ଼ରେ କର୍ତ୍ତୃତ୍ୱ କରିବା ଭଳି ସଂଖ୍ୟାରେ ନିର୍ବାଚିତ ହୋଇଥିଲୁଁ । ସେତେବେଳେ ଦଳ ଭିତରେ ଦଳ ନ ଥିଲା । କଂଗ୍ରେସ ଦଳ ଗୋଟିଏ ହୋଇ ଅଣକଂଗ୍ରେସ ଲୋକଙ୍କ ସହିତ ଲଢ଼ୁଥିଲେ, କଂଗ୍ରେସର ପ୍ରତିଷ୍ଠା ବଢ଼ାଇବା ପାଇଁ ।

କଂଗ୍ରେସ ଦଳର ସିଦ୍ଧାନ୍ତ ଅନୁସାରେ ମୁଁ ଚେୟାରମ୍ୟାନ ହେଲି । ପ୍ରଥମେ କୌଣସି ପଦ ନେବନାହିଁ ବୋଲି ଭାବିଥିଲି, ନମ୍ରତା ବା ନୀତି ଦୃଷ୍ଟିରୁ ନୁହେଁ, ମୋର ଆଶଙ୍କା ହେଉଥିଲା କାଳେ ମୁଁ ଭଲଭାବରେ କାମ ଚଳାଇ ନ ପାରିବି, ଶେଷରେ ସମୁଦାୟ କଂଗ୍ରେସର ଦୁର୍ନାମ ହେବ । ମାତ୍ର ମୋର ସହକର୍ମୀମାନେ ଜିଦ୍ କରିବାରୁ ଡରି ଡରି ଉକ୍ତ ପଦ ଗ୍ରହଣ କଲି ।

ଏହି ସମୟରେ ମୋର ବ୍ୟକ୍ତିଗତ ଜୀବନରେ ଏପରି ଗୋଟିଏ ଘଟଣା ଘଟିଥିଲା, ଯାହା ଜୀବନସାରା ମୋ ହୃଦୟରେ ଏକ ବିଷାଦର ରେଖା ହୋଇ ରହିବ । ଆଶ୍ରମରେ ନିୟମିତ ରୂପେ ଖାଇବା ପିଇବା ନ ହେବାରୁ, ଖାଦ୍ୟାଭାବରୁ ଓ ନିଜର ସ୍ୱାସ୍ଥ୍ୟ ପ୍ରତି ଭ୍ରୂକ୍ଷେପ ନ କରି ଘୂରିଆଡ଼େ ବୁଲାବୁଲି କରିବାରୁ ମୋତେ ପ୍ରବଳ ଭାବରେ ମେଲେରିଆ ଧରିଲା । ଜର, ସେଥିରେ କାମ ଓ ଗସ୍ତ ଏପରି ଚାଲିଥାଏ । ଏଣେ ଉତ୍କଳ ଦୀପିକା ପାଇଁ ଅର୍ଥ ନଥାଏ । ପ୍ରେସରୁ ଲାଭ ହେବା ଦୂରେ ଥାଉ ବରଂ ଅଧିକରୁ ଅଧିକ ସେଥିପାଇଁ ମୂଳଧନ ଦରକାର ପଡ଼ୁଥାଏ । ମୋତେ ଜ୍ୱର ହୋଇ ନିମୋନିଆ ହୋଇଗଲା । ତାହା କିପରି ହେଲା, ମୋର ମନେ ଅଛି । ୮।୧୦ ଦିନ ହେଲା ଜ୍ୱର ହୋଇଥାଏ, ଶୀତଦିନ । ଜିଲ୍ଲା କଂଗ୍ରେସ କମିଟି

ମିଟିଂରେ ଶୀତରେ ରାତସାରା ଜ୍ୱର ' ଦେହରେ ବସିରହିବା ଫଳରେ ନିଉମୋନିଆ ଧରିନେଲା । ଏହା ଏପରି ବିଷମ ହେଲା ଯେ, ମୋର ପ୍ରାଣ ସଂଶୟଜନକ ହୋଇଉଠିଲା । ଚିକିତ୍ସା ପାଇଁ ଅର୍ଥ ନାହିଁ । ମୁଁ କୃଷ୍ଣବାବୁ ଡାକ୍ତରଙ୍କୁ ବିନା ଖର୍ଚ୍ଚରେ ଚିକିତ୍ସା କରିବା ପାଇଁ ଅନୁରୋଧ କଲି । ସେ କେବଳ ଯେ ରାଜି ହେଲେ, ତା' ନୁହେଁ, ଓଲଟି ସେ ମୋ ଉପରେ ବିରକ୍ତ ହେଲେ ଯେ କାହିଁକି ମୁଁ ଦୁଇଦିନ ଆଗରୁ ଏ କଥା ନ କହିଲି । ସେ ରାତିଦିନ ଲାଗି ମୋର ଚିକିତ୍ସା କଲେ । କିଛିଦିନ ପରେ ମୁଁ ସୁସ୍ଥ ହେଲି । ମୋର ସ୍ୱାସ୍ଥ୍ୟର ପୁନରାବର୍ତ୍ତନ ପାଇଁ ସେ ନିଜ ଘରୁ ଅନେକଦିନ ପର୍ଯ୍ୟନ୍ତ ମୋତେ ଖାଇବାର ଦେଉଥିଲେ । ଏପରି ଭାବରେ ଅନ୍ୟଙ୍କ ଖର୍ଚ୍ଚାନ୍ତ କରି ଚିକିତ୍ସିତ ହେବାକୁ ମୋତେ ସଙ୍କୋଚବୋଧ ହେଉଥାଏ । ଆଉ ମଧ୍ୟ ମୁଁ ଜାଣିଥାଏ ଯେ, ମୋର ସହକର୍ମୀ କେହି ଏପରି ବେମାର ପଡ଼ିଲେ ସେ ପ୍ରକାର ଚିକିତ୍ସାର ସୁବିଧା ପାଇ ପାରିବେ ନାହିଁ । ମୁଁ ଭାବିଲି ଯେ ଜମିଦାରୀର ତ ଆଇନଗତ ମାଲିକ ମୁଁ; ଅଥଚ ଚଳିବା ପାଇଁ ମାସକୁ ଦଶଟା ଟଙ୍କା ସୁଦ୍ଧା ମୁଁ ପାଇବି ନାହିଁ । ସେତେବେଳେ ଏ ଭାବନାର ମୁଁ ଏପରି ବଶବର୍ତ୍ତୀ ହେଲି ଯେ ମୁଁ ଆଇନ ଅନୁସାରେ ବାବାଙ୍କୁ ରେଜିଷ୍ଟ୍ରୀ ନୋଟିସ ଦେଲି ଯେ ଆଉ ମୋ ଜମିଦାରୀ ବୁଝିବେ ନାହିଁ । ଏ ନୋଟିସ୍ ଦେଇ ମୋର ସହକର୍ମୀ ଅଭିରାମ ନନ୍ଦଙ୍କୁ ରେଜିଷ୍ଟ୍ରୀ କ୍ଷମତାପତ୍ର ଦେଇ ଜମିଦାରୀ ବୁଝିବା ପାଇଁ ପଠାଇଦେଲି ।

ଏଥିରେ ବାବାଙ୍କ ମନରେ ଏତେ ଆଘାତ ଲାଗିଥିଲା ଯେ, ସେ ଦିନେ ଦି ଦିନ ବିଛଣାରେ ପଡ଼ି ରହିଥିଲେ । ଆଉ ମଧ୍ୟ ମୋର ପାଳିତା ମାଆ ମୋ ଉପରେ ଅତି ବିରକ୍ତ ହୋଇଥିଲେ । ଅଭିରାମବାବୁ ଜମିଦାରୀ ବୁଝିବା ପାଇଁ ଗଲାବେଳକୁ ତାଙ୍କୁ କେହି କିଛି ସାହାଯ୍ୟ କଲେନାହିଁ, ଏପରିକି ରହିବା ପାଇଁ ମଧ୍ୟ ସ୍ଥାନ ଦେଲେ ନାହିଁ । ସେ ଇଲାକାରେ ବୁଲି କୌଣସି ପ୍ରକାର ଗୁମାସ୍ତାମାନଙ୍କୁ ମନାଇ ଆଦାୟ ଅସୁଲ କରିବାରେ ଲାଗିଲେ; ମାତ୍ର ଘରେ ମାଆର ଅତିଶୟ ବିରକ୍ତ ହେବୁ ବରାବର ସଂଘର୍ଷ ଚାଲିଲା । କିଛିଦିନ ପରେ ବାବା ଭାରତ ତୀର୍ଥ ଭ୍ରମଣରେ ବାହାରିଗଲେ । ମୁଁ ଶୁଣିଲି ଯେ ଯେତେବେଳେ ସେ ଘରୁ ବାହାରିଲେ, କାହାକୁ କିଛି ନ କହି ମନକୁ ଗୁଡ଼ାଏ କାନ୍ଦିଥିଲେ ମାତ୍ର । ମୁଁ ଦୃଢ଼ତାର ସହିତ ଚାଲିଥାଏ । ମୁଁ ନିଜେ ଯାଇ ଇଲାକା ବୁଝିଲି । ପୂର୍ବରୁ ଯେ ଧରଣରେ ଜମିଦାରୀ ପରିଚାଳିତ ହେଉଥିଲା, ତାକୁ ବଦଳାଇ ପ୍ରଜାଙ୍କୁ ଯେପରି ଆଦୌ ଆଞ୍ଚ୍ ନ ଲାଗିବ, ଏପରି ବ୍ୟବସ୍ଥା କଲି । ଏଥିରେ ପ୍ରଜାମାନେ ଭାରି ଖୁସି ହେଲେ । ମାତ୍ର ମୁଁ କୌଣସି ପ୍ରକାରେ ମା'ଙ୍କୁ ସନ୍ତୁଷ୍ଟ କରି ପାରିଲି ନାହିଁ । ସେ ଭାବୁଥାଆନ୍ତି ଯେ ତାଙ୍କ ଜମିଦାରୀକୁ ଜଣେ ବାହାରର ଲୋକ ଆସି ବୁଝିବ ଓ ସେ ତାହାକୁ ଖର୍ଚ୍ଚ ପାଇଁ ଅନାଇ ବସିବେ, ଏହା କଦାପି ହୋଇପାରିବ ନାହିଁ । ଏହି ସମୟରେ ବନ୍ଦୋବସ୍ତ କାମ ମଧ୍ୟ ଲାଗିଲା । ମୁଁ

ବିଚଳିତ ନ ହୋଇ ଏହି ସମସ୍ୟାର ସମ୍ମୁଖୀନ ହେଲି ! କେତେଦିନ ମାସ ଏହିପରି ଚାଲିଲା ପରେ ବାବା ତୀର୍ଥରୁ ଫେରି ଆସିଲେ । ସେ ତେଣୁ ଅଯୋଧ୍ୟାରୁ ଦୀକ୍ଷାନେଇ ଆସି ପୁରାପୁରି ସନ୍ନ୍ୟାସୀ ହୋଇ ଘର ଛାଡ଼ିଦେଇ ଘରଠାରୁ କିଛିବାଟ ଦୂରରେ ଆମର ଏକ ମନ୍ଦିର ଅଛି, ସେଇଠି ରହିଲେ । ତାଙ୍କର ଘର ଛାଡ଼ିଦେବା ମାଆଙ୍କ ପକ୍ଷରେ ମୋ ପ୍ରତି ଆଉ ଏକ ବିରକ୍ତିର କାରଣ ହେଲା । ଏଣେ ଅଭିରାମ ବାବୁ ମଧ୍ୟ ସେ ତାଡ଼ନା ଭିତରେ ନିଜକୁ ଚଳାଇବା ଅତି କଷ୍ଟକର ମନେ କଲେ । ଶେଷରେ ସବୁଆଡ଼ କଥା ବିଚାରି, ଅବସ୍ଥା ଚକ୍ରରେ ପଡ଼ି, ଜମିଦାରୀ ବୁଝିବାର ଭାର ମୋର ସାନଭାଇ କାହ୍ନୁଚରଣ ଉପରେ ନ୍ୟସ୍ତ କଲି ଓ ତାକୁ ପରାମର୍ଶ ଦେଲି ଯେ, ସେ ବାବାଙ୍କୁ ପଚାରି ସବୁ କରିବ । ଏହାପରେ ସବୁ ଶାନ୍ତହେଲା—ବାବା ମଧ୍ୟ ଖୁସି ହେଲେ; ମାତ୍ର ମୁଁ ଯେ ଏ କାମ କଲି, ଏହାକୁ ମୁଁ ଧୀରଚିତ୍ତରେ ଯୁକ୍ତିଦ୍ୱାରା ସମର୍ଥନ କରିପାରିନି ନାହିଁ । ଏ କଥା ମନେପଡ଼ିଲେ ମୋର ଗଭୀର ଦୁଃଖ ହୁଏ । ଜମିଦାରୀ ମୁଁ କିଛି ଅର୍ଜ୍ଜନ କରି ନ ଥିଲି । ଘଟଣାଚକ୍ରରେ ମୋ ନାମରେ ଆଇନ୍ ଅନୁସାରେ ହୋଇଯାଇଥିଲା । ମାତ୍ର ତା' ଛଡ଼ା ନିଜର ବୋଲି କିଛି ନ ଥାଇ ସାଧାରଣ କାର୍ଯ୍ୟରେ ଉତ୍ସାହୀ ହୋଇ ବାହାରିଥିବା ବନ୍ଧୁ କର୍ମୀଙ୍କ ଆଗରେ ମୁଁ ଉଚ୍ଚ ଧରଣର ଆଦର୍ଶ ରଖିପାରିଲି ନାହିଁ । ସେତେବେଳେ ଯାହା କରିଥିଲି, ତାହା ମନର ଦୁର୍ବଳତାର ବଶବର୍ତ୍ତୀ ହୋଇ କରିଥିଲି, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ମାତ୍ର ଏହାପରେ ଆଉ ଚଳିବାର ଅସୁବିଧା ରହିଲା ନାହିଁ । ବରଂ ଆଶ୍ରମ ଖର୍ଚ୍ଚ ପାଇଁ ମୁଁ କିଛି କିଛି ଦେଇପାରିଲି । ବର୍ତ୍ତମାନ ଜିଲ୍ଲାବୋର୍ଡ଼ କାମରେ ମୁଁ ପୁରାପୁରି ନିମଗ୍ନ ରହିଲି । ସେ ସମୟରେ ପ୍ରତିଦିନ ୧୬ । ୧୭ ଘଣ୍ଟା କରି କାମ କରିବାକୁ ପଡ଼ିଥିଲା । ମୋର ସ୍ୱଭାବ ଅନୁସାରେ ମୁଁ ସବୁ କାମ ନିଜେ କରୁଥିଲି । ସ୍ୱାସ୍ଥ୍ୟ ବିଭାଗ, ଶିକ୍ଷା ବିଭାଗ, ବାରିକ ମିସ୍ତ୍ରୀ ବିଭାଗ ଇତ୍ୟାଦି ପ୍ରତ୍ୟେକ ବିଭାଗର କାମ କୌଣସି କର୍ମଚାରୀ ଉପରେ ନିର୍ଭର ନ କରି ସବୁ ନିଜେ ଦେଖି ବୁଝି ମୋ ଦାୟିତ୍ୱରେ ମୁଁ କରୁଥିଲି । ପ୍ରତ୍ୟେକ ଲୋକର ଯାହାକିଛି ଆପତ୍ତି, ସେ ମୋତେ ଆସି ଜଣାଉଥିଲା ଓ ମୁଁ ତା'ର ବ୍ୟବସ୍ଥା କରୁଥିଲି । ଆଉ ମଧ୍ୟ ଜଳାଭାବ ଦୂର କରିବାପାଇଁ, ଗ୍ରାମରେ ଔଷଧ ସୁବିଧାରେ ମିଳିବାପାଇଁ, ଜିଲ୍ଲାସାରା ପ୍ରାଥମିକ ଶିକ୍ଷା ବଢ଼ାଇବା ପାଇଁ, ଏକ ଯୋଜନା ପ୍ରସ୍ତୁତ କରି ତାକୁ କାର୍ଯ୍ୟରେ ପରିଣତ କରିବାର ଚେଷ୍ଟା କଲି । ସ୍କୁଲରେ ଅରଟ ପ୍ରଚାର, ଅସ୍ପୃଶ୍ୟତା ବର୍ଜ୍ଜନ ଇତ୍ୟାଦି ଗାନ୍ଧିଜୀଙ୍କ ଗଠନମୂଳକ କାମର ପ୍ରଚାର ମଧ୍ୟ କରିବାର ଚେଷ୍ଟା କଲି । ଆମ ଦଳର ସଭ୍ୟମାନେ କର୍ମୀ ହିସାବରେ ପୁରା ସମୟ ଦେଇ କାମ କରୁଥିଲେ ।

ପ୍ରଥମ ଅବସ୍ଥାରେ ମୋ ନିଜର କର୍ତ୍ତୃତ୍ୱ ବିସ୍ତାର କରିବା ଫଳରେ ସିଭିଲ୍ ସର୍ଜନ, ଶିକ୍ଷାବିଭାଗର କର୍ତ୍ତୃପକ୍ଷ, ଏମାନଙ୍କ ସହିତ ସଂଘର୍ଷ ହେଲା । ମାତ୍ର

ଶେଷରେ ସେମାନଙ୍କ କର୍ତ୍ତୃତ୍ୱ ଜିଲ୍ଲାବୋର୍ଡ଼ ବ୍ୟାପାରରୁ ସମ୍ପୂର୍ଣ୍ଣରୂପେ ଲୋପ ପାଇଲା। ଏ ବିଷୟରେ ମୋତେ ସେତେବେଳକାର ଜିଲ୍ଲା କଲେକ୍ଟର ମିଃ ଜୋନ୍‌ଷ୍ଟନ୍ ପ୍ରଭୃତି ସାହାଯ୍ୟ କରିଥିଲେ । ଆମେ ଦୁହେଁ ଛନ୍ଦାଛନ୍ଦି ହୋଇ ଅନେକ ବର୍ଷ ନାନା ଅବସ୍ଥା ଭିତର ଦେଇ ଗତି କରିଥିବାରୁ ଏହାଙ୍କ ସହିତ ମୋର ସମ୍ବନ୍ଧ କିପରି ସ୍ଥାପିତ ହେଲା, ତାହା ଲେଖିବା ଆବଶ୍ୟକ ।

ଏହାଙ୍କ ପତ୍ନୀ ମିସେସ୍ ଇ. ଏ. ଜୋନ୍‌ଷ୍ଟନ୍ ଜଣେ ସେବାପରାୟଣା ନାରୀ ଥିଲେ । ଲୋକହିତକର ନାନାବିଧ କାର୍ଯ୍ୟରେ ତାଙ୍କର ଖୁବ୍ ଉତ୍ସାହ ଥିଲା । ଏହାଙ୍କ ସହିତ ପ୍ରଥମେ ମୁଁ ଦେଖାକରେ ଓ ଏହାଙ୍କୁ ଗାନ୍ଧିଜୀଙ୍କ ଲୋକହିତକର କାର୍ଯ୍ୟକ୍ରମ ବିଷୟ ବୁଝାଏଁ । ରାଜନୀତି ଛଡ଼ା ମାନବିକତା ଦୃଷ୍ଟିରୁ ଗାନ୍ଧିଜୀଙ୍କ କାର୍ଯ୍ୟକ୍ରମର ମୂଲ୍ୟ ଯଥେଷ୍ଟ ଅଛି, ଏ କଥାରେ ତାଙ୍କ ହୃଦ୍‌ବୋଧ ହେଲା—ମାତ୍ର ରାଜନୀତି ବିଷୟରେ ସେ ପୁରାପୁରି ତାଙ୍କ ସ୍ୱାମୀଙ୍କ ପରି ଗାନ୍ଧୀ ଓ କଂଗ୍ରେସ-ବିରୋଧୀ ଥିଲେ ।

ଥରେ ବାଲେଶ୍ୱରରେ ମିସେସ୍ ଇ. ଏ. ଜୋନ୍‌ଷ୍ଟନ୍ ଗୋଟିଏ ଶିଶୁ ପ୍ରଦର୍ଶନୀ କଲେ । ଓଡ଼ିଆ ସ୍ତ୍ରୀଲୋକେ ନିଜର ନବଜାତ ଶିଶୁକୁ ନେଇ ପ୍ରଦର୍ଶନୀକୁ ଆସିବା ଭିଷ୍ଟକର । ତେଣୁ ଅତି ଅଳ୍ପସଂଖ୍ୟକ ସ୍ତ୍ରୀଲୋକେ ଶିଶୁଙ୍କୁ ନେଇ ପ୍ରଦର୍ଶନୀକୁ ଆସି-ଥିଲେ । ସେ ବଡ଼ ଦୁଃଖ କରି ମୋତେ କହିଲେ ଯେ, ତାଙ୍କ ପ୍ରଦର୍ଶନୀକୁ ମୋଟେ ଦୁଇ ତିନୋଟି ଶିଶୁ ଆସିଥିଲେ । ସେ ନିଜେ ସବୁବେଳେ ହାଟ୍‌ରେ କୁରୁତା ବୁଣନ୍ତି ଓ ତାକୁ ଶିଶୁମାନଙ୍କୁ ବିତରଣ କରନ୍ତି । ସେ ବର୍ଷର ଅନେକ କୁରୁତା ବିତରିତ ହୋଇ ପାରିଲା ନାହିଁ, ଏହା ତାଙ୍କ ପକ୍ଷରେ ଗଭୀର ଦୁଃଖର ବିଷୟ ହୋଇଥାଏ । ମୁଁ ତାଙ୍କୁ ବୁଝାଇ କହିଲି ଯେ, ସେ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ପତ୍ନୀ ଓ ଜଣେ ବିଦେଶୀ ମହିଳା; ଏପରି ସ୍ଥଳେ ଆମ ଦେଶର ସ୍ତ୍ରୀଲୋକେ କିପରି ତାଙ୍କ ଡାକରାରେ ଆସିବେ ! ସରକାରୀ ମହଲ ଯେ ଜନସାଧାରଣଙ୍କଠାରୁ ବହୁ ଦୂରରେ, ଏକଥା ସେ ଉପଲବ୍ଧି କଲେ ଓ ମୋତେ ପଚାରିଲେ ଯେ, ମୋ ସାହାଯ୍ୟରେ ଶିଶୁ-ପ୍ରଦର୍ଶନୀ ହେଲେ ବହୁ ଶିଶୁ ଅଣାହୋଇ ପାରିବେ କି ? ମୁଁ ଜବାବ୍ ଦେଲି, ମୁଁ ଚେଷ୍ଟା କରି ଶିଶୁ-ପ୍ରଦର୍ଶନୀକୁ ସଫଳ କରାଇବି । ସେ ପୁନର୍ବାର ଏକ ଶିଶୁ ପ୍ରଦର୍ଶନୀର ବ୍ୟବସ୍ଥା କଲେ । ମୁଁ ଲାଗିପଡ଼ି ମୋର ସହକର୍ମୀମାନଙ୍କ ସହିତ ଘରେ ଘରେ ପ୍ରଚାର କରି ବହୁ ଶିଶୁ ଆସିବାର ବ୍ୟବସ୍ଥା କଲୁ । ପ୍ରାୟ ଦେଢ଼ଶହ ଶିଶୁ ଆସିଥିଲେ । ମିସେସ୍ ଜୋନ୍‌ଷ୍ଟନ୍ ଏଥିରେ ବଡ଼ ଖୁସି ହେଲେ; ମାତ୍ର ତାଙ୍କଠାରେ ଏତେ କୁରୁତା ନ ଥିଲା । ତେଣୁ ମୁଁ ତାଙ୍କୁ କହିଲି ଯେ, ଖଦଡ କିଣି କିଛି କିଛି ସମସ୍ତଙ୍କୁ ଦେଇ ଦିଅନ୍ତୁ । ସେ ରାଜି ହେଲେ । ତତ୍‌କ୍ଷଣାତ୍ ଖଦିଭଣ୍ଡାରରୁ ଖଦଡ଼ କିଣା ହୋଇ ଦିଆଗଲା । ଖଦି ବିତରିତ ହେବା ଫଳରେ ସାଧାରଣଙ୍କ ମନରେ ଉତ୍ସାହ ଆସିଲା ଓ ସରକାରୀ

ଲୋକଙ୍କ ମନ ଟିକଏ ମଧ୍ୟ ବଦଳିଗଲା । ଏହି ଘଟଣାଠାରୁ ମିସେସ୍ ଜୋନ୍‌ଷ୍ଟନ୍ ଓ ମୁଁ ପରମ ବନ୍ଧୁ ହୋଇଗଲୁଁ । ମୁଁ ବରାବର ତାଙ୍କଠାକୁ ଯାଏ, ଅନେକ ସମୟରେ ସେଠି ଚା, ଜଳଖିଆ ଖାଏ—ହିନ୍ଦୁ ଧର୍ମ ବିଷୟ ଆଲୋଚନା କରେ । ଭାରତରେ ଦରିଦ୍ର ସମାଜର ଉନ୍ନତିସାଧନ ସମ୍ପର୍କରେ ନାନାବିଧ ଆଲୋଚନା ହୁଏ । ସେଇଠି ଜୋନ୍‌ଷ୍ଟନ୍ ସାହେବଙ୍କ ସହିତ ମଧ୍ୟ ମୋର ବନ୍ଧୁତା ହେଲା; ମାତ୍ର ମୁଁ ବରାବରି ଲକ୍ଷ୍ୟ କରିଛି, ସେ କଂଗ୍ରେସ ପନ୍ଥା ଓ ଗାନ୍ଧିଜୀଙ୍କ ନୀତି ଭ୍ରମାତ୍ମକ ବୋଲି ମୋତେ ବୁଝାଉଥିଲେ । ତାଙ୍କ ମତରେ ପ୍ରଜାତନ୍ତ୍ର ଶାସନ ଭାରତରେ ସଫଳତାର ସହିତ କାମ କରିପାରିବ ନାହିଁ ଓ ଭାରତ ପକ୍ଷରେ ଲୋକହିତାକାଂକ୍ଷୀ ଏକଛତ୍ର ଶାସନ ଆବଶ୍ୟକ । ସେ ଭାରତ ଇତିହାସ ଆଲୋଚନା କରି ଏ ମତକୁ ପ୍ରତିପାଦିତ କରିବାର ଚେଷ୍ଟା କରୁଥିଲେ । ଏ ବିଷୟରେ ବହୁ ଯୁକ୍ତି ହେଉଥିଲା; ମାତ୍ର ଆମେ କେହି କାହାକୁ ନିଜ ମତକୁ ଆଣି ପାରି ନ ଥିଲୁଁ, ତଥାପି ଆମ ପରସ୍ପର ଭିତରେ ବନ୍ଧୁତା ଓ ବିଶ୍ୱାସ ଦିନକୁ ଦିନ ବଢ଼ିଥିଲା । ଜୋନଷ୍ଟନ ସାହେବ ନିଜ ସାଧାରଣ ଗରିବ ଶ୍ରେଣୀର ଲୋକଙ୍କୁ ନାନାବିଧ ଅତ୍ୟାଚାରରୁ ରକ୍ଷା କରିବା ଲାଗି ଚେଷ୍ଟା କରିଥିଲେ । ଲୋକଙ୍କ ପାଇଁ ମଙ୍ଗଳଜନକ କାମ କରିବାଲାଗି ତାଙ୍କ ହାତରେ ଯଥେଷ୍ଟ କ୍ଷମତା ଓ ଅର୍ଥ ନାହିଁ, ଏହା ତାଙ୍କର ଦୁଃଖ ଥିଲା । ସେ ଏଥିପାଇଁ ଶାସନ ସଂସ୍କାରକୁ ଦୋଷ ଦେଉଥିଲେ । ଏ ଦେଶରେ ଇଂରେଜ ଶାସନ ଆରମ୍ଭ ହେବାବେଳେ ଏ ଦେଶ ଲୋକଙ୍କ ମନ ନେବାପାଇଁ ଅନେକ ଉଦାରହୃଦୟ ଇଂରେଜ ହାକିମ ଯେପରି କାମ କରୁଥିଲେ, ଜୋନ୍‌ଷ୍ଟନ୍ ସାହେବ ସେହି ଶ୍ରେଣୀର ଲୋକ ଓ ସେହିପରି କାମ କରିବାର ତାଙ୍କର ଇଚ୍ଛା ହେଉଥାଏ; ମାତ୍ର ସେପରି କ୍ଷମତା ତାଙ୍କଠି ନ ଥାଏ ।

ଯାହାହେଉ, ଜିଲ୍ଲାବୋର୍ଡ଼ କାର୍ଯ୍ୟରେ ଜୋନ୍‌ଷ୍ଟନ୍ ସାହେବ ମୋତେ ପୂରାପୂରି ସାହାଯ୍ୟ କରିଥିଲେ । ନିଜେ ପୂରା ସମୟ ଦେଇ ସାହସ ସହକାରେ କାମ କରିବା ଫଳରେ ଓ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ସହିତ ପୂରା ସହଯୋଗ ଥିବାରୁ ସେତେବେଳେ ବାଲେଶ୍ୱର ଜିଲ୍ଲାବୋର୍ଡ଼ ଅତି ଶକ୍ତିଶାଳୀ ଓ ଜନପ୍ରିୟ ଅନୁଷ୍ଠାନ ହୋଇଥିଲା । କେବଳ ଶାନ୍ତି ଓ ଶୃଙ୍ଖଳା ବିଭାଗ ଛଡ଼ା ଅନ୍ୟ ସମସ୍ତ ବିଷୟରେ ଜିଲ୍ଲାବୋର୍ଡ଼ ଜରିଆରେ ମୁଁ ଜିଲ୍ଲାସାରା କର୍ତ୍ତୃତ୍ୱ ସ୍ଥାପନ କରି ପାରିଥିଲି । ଅନ୍ୟାନ୍ୟ ହାକିମମାନଙ୍କ ସହିତ ମଧ୍ୟ ମୋର ସଦ୍‌ଭାବ ଥିଲା । ସମସ୍ତେ ମୋତେ ମୋର ବୟସ କମ୍ ଥିବା ହେତୁ ଓ ମନ ଦେଇ କାମ କରୁଥିବା ହେତୁ ସୁଖ ପାଉଥିଲେ ।

ସାଧାରଣଙ୍କ ହିତଦୃଷ୍ଟିରୁ ଜିଲ୍ଲାବୋର୍ଡ଼ ପରିଚାଳନା କରିବାରୁ ନାନାସ୍ୱାର୍ଥ ସମସ୍ତଙ୍କ ସହିତ ବିବାଦ ଲାଗିଯାଇଥିଲା; ମାତ୍ର ଜିଲ୍ଲା ମାଜିଷ୍ଟ୍ରେଟ ସେହି ମତାବଲମ୍ବୀ ଥିବାରୁ କେହି ମୋର କିଛି ଅନିଷ୍ଟ କରିପାରୁ ନ ଥିଲେ । ପୂର୍ବେ ଜିଲ୍ଲାବୋର୍ଡ଼

ପଇସାରେ ପୋଖରୀ କୂଅ ପ୍ରଭୃତି ଖୋଳାହୋଇ ଧନୀମାନଙ୍କର ସମ୍ପତ୍ତି ହୋଇ ରହୁଥିଲା । ମୋ ସମୟ ପର୍ଯ୍ୟନ୍ତ ସେହିପରି ହୋଇଆସୁଥିଲା; ମାତ୍ର ମୁଁ ଏ ସବୁକୁ ସର୍ବସାଧାରଣ କରାଇବାର ଚେଷ୍ଟା କଲି ଓ ନୂଆ ଯେତେ ପୋଖରୀ କୂଅ ଖୋଳା ହେଲା, ସବୁ କାହାର ବ୍ୟକ୍ତିଗତ ନ ହୋଇ ସର୍ବସାଧାରଣ ସମ୍ପତ୍ତି ହେଲା । ବଡ଼ ବଡ଼ ଲୋକ ଗାଁର ସ୍କୁଲ ଉପରେ କର୍ତ୍ତୃତ୍ୱ ସ୍ଥାପନ କରି ଶିକ୍ଷକମାନଙ୍କୁ ନିଜ କାମରେ ଲଗାଉଥିଲେ, ତାକୁ ବନ୍ଦ କଲି । ଡାକ୍ତରଖାନା ମ୍ୟାନେଜିଂ କମିଟିରେ ବଡ଼ ବଡ଼ ଲୋକ ରହି ବେଶୀ ସୁବିଧା ସେହିମାନେ ପାଉଥିଲେ—ତାକୁ ବନ୍ଦ କରାଇଲି । ମୋଟ ଉପରେ ସାଧାରଣ ଲୋକ ଭଲ କରି ଅନୁଭବ କରିପାରିଲେ ଯେ, ଏସବୁ ସାଧାରଣ ଅନୁଷ୍ଠାନ ବାସ୍ତବିକ ସେହିମାନଙ୍କ ପାଇଁ ଓ ସେମାନଙ୍କର ଏସବୁ ଉପରେ ଯଥେଷ୍ଟ କର୍ତ୍ତୃତ୍ୱ ଅଛି । ଏତଦ୍ଦ୍ୱାରା ଧନୀଲୋକମାନଙ୍କର ପ୍ରତିପତ୍ତି ବହୁତ କମିଗଲା ଓ ସେମାନଙ୍କ ମଧ୍ୟରୁ ଅନେକ ମୋ ପ୍ରତି ଉତ୍ତ୍ୟକ୍ତ ହୋଇ ଉଠିଲେ ।

ଜିଲ୍ଲାରେ ଯେଉଁଠି ଜଳାଭାବ ଥିବାର ମୁଁ ଜାଣିଥିଲି, ସେଠି ଓ ଅନ୍ୟତ୍ର ଜଳ-ସରବରାହର ବିଶେଷ ବ୍ୟବସ୍ଥା କରିଥିଲି । ନୂତନ ଡାକ୍ତରଖାନା ଯେଉଁଠି ଦରକାର ଥିଲା, ସେଠି ଖୋଲା ହେଉଥିଲା ଓ ଖୋଲା ହେବାର ଉଦ୍ୟମ ହେଉଥିଲା । ମାଇନର ସ୍କୁଲକୁ ଉତ୍ସାହ ଦେବା ଫଳରେ ଅନେକ ସ୍ଥାନରେ ମାଇନର ସ୍କୁଲ ହୋଇଗଲା । ଶିକ୍ଷକମାନଙ୍କ ସମ୍ମିଳନୀ କରାଇ ସେମାନଙ୍କ ଭିତରେ ନୂଆ ଭାବର ସୃଷ୍ଟି କରାହୋଇଥିଲା । ଏପରି ବ୍ୟବସ୍ଥା କରିଥିଲି ଯେ, ଜିଲ୍ଲାସାରା ସବୁଆଡ଼େ କଲେରା, ମ୍ୟାଲେରିଆ ଓ ଅନ୍ୟ ସାଧାରଣ ଶ୍ରେଣୀର ରୋଗପାଇଁ ଔଷଧ ବିତରିତ ହେଉଥିଲା । ସେନିଟେରୀ ଇନ୍‌ସପେକ୍ଟରମାନେ ଚାରିଆଡ଼େ ବୁଲି ଔଷଧ ଦେଉଥିଲେ । ମୋର ଧାରଣା, ଗୋଟିଏ ସ୍ଥଳରେ ଚିକିତ୍ସାକେନ୍ଦ୍ର ରହିବ ଓ ସେଠାକୁ ସବୁଆଡ଼ୁ ଲୋକ ଆସିବେ, ଏହାଠାରୁ ବେଶୀ କାର୍ଯ୍ୟକାରୀ ବ୍ୟବସ୍ଥା ହେଉଛି ନିୟମିତ ଭାବରେ ବୁଲି ବୁଲି ଡାକ୍ତରମାନେ ଔଷଧ ଦେବା । କେବଳ ଯେଉଁମାନଙ୍କୁ ଅସ୍ତ୍ର ଚିକିତ୍ସା ଦରକାର କରନ୍ତି ବା ଗୁରୁତର ଭାବରେ ପୀଡ଼ିତ, ସେହିମାନଙ୍କୁ ହାସପାତାଳକୁ ଅଣାହେବା ଉଚିତ । ତା'ର ବ୍ୟବସ୍ଥା ମଧ୍ୟ ଯେଉଁ ଡାକ୍ତରମାନେ ବୁଲୁଥିବେ, ସେହିମାନେ କରାଇବେ ଓ ରୋଗୀକୁ ନିକଟବର୍ତ୍ତୀ ଡାକ୍ତରଖାନାକୁ ପଠାଇଦେବେ । ଯେଉଁଠି କଲେରା ଲାଗୁଥିଲା, ସେଠି ମୁଁ ନିଜେ ଓ ଅନ୍ୟ ମେମ୍ବରମାନେ ଡାକ୍ତରଙ୍କୁ ନେଇ ଲୋକଙ୍କ ଭିତରେ କାମ କରି ବ୍ୟବସ୍ଥା କରିଥିଲୁଁ । ମୁଁ ଯେତେବେଳେ ଜାଣିଲି ଯେ, ପ୍ରତିଷେଧକର ବ୍ୟବସ୍ଥା କଲେ କଲେରା ଆଦୌ ହେବ ନାହିଁ, ସେତେବେଳେ ଆମ ଜିଲ୍ଲାରେ ଯେପରି କଲେରା ଆଦୌ ନ ହେବ, ତା'ର ବ୍ୟବସ୍ଥା ଆରମ୍ଭ କରିଥିଲି; ସେହିପରି ଗୋଟିଏ ଅଞ୍ଚଳରେ ମେଲେରିଆ ଯେପରି ନ ହେବ, ତା'ର କର୍ମ-ଯୋଜନା କରି କାମ ଆରମ୍ଭ କରାଇଥିଲି । ଏହା-

ଛଡ଼ା କଣ୍ଟର୍ ନିୟମ ବରୁଦ୍ଧରେ ଯାଇ ମଧ୍ୟ ହରିଜନମାନଙ୍କ ଭିତରେ ଶିକ୍ଷା ବିସ୍ତାର-ପାଇଁ ଜଣେ ଶିକ୍ଷିତ ହରିଜନ ନିଯୁକ୍ତ କରି ସେ'ଠାରେ ଯଥାବିଧି କାର୍ଯ୍ୟ ଆରମ୍ଭ କରିଥିଲି । ଏହାର ଫଳ ଅତି ଭଲ ହୋଇଥିଲା । ଗୋଜାତିର ଉନ୍ନତି ପାଇଁ ଓ ସୁବିଧାରେ ଲୋକେ ଦୁଧ ପାଇବା ପାଇଁ ଜିଲ୍ଲାବୋର୍ଡ଼ ତରଫରୁ ବାଲେଶ୍ବରରେ ଏକ ଆଧୁନିକ ଧରଣର ଗୋଶାଳା ସ୍ଥାପନ କରାଇଥିଲି । ଏହା ମଧ୍ୟ ସଫଳ ହୋଇଆସୁଥିଲା ।

ଏସବୁ କାମପାଇଁ ଜିଲ୍ଲାବୋର୍ଡ଼ ଆୟଠାରୁ ବ୍ୟୟ ବେଶୀ ଦରକାର ପଡ଼ୁଥିଲା । ସେଥିପାଇଁ ମୁଁ ସେତେବେଳକାର ମନ୍ତ୍ରୀ ଗଣେଶଦତ୍ତ ସିଂହଙ୍କୁ ଧରାଧରି କରି ଅଧିକ ସରକାରୀ ଗ୍ରାଣ୍ଟ କରାଇ ଆଣିଥିଲି ।

ଉପରେ ମନ୍ତ୍ରୀଙ୍କ ସହ ମୋର ସମ୍ପର୍କ ଥିବାରୁ ତଳ ହାକିମଙ୍କ ଭିତରେ ଗଣ୍ଡଗୋଳ ସୃଷ୍ଟି ହୋଇଥିଲା ଓ ତାହା ଫଳରେ ଜିଲ୍ଲାବୋର୍ଡ଼ର ମନ୍ତ୍ରୀଙ୍କ ସହିତ ସିଧା କାରବାର ନିୟମ ପ୍ରବର୍ତ୍ତନ ଦ୍ୱାରା ବନ୍ଦ କରା ହୋଇଥିଲା । ସେତେବେଳେ ସରକାରୀ ହାକିମମାନଙ୍କର 'ଗ୍ରାମ-ଶାସନ ଆଇନ୍' (Village Administration Act) ଅନୁସାରେ ଇଉନିୟନ୍ ବୋର୍ଡ଼ ସ୍ଥାପନ କରିବାରେ ଝୁଙ୍କ ଥିଲା; ମାତ୍ର ଆଦୌ ଏହା ଜନପ୍ରିୟ ନ ଥିଲା । ମେଦିନୀପୁରରେ ଇଉନିୟନବୋର୍ଡ଼ ସବୁ ଉଠାଇବାପାଇଁ ଟିକସବନ୍ଦ ଆନ୍ଦୋଳନ କରି ଲୋକେ ଯଶସ୍ୱୀ ହୋଇଥିଲେ । ଲୋକେ ଯେତିକି ଟିକସ ଦିଅନ୍ତି, ତଦନୁସାରେ ସୁବିଧା ପାଇପାରନ୍ତି ନାହିଁ ଓ ଇଉନିୟନ ବୋର୍ଡ଼ ଜରିଆରେ ସରକାରୀ ପ୍ରଭାବ ବଢ଼େ, ଏଥିପାଇଁ ଏହା ଅତି ଅପ୍ରିୟ ଥିଲା । ମୁଁ ଜିଲାବୋର୍ଡ଼ ଚେୟାରମ୍ୟାନ ଥିଲାବେଳେ ସେ ସମୟକାର କମିଶନର ରେମୁଣା ଓ ଶୁନ୍ଦବାଳର ଇଉନିୟନ ବୋର୍ଡ଼ ବସାଇବାର ଆଦେଶ ଦେଲେ । ଏଥିରେ ମୁଁ ଆପତ୍ତି କରିଥିଲି, ମାତ୍ର ମୋ କଥା ହାକିମମାନେ ଶୁଣିଲେ ନାହିଁ । ପ୍ରଥମେ ରେମୁଣାରେ ନିର୍ବାଚନ ଆରମ୍ଭ କରିଦେଲେ । ନିର୍ଦ୍ଦିଷ୍ଟରେ କେତେକ ମାମଲତକାର ଶ୍ରେଣୀର ଲୋକ ନିର୍ବାଚିତ ବୋଲି ଘୋଷିତ ହେଲେ । ତା' ପରେ ଆଇନ୍ ଅନୁସାରେ ଜିଲ୍ଲାବୋର୍ଡ଼ ଚେୟାରମ୍ୟାନ କେତେଜଣଙ୍କୁ ମନୋନୀତ କରିବାର କଥା । ନିର୍ବାଚିତ ଓ ମନୋନୀତ ସଭ୍ୟଙ୍କୁ ନେଇ ଇଉନିୟନ୍ ବୋର୍ଡ଼ ଗଠିତ ହେବ । ଏଣେ ଦଳକୁ ଦଳ ଲୋକ ମୋ ପାଖକୁ ଆସୁ ଥାଆନ୍ତି, ଇଉନିୟନ୍ ବୋର୍ଡ଼ ଯେପରି ନ ହେଉ । ଥରେ ପ୍ରାୟ ହଜାରେ ଲୋକ ମୋ ନିକଟକୁ ବାଲେଶ୍ୱର ଆସିଥାଆନ୍ତି । ମୁଁ ସେମାନଙ୍କୁ ନେଇ କୋନ୍ଷ୍ଟନ୍ ସାହେବଙ୍କ ପାଖକୁ ଗଲି । ତାଙ୍କୁ ପଚାରିଲି ଯେ, ଲୋକଙ୍କଠାରୁ ଭୋଟ ପାଇ ଜିଲ୍ଲାବୋର୍ଡ଼ ଚେୟାରମ୍ୟାନ୍ ହୋଇ ଏ ଲୋକଙ୍କ ବରୁଦ୍ଧରେ କିପରି କାର୍ଯ୍ୟ କରିବ ? ତାଙ୍କୁ ମଧ୍ୟ ସେହିଠି କହିଲି ଯେ ମୁଁ ମନୋନୟନ କରିବାପାଇଁ ଆଇନ୍ ଅନୁସାରେ ଯେଉଁ କ୍ଷମତା

ପାଇଛୁ, ତାହା ବ୍ୟବହାର କରିବ ନାହିଁ । ଜୋନ୍‌ଷ୍ଟନ୍ ସାହେବ ବିଚଳିତ ହୋଇ-ଯାଇଥିଲେ । ସେ ମୋତେ ଆଇନ୍‌କୁ ସମ୍ମାନ କରିବାପାଇଁ ବୁଝାଇଲେ, ମାତ୍ର ମୁଁ ମାନିଲି ନାହିଁ । ସେ କମିଶନରଙ୍କୁ ଲେଖିଲେ । କମିଶନର ମୋତେ ଖୁବ୍ ବୁଝାଇ ସୁଝାଇ ଲେଖିଲେ ଯେ, ଆଇନ୍ ଅନୁଯାରେ ମନୋନୟନ କରିବା ଉଚିତ । ମୁଁ ଉତ୍ତର ଦେଲି 'ଗ୍ରାମ୍ୟ-ଶାସନ ଆଇନ୍' ଅନୁସାରେ କାମ କରିବାପାଇଁ ବାଧ୍ୟ ବୋଲି ଜିଲ୍ଲାବୋର୍ଡ଼ ଆଇନ୍‌ରେ କେଉଁଠାରେ ନାହିଁ । ତା ଛଡ଼ା ଲୋକଙ୍କ ମତ ବିରୁଦ୍ଧରେ ମୁଁ ତାହା କରିପାରିବି ନାହିଁ । କମିଶନରଙ୍କୁ ଏହିପରି ଲେଖି ଗଣେଶଦତ୍ତ ସିଂହଙ୍କଠାକୁ ଲେଖିଲି ଯେ, ସେ ଲୋକପ୍ରତିନିଧି ଥିବାରୁ ଲୋକପ୍ରତିନିଧି-ତ୍ୱର ଦାୟିତ୍ୱ ବୁଝିବା ଉଚିତ ଓ ଇଉନିୟନ ବୋର୍ଡ଼ ଉଠାଇଦେବା ଉଚିତ । ତା' ଫଳରେ ସିଧା ସରକାରଙ୍କଠାରୁ ଚିଠି ଆସିଲା ଯେ, ରେମୁଣା ଇଉନିୟନ ବୋର୍ଡ଼ ଉଠାଇ ନିଆଗଲା । ଏ ଚିଠି ଯେଉଁଦିନ ପାଇଲି, ସେହିଦିନ କମିଶନରଙ୍କଠାରୁ ଏକ କଡ଼ା ଚିଠି ପାଇଥାଏ ଯେ, ଆଇନ୍ ଅନୁସାରେ ମନୋନୟନ ମୁଁ ନ କଲେ ସେ ସରକାରଙ୍କୁ ଜିଲ୍ଲାବୋର୍ଡ଼ ବିରୁଦ୍ଧରେ ରିପୋର୍ଟ କରିବେ । ମୁଁ ସିଧା ମିଳିଥିବା ସରକାରୀ ଚିଠିର ନକଲ କମିଶନରଙ୍କ ନିକଟକୁ ପଠାଇ ଦେଇଥିଲି । ଏଥିରେ କମିଶନର ସାହେବ ବଡ଼ ଉତ୍‌କ୍ଷିପ୍ତ ହୋଇ ଜିଲ୍ଲାବୋର୍ଡ଼ ସହିତ ସରକାରଙ୍କ ଚିଠିପତ୍ର ସମ୍ପର୍କ କିପରି ରହିବା ଉଚିତ, ସେ ବିଷୟରେ ପ୍ରଶ୍ନ ଉଠାଇଲେ । ତା' ଫଳରେ ନିୟମ ହୋଇଗଲା ଯେ, ଜିଲ୍ଲାବୋର୍ଡ଼ରୁ ସରକାରଙ୍କଠାକୁ ସମସ୍ତ ଚିଠି ଜିଲ୍ଲା ମାଜିଷ୍ଟ୍ରେଟ୍ ଓ କମିଶନରଙ୍କ ଜରିଆରେ ଯିବ । ମୁଁ ଏହାର ପ୍ରତିବାଦ କଲି । ମୁଁ ବରାବର ମନେ କରୁଥାଏ ଯେ, ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ଜିଲ୍ଲାବୋର୍ଡ଼ ଚେୟାର-ମ୍ୟାନ୍‌ଙ୍କ ପଦମର୍ଯ୍ୟାଦା ଏକ; ଏଣୁ କୌଣସି ନିୟମଦ୍ୱାରା ଜିଲ୍ଲାବୋର୍ଡ଼ ଚେୟାରମ୍ୟାନ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ତଳକୁ ବୋଲି ଜଣାଗଲେ ମୁଁ ତାହାର ବିରୁଦ୍ଧାଚରଣ କରୁଥିଲି । ଉକ୍ତ ନିୟମାନୁସାରେ ମୁଁ କାମ କରି ନାହିଁ, ମୁଁ ସବୁ ଚିଠି କମିଶନରଙ୍କ ଠାକୁ ପଠାଇଦିଏ । ସେଠାରୁ ପୁଣି ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ପାଖକୁ ମତପାଇଁ ଆସେ । ତା' ପରେ ସରକାରଙ୍କଠାକୁ ଯାଏ । ଏ ବିଷୟରେ ଉପରେ ମନ୍ତ୍ରୀ ନିଜେ ନରମା ଧରିଯିବାରୁ ତଳେ ମୁଁ ବେଶୀ ଦୂର ଆଗେଇ ପାରିଲି ନାହିଁ; ମାତ୍ର ତା' ପରେ ଇଉନିୟନ୍ ବୋର୍ଡ଼ ସ୍ଥାପନର ହୁଙ୍କ୍ ହାକିମମାନଙ୍କର ଗୁଲିଗଲା ।

କେବଳ ଏଇ ଘଟଣା ନୁହେଁ, ଅନେକ ଘଟଣାରେ ମୁଁ ଦେଖିଛୁ, ସିଭିଲିଆନ୍ ହାକିମମାନେ ନିର୍ବାଚିତ ଲୋକପ୍ରତିନିଧିଙ୍କ ହାତରେ କ୍ଷମତା ଥିବା ସହ୍ୟ କରି ପାରନ୍ତି ନାହିଁ । ସେମାନେ କଳେ ବଳେ କୌଶଳେ ସବୁ କ୍ଷମତା ନିଜ ହାତରେ ରଖିବା ପାଇଁ ଚାହାନ୍ତି; ମାତ୍ର ମୁଁ ବରାବର ଜଗିଥାଏ ଯେ, ଯେତିକ କ୍ଷମତା ଆଇନଦ୍ୱାରା ମିଳିଛୁ, ତାହା ଯେପରି ଅକ୍ଷୁର୍ଣ୍ଣ ରହେ । ଏହା ଫଳରେ ଅନେକ

କମିଶନରଙ୍କ ସହିତ ମୋର ବିବାଦ ହୋଇଯାଉଥାଏ । ମୁଁ ଚେୟାରମ୍ୟାନ୍ ଥିବା ସମୟରେ କୌଣସି କମିଶନର ଜିଲ୍ଲାବୋର୍ଡ଼ ଅଫିସ ପରିଦର୍ଶନ କରିବାପାଇଁ ଆସି ନାହାନ୍ତି । ଥରେ ଜଣେ କମିଶନରଙ୍କ ସହିତ ମୋର କେତେକ ବିଷୟ ଆଲୋଚନା ହେଉଥିବାବେଳେ ସେ ରାଗିଯାଇ କହିଲେ, "I shall see what Mr. Das has done is undone by rules." ମୁଁ ଏହାର ଉତ୍ତରରେ ରାଗିଯାଇ କହିଥିଲି, "We shall see that the Civilian officers are brought under full control of the popular representatives." ଏହା ପରେ ପରେ ଏକ ଅଡ଼ିଟ୍ ଆଇନ୍ ହେଲା, ଯାହା ଫଳରେ ଜିଲ୍ଲାବୋର୍ଡ଼ର କ୍ଷମତା ଉପରେ ଅନେକ ପରିମାଣରେ ହସ୍ତକ୍ଷେପ କରାହେଲା । ଏ ଆଇନ୍ ଅନୁଯାରେ ଜିଲ୍ଲାବୋର୍ଡ଼ର ଯେଉଁ ଖର୍ଚ୍ଚ ଆଇନ ଅନୁଯାରେ ନୁହେଁ ବୋଲି ସରକାର ଭାବିବେ, ସେ ଖର୍ଚ୍ଚ ପାଇଁ ଯେ ଦାୟୀ, ତା' ଉପରେ ତାକୁ ସର୍ଚ୍ଚାର୍ଯ୍ୟ କରିପାରନ୍ତି, ଅର୍ଥାତ୍ ତା'ଠାରୁ ଅସୁଲ କରିପାରନ୍ତି ।

ଉପରେ ସରକାରୀ ହାକିମମାନେ ଓ ଏଣେ ଧନୀ ଜମିଦାରମାନେ ମୋ ପ୍ରତି ଉତ୍ୟକ୍ତ ହୋଇ ରହିଥିଲେ ମଧ୍ୟ ମୁଁ ସୁରୁଖୁରୁରେ ଚାଲିଥାଏ—କେବଳ କୋନ୍‌ଷ୍ଟନ୍ ସାହେବଙ୍କ ସହିତ ବନ୍ଧୁତ୍ୱ ଯୋଗୁଁ ଓ ମୋ ନିଜର ପରିଶ୍ରମ ହେତୁ । ସେତେବେଳେ କାମ କରି ମୁଁ ଆତ୍ମପ୍ରସାଦ ଲାଭ କରୁଥିଲି । ଜିଲ୍ଲାର ସାଂଦଶାୟ ବିଷୟ, ଏପରିକି ଯାହା ସହିତ ଜିଲ୍ଲାବୋର୍ଡ଼ କାର୍ଯ୍ୟର ପ୍ରତ୍ୟକ୍ଷ ସମ୍ପର୍କ କିଛି ନ ଥିଲା, ଏପରି କାମସବୁ ମୋଠାକୁ ଆସୁଥିଲା ଓ ମୁଁ ସେ ସବୁ ମୋର ସହକର୍ମୀମାନଙ୍କ ସାହାଯ୍ୟରେ ସମାଧାନ କରିବାର ଚେଷ୍ଟା କରୁଥିଲି । ସେ ସମୟରେ ନୀଳଗିରି ରାଜାଙ୍କ ଜମିଦାରୀ କୋର୍ଟ ଅଫ୍ ଓ୍ୱାର୍ଡ଼ସ୍ ଅଧୀନସ୍ଥ ଥାଇ ବାଲେଶ୍ୱର ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ତତ୍ତ୍ୱାବଧାନରେ ଥାଏ । ଗୃନ୍ଦପୁରର ପାଖ ଅଧିକାଂଶ ଗୋଚର ଜମିକୁ ବଡ଼ ବଡ଼ ସରକାରୀ କର୍ମଚାରୀମାନେ ପଞ୍ଚା କରିନେଇ ଗୋଚରପାଇଁ ଖାଲି ବାଲିଆ ଜମି ଛାଡ଼ି ଦେଇଥାନ୍ତି । ଏହା ସାଧାରଣଙ୍କର ଏକ ଅସନ୍ତୋଷର କାରଣ ହୋଇଥାଏ । ଏ ବିଷୟ ପଣ୍ଡିତ ଗୋପବନ୍ଧୁ ଲାଟ୍‌ସଭା ମେମ୍ବର ଥିଲାବେଳେ ସେଠାରେ ପ୍ରଶ୍ନ କରିଥିଲେ; ମାତ୍ର ଫଳ କିଛି ହୋଇ ନ ଥିଲା । ବର୍ତ୍ତମାନ ବନ୍ଦୋବସ୍ତ ଚାଲିଥିବାରୁ ସେ ପ୍ରଶ୍ନ ଉଠିଲା । ଲୋକେ ଆସି ମୋତେ ଧରିଲେ । ମୁଁ ଏ କାମକୁ ସୁବୋଧଚନ୍ଦ୍ର ଦେ'ଙ୍କ ଜିମା ଦେଇଥିଲି । ଲଗିପଡ଼ି ଆମେ ଏହା ପ୍ରମାଣ କରିଥିଲୁଁ ଯେ, ଚକ୍ରାନ୍ତ କରି ସରକାରୀ କର୍ମଚାରୀମାନେ ଗୋଚରକୁ ପଞ୍ଚା ନେଇଛନ୍ତି । କୋନ୍‌ଷ୍ଟନ୍ ସାହେବ ଏ ବିଷୟ ବୁଝିପାରି ଗୋଚର ଜମି କେତେକ ଫେରାଇବାର ଆଦେଶ ଦେଇଥିଲେ । ଏ ସମ୍ପର୍କରେ ଜଣେ ଦୁଇଜଣ ସରକାରୀ କର୍ମଚାରୀ ଡିସ୍‌ମିସ୍ ହୋଇଥିଲେ ।

ସେହିପରି ଏକ ହିନ୍ଦୁ ମୁସଲମାନ ପ୍ରଶ୍ନ ମୋ ପାଖରେ ଆସି ପହଞ୍ଚିଲା । ସେତେବେଳେ କଲିକତାରେ ହିନ୍ଦୁ ମୁସଲମାନ ଦଙ୍ଗା ଜୋର ଲାଗିଥାଏ, ତା'ର ଧକ୍କା ଆସି ବାଲେଶ୍ୱରରେ ଲାଗୁଥାଏ । ଅସହଯୋଗ ଆନ୍ଦୋଳନ ହେଲୁ ଆମେ ବରାବର ମସ୍‌ଜିଦ୍ ଆଗରେ ବାଜା ବନ୍ଦ କରାଇ ଦେଇଥିଲୁଁ । ଆମ କଥା ହିନ୍ଦୁମାନେ ମାନିଯାଉଥିଲେ । ମସ୍‌ଜିଦ୍ ଆଗରେ ବାଜା ବନ୍ଦ କରାଇବା ଆମର ଏକ କାମ ହୋଇଯାଇଥିଲା । ସ୍ୱରାଜ୍ୟ ମନ୍ଦିର ସାମନାରେ ଗୋଟିଏ ମସ୍‌ଜିଦ୍ ଥାଏ । ତା' ଆଗରେ କୀର୍ତ୍ତନ ଇତ୍ୟାଦି ଗଲେ ଆମେ ଯାଇ ବରାବର ବାଜା ବନ୍ଦ କରାଉଥିଲୁଁ; ମାତ୍ର କଲିକତାର କେତେ ପ୍ରଚାରକଙ୍କ ଉତ୍ତେଜନାରେ କେତେକ ସ୍ଥାନୀୟ ମୁସଲମାନ କୀର୍ତ୍ତନ ଆସିବାବେଳେ ଆମେ ବାଜା ବନ୍ଦ କରିବାକୁ କହିବାକୁ ଯାଉ ଯାଉ ସେମାନେ କୀର୍ତ୍ତନବାଲାଙ୍କୁ ପିଟିବାରେ ଲାଗିଲେ । ଅନେକ ଆହତ ହେଲେ, ମୋକଦ୍ଦମା ହେଲା । ଏହା ପରେ ପରେ ପୋଲିସ୍ ଆଇନ୍ ଅନୁସାରେ ବିନା ଲାଇସେନ୍‌ସରେ ଶୋଭାଯାତ୍ରା କେହି ନେଇ ପାରିବେ ନାହିଁ ବୋଲି ଘୋଷଣା ହେଲା । ଲାଇସେନ୍‌ସ ପାଇଁ ଦରଖାସ୍ତ କଲେ । ମସ୍‌ଜିଦ୍ ଆଗରେ ବାଜା ବନ୍ଦ କରିବାର ସର୍ତ୍ତ ଲାଇସେନ୍‌ସରେ ଦିଆହେଲା । ଏଥିରେ ହିନ୍ଦୁମାନେ ଅତି ଉତ୍ତ୍ୟକ୍ତ ହୋଇଉଠିଲେ । ପରେ ସବୁ ବଡ଼ ଲୋକ ମିଶି ଏକ ବଡ଼ ସଭା ବାଲେଶ୍ୱରରେ କଲେ ଓ ଜିଲା ମାଜିଷ୍ଟ୍ରେଟ୍‌ଙ୍କ ଠାକୁ ଆପତ୍ତି ଜଣାଇବାପାଇଁ ଗଲେ । ଜିଲା ମାଜିଷ୍ଟ୍ରେଟ୍ କିଛି ଶୁଣିଲେ ନାହିଁ । ଏଥିରେ ସେମାନେ ଆହୁରି ଅପଦସ୍ଥ ହେଲେ । ଓଡ଼ିଶାରେ ମୋଟେ ଶତକଡ଼ା ଦେଢ଼ କି ଦୁଇ ମୁସଲମାନ—ସେମାନେ ସମସ୍ତେ ଅଶିକ୍ଷିତ, ନିର୍ଧନ; ଅଥଚ ଏତେ ହିନ୍ଦୁ, ବଡ଼ ବଡ଼ ଲୋକ ଓକିଲ ଜମିଦାର ଏମାନଙ୍କ କଥା ଜିଲା ମାଜିଷ୍ଟ୍ରେଟ୍ ଶୁଣିଲେ ନାହିଁ—ଏହା ହେଲା ହିନ୍ଦୁ ନେତାମାନଙ୍କ ଅପଦସ୍ଥ ମନେ କରିବାର କାରଣ । ସେମାନେ ସମସ୍ତେ ମୋତେ ଧରିଲେ । ମୁଁ ଏ ବିଷୟର ସମାଧାନ କରିବାର ଭାର ନେଲି । ମୁଁ ମୁସଲମାନମାନଙ୍କୁ ପାରୁପର୍ଯ୍ୟନ୍ତ ବୁଝାଇବାର ଚେଷ୍ଟା କଲି ଯେ, ସେଦିନ ସେମାନେ ଯେ କୀର୍ତ୍ତନ ଦଳକୁ ମାଡ଼ ଦେଇଛନ୍ତି, ସେଥିପାଇଁ ଖାଲି ଦୁଃଖ ପ୍ରକାଶ କରନ୍ତୁ ଓ ମୁଁ ଭାର ନେଉଛି ମସ୍‌ଜିଦ୍ ଆଗରେ ବାଜା ବନ୍ଦ କରାଇବି; ମାତ୍ର ସେମାନେ ଶୁଣିଲେ ନାହିଁ; ବରଂ ମୋତେ ମାରିବାର ଧମକ ଦେଖାଇଲେ । ତେଣେ ଜୋନ୍‌ଷ୍ଟନ୍ ସାହେବଙ୍କୁ ବୁଝାଇବାକୁ ଯାଇ ମଧ୍ୟ ନିଷ୍ଫଳ ହେଲି; କିନ୍ତୁ ମୁଁ ଦେଖିଲି, ସରକାରୀ କ୍ଷମତା ବଳରେ ଏକ ଅନ୍ୟାୟ ଜବରଦସ୍ତି ଭାବରେ ଚଳାହେଲେ, ଲୋକେ ଭାରି କାପୁରୁଷ ହୋଇଯିବେ । ଏହା ଭାବି ସରକାର ତଥା ଅବୁଝା ମୁସଲମାନ ଉଭୟଙ୍କ ବିରୁଦ୍ଧରେ ଅଭିଯାନ ଆରମ୍ଭ କଲି । ଲାଇସେନ୍‌ସ ନେବାରେ ସରକାରୀ ଆଦେଶ ଅମାନ୍ୟ କରି ମସ୍‌ଜିଦ୍ ଆଗରେ ବାଜା ବଜାଇ ପ୍ରାୟ ତିନି ହଜାର ଲୋକଙ୍କୁ ନେଇ ଏକ ଶୋଭାଯାତ୍ରା ବାହାର କରାହେଲା । ବିଶ୍ୱନାଥ ହୋତା

ଏହାର ନେତୃତ୍ୱ ନେଇଥିଲେ । ଶୋଭାଯାତ୍ରା ସମସ୍ତଙ୍କୁ ଅମାନ୍ୟ କରି ସାହସ ସହକାରେ ଚାଲିଗଲା । ସେହିଦିନ ରାତିରେ ପ୍ରାୟ ୭୦୦ । ୮୦୦ ମୁସଲମାନ ମୋତେ ମାରିଦେବା ପାଇଁ ଆମ ଆଶ୍ରମ ଘେରାଉ କରିଥିଲେ; ମାତ୍ର କେବଳ ସାହସ ସହକାରେ ଛିଡ଼ା ହୋଇ ରହିବାରୁ ସେମାନେ ଅତି ଅଶ୍ରାବ୍ୟ ଭାଷାରେ ଗାଳି ମାତ୍ର ଦେଇ ଫେରିଗଲେ । ସେହିଦିନ ମୁଁ ଜାଣିଲି ଯେ, ସାହସ ହିଁ ଅନେକ ଶତ୍ରୁ ଲୋକଙ୍କୁ ହଟାଇ ଦେଇପାରେ । ତା' ପରଦିନ ପୁନର୍ବାର ସେମାନେ ହେଁପରି କଲେ; ମାତ୍ର ସେହିପରି ଭୟରେ ଫେରିଗଲେ । ପୋଲିସ ସାହେବ ପୋଲିସ ସାହାଯ୍ୟ ଦେବାପାଇଁ ମୋତେ କହିଲେ, ମାତ୍ର ମୁଁ ତାହା ମନା କଲି । ଏହାପରେ କଲିକତାରୁ ଗୁଣ୍ଡା ଅଣାଇ ମୋତେ ମାରିଦେବାର ବ୍ୟବସ୍ଥା ହେଲା । ଥରେ ଜଣେ ଗୁଣ୍ଡା ମୋତେ ମାରିବାକୁ ଆସୁଥିବା ସମୟରେ ମୁଁ ସାହସର ସହିତ ତା' ହାତ ଛୁରୀକୁ ଚାଲିଯିବାରୁ ସେ ଭୟ ପାଇ ଫେରିଗଲା । ଏହାପରେ ବାରମ୍ବାର ଶୋଭାଯାତ୍ରା ମସଜିଦ୍ ଆଗବାଟେ ନେଲୁଁ । ସରକାରଙ୍କ ତରଫରୁ ମୋତେ ଲଗାଇ ଅନେକ ଲୋକଙ୍କ ନାମରେ ମୋକଦ୍ଦମା ହୋଇଥିଲା । ଜଣେ ଖ୍ରୀଷ୍ଟିୟାନ୍ ମାଜିଷ୍ଟ୍ରେଟ ଖାସ୍ ଆସିଥିଲେ ଆମ ମୋକଦ୍ଦମା ବିଚାର କରିବା ପାଇଁ । ଆମକୁ ୨୫ଟଙ୍କା ଜୋରିମାନା ହେଲା, ମାତ୍ର ହାଇକୋର୍ଟରେ ଖଲାସ ହୋଇଯାଇଥିଲୁଁ । ସେହି ସମୟରେ ହିନ୍ଦୁ ମୁସଲମାନ ସଂଘର୍ଷ ଖୁବ୍ ହୋଇ ଥିଲା । ମୁସଲମାନମାନେ ଲୁଚିକରି ହିନ୍ଦୁଙ୍କୁ ମାଡ଼ଦେବା ଆରମ୍ଭ କଲେ । ହିନ୍ଦୁଙ୍କ ଭିତରେ ସାହସ ଓ ସଂଗଠନ ବଢ଼ାଇବା ପାଇଁ ଜାଗ୍ରତ୍ତ୍ରୀ ଦଳ ମୁଁ ସଙ୍ଗଠନ କରିଥିଲି । ବିଶ୍ୱନାଥର ଉଦ୍ୟମ ଫଳରେ ଏହା ପୂର୍ଣ୍ଣ ସଫଳତା ଲାଭ କରିଥିଲା । ଆଜି ସୁଦ୍ଧା ଏହା ଭଲ ଭାବରେ ଚାଲିଛି । ହିନ୍ଦୁମାନେ ମୁସଲମାନମାନଙ୍କୁ ବୟକଟ କଲେ । ଫଳରେ ମୁସଲମାନମାନେ ଚଳି ପାରିଲେ ନାହିଁ । ଶେଷରେ ହିନ୍ଦୁମାନେ ଯେତେବେଳେ ଭାବିଲେ ଯେ, ସେମାନେ ଜିଣିଲେ, ତେତେବେଳେ ଯାଇ ସେମାନେ ଛାଡ଼ିଲେ । ଏହି ସମୟରେ ବାଲେଶ୍ୱରରେ ହିନ୍ଦୁ ସଙ୍ଗଠନ ପାଇଁ କାହ୍ନାଇ ଦାସ ବର୍ମା ବୋଲି ଜଣେ ପଞ୍ଜାବିରୁ ଆସିଥିଲେ; ମାତ୍ର ମୁଁ ଏଥିରେ ବାଧା ଦେଇଥିଲି । ହିନ୍ଦୁ ବା ମୁସଲମାନ ଯେ ହେଉ, ଗୁଣ୍ଡାମି କରିବ, ତା' ବିରୁଦ୍ଧରେ ମୁଁ ଚାଲିବି ଓ କୌଣସି ସାମ୍ପ୍ରଦାୟିକ ଅନୁଷ୍ଠାନ କରାଇଦେବି ନାହିଁ—ଏପରି ଜିଦ୍ ଧରିବାରୁ ବାଲେଶ୍ୱରରେ ହିନ୍ଦୁ ସଙ୍ଗଠନ ହୋଇପାରିଲା ନାହିଁ । ମାତ୍ର ସେ ସମୟରେ ଯାହା ହେଲା, ତା' ଫଳରେ ଅନେକ ମୁସଲମାନଙ୍କ ହୃଦୟରେ ମୋ ପ୍ରତି ବୈରି-ଭାବ ରହିଗଲା । ତା'ପରେ ମୁଁ ବରାବର ଚେଷ୍ଟା କରି ଆସୁଛି, ସେ ଭାବ ଦୂର କରିବା ପାଇଁ ଓ ସୁବିଧା ଖୋଜୁଛି କୌଣସି ସମୟରେ ହିନ୍ଦୁ ଗୁଣ୍ଡାମି ବିରୁଦ୍ଧରେ ମୁସଲମାନ-ମାନଙ୍କୁ ସାହାଯ୍ୟ କରିବା ପାଇଁ । ଆମ ଜିଲ୍ଲା କଂଗ୍ରେସ କମିଟି ଏ ବିଷୟରେ ମୋତେ ନିନ୍ଦା କରିଥିଲେ ଓ ମୁଁ ତାକୁ ମୁଣ୍ଡପାତି ମାନି ନେଇଥିଲି । କାରଣ କଂଗ୍ରେସ ଏସବୁ

ବ୍ୟାପାରର ବାହାରେ ଓ ମୁଁ କଂଗ୍ରେସକୁ ଟାଣି ଆଣି ଏଥିରେ ଜଡ଼ିତ କରିବା ପାଇଁ ଗୃହି ନ ଥିଲି ।

ଏହି ସମୟରେ ମୋ ମନର ଗତି ଏପରି ହୋଇଥିଲା ଯେ, ମୁଁ ବନ୍ଧୁକ, ରାଇଫଲ ଓ ରିଭଲଭର ଲାଇସେନ୍ସ କରି ମଗାଇଥିଲି । ବନ୍ଧୁକ ନେଇ ଅନେକଥର ଶିକାର କରିବାକୁ ଯାଇଛି ! ଆମ ଗାଆଁକୁ ବଣରୁ ହାତୀ ଆସି ଧାନଫସଲ ନଷ୍ଟ କରିବାବେଳେ, ବନ୍ଧୁକ ନେଇ ତାଙ୍କୁ ଗୋଡ଼େଇଛି । ସେ ସମୟରେ ଆନ୍ଦୋଳନ କରି ବନ୍ତ ଓ ଖଇରା ଥାନାରେ ହାତୀମରା ଛାଡ଼ ବୋଲି ସରକାରଙ୍କଠାରୁ ଘୋଷଣା କରାଇଛି; ମାତ୍ର ଏ ମନୋବୃତ୍ତି ବେଶୀଦିନ ରହିଲା ନାହିଁ ।

ଏ ବଡ଼ ବଡ଼ ଘଟଣା ଛାଡ଼ିଦେଲେ ଶହଶହ ଛୋଟ ଛୋଟ ଘଟଣା ସମାଧାନ ପାଇଁ ମୋ ପାଖକୁ ଆସୁଥିଲା ଓ ସେ ସବୁର ସମାଧାନ ପାଇଁ ମୁଁ ଯଥାଶକ୍ତି ଚେଷ୍ଟା କରୁଥିଲି । ସେତେବେଳେ ଜୀବନ ଏତେ କର୍ମମୟ ଥିଲା ଯେ ମୁଁ ଏ ସବୁ ନାନା ଉଦ୍‌ବେଗ ଭିତରେ ସନ୍ତୋଷଲାଭ କରୁଥିଲି । ମାତ୍ର ମୋ ଗୃହପାଖ ଯେଉଁ ସବୁ ବିପଦ ଘେରିଆସୁଥାଏ, ତା' ପ୍ରତି ମୁଁ ଯଥେଷ୍ଟ ସାବଧାନ ରହିପାରିଲି ନାହିଁ । ଗୃହଅଡ଼କୁ ଦୃଷ୍ଟି ରଖି ନିଜକୁ ନିରାପଦ ରଖିବା ମୋ ପକ୍ଷରେ ସମ୍ଭବପର ହେଲା ନାହିଁ ।

ପ୍ରଥମେ କନିକା ରାଜାଙ୍କ ସହିତ ସଂଘର୍ଷରେ ଆସିଲି । କନିକା ଆନ୍ଦୋଳନ ସହିତ ମୋର ଯେଉଁ ସମ୍ପର୍କ ରହିଛି, ତା ଆଗରୁ କହିଛି । ଜେଲରେ କନିକା ବନ୍ଦୀମାନଙ୍କୁ ପ୍ରତିଶ୍ରୁତି ଦେଇଛି, ମୁଁ ସେ ଆନ୍ଦୋଳନ ସହିତ ବରାବର ସମ୍ପୃକ୍ତ ରହିବ । ପୁଣି ଜେଲରୁ ଯେତେବେଳେ ଖଲାସ ହୋଇ ଆସିଲି, ତେତେବେଳେ ମୋର ଭଦ୍ରଖ ସ୍କୁଲର ସହପାଠୀ ଶ୍ରୀ ଚକ୍ରଧର ବେହେରା ଓ ଅନ୍ୟାନ୍ୟ କନିକାର କର୍ମୀମାନେ ମୋତେ ଯେତେବେଳେ ଭଦ୍ରଖରେ ଦେଖାକଲେ, ତେତେବେଳେ ମୁଁ ସେମାନଙ୍କୁ ଚିହ୍ନି ପାରିଲି ନାହିଁ । ସେମାନଙ୍କର ବିଷଣ୍ଣ ମଳିନ ଚେହେରା ବର୍ତ୍ତମାନ ସୁଦ୍ଧା ମୋ ଆଖିରେ ନାଚୁଛି । ସେମାନଙ୍କୁ ବାସନ୍ଦ କରା ହୋଇଥାଏ । ଅନେକଙ୍କୁ ମାଡ଼ ଦିଆ ହୋଇଥାଏ । ଏପରି ଏକ ଆତଙ୍କ କନିକା ଇଲାକାରେ ସୃଷ୍ଟି କରା ହୋଇଥାଏ ଯେ, ଯେଉଁମାନେ ଆନ୍ଦୋଳନର କର୍ମୀ, ସେମାନଙ୍କ ସହିତ ଅନ୍ୟମାନେ କଥାବାର୍ତ୍ତା ସୁଦ୍ଧା କରିପାରୁ ନଥାନ୍ତି । ମୁଁ ସେତେବେଳେ ସେମାନଙ୍କୁ ଉତ୍ସାହ ଦେଇଥିଲି । ବର୍ତ୍ତମାନ ଜିଲ୍ଲା ବୋର୍ଡ଼ ଜରିଆରେ ମୋର ପ୍ରତିପତ୍ତି ବଢ଼ିବାରୁ ମୁଁ ଚେଷ୍ଟା କଲି, କନିକା ଇଲାକାରେ ପ୍ରଜାମାନେ ଆତଙ୍କରୁ ରକ୍ଷା ପାଆନ୍ତୁ । ଆଗରୁ କହିଯାଇଛି ଯେ, ରାଜା

ଉପର ସରକାରୀ ମହଲରେ ପ୍ରତିପତ୍ତି ବିସ୍ତାର କରି ଇଲକାକୁ ଗଡ଼ଜାତ ଭଳି କରି ନେଇ ଯାଇଥିଲେ । ମୁଁ ଜିଲ୍ଲାବୋର୍ଡ଼ରେ ପଶି ଦେଖିଲି ସବୁ ସଡ଼କ ଜିଲ୍ଲାବୋର୍ଡ଼ ମରାମତି କରେ, ମାତ୍ର ସେ ସବୁ ରାଜାଙ୍କର ସମ୍ପତ୍ତି । ସ୍କୁଲ ସବୁକୁ ଜିଲ୍ଲାବୋର୍ଡ଼ ଗ୍ରାଣ୍ଟ ଦେଇ ଚଳାଏ, ମାତ୍ର ସେସବୁ ରାଜାଙ୍କ କର୍ତ୍ତୃତ୍ୱରେ ଓ ଶିକ୍ଷକମାନେ ରାଜାଙ୍କ ସ୍ୱାମୀସ୍ୱ ପ୍ରତିବନ୍ଧ । ମୁଁ ଜିଲ୍ଲାବୋର୍ଡ଼ର ସ୍ୱତ୍ୱ ସାବ୍ୟସ୍ତ କରିବାର ଚେଷ୍ଟା କଲି ଓ ସେଥିରେ ସଫଳତା ଲାଭ କଲି । ତା' ପରେ ସେତେବେଳେ ବୃନ୍ଦାବାଲି ଥାନାରୁ (ଯେଉଁଠି କନିକା ଇଲକା) କନିକାର ଜଣେ କର୍ମଚାରୀ ଜିଲ୍ଲାବୋର୍ଡ଼କୁ ନିର୍ବାଚିତ ହୋଇ ଆସି-ଥାନ୍ତି । ମାତ୍ର ସେ ଥାନାର ସୁବିଧା ଅସୁବିଧା ବିଷୟରେ ମୁଁ ଶ୍ରୀ ଚନ୍ଦ୍ରଧର ବେହେରାଙ୍କ ସହିତ ସମ୍ପର୍କ ରଖିଲି । ତାଙ୍କ ଜରିଆରେ ଅନେକ ଲୋକହିତକର କାର୍ଯ୍ୟ କରାଇଲି । ଯେତେ ପୋଖରୀ କୂଅ ଖୋଲା ହେଲା, ସବୁ ଚନ୍ଦ୍ରଧରଙ୍କ ସୂଚନା ଅନୁଯାୟୀରେ ହେଲା । ଲୋକେ ଜାଣିପାରିଲେ, ରାଜାଙ୍କ ପ୍ରତିପତ୍ତି ଯେ ଚିରକାଳ ପାଇଁ ଅକ୍ଷୁଣ୍ଣ ତାହା ନୁହେଁ; ସାଧାରଣଙ୍କ ପ୍ରତିପତ୍ତି ସ୍ଥାପିତ ହେବାର ସମୟ ମଧ୍ୟ ଆସୁଛି । ଏଣେ ଜୋନ୍ଷ୍ଟନ୍ ସାହେବଙ୍କୁ କନିକାର ସମସ୍ତ ବିଷୟ ଜଣାଇଲି । ସେ ନିଜେ ସବୁବେଳେ ପ୍ରଜା ପକ୍ଷରେ ଥାଆନ୍ତି । ତେଣୁ କନିକା ବିଷୟରେ ସେ ପ୍ରଜାମାନଙ୍କୁ ଅତ୍ୟାଚାରରୁ ରକ୍ଷା କରିବାର ଚେଷ୍ଟା କଲେ । ଏ ସମୁଦାୟ କାର୍ଯ୍ୟର ଫଳ ଏପରି ହେଲା ଯେ, ପ୍ରାୟ ଏକ ବର୍ଷ ମଧ୍ୟରେ କନିକା ଇଲକାରେ ଅବସ୍ଥା ବଦଳିଗଲା । ଶେଷରେ ମେଲିଆମାନଙ୍କ ବାହାନା ଉଠିଯାଇ ରାଜକର୍ମଚାରୀ ଓ ରାଜପକ୍ଷ ଲୋକେ ବର୍ଜିତ ହୋଇଗଲେ । ଚନ୍ଦ୍ରଧର ନିଜେ ମଧ୍ୟ ଅଗାଧ ପରିଶ୍ରମ କରି ଲୋକଙ୍କ ସେବା କରି ନିଜର ପ୍ରତିପତ୍ତି ଅତିଶୀଘ୍ର ବଢ଼ାଇଲେ । ଏହି ସମୟରେ ପ୍ରଜାଙ୍କ ଦାବୀ ସ୍ୱୀକାର କରି ସରକାର ନିଜ ତରଫରୁ ବନ୍ଦୋବସ୍ତ କରାଇଲେ । ରାଜାଙ୍କ ପ୍ରତି ଭୟ ନାହିଁ । ଏଣୁ ପ୍ରଜାମାନେ ବନ୍ଦୋବସ୍ତରେ ନିଜ ସ୍ୱତ୍ୱ କାଏମ୍ ରଖିବାକୁ ସମର୍ଥ ହେଲେ ଓ ରାଜାଙ୍କ କରବୃଦ୍ଧି ଦାବୀ ଗୃହୀତ ହେଲା ନାହିଁ । ଏ ବନ୍ଦୋବସ୍ତରେ ପ୍ରଜାମାନଙ୍କ ଦାବୀ ଗୃହୀତ ହେବା ଫଳରେ ପ୍ରଜାମାନେ ସମ୍ପୂର୍ଣ୍ଣ ଜିଣିଗଲେ ବୋଲି ଭାବିଲେ । ନିଜର ଦାବୀକୁ ନିର୍ଭୟରେ ଓ ଅବାଧରେ ଉପସ୍ଥାପିତ କରିବାର ସୁବିଧା ମୁଁ ନାନା ସୂତ୍ରରେ କରାଇ ଦେଇଥିଲି । ଗୋଟାଏ ସମୟ ଆସିଲା, ଯେଉଁଥିରେ କନିକାରାଜା ପ୍ରଜାମାନଙ୍କ ସହିତ ମିଳାମିଶା କରିବା ପାଇଁ ରାଜି ହୋଇ-ଯାଇଥିଲେ । ଜଣେ କର୍ମୀଙ୍କୁ ରାଜକର୍ମଚାରୀ ଭୀଷଣ ମାଡ଼ ଦେବା ଫଳରେ ସେ ବିଷୟରେ ଆନ୍ଦୋଳନ ହୋଇ କଥା ଏଣ୍ଡ୍ରୁଜ ସାହେବଙ୍କ ପର୍ଯ୍ୟନ୍ତ ଗଲା । ଏଣେ ପ୍ରଜାମାନଙ୍କ ଖୁବ୍ ଦମ୍ଭ ଥାଏ, ପ୍ରବଳ ଜନମତ ଆଗରେ ଅତ୍ୟାଚାର ମୁଣ୍ଡ ନୁଆଁଇବା ପାଇଁ ବସିଥିଲା । ଜିଲ୍ଲା ମାଜିଷ୍ଟ୍ରେଟ ଏଥିର ବନ୍ଦୋବସ୍ତ କରିଥିଲେ । ପ୍ରଜାଙ୍କ ତରଫରୁ ପଣ୍ଡିତ ଗୋପବନ୍ଧୁ ପ୍ରତିନିଧି ହୋଇ ରାଜାଙ୍କ ପାଖକୁ ଯାଇଥିଲେ ।

ଉତ୍କଳ ସମ୍ମିଳନୀ ଦଳରୁ ସେ ଦୁଇଜଣ ପରସ୍ପର ବନ୍ଧୁ; ମାତ୍ର ଉଭୟେ କୌଣସି ସୀମାରେ ପହଞ୍ଚି ପାରିଲେ ନାହିଁ। ତା'ର କାରଣ ପ୍ରଜାମାନଙ୍କ ତରଫରୁ କେତେକ ସର୍ତ୍ତ ଦିଆଯାଇଥିଲା, ଯାହା ରାଜା ଗ୍ରହଣ କଲେ ନାହିଁ। ବର୍ତ୍ତମାନ ମୁଁ ଭାବି ଦେଖୁଛି, ସେପରି ସର୍ତ୍ତ ନ ଦେଇଥିଲେ ମଧ୍ୟ ହୋଇଥାନ୍ତା। ପ୍ରଜାଙ୍କ ସ୍ୱତ୍ୱ ବଜାୟ ରଖି ମିଳାମିଶା ହୋଇଯାଇଥିଲେ ହୋଇଥାନ୍ତା; ମାତ୍ର ତାହା ହୋଇପାରିଲା ନାହିଁ। ଧୀରେ ଧୀରେ ସଂଘର୍ଷ ବଢ଼ିଲା ଓ ମୋର ଯୋଗୁଁ ସବୁ ହେଉଛି ଭାବି କନିକା ରାଜାଙ୍କର ମୋ ଉପରେ ଅତ୍ୟଧିକ ଆକ୍ରୋଶ ବଢ଼ିଲା। ଅନ୍ୟ କେତେକ ଜମିଦାର ମଧ୍ୟ ମୋ ପ୍ରତି ବିରକ୍ତ ଥାଆନ୍ତି। ଏମାନଙ୍କୁ କନିକା ରାଜା ଏକଜୁଟ କରାଇଲେ। ଜୋନ୍‌ଷ୍ଟନ୍ ସାହେବଙ୍କୁ ଓ ମୋତେ ଏକ ବନ୍ଧନୀ ଭିତରେ ରଖି ଏ ଜମିଦାର ଦଳ କାର୍ଯ୍ୟ ଆରମ୍ଭ କଲେ।

ଇତିମଧ୍ୟରେ ଭାରତୀୟ ରାଜନୀତି କ୍ଷେତ୍ରରେ ପରିବର୍ତ୍ତନ ଆସି ଯାଇଥାଏ। ମହାତ୍ମା ଗାନ୍ଧୀ ଅସୁସ୍ଥତା କାରଣରୁ ଜେଲରୁ ମୁକ୍ତ କରା ହୋଇଥାନ୍ତି। ତାଙ୍କ ପରାମର୍ଶ ଅନୁସାରେ କଂଗ୍ରେସ ବ୍ୟବସ୍ଥାସଭାର କାର୍ଯ୍ୟକ୍ରମ ଗ୍ରହଣ କରିନେଲା; ମାତ୍ର ସେ ନିଜେ ସେଥିରେ ବିଶ୍ୱାସୀ ନ ଥିବାରୁ ଗଠନମୂଳକ କାମକୁ ଆଦର ରହିଲେ। ଆମ ଓଡ଼ିଶାରେ ଏକ ସମସ୍ୟା ଦେଖାଦେଲା। କଂଗ୍ରେସ କାର୍ଯ୍ୟକ୍ରମକୁ ସଫଳତାର ସହିତ ନ ଚଳାଇ ପାରିଲେ ଓଡ଼ିଶାରେ ରାଜନୀତି ବୋଲନ୍ତେ କିଛି ରହିବ ନାହିଁ, ଏପରି ଅନେକ ମନେ କଲେ। ପଣ୍ଡିତ ଗୋପବନ୍ଧୁ ଜେଲରୁ ଖଲାସ ହୋଇ ଆସିଲେଣି। ତାଙ୍କର ମଧ୍ୟ ବ୍ୟବସ୍ଥାସଭା କାର୍ଯ୍ୟକ୍ରମ ସପକ୍ଷରେ ମତ। ଏହିସବୁ କାରଣରୁ ଓଡ଼ିଶାର ପ୍ରାୟ ସମସ୍ତ କଂଗ୍ରେସ ଲୋକ ବ୍ୟବସ୍ଥା ସଭା କାର୍ଯ୍ୟକ୍ରମରେ ଯୋଗ ଦେଲେ। ସେତେବେଳେ ମୁଁ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଥାଏଁ। ବାସ୍ତବିକ ସେତେବେଳେ ଜିଲ୍ଲା ବୋର୍ଡ଼ କାମରେ ମୁଁ ଏପରି ବ୍ୟାପୃତ ଓ ନିବଦ୍ଧ ଥାଏଁ ଯେ, ମୋତେ ଅନ୍ୟ କୌଣସି କାମ କରିବାକୁ ବେଳ ନ ଥାଏ। ଆଉ ମଧ୍ୟ ମୋ ମନ ଅନ୍ୟ କେଉଁଥିରେ ଲଗୁ ନ ଥାଏ। କଂଗ୍ରେସ ଅନୁଷ୍ଠାନ ସହିତ ଖୁବ୍ ଘନିଷ୍ଠ ସମ୍ପର୍କ ଥିଲେ ମଧ୍ୟ ସେଥିପାଇଁ ସମୟ ଆଦୌ ଦେଇ ପାରୁ ନ ଥାଏଁ।

ଏହି ସମୟରେ ମଧୁବାବୁ ଅବସ୍ଥାଚକ୍ରରେ ପଡ଼ି ଆମ୍ଭମାନଙ୍କ ସାହାଯ୍ୟ ତାଙ୍କ ଉତ୍କଳ ଟେନେରି ପାଇଁ ଲୋଡ଼ୁଥାନ୍ତି। ସେ ସେଥିପାଇଁ ଗାନ୍ଧିଜୀଙ୍କ ସହିତ ସମ୍ପର୍କରେ ଆସିଥାନ୍ତି। କଟକର ପ୍ରାଦେଶିକ ସମ୍ମିଳନୀ, ଯେଉଁଥିରେ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ସଭାପତି ହୋଇଥିଲେ, ସେଥିରେ ମଧୁବାବୁଙ୍କୁ ମୁଁ କଂଗ୍ରେସ ମେମ୍ବର ହେବାପାଇଁ କହିବାରୁ ସେ ରାଜି ହୋଇ ଦସ୍ତଖତ କଲେ। ମୁଁ ଭାବୁଥାଏ, ମଧୁବାବୁଙ୍କୁ କଂଗ୍ରେସ ତରଫରୁ କେନ୍ଦ୍ର ବ୍ୟବସ୍ଥାସଭାକୁ ପଠାହେଲେ ଭଲ ହେବ। ଆଉ ମଧ୍ୟ ମଧୁବାବୁଙ୍କ ଦ୍ୱାରା ସ୍ଥାପିତ ଉତ୍କଳ ସମ୍ମିଳନୀ ଚକ୍ରଧରପୁର ଅଧିବେଶନଠାରୁ

ଶେଷ ପାଇଯାଇଥାଏ । ପୁଣି ଉତ୍କଳ ପ୍ରାଦେଶିକ ସମ୍ମିଳନୀ ବୋଲି ଏକ ନୂଆ ଅନୁଷ୍ଠାନ କଟକରେ ଆରମ୍ଭ ହୋଇ ଯାଇଥାଏ । ମୁଁ ପ୍ରସ୍ତାବ କରିଥିଲି ଯେ, ଯେଉଁ ସମ୍ମିଳନୀ ସବୁ ହେଉଛି, ତାକୁ ଉତ୍କଳ ସମ୍ମିଳନୀର ସଂଖ୍ୟା ହିସାବରେ ଗଣା ହେଉ, ତଦ୍ଦ୍ୱାରା ଓଡ଼ିଶାର ଇତିହାସ ଅକ୍ଷୁଣ୍ଣ ରହିବ ଓ ପୁରାତନ ଅନୁଷ୍ଠାନର ମହତ୍ତ୍ୱ ବଢ଼ିବ । କେବଳ କଟକ ପ୍ରାଦେଶିକ ସମ୍ମିଳନୀକୁ ପ୍ରଥମ ନ କହି ଚକ୍ରଧରପୁର ଅଧିବେଶନର ଯେଉଁ ସଂଖ୍ୟା ଥିଲା, ତା'ପର ସଂଖ୍ୟାରୁ ବୋଲି ଗଣାହେଉ । ମୋର ଯୁକ୍ତି ଥିଲା ଯେ, କଂଗ୍ରେସ ଯେପରି ପ୍ରଥମେ ଆବେଦନ ନିବେଦନରୁ ଆସି ଅସହଯୋଗରେ ପହଞ୍ଚିଛି—ସେହିପରି ଉତ୍କଳ ସମ୍ମିଳନୀ କେଉଁଠୁ ଆସି କେଉଁଠି ପହଞ୍ଚିଛି, ତାହା ସାଧାରଣଙ୍କ ଆଖିରେ ରହିବା ଉଚିତ । ମାତ୍ର ଏ ପ୍ରସ୍ତାବ, ଯେଉଁଥିରେ କୌଣସି ପ୍ରକାର ନୀତିର ପ୍ରଶ୍ନ ନାହିଁ, କାର୍ଯ୍ୟକ୍ରମର ପ୍ରଶ୍ନ ନାହିଁ, ତାହା ଏପରି ଭାବରେ ରଦ୍ଦ କରି ଦିଆ ହେଲା ଯେ, ମୋର ସହକର୍ମୀମାନଙ୍କ ସହିତ ଗଭୀର ମତଭେଦ ହେଲା । ସେତେବେଳେ ମୁଁ ଚାହୁଁଥିଲି ଜଗନ୍ନାଥ ଦାସଙ୍କୁ ଜମିଦାରୀ ନିର୍ବାଚନ ମଣ୍ଡଳୀରୁ କନିକା ରାଜାଙ୍କ ବିରୁଦ୍ଧରେ ଛିଡ଼ା କରାଇବା ପାଇଁ । ଜଗନ୍ନାଥବାବୁ ମୋ ମତ ନେଇ ପ୍ରଚାର କାର୍ଯ୍ୟ ଆରମ୍ଭ କଲେ; ମାତ୍ର ପ୍ରାଦେଶିକ କଂଗ୍ରେସ କମିଟି ତାହା ମଞ୍ଜୁର କଲେ ନାହିଁ । ପରେ ଜଗନ୍ନାଥବାବୁ ଯାଇ କନିକା ରାଜା ଦଳର ସମ୍ପାଦକ ହେଲେ । ଏହିପରି ଅନେକ କାରଣରୁ ସହକର୍ମୀମାନଙ୍କ ସହିତ ମତଭେଦ ହେଲା । ମୁଁ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ପଦରୁ ଇସ୍ତଫା ଦେଲି । ମୋ ପରେ ଶ୍ରୀ ଭଗୀରଥି ମହାପାତ୍ର ସଭାପତି ହେଲେ । ସେ ସେତେବେଳକାର ନିର୍ବାଚନ କାର୍ଯ୍ୟ ଦକ୍ଷତାର ସହ ପରିଚାଳନା କରିଥିଲେ । ଏହି ସମୟରେ ପୁରୀ ଜିଲ୍ଲା ସମ୍ମିଳନୀ ନିମାପଡ଼ା ଅଧିବେଶନରେ ମୁଁ ସଭାପତି ହୋଇଥିଲି । ସେଠାକୁ ପଣ୍ଡିତ ଗୋପବନ୍ଧୁ ଓ ପଣ୍ଡିତ ନୀଳକଣ୍ଠ ଯାଇଥିଲେ । ସେଇଠି ମୁଁ ଜାଣିଲି ଯେ, ପଣ୍ଡିତ ନୀଳକଣ୍ଠ ପଣ୍ଡିତ ଗୋପବନ୍ଧୁଙ୍କ ବିରୁଦ୍ଧରେ ଭୀଷଣ ପ୍ରଚାର ଚଳାଇଛନ୍ତି ଓ ସେଥିପାଇଁ ଗୋପବନ୍ଧୁ ଅତି ମ୍ରିୟମାଣ ।

ବ୍ୟବସ୍ଥା ସଭାର କାର୍ଯ୍ୟକ୍ରମ ଅନୁଯାରେ ମୋତେ ଭଦ୍ରଖ ନିର୍ବାଚନମଣ୍ଡଳୀରୁ ବିହାର ଓଡ଼ିଶା ଲେଜି ସଭାକୁ ଛିଡ଼ା ହେବାପାଇଁ ମନୋନୀତ କରାହେଲା । ସେତେବେଳେ ଭଦ୍ରଖରେ ଭଗବତବାବୁଙ୍କ ପ୍ରତିପତ୍ତି ଖୁବ୍ ବେଶୀ ଓ ମୁଁ ଛିଡ଼ା ହେଲେ ତାଙ୍କୁ ହରାଇ ପାରିବି ବୋଲି ସମସ୍ତେ ଭାବିବାରୁ ମୋତେ ପ୍ରାର୍ଥୀରୂପେ ମନୋନୟନ କଲେ । ବାଲେଶ୍ୱର ନିର୍ବାଚନ ମଣ୍ଡଳୀ ପାଇଁ ଶ୍ରୀ ନନ୍ଦକିଶୋର ଦାସଙ୍କୁ ମନୋନୀତ କରାଯାଇଥିଲା । ସେତେବେଳକୁ ସେ ସତ୍ୟବାଦୀ ବିଦ୍ୟାଳୟରୁ ଗ୍ରାଡ଼ ଆସିଲେଣି । ମାତ୍ର ସେ ଆଇନ ଅନୁସାରେ ଭୋଟ୍‌ଦାତା ନ ଥିଲେ । ମୁଁ ଜିଲ୍ଲା ବୋର୍ଡ଼ ଚେୟାରମ୍ୟାନ ହିସାବରେ ଯୋରେ ଇଲେକସନ୍ କମିଟିକୁ ପ୍ରଭାବିତ କରି ନନ୍ଦବାବୁଙ୍କ

ନାମ ଭୋଟଦାତା ତାଲିକାରେ ଲେଖାଇ ଦେଇଥିଲି । ମୋର ମନେହୁଏ, ଏହି ଏକ ମାତ୍ର ଘଟଣା ଯେଉଁଥିରେ ମୋର ପଦକୁ ଦଳଗତ ସ୍ୱାର୍ଥରେ ଅନ୍ୟାୟଭାବରେ ବ୍ୟବହାର କରିଛି ।

ଉକ୍ତ ନିର୍ବାଚନରେ ମୁଁ ଯଶସ୍ୱୀ ହେଲି; ମାତ୍ର ଏତିକି ଉତ୍ତେଜନା ଏହା ସୃଷ୍ଟି କରିଦେଲା ଯେ, ମୋ ବିରୁଦ୍ଧରେ ଥିବା ଜମିଦାର ଦଳ ତା'ର ପୂର୍ଣ୍ଣ ସୁବିଧା ଉଠାଇଲେ । ଲାଟ୍‌ସଭା ମେମ୍ବର ହେବାପାଇଁ ମୁଁ ବିହାର ଓଡ଼ିଶା ବ୍ୟବସ୍ଥା ସଭାର ସ୍ୱରାଜ୍ୟ ଦଳର ହୁଇପ୍ ନିର୍ବାଚିତ ହୋଇଥିଲି । ମାତ୍ର ଏଣେ ମୋ ବିରୁଦ୍ଧରେ ନିର୍ବାଚନ ମୋକଦ୍ଦମା ଦାଏର ହୋଇଥିଲା । ପ୍ରାୟ ବର୍ଷେ ଖଣ୍ଡେ ମୁଁ ଲାଟସଭାରେ ରହିଛି, ସେହି ସମୟ ଭିତରେ କନିକାରେ ଘଟୁଥିବା ଅତ୍ୟାଗ୍ଭର ଓ କନିକା ରାଜାଙ୍କୁ ସମର୍ଥନ କରୁଥିବା ହାକିମମାନଙ୍କ ବିରୁଦ୍ଧରେ ଆନ୍ଦୋଳନ କରିଛି ।

ବାଲେଶ୍ୱର ଜିଲ୍ଲାର କେତେକ ଅଞ୍ଚଳରେ ବନ୍ୟା ହୋଇ ଫସଲ ନଷ୍ଟ ହୋଇଥିବାରୁ ଜିଲ୍ଲାବୋର୍ଡ଼ ତରଫରୁ ମୁଁ ବନ୍ୟା ସାହାଯ୍ୟର ବ୍ୟବସ୍ଥା କରିଥିଲି ଓ ଲାଟ ସଭାରେ ଆନ୍ଦୋଳନ କରି ବର୍ଷକ ପାଇଁ ଲୁଣମରା ଗ୍ରହଣ କରାଇଥିଲି । ଏହି ସମୟରେ ଲାଟ ମହଲରେ ଜୋନ୍‌ଷ୍ଟନ ସାହେବ ଓ ମୋ ବିରୁଦ୍ଧରେ ଘୋଷଣ ପ୍ରଗ୍ଭର ଗ୍ଭଲିଲା । ମୁଁ ସେତେବେଳେ ଲାଟଙ୍କ ସହିତ ଦେଖାକରି ତାହା ଜାଣିପାରିଥିଲି, ମାତ୍ର କ ସୂତ୍ରରେ କପରି କଣ ହେଉଛି, ମୁଁ ଜାଣିବା ପାଇଁ ଯତ୍ନବାନ ହେଲିନାହିଁ । ମୋଟ କଥା ଏହା ପ୍ରଗ୍ଭରିତ ହେଉଥାଏ ଯେ, ମହତାବ ଜଣେ ଅତି ଧୂର୍ତ୍ତ ଲୋକ, ସେ ଜୋନ୍‌ଷ୍ଟନଙ୍କୁ ବେକୁବ୍ ବନାଇ ନିଜ ଉଦ୍ଦେଶ୍ୟ ସାଧନ କରୁଛି—ବାଲେଶ୍ୱର ଜିଲ୍ଲାରେ ଇଂରେଜ ଶାସନ ପରିବର୍ତ୍ତେ କଂଗ୍ରେସ ଶାସନ ଗ୍ଭଲିଛି—ଇତ୍ୟାଦି ଇତ୍ୟାଦି ।

ସଂଯୋଗବଶତଃ ସେହି ସମୟରେ ସମୁଦ୍ର ଭିତରେ ଖଣ୍ଡେ ଚଡ଼ା ପାଇଁ ଆଳି ଓ କନିକା ରାଜାଙ୍କର ବିବାଦ ଉପସ୍ଥିତ ହେଲା । ବାସ୍ତବିକ ହେଉଛି ଏହି ଯେ, ସେ ଚଡ଼ା ପ୍ରକୃତରେ ସରକାରଙ୍କର । ମାତ୍ର କନିକା ରାଜା ତତ୍କାଳୀନ ଲାଟ ସାର୍ ହେନେରି ହୁଇଲରଙ୍କ ନାମରେ ସେ ଚଡ଼ାକୁ ହୁଇଲର ଆଇଲାଣ୍ଡ ନାମ ଦେଇ ନିଜେ ଦଖଲ କରିଯାଇଥିଲେ । ଜୋନ୍‌ଷ୍ଟନ୍ କଲେକ୍ଟର ହିସାବରେ ଏହା ଧରିଲେ ଓ ସେ ଚଡ଼ାକୁ ସରକାରଙ୍କର ବୋଲି ଘୋଷଣା କରି ଦଖଲ ପାଇଁ ଆଳି ରାଜାଙ୍କୁ ପଟ୍ଟା କରିଦେଲେ । ଆଳି ଓ କନିକାର ଚିରବିବାଦ । ଏଥିରେ ଜଣେ କଲେକ୍ଟର ଅଂଶ ନେବା ସମୀଚୀନ ହେଲନାହିଁ । ଏହାକୁ କପରି ଭାବରେ ନେଇ ଲାଟ ମହଲରେ ପହଞ୍ଚାଇଲେ, ମୋତେ ଜଣାନାହିଁ । ମାତ୍ର ଉପରୁ ହୁକୁମ ହେଲା ଯେ, ଜୋନ୍‌ଷ୍ଟନ୍ ଓ ମୁଁ କପରି ଜବଦ୍ ହେବୁଁ ।

କୋନ୍‌ଷ୍ଟନ୍ ସାହେବଙ୍କ ନାମରେ ଅନେକଗୁଡ଼ିଏ ଅଭିଯୋଗ କରି ପ୍ରାଦେଶିକ ସରକାର ତାଙ୍କୁ ଅସମ୍ମାନର ସହିତ ଆଉ ଗୋଟିଏ ଜିଲ୍ଲାକୁ ସହକାରୀ ଜିଲ୍ଲା ମାଜିଷ୍ଟ୍ରେଟ କରି ବଦଳି କରିବାର ଆଦେଶ ଦେଲେ । ଏଣେ ଠିକ୍ ସେହି ସମୟରେ ଜିଲ୍ଲାବୋର୍ଡ଼ ନିର୍ବାଚନ ପାଇଁ ମନୋନୟନ ପତ୍ର ଦାଖଲ ହୋଇଥାଏ । ମୋର ଓ ଅନ୍ୟ କେତେଜଣଙ୍କର ମନୋନୟନ ପତ୍ର ବିନା କାରଣରେ ଖାରଜ କରି ଦିଆଗଲା । ଜୋନ୍‌ଷ୍ଟନ୍ ସାହେବ ସରକାରୀ ଆଦେଶ ବିରୋଧରେ ବଳିତ ଭାରତ ମନ୍ତ୍ରୀଙ୍କ ଠାରେ ଅପିଲ କରି ଛୁଟି ନେଇ ସେହି ବାଲେଶ୍ୱରରେ ଥାଆନ୍ତି । ମୋର ନିଜର ମନୋନୟନ ପତ୍ର ଖାରଜ ହୋଇଗଲେ ମଧ୍ୟ ନିର୍ବାଚନରେ ଅଧିକସଂଖ୍ୟକ କଂଗ୍ରେସ ଲୋକ ନିର୍ବାଚିତ ହେଲେ । ସେତେବେଳେ କନିକା ରାଜାଙ୍କ ନେତୃତ୍ୱରେ ଗୋଟିଏ ଦଳ ଲାଗିପଡ଼ି କଂଗ୍ରେସକୁ ମୂଳପୋଛ କରିବାପାଇଁ ପ୍ରାଣପଣେ ଚେଷ୍ଟା କରୁଥାନ୍ତି । ଜୋନ୍‌ଷ୍ଟନ୍ ସାହେବଙ୍କ ପଛେ ପଛେ ବାଲେଶ୍ୱରରୁ ଅଧିକାଂଶ ହାକିମ ବଦଳି ହୋଇ ଗଲେ । କାରଣ ସେମାନଙ୍କ ବିରୁଦ୍ଧରେ ଅଭିଯୋଗ ହେଲା ଯେ, ସେମାନେ କଂଗ୍ରେସର ସମର୍ଥକ । ଅର୍ଥ ଓ ପ୍ରତିପତ୍ତି ବଳରେ ନିର୍ବାଚିତ କଂଗ୍ରେସ ଦଳର ଜିଲ୍ଲା-ବୋର୍ଡ଼ ସଭ୍ୟଙ୍କ ଭିତରୁ କେତେକଙ୍କୁ ହାତକରିବା ପାଇଁ ଚେଷ୍ଟାହେଲା । ଏଣେ ଆମ ଦଳକୁ ଠିକ୍ ରଖି କନିକା ଦଳକୁ ଅପଦସ୍ଥ କରିବା ପାଇଁ ଆମେ ଚେଷ୍ଟା କରୁଥାଉଁ । ସେହି ସମୟରେ 'ପ୍ରଜାତନ୍ତ୍ର' ଆମକୁ ଖୁବ୍ ସାହାଯ୍ୟ କରିଛି । ମାତ୍ର ହାକିମଙ୍କ ମହଲରେ କନିକା ଦଳର ଦୁଷ୍କୀର୍ତ୍ତି ପ୍ରଚାର କରିବାପାଇଁ Adventure ବୋଲି ଖଣ୍ଡିଏ ସାପ୍ତାହିକ ଇଂରେଜି ପତ୍ରିକା ବାହାର କଲି । ଲୋକଚକ୍ଷୁରେ କନିକା ଦଳ ଅତି ନିନ୍ଦିତ ହୋଇ ରହିଲେ; ମାତ୍ର ସରକାରୀ କ୍ଷମତାବଳରେ ସେମାନେ ଆମକୁ ଜବଦ୍ କରିବା ପାଇଁ ଚେଷ୍ଟା କଲେ ।

ସେହି ସମୟରେ ୧୯୨୭ ମସିହାରେ ଓଡ଼ିଶାରେ ବିଶେଷତଃ ବାଲେଶ୍ୱର ଜିଲ୍ଲାରେ ପ୍ରବଳ ବନ୍ୟା ହୋଇ ରେଳଲାଇନ୍ ଭାଙ୍ଗି ଯାଇ ବିସ୍ତର କ୍ଷତି ହୋଇଥାଏ । ସେତେବେଳେ ହାକିମମାନେ ରିପୋର୍ଟ କରିଦେଲେ ଯେ, କ୍ଷତିର ପରିମାଣ ବେଶୀ କିଛି ନୁହେଁ, ମାତ୍ର ଭୈରବ, ଅଭିରାମ ନନ୍ଦ, ଉପେନ୍ଦ୍ରନାଥ ପଣ୍ଡା ଓ ମୁଁ ଚାରି ଜଣ ଚାଲି ଚାଲି ସମସ୍ତ ବନ୍ୟା ଅଞ୍ଚଳ ନିଜେ ଦେଖି ତଥ୍ୟ ସଂଗ୍ରହ କରିବାରେ ଲାଗିଲୁ । ଫଟୋଗ୍ରାଫ କ୍ୟାମେରା ସାହାଯ୍ୟରେ ଘର ସବୁ କିପରି ଭାସିଯାଇଥିଏ, ମଣିଷ କିପରି ମରି ଯାଇଥାନ୍ତି ଏ ସବୁ ପ୍ରକାଶ କଲୁଁ । ଏହି ଗସ୍ତରେ ଆମେ ଅନେକ ସ୍ଥାନରେ ପାଣି ପିଇବାକୁ ନ ପାଇ ଗୋରୁ ଛେଳି ମରି ପଡ଼ିଥିବା ପୋଖରୀରୁ ମଧ୍ୟ ପାଣି ପିଇଲୁ । ସଙ୍ଗରେ ଚୂଡ଼ାଚିନି ନେଇଥିଲୁଁ, କେବଳ ସେଇଥିରେ ଚଳୁଥାଉଁ । ଚାରିଆଡ଼େ ଅତି କରୁଣ ଦୃଶ୍ୟ । ଗାଁକୁ ଗାଁ ଭାସିଯାଇଥାଏ । ଗୋରୁ ଗାଈ କେତେ ଯେ ନଷ୍ଟ ହୋଇ ଯାଇଥାନ୍ତି, ତା'ର ସଂଖ୍ୟା ନାହିଁ । ଲୋକେ ସର୍ବସ୍ୱାନ୍ତ ହୋଇ

ହା ହୁତାସ ହେଉଥାଆନ୍ତି, ଆମେ ଲୋକଙ୍କୁ ସାହସ ଦେଲୁ । ନିଜେ ଯାଇ ଯେତେବେଳେ ସେମାନଙ୍କ ପଡ଼ିଯାଇଥିବା ଘରକୁ ଟେକି ଉଠାଇଲୁ, ମରି ପଚି ଯାଇଥିବା ଗୋରୁ ଗାଈଙ୍କୁ ହାତରେ ସଫାକଲୁଁ, ସେତେବେଳେ ମୁଣ୍ଡରେ ହାତ ଦେଇ ବସିଥିବା ଗୃହସ୍ଥର ମନରେ ଟିକିଏ ଦମ୍ଭ ଆସିଲା । ଆମ୍ଭେ ପ୍ରତିଦିନ ଯାହା ଦେଖୁଥାଉଁ, ତାକୁ ଖବର କାଗଜରେ ପ୍ରକାଶିତ କରିବାର ବନ୍ଦୋବସ୍ତ କରୁଥାଉଁ । ଏହି ଗସ୍ତବେଳେ ଅଖୁଆପଦାଠାରେ ପଣ୍ଡିତ ଗୋପବନ୍ଧୁ ଓ ନୀଳକଣ୍ଠ ଦାସଙ୍କୁ ଆମେ ଭେଟିଥିଲୁଁ । ସେମାନେ କଟକ ଜିଲ୍ଲାର ବନ୍ୟା ଅଞ୍ଚଳ ଦେଖି ବାଲେଶ୍ୱର ଜିଲ୍ଲାକୁ ଆସିଥାଆନ୍ତି । ଆମେ ଏପରି ବୁଲୁଥିବାର ଦେଖି ଗୋପବନ୍ଧୁ ବାବୁ ଅତିଶୟ ପ୍ରୀତ ହୋଇଥିଲେ ଓ ଆମକୁ ଉତ୍ସାହ ଦେଇଥିଲେ । ଯେଉଁଦିନ ଗସ୍ତରୁ ଫେରି ଭଦ୍ରଖରେ ପହଞ୍ଚିଲୁ, ସେଦିନ ଏକାଥରକରେ ବାଇଶମାଇଲ୍ ବାଟ ଅତି କାଦୁଅ ରାସ୍ତାରେ ଚାଲିଥିବାରୁ ବିଛଣାରୁ ଉଠିପାରିଲୁଁ ନାହିଁ । ପୁଣି ଡାକ୍ତରୀ ଚିକିତ୍ସା ପରେ ସୁସ୍ଥ ହେଲୁଁ, ମାତ୍ର ବିଶ୍ରାମ ପାଇଁ ବେଳ ନ ଥାଏ ।

ବନ୍ୟା ସାହାଯ୍ୟ ପାଇଁ କଲିକତାର ଅଗରୱାଲ ପଞ୍ଚାୟତ, ମାରୱାଡ଼ି ରିଲିଫ ସୋସାଇଟି, ଗୁଜରାଟି ରିଲିଫ ପାର୍ଟି, ରାମକୃଷ୍ଣ ମିଶନ ଓ ଭାରତ ସେବାଶ୍ରମ ଆସି ଭଦ୍ରଖରେ ପହଞ୍ଚିଲେ । ସମସ୍ତଙ୍କୁ ସ୍ଥାନ ଦେଇ ଓ କର୍ମୀ ଦେଇ ଯେତେଦୂର ପାରୁ ସାହାଯ୍ୟ କଲୁଁ । ଏ ସମସ୍ତ ବେସରକାରୀ ଅନୁଷ୍ଠାନ ମୋହର ପରାମର୍ଶରେ ଚାଲିଥାଏ । ଏଣେ ଆମର ସରକାରଙ୍କ ବିରୋଧରେ ଅଭିଯୋଗ ଚାଲିଥାଏ ଯେ, ସେମାନେ ଏତେ ବଡ ବିପଦରେ ଉଦାସୀନ ହୋଇ ବସିଛନ୍ତି । ଆମ ଦେଖାଦେଖି ସେ ସମୟର କଲେକ୍ଟର ସାହେବ ବୁଲିକି ଅନେକ ଆଡ଼େ ବୁଲିଲେ । ଶେଷରେ ବହୁ ବିବାଦ ପରେ ଆମେ ଯେଉଁ ରିପୋର୍ଟ ଦେଇଥିଲୁଁ, ତାହା ସତ୍ୟ ବୋଲି ପ୍ରମାଣିତ ହେଲା । ମୋର ମନେ ଅଛି, ସେତେବେଳେ ଜଣେ ଉଚ୍ଚପଦସ୍ଥ ହାକିମ ନିଜର ପରାଜୟ ସ୍ୱୀକାର କରି କହିଥିଲେ, ଆମର ଅସୁବିଧା ଯେ ଆମେ ଚାଲିକରି ମୁଢ଼ି ଖାଇ ଗସ୍ତ କରିପାରୁନାହୁଁ, ମାତ୍ର ମହତାବ୍ ସେ ସବୁ ସହଜରେ କରିପାରେ । ସେହି ସମୟରେ ଏଣ୍ଡ୍ରୁଜ୍ ସାହେବ, ରେଭରେଣ୍ଡ ଟକ୍କର, ହୋରେସ ଆଲେକଜାଣ୍ଡାର ଏମାନେ ଓଡ଼ିଶା ଆସିଥିଲେ ଓ ବନ୍ୟା-ସାହାଯ୍ୟରେ ସହାୟତା କରିଥିଲେ । ଏଣ୍ଡ୍ରୁଜ୍ ସାହେବ, କମିଶନର ସାହେବ ଓ ଲକ୍ଷ୍ମୀନାରାୟଣ ସାହୁ ଯେତେବେଳେ ବସି ସରକାରୀ ଓ ବେସରକାରୀ ରିପୋର୍ଟ ମିଳାଇଲେ, ସେତେବେଳେ ଆମର ରିପୋର୍ଟହିଁ ଗୃହୀତ ହୋଇଥିଲା ଓ ସେତେବେଳକାର ହୋମ ମେମ୍ବର ସିଫ୍‌ଟନ୍ ସାହେବ ଆସି ଆମ୍ଭମାନଙ୍କ ସହିତ ବନ୍ୟା ସାହାଯ୍ୟ ବିଷୟରେ ଆଲୋଚନା କରିଥିଲେ । ସେଥିରକି ସରକାରଙ୍କ ତରଫରୁ ଟିକିଏ ଉଦାର ଭାବରେ ବନ୍ୟା ସାହାଯ୍ୟ ଦିଆ ହୋଇଥିଲା । ବନ୍ୟା ସାହାଯ୍ୟ ବାବଦ

ବାଲେଶ୍ୱର ଜିଲ୍ଲା ସବୁ ସଂସ୍ଥାରୁ ମୋଟ ପ୍ରାୟ ୯ ଲକ୍ଷ ଟଙ୍କା ପାଇଥିଲା । ଯେତେ କ୍ଷତି ହୋଇଥିଲା ତା ତୁଳନାରେ ଏ କିଛି ନୁହେଁ । ମାତ୍ର ଏ ସାହାଯ୍ୟଦ୍ୱାରା ଲୋକେ ଟିକିଏ ନିଶ୍ୱାସ ମାରିଲେ ।

ଏହି ବନ୍ୟା ସାହାଯ୍ୟ କରିବା ନାମରେ କନିକା ଦଳ ନିଜ ଭିତରେ ଟ୩୮,୦୦୦ଙ୍କା ଚାନ୍ଦା ସଂଗ୍ରହ କରି ଏକ ପାଣ୍ଠି ସୃଷ୍ଟି କରିଥିଲେ । ଏଥିରୁ କିଛି ବନ୍ୟା ସାହାଯ୍ୟ କାମରେ ଖରଚ ହୋଇଥିଲା । ବନ୍ୟା ସାହାଯ୍ୟ ଛଡ଼ା ଅନ୍ୟ ଦଳଗତ କାର୍ଯ୍ୟ ମଧ୍ୟ ଏ ପାଣ୍ଠି ସାହାଯ୍ୟରେ ଆସିଛି ।

ପଣ୍ଡିତ ଗୋପବନ୍ଧୁ ଏହି ବନ୍ୟା ପରେ ପରେ ଏକ ବେସରକାରୀ ବନ୍ୟା ତଦନ୍ତ କମିଟି ଗଠନ କରି, ପ୍ରଶ୍ନାବଳୀ ଗ୍ରୁପ୍ ଗ୍ରିଫିଥଙ୍କ ପଠାଇ ଏକ ଆନ୍ଦୋଳନ ସୃଷ୍ଟି କଲେ । ଏଣ୍ଡ୍ରୁଜ୍ ସାହେବ ମଧ୍ୟ ବଡ଼ଲାଟଙ୍କଠାରେ ଓଡ଼ିଶାର ଦୁରବସ୍ଥା ଜଣାଇଲେ । ଫଳରେ ଭାରତ ସରକାରଙ୍କ ନିଯୁକ୍ତିରେ ଏକ ତଦନ୍ତ କମିଟି ଗଠିତ ହେଲା । ସେ କମିଟି ଗ୍ରିଫିଥଙ୍କ ତୁଲ୍ ତଦନ୍ତ କରି ଯେଉଁ ରିପୋର୍ଟ ଦେଇଥିଲେ, ତାହା ସାଧାରଣ ଭାବରେ ସନ୍ତୋଷଜନକ ହୋଇଥିଲା, ମାତ୍ର ସେଥିରେ ଅନେକ ପ୍ରସ୍ତାବ କନିକା ରାଜା ପ୍ରଭୃତି ନ୍ୟସ୍ତସ୍ୱାର୍ଥବିଶିଷ୍ଟ ଲୋକଙ୍କ ସ୍ୱାର୍ଥ ବିରୁଦ୍ଧରେ ଯାଉଥିବାରୁ ତାହା କାର୍ଯ୍ୟରେ ପରିଣତ ହେଲା ନାହିଁ ।

ଏହି ସମୟରେ ଅଫିମ ବିରୁଦ୍ଧରେ ଆନ୍ଦୋଳନ କରିବା ପାଇଁ ଏଣ୍ଡ୍ରୁଜ୍ ସାହେବ ବାଲେଶ୍ୱର ଆସିଥିଲେ । ସେ ଆସି ଆମ ସ୍ୱରାଜ ମନ୍ଦିରରେ ଥିଲେ । ଏତେ ବଡ଼ ଲୋକଙ୍କୁ ଆମେ ଅତିଥି ହିସାବରେ ପାଇ ଧନ୍ୟ ହୋଇଥିଲୁ । ସେ ୩।୪ ଦିନ ଆମ ସାଙ୍ଗରେ ଥିଲେ । ସେତେବେଳେ ଲିଗ୍ ଅଫ୍ ନେଶନ୍ ଅଫିମ ପ୍ରଚାର ବନ୍ଦ କରିବା ପାଇଁ ବ୍ୟବସ୍ଥା କରୁଥିଲେ ମଧ୍ୟ ଭାରତରେ ଇଂରେଜ ସରକାର କପରି ତା'ର ପ୍ରଚାର ବୃଦ୍ଧିରେ ଲାଗିଛନ୍ତି, ଏହା ଏଣ୍ଡ୍ରୁଜ୍ ସାହେବ ଅନୁସନ୍ଧାନ କରି ଆମେରିକା ପ୍ରଭୃତି ଦେଶର ଖବରକାଗଜରେ ପ୍ରକାଶ କରିଥିଲେ । ଏହି ସମୟରେ ସେ ସମୟର ହାଉସ୍ ଅଫ୍ କମନ୍ସର ଜଣେକ ସଭ୍ୟ ହୋରେସ୍ ଅଲେକ୍‌ଜାଣ୍ଡର ମଧ୍ୟ ବାଲେଶ୍ୱର ଆସିଥିଲେ ।

ବନ୍ୟା ସମସ୍ୟା ଓ ଅଫିମ ସମସ୍ୟା ବାଦ୍ ଆମେ ଯେ ଅନ୍ୟ ଏକ କନିକା ସମସ୍ୟାରେ ପଡ଼ିଥାଉଁ, ତା ମଧ୍ୟ ଏ ଆଗନ୍ତୁକମାନଙ୍କ ସହିତ ମୋର ଆଲୋଚନା ହେଉଥାଏ । ହୋରେସ୍ ଆଲେକ୍‌ଜାଣ୍ଡରଙ୍କୁ କନିକା ଇଲାକାକୁ ନେଇ ଯାଇଥିଲି । ସେ ତାଙ୍କର **Indian Ferment** ରେ ସରକାରୀ ହାକିମଙ୍କ ଉପରେ ପ୍ରଭାବ ପକାଇ କପରି ସାଧାରଣଙ୍କୁ ଚପାଇଛନ୍ତି, ସେ ବିଷୟ ଉଲ୍ଲେଖ କରିଛନ୍ତି ।

ଏହାର କିଛିଦିନ ପରେ ମହାତ୍ମାଗାନ୍ଧୀ ମଧ୍ୟ ଓଡ଼ିଶା ଆସିଲେ । ସେ ଓଡ଼ିଶାର କୌଣସି ଗ୍ରାମରେ କିଛିଦିନ ରହିବାର ସ୍ଥିର କଲେ । ସେ ଭାର ମୋ ଉପରେ ପଡ଼ିଲା । ମୁଁ କନିକା ଇଲାକା ପାଖ ଗୁରୁବାଟିଆ ଗ୍ରାମରେ ତାଙ୍କର କିଛିଦିନ ରହିବାର ବନ୍ଦୋବସ୍ତ କଲି । ଏ ବନ୍ଦୋବସ୍ତ କିଛି ସାମାନ୍ୟ ବିଷୟ ନ ଥିଲା, ମୋର ସହକର୍ମୀମାନେ ଯଥାସାଧ୍ୟ ଚେଷ୍ଟା କରି ନ ଥିଲେ ସେଠା ବନ୍ଦୋବସ୍ତ ସଫଳ ହୋଇ ପାରି ନ ଥାନ୍ତା । ସେଇଠାରେ ଗାନ୍ଧିଜୀଙ୍କ ସହିତ ନିର୍ଜନରେ କଥାବାର୍ତ୍ତା କରିବାର ସୁବିଧା ମିଳିଥିଲା । ଗାନ୍ଧିଜୀଙ୍କୁ କନିକା ଇଲାକା ଭିତରକୁ ଯିବାପାଇଁ ଅନୁରୋଧ କରିଥିଲି । ଗାନ୍ଧିଜୀ ସେତେବେଳେ ଖଦୀ କାର୍ଯ୍ୟରେ ନିଯୁକ୍ତ; ଏଣୁ କନିକା ବିଷୟରେ ମନ ଦେବେ କି ନାଁ, ଏ ବିଷୟ କାକା କାଲେଲକାର ଉଠାଇଥିଲେ । ଗାନ୍ଧିଜୀ ଉତ୍ତରରେ କହିଥିଲେ, ଖଦୀ କାମପାଇଁ ମୁଁ ଯୁଆଡ଼େ ଯିବି ସେଠି ଯାହା କିଛି ସମସ୍ୟା ମୋତେ ବୁଝିବାକୁ ହେବ, ଅନ୍ୟଥା ଖଦି କାମର ମହତ୍ତ୍ୱ ନାହିଁ । ଗାନ୍ଧିଜୀ କନିକା ବିଷୟ ବୁଝିବାପାଇଁ ରାଜି ହୋଇ କନିକା ଇଲାକା ଭିତରକୁ ଯାଇଥିଲେ । ଆଜିପର୍ଯ୍ୟନ୍ତ କନିକା ଆନ୍ଦୋଳନ ଯେପରିଭାବରେ କଂଗ୍ରେସରୁ ଅଲଗା ହୋଇଚାଲିଛି, ତାହା ସେ ସମର୍ଥନ କରିଥିଲେ ।

ସେତେବେଳେ ଗାନ୍ଧିଜୀଙ୍କ ସହିତ ଯେତେ କଥାବାର୍ତ୍ତା ହୋଇଥିଲା, ତନ୍ମଧ୍ୟରୁ ଦୁଇଟି ମୋର ମନେ ଅଛି ଓ ତାହା ମୋର ସବୁ କାମରେ ପଥପ୍ରଦର୍ଶକ ହୋଇଛି । ମୁଁ ଗାନ୍ଧିଜୀଙ୍କୁ ଓଡ଼ିଶା ରାଜନୀତି ସମ୍ବନ୍ଧରେ ସମସ୍ତ ଖବର ଦେଇଥିଲି । ସେ ସବୁ ଶୁଣି କହିଲେ, ଦୁନିଆରେ ନ୍ୟାୟ ସବୁବେଳେ ଯଶସ୍ୱୀ ହୁଏ । ଧୂର୍ତ୍ତତା ମଧ୍ୟ କିଛିଦୂର ପର୍ଯ୍ୟନ୍ତ ଯଶସ୍ୱୀ ହୁଏ, ମାତ୍ର ତୁମ ଓଡ଼ିଶାରେ ନ୍ୟାୟ ନାହିଁ କି ଧୂର୍ତ୍ତତା ନାହିଁ, ଏଥିରେ ଯଶ କେଉଁଠୁ ଆସିବ ? କର୍ମକୁଶଳତା ବଡ଼ ଅଭାବ ତୁମର ଏଠି । କର୍ମତତ୍ପରତା ଆବଶ୍ୟକ । ଆଉଥରେ ମୁଁ ପଚାରିଲି, "ମହାତ୍ମାଜୀ, ଅହିଂସାର ପ୍ରଚାର ଓଡ଼ିଶାରେ କ୍ଷତି କରୁଛି । ଓଡ଼ିଶା ଏକ ବୀରର ପ୍ରଦେଶ ଥିଲା । ପ୍ରତାପରୁଦ୍ରଙ୍କ ସମୟରେ ଚୈତନ୍ୟ ଦେବଙ୍କ ବୈଷ୍ଣବ ଧର୍ମରେ ଓଡ଼ିଶା ନିର୍ବୀର୍ଯ୍ୟ ହୋଇଗଲା । ପୁଣି ଆପଣଙ୍କର ଅହିଂସା ପ୍ରଚାର ଓଡ଼ିଶାକୁ ଅତି ହୀନ କରି ପକାଉଛି ।·ଆପଣ ସତ୍ତ୍ୱଗୁଣ ପ୍ରଚାର କରୁଛନ୍ତି, ମାତ୍ର ସତ୍ତ୍ୱଗୁଣ ଓ ତମୋଗୁଣ ଉପରେ ଦେଖିବାକୁ ଏକା ପରି । ତେଣୁ ତମୋଗୁଣରେ ବୁଡ଼ି ରହି ଆମେ ଭାବୁଛୁ ଯେ ଆମେ ସତ୍ତ୍ୱ ଗୁଣର ଲୋକ । ପ୍ରଥମେ ଏ ତମୋଗୁଣରୁ ଉଦ୍ଧାର ପାଇବାପାଇଁ ବିବେକାନନ୍ଦଙ୍କ ଭିତରେ ରଜୋଗୁଣର ତାଣ୍ଡବ ଉଦ୍ଦୀପନା ଆବଶ୍ୟକ ନୁହେଁ କି ? ଆମ ଏଠି ଲୋକେ ନିତାନ୍ତ ଅସଭ୍ୟ ଭାଷାରେ ଗାଳି ଶୁଣି, ମାଡ଼ ଖାଇ ମଧ୍ୟ କୌଣସି ପ୍ରକାର ପ୍ରତିରୋଧର କଳ୍ପନା ସୁଦ୍ଧା କରୁନାହାନ୍ତି । ସେଠି ମାଡ଼ ଗାଳି ଖାଇ ସୁଦ୍ଧା ସହିଯାଅ ବୋଲି ପ୍ରଚାର ନିରର୍ଥକ ଓ ତମୋଗୁଣର ସହାୟକ ନୁହେଁ କି ?"

ମହାତ୍ମାଜୀ ଏ ବିଷୟକୁ ବୁଝାଇ କହିଥିଲେ—"ମୁଁ ବୁଝୁଛି ତୁମେ ଯା' କହୁଛ । ଅବସ୍ଥା ଅନୁସାରେ କାର୍ଯ୍ୟ କରିବା କର୍ମୀ ଉପରେ ନିର୍ଭର କରେ । ଅହିଂସା

ହେଉଛି ସର୍ବୋକୃଷ୍ଟ ପନ୍ଥା, ମାତ୍ର ଯେଉଁଠି ତୁମେ ଯେପରି କହୁଛ ତମୋଗୁଣର ପ୍ରାଧାନ୍ୟ ସେଠି କର୍ମୀ ଅବସ୍ଥା ଦେଖି ଲୋକଙ୍କୁ ଜାଗ୍ରତ କରିବ । ବେଟିଆରେ ଚମ୍ପାରନ ସତ୍ୟାଗ୍ରହବେଳେ ଲୋକେ ଯେତେବେଳେ ପୋଲିସ୍ ଭୟରେ ପଳାଇ ଆସିଲେ, ମୁଁ ସେତେବେଳେ ଲୋକଙ୍କୁ ତିରସ୍କାର କରିଥିଲି ଓ ପୋଲିସ୍‌ଙ୍କୁ ବରଂ ମାଡ଼ ଦେବା ଉଚିତ ବୋଲି କହିଥିଲି । ମାତ୍ର ମୁଁ ଯଦି ସାଧାରଣଭାବରେ ମାଡ଼ ଦିଅ ବୋଲି ପ୍ରଚାର କରିବି, ତେବେ ତା'ର ଫଳ କ'ଣ ହେବ, ତଦ୍ଦ୍ୱାରା ଲୋକଙ୍କର ଯେତେ କୁପ୍ରବୃତ୍ତି ସବୁ ଜାଗ୍ରତ ହୋଇଉଠିବ । ମୁଁ ବୁଝୁଛି ମନୁଷ୍ୟ ତମୋଗୁଣରୁ ରଜୋଗୁଣ ଓ ରଜୋଗୁଣରୁ ସତ୍ତ୍ୱଗୁଣକୁ ଗତି କରେ । ମାତ୍ର ସତ୍ତ୍ୱଗୁଣର ପ୍ରଚାର ଆବଶ୍ୟକ, କର୍ମୀର ସେଥିପ୍ରତି ବିଶ୍ୱାସ ରହିଥିବା ଆବଶ୍ୟକ । ଅବସ୍ଥାବିଶେଷରେ ସତ୍ତ୍ୱଗୁଣକୁ ଆଣିବାପାଇଁ ରଜୋଗୁଣର ବିକାଶ କରାଇବାର ହେଲେ କରାଇବ, ମାତ୍ର ଉଦ୍ଦେଶ୍ୟ ରହିବ ଯେ ରଜୋଗୁଣରୁ ସତ୍ତ୍ୱଗୁଣକୁ ମନ ଆସୁ । ଏପରି ସ୍ଥଳେ ଯେ ମାଡ଼ଗାଳି ଖାଇ ଯୁଦ୍ଧା ଭୟରେ ନୀରବ ରହୁଛି, ତାକୁ ସହିଯିବାର ପରାମର୍ଶ ଦେବା କର୍ମୀ ପକ୍ଷରେ ଭୁଲ୍ ହେବ । କର୍ମୀ ନିଜ ଉପରେ ଦାୟିତ୍ୱ ନେଇ ଅବସ୍ଥା ଅନୁସାରେ ବ୍ୟବସ୍ଥା କରି ପୂର୍ଣ୍ଣ ଅହିଂସା ବା ସତ୍ତ୍ୱଗୁଣ ଆଡ଼କୁ ଲୋକଙ୍କୁ ନେବାକୁ ଚେଷ୍ଟା କରିବ । ତୁମେ ଯେପରି କହୁଛ ସେପରି ଅହିଂସା ପ୍ରଚାର ମୋର ଉଦ୍ଦେଶ୍ୟ ନୁହେଁ; କେଣୁ ମୋ ଅହିଂସାକୁ ମୁଁ ଗତିଶୀଳ ଅହିଂସା ବୋଲି କହେଁ ।"

ଏହା ପରେ ଏ ବିଷୟରେ ଗାନ୍ଧିଜୀ 'ୟଙ୍ଗ୍ ଇଣ୍ଡିଆ'ରେ ଏକ ପ୍ରବନ୍ଧ ଲେଖିଥିଲେ । ଗାନ୍ଧିଜୀଙ୍କୁ ତାଙ୍କ ଖଦୀ ଆନ୍ଦୋଳନ ସମ୍ବନ୍ଧରେ କହିଥିଲି "ମହାତ୍ମାଜୀ, ଆପଣ ଓଡ଼ିଶାରେ ଖଦୀପାଇଁ ଏତେ ଚେଷ୍ଟା କରୁଛନ୍ତି; ମାତ୍ର ଓଡ଼ିଶାର ଇତିହାସ, ସେଟ୍‌ଲମେଣ୍ଟ ରିପୋର୍ଟ ପ୍ରଭୃତିରୁ ସ୍ପଷ୍ଟ ଜଣାଯାଉଛି ଯେ, ଓଡ଼ିଶାରେ କୃଷି ସାଙ୍ଗକୁ ଲୁଣମରା ହିଁ ସହାୟକ ବୃତ୍ତି ଥିଲା । ସେ ଲୁଣମରା ବନ୍ଦ ହେବା ଦ୍ୱାରା ଓଡ଼ିଶା ଦରିଦ୍ର ହୋଇଗଲା । ଖଦୀ ପରିବର୍ତ୍ତେ ଲୁଣମରା ଖୋଲୁ ହେବାପାଇଁ ଚେଷ୍ଟା କରିବା ଉଚିତ ନୁହେଁ କି ? ବର୍ଷେ ବାଲେଶ୍ୱରରେ ଲୁଣ ଗୁଡ଼ କରାଇ ଦେଇ ଲୋକେ କିପରି ଲାଭବାନ୍ ହୋଇଛନ୍ତି ତାହା କହିଲି । ମହାତ୍ମାଜୀ ଅଳ୍ପ ହସି କହିଲେ, "ଅଚ୍ଛା ଖଦୀର ମହତ୍ତ୍ୱ ପଛେ କହିବ, ଲୁଣମରା ଖୋଲୁହେବାପାଇଁ ୨୫ ଜଣ ଲୋକ ଜୀବନ ଦେବାକୁ ବାହାର କର, ମୁଁ ତାହା ଓଡ଼ିଶାରେ କରାଇ ଦେବି । ବାହାର କରି-ପାରିବ ?". ମୁଁ ସେତେବେଳେ ଉତ୍ସାହସହକାରେ କହିଥିଲି, 'ଏଥିପାଇଁ ଶହ ଶହ ଲୋକ ବାହାରିବେ ।' ଗାନ୍ଧିଜୀ ତା'ପରେ କହିଥିଲେ, ଅଚ୍ଛା ଯେଉଁ ଦିନ ୨୫ ଜଣ ଲୋକ ସେଥିପାଇଁ ଜୀବନ ଦେବାକୁ ପ୍ରସ୍ତୁତ ହେବେ, ମୋତେ ଲେଖିବ, ମୁଁ ଓଡ଼ିଶା ଆସି ସେ ଆନ୍ଦୋଳନ କରିବି । ଏହା ପରେ ସେ ଖଦୀର ମହତ୍ତ୍ୱ ବିଷୟରେ କହିଥିଲେ । ପରେ ମୁଁ ୨୫ ଜଣ ପ୍ରାଣ ଦେବାଭଳି ସ୍ୱେଚ୍ଛାସେବକ ସଂଗ୍ରହପାଇଁ

ଚେଷ୍ଟା କରିଥିଲି—ମାତ୍ର ଦୁଇଜଣ ପାଇଲି । ଏଣୁ ଆଉ ସେ ବିଷୟରେ ଗାନ୍ଧିଜୀଙ୍କୁ କିଛି ଲେଖି ନ ଥିଲି । ମାତ୍ର ଏ କଥା ମୋର ମନେ ରହିଥାଏ । ଗାନ୍ଧିଜୀ ଓଡ଼ିଶାରୁ ମାନ୍ଦ୍ରାଜ ଗଲେ ।

ଏତେ ବଡ଼ ବଡ଼ ସମସ୍ୟା, ବନ୍ୟା ସମସ୍ୟା, ଅଫିମ ସମସ୍ୟା ଓ ଖଦି ପ୍ରଚାର ସମସ୍ୟା, ଏଥିପାଇଁ ଏତେ ବଡ଼ ବଡ଼ ଲୋକଙ୍କ ଆଲୋଚନ ଓ ସେମାନଙ୍କ ପରାମର୍ଶ ଅନୁସାରେ ଏ ସବୁ ସମସ୍ୟାର ସମାଧାନପାଇଁ ଚେଷ୍ଟା କରିବା ସଙ୍ଗେ ସଙ୍ଗେ ମୋତେ ଅନ୍ୟ ପ୍ରକାରର କନିକା ସମସ୍ୟାର ସମ୍ମୁଖୀନ ହେବାକୁ ହୋଇଥାଏ । ଜିଲ୍ଲା-ବୋର୍ଡ଼ ସଭ୍ୟ ନିର୍ବାଚନ ପରେ ଓ ସରକାରଙ୍କଦ୍ୱାରା ମନୋନୟନ ଶେଷ ହେବା ପରେ, କଂଗ୍ରେସ ତରଫର ସଭ୍ୟ ଶ୍ରୀ ସୁବୋଧଚନ୍ଦ୍ର ଦେ ଆକସ୍ମିକ ଭାବରେ ପର-ଲୋକ ଗଲେ । ଏହାଙ୍କ ମୃତ୍ୟୁ ମୋତେ ବଡ଼ ବାଧିଥିଲା । ସେତେବେଳେ ଗୋପବନ୍ଧୁ ସମାଜରେ ଲେଖିଥିଲେ, 'ସୁବୋଧଚନ୍ଦ୍ରଙ୍କ ମୃତ୍ୟୁରେ ମହତାବଙ୍କର ଡାହାଣ ହାତ ଭାଙ୍ଗିଗଲା, ବାସ୍ତବିକ ଆମେ ପରସ୍ପରକୁ ଏତେ ଭଲ ପାଇଥିଲୁ ଯେ, ବହୁଦିନ ପର୍ଯ୍ୟନ୍ତ ମୁଁ ସୁବୋଧକୁ ସ୍ମରଣ କରୁଥିଲି—ବର୍ତ୍ତମାନ ସୁଦ୍ଧା ତା'ର ସରଳ ମୁଖମଣ୍ଡଳ ମୋ ଆଖି ଆଗରେ ନାଚ ଯାଉଛି । ମୋର ନୂତନ ପରିବାରରେ ଏହି ହେଉଛି ପ୍ରଥମ ବିଚ୍ଛେଦ ଓ ଏହା ଅତି କଠିନ ଥିଲା । ସୁବୋଧ ଛଡ଼ା ବାକି ଯେତିକି ସଭ୍ୟ ରହିଲେ ସେଥିରୁ ଦୁଇଜଣଙ୍କୁ ନାନା ଉପାୟରେ କନିକା ଦଳ ବଶ କରିନେଲେ । ଫଳରେ ସେଥର ଜିଲ୍ଲାବୋର୍ଡ଼ ଚେୟାର୍‌ମ୍ୟାନ୍ କନିକା ରାଜାଙ୍କ ଜଣେ କର୍ମଚାରୀ ହେଲେ, ମାତ୍ର କିଛି ଦିନ ପରେ ସୁବୋଧ ସ୍ଥାନରେ ନୂଆ ନିର୍ବାଚନ ହେବା ପରେ କଂଗ୍ରେସ ଦଳ ପୁଣି ବେଶୀ ହୋଇଗଲେ, ଜିଲ୍ଲାବୋର୍ଡ଼ ଜରିଆରେ କନିକା ଦଳ ବେଶୀ କିଛି ଅନିଷ୍ଟ କରିପାରିଲେ ନାହିଁ । ମାତ୍ର ସର୍ବପ୍ରଥମ ସେମାନଙ୍କର କାମ ହୋଇଥିଲା ଗୋଶାଳାକୁ ଉଠାଇଦେବା ଓ ଭଲ ଭଲ ଗାଈଗୁଡ଼ିକୁ ନିଲାମ କରିଦେବା । ଜିଲ୍ଲା-ବୋର୍ଡ଼ରେ ଯାହା କିଛି ନୂତନ ଆମେ କରିଥିଲୁ, ତାକୁ ସବୁ ଓଲଟ ପାଲଟ କରିଦେବା ସେମାନଙ୍କର କାମ ବୋଲି ସେମାନେ ଭାବିଲେ । ଏହା ମୋତେ ବଡ଼ ଆଘାତ ଦେଇଥିଲା । ଏ ଅବସ୍ଥାରେ ଲୋକପ୍ରତିନିଧିମୂଳକ ଶାସନ ଚାଲିବାର ବାୟୁ-ମଣ୍ଡଳ କିପରି ସୃଷ୍ଟି ହେବ, ଏ ପ୍ରଶ୍ନ ମୋ ମନରେ ଉଠିଥିଲା; ମାତ୍ର ମୁଁ ଜାଣିନେଲି ଯେ, ବିଦେଶୀ ଶାସନ ସବୁ ନୀତି ନିୟନ୍ତ୍ରଣ କରୁଥିବା ପର୍ଯ୍ୟନ୍ତ ତା ଅଧୀନରେ ପ୍ରଜାତନ୍ତ୍ର ଶାସନ କୌଣସି ପ୍ରକାର ସ୍ଥାୟୀ ଭାବରେ ଲୋକହିତକର କାମ କରିପାରିବ ନାହିଁ । ସେ ଯାହାହେଉ, ଆମ ପ୍ରଚାର ଓ ନିଜ କାମ ଫଳରେ କନିକା ଦଳ ଅତି ଅପ୍ରିୟ ହୋଇଗଲେ । ମାତ୍ର ଯେପରି ଜଣାଗଲା, ସେମାନେ ଜନପ୍ରିୟତାକୁ ଖାତିର କରୁ ନ ଥିଲେ । ସେମାନେ ମୋତେ ପୂର୍ଣ୍ଣଭାବରେ ଚପାଇ ଦେବାପାଇଁ ଲାଗିପଡ଼ିଥିଲେ । ସେ ସମୟରେ କନିକା ରାଜାଙ୍କ ବିଚରଣ କ୍ଷେତ୍ର ବାଲେଶ୍ୱର

ହୋଇଗଲା । ପରେ ପରେ ସେ ମଧ୍ୟ ବିହାର ଓଡ଼ିଶା ଏକ୍‌ଜିକ୍ୟୁଟିଭ କାଉନ୍‌ସିଲର ସଦସ୍ୟ ହେଲେ । ଏଣୁ ସମୁଦାୟ ସରକାରି କଳ ମୋ ବିରୁଦ୍ଧରେ ଚାଲିବାର ଆଶଙ୍କା ଯଥେଷ୍ଟ ରହିଲା ।

ମୋ ପାଇଁ ବିପଦ ଉପରେ ବିପଦ ମାଡ଼ିଆସିଲା । ପ୍ରଥମେ ନିର୍ବାଚନ ସମ୍ବନ୍ଧରେ ଯେ ମୋକଦ୍ଦମା ହୋଇଥିଲା, ସେଥିରେ ମୁଁ ହାରିଗଲି । ଯେଉଁମାନେ ବିଚାରକ ନିଯୁକ୍ତ ହୋଇଥିଲେ ସେଥିରୁ ଜଣଙ୍କୁ ଛାଡ଼ିଦେଲେ ଅନ୍ୟ ଦୁଇଜଣ ଏପରି ପ୍ରଭାବିତ ହେଲେ ଯେ, ମୁଁ ହାରିଯିବା କଥା ଆଗରୁ ଜାଣିପାରିଲି । ସେତେବେଳେ ମୋର ଓକିଲ ଥିଲେ ପରେ ଓଡ଼ିଶା ହାଇକୋର୍ଟର ଚିଫ୍‌ଜଷ୍ଟିସ୍ ଶ୍ରୀ ବୀରକିଶୋର ରାୟ । ସେ ଅରେ କହି କଲେ ଯେ ଜଣେ ବିଚାରପତି ଜଣେ ରାଜାଙ୍କ ଗାଡ଼ିରେ ଗହଣା ଦୋକାନକୁ ଆସି ଗହଣା କିଣୁଥିବା ସମୟରେ ଫଟୋଗ୍ରାଫ୍ ନେବାପାଇଁ ମୁଁ ଫଟୋଗ୍ରାଫର୍ ଜଣେ ଖୋଜିଲି । ମାତ୍ର ସେ ଆସିବା ବେଳକୁ ଗହଣା କିଣା ସରିଲାଣି । ହାଇକୋର୍ଟ ଜଜ୍ ଶ୍ରେଣୀର ଲୋକେ ଯେ ପ୍ରଭାବିତ ହୁଅନ୍ତି, ଏହା ମୋର ପ୍ରଥମ ଅଭିଜ୍ଞତା । ଏହି ମୋକଦ୍ଦମାରେ ରାୟ ହେଲା ଯେ, ମୁଁ ଯେଉଁ ନିର୍ବାଚନ ଖର୍ଚ୍ଚ ଦାଖଲ କରିଛି ତାହା ଭୁଲ୍ ଓ ସେଥିପାଇଁ ମୋର ନିର୍ବାଚନ ରଦ୍ଦ ହେଲା ଏବଂ ପାଞ୍ଚବର୍ଷ ପାଇଁ ମୁଁ ନିର୍ବାଚନ ପ୍ରାର୍ଥୀ ହୋଇପାରିବି ନାହିଁ ବୋଲି ବିଚାରପତିମାନେ ମତ ଦେଲେ ।

ଏତିକରେ କଥା ଛିଡ଼ିଲା ନାହିଁ । ସେ ସମୟରେ ଲାଟ୍ ସାହେବ ସମ୍ବଲପୁର ଗସ୍ତରେ ଆସିଥିଲେ, ସମ୍ବଲପୁରରେ ଥିବା ଜଣେ ମୋର ହାକିମ ବନ୍ଧୁ ଖବର ଦେଲେ ଯେ ମୁଁ ଭୁଲ୍ ନିର୍ବାଚନ ଖର୍ଚ୍ଚ ହିସାବ ବହି ଦାଖଲ କରିଥିବା ଯୋଗୁଁ ମୋ ନାମରେ ଫୌଜଦାରି ମୋକଦ୍ଦମା ହେବ ବୋଲି ସେ ବିଶ୍ୱସ୍ତ ସୂତ୍ରରୁ ଲାଟ ମହଲରୁ ଜାଣିପାରିଛନ୍ତି । ମୁଁ ଏହା ପ୍ରଥମେ ବିଶ୍ୱାସ କଲି ନାହିଁ । ମାତ୍ର କିଛିଦିନ ପରେ ସତକୁ ସତ ଫୌଜଦାରି ମୋକଦ୍ଦମା ଦାଏର ହେଲା । ଇତିମଧ୍ୟରେ ଜିଲ୍ଲାବୋର୍ଡ଼ ହିସାବପତ୍ର ଅଡିଟ୍ ହେଉଥିବାବେଳେ ସେତେବେଳକାର କମିଶନର ଅଡିଟରଙ୍କ ସହିତ ଜିଲ୍ଲାବୋର୍ଡ଼ ବିଷୟ ଆଲୋଚନା କଲେ । ତା'ପରେ ଅଡିଟର-ମାନେ ମୋ ଉପରେ ଲକ୍ଷେରୁ ବେଶୀ ଟଙ୍କା ସରଚ୍ଚାର୍ଯ କଲେ; ଅର୍ଥାତ୍ ଏହା ମୋତେ ଦେବାକୁ ହେବ ବୋଲି ରିପୋର୍ଟ କଲେ; କାରଣ ସେମାନଙ୍କ ମତରେ ଏହା ବେଆଇନ୍ ଭାବରେ ଖର୍ଚ୍ଚ ହୋଇଛି । ସେ ସମୟରେ ଜଣେ ଅଳ୍ପ ବୟସ୍କା ବାଳିକାଙ୍କ ପ୍ରତି ଅତ୍ୟାଚାର କରିଥିବା ଅଭିଯୋଗରେ ଜଣେ ରାଜା ମୋକଦ୍ଦମାରେ ପଡ଼ିଥିବାବେଳେ ଏ କମିଶନର କିପରି ସେଥିରେ ହସ୍ତକ୍ଷେପ କରି ରାଜାଙ୍କୁ ରକ୍ଷା କରାଇଥିଲେ, ତାହା ମୁଁ Adventureରେ ପ୍ରକାଶ କରିଥିଲି । ପରେ ପାଟଣା ହାଇକୋର୍ଟ ଏ ମୋକଦ୍ଦମା ସମ୍ବନ୍ଧରେ ସେ ସମୟର କମିଶନରଙ୍କ ଅତି ନିନ୍ଦା କରି ରାୟ ଦେଇଥିଲେ । ଯାହାହେଉ ଏଣେ ଲକ୍ଷେ ଟଙ୍କାଠାରୁ ବେଶୀ ସରଚ୍ଚାର୍ଯ ଓ

ତେଣେ ଫୌଜଦାରୀ ମୋକଦ୍ଦମା । କନକା ଦଳ ନିଶ୍ଚିତଭାବେ ଜାଣିନେଲେ ଯେ, ଏ ଫାଶରୁ ମୋର ଖସିବାର ବାଟ ନାହିଁ । ଏପରିକି ସେ ଲକ୍ଷେ କେତେ ଟଙ୍କାପାଇଁ ମୋ ଜମିଦାରୀ ନିଲାମ ହେଲେ କିଏ କେଉଁଠୁ କେତେ ନେବ ତାହା ମଧ୍ୟ ଭଦ୍ରଖର କନକା କୋଠିରେ ସ୍ଥିର ହୋଇଥିଲା । ଏଥିରେ ମୁଁ କେବଳ ଧନକପାଇଁ ଅତି ବିବ୍ରତ ହୋଇ ପଡ଼ିଥିଲି । ମାତ୍ର ଖୁବ୍ ସାହସ ସହକାରେ ଗୁଲୁଲି । ମୁଁ ଭାବିଲି ଜୀବନରେ ଯେଉଁଠି ପହଞ୍ଚିବାର ଥିବ ସେଇଠି ପହଞ୍ଚିବ, ଅବସାଦରେ ଲାଭ କିଛି ନାହିଁ । ଏହି ସମୟରେ ପ୍ରାଦେଶିକ ସମ୍ମିଳନୀର ଗୋଟିଏ ଅଧିବେଶନ ଗୋପବନ୍ଧୁ ଚୌଧୁରୀଙ୍କ ସଭାପତିତ୍ୱରେ ବାଲେଶ୍ୱରରେ ହେଉଥାଏ । ତା'ର ସମୁଦାୟ ଭାର ମୋ ଉପରେ ଥାଏ । ସେଥିପାଇଁ ଲାଗି ପଡ଼ିଥାଏ । ଏଥିରେ ପ୍ରାୟ ଦୁଇ ହଜାର ଟଙ୍କା ଖରଚ ହୋଇଥିଲା । ସେ ଅର୍ଥ ସଂଗ୍ରହ କରିବା, ସ୍ୱେଚ୍ଛାସେବକ ଦଳ ଗଠନ କରିବା, ସମ୍ମିଳନୀ ମଣ୍ଡପ ତିଆରି କରିବା; ଆଗନ୍ତୁକ ପ୍ରତିନିଧି ଓ ଦର୍ଶକମାନଙ୍କ ରହିବା ଖାଇବାର ବନ୍ଦୋବସ୍ତ କରିବା ଏ ସବୁ ମୋତେ ହିଁ କରିବାକୁ ପଡ଼ୁଥିଲା । ଏଣେ କଟେରୀକୁ ମୋକଦ୍ଦମାପାଇଁ ଯାଏ, ତେଣୁ ଫେରି ପ୍ରାଦେଶିକ ସମ୍ମିଳନୀପାଇଁ କାମ କରେ । ସେତେବେଳେ ବାଲେଶ୍ୱରରେ ଶ୍ରୀ ଉପେନ୍ଦ୍ରନାଥ ଘୋଷ ଉକିଲ ଓ ଶ୍ରୀ ଗୁରୁଚନ୍ଦ୍ର ରାଏ ଉକିଲ ଏମାନେ କେବଳ ଯେ ବିନା ଫିସ୍‌ରେ ମକଦ୍ଦମା ମୋ ତରଫରୁ ଲଢ଼ିଥିଲେ ତାହା ନୁହେଁ, ଏମାନେ ପୁରାପୁରି ନିଜର ଲୋକପରି କାମ କରିଥିଲେ ।

ଏହି ସମୟରେ ମୁଁ ଲକ୍ଷ୍ୟ କରିଛି ଯେ ସମ୍ପତ୍ତିବେଳେ ଯେଉଁ ବନ୍ଧୁମାନେ ଅତିଶୟ ମୋର ଅନୁରକ୍ତ ଥିଲେ ଓ ଯେଉଁମାନଙ୍କର ମୁଁ କିଛି ହେଲେ ଉପକାର କରିଛି, ସେମାନେ ଧୀରେ ଧୀରେ ଗୁଡ଼ିପଡ଼ି ମୋତେ କୌଣସି ପ୍ରକାର ସାହାଯ୍ୟ କରିନ ଥିଲେ । ଏପରିକି ସେମାନେ ବିଶ୍ୱାସ କରି ଯାଇଥିଲେ ଯେ, ମୋର ଏ ବିପଦରୁ ଉଦ୍ଧାରିବାର ବାଟ ନାହିଁ ଓ ମୋ ଜୀବନ ଏଇଥିରେ ଶେଷ ହେଲା । ସେ ସମୟରେ କିନ୍ତୁ କେବଳ ପଣ୍ଡିତ ଗୋପବନ୍ଧୁ ମୋତେ ସାହସ ଦେଉଥାନ୍ତି । ମୋ ଚିଠିରେ ହାତମାରି କହୁଥାନ୍ତି 'ହରେକୃଷ୍ଣ' ଦବିଯିବ ନାହିଁଟି । ଏପରି କି ସେତେ-ବେଳେ ମୋର ଅର୍ଥାଭାବ ଘଟିଥିବାରୁ ସେ ମୋତେ କିଛି ଅର୍ଥ ମଧ୍ୟ ଧାର ଦେଇଥିଲେ । ଗଞ୍ଜାମର ବିଶ୍ୱନାଥ ଦାସ ମୋଠାରୁ ତା'ର କରିଥିଲେ ମୋତେ ସାହାଯ୍ୟ କରିବା ପାଇଁ, ମାତ୍ର ମୁଁ ତାଙ୍କୁ ମନାକରି ପଠାଇଥିଲି । ଆଉ ଏକ ସାହାଯ୍ୟ ଅପ୍ରତ୍ୟାଶିତ ଅଞ୍ଚଳରୁ ପାଉଥାଏ । ସେ ହେଉଛି ମୋର ବିହାରୀ ବନ୍ଧୁ-ମାନଙ୍କଠାରୁ । ପାଟଣାର Search light ମୋ ସମ୍ବନ୍ଧରେ ବାରମ୍ବାର ଲେଖି ମୋ ପାଇଁ ଏକ ଆନ୍ଦୋଳନ ସୃଷ୍ଟି କରିଥିଲେ । ତା ଫଳରେ ଅନ୍ତତଃ ଲୋକ ଚକ୍ଷୁରେ ମୁଁ ନିନ୍ଦିତ ହୋଇନଥିଲି । ଫୌଜଦାରୀ ମୋକଦ୍ଦମାରେ ମୁଁ ପ୍ରମାଣ କରିବାକୁ

ଚେଷ୍ଟା କରିଥିଲି ଯେ, ଯେଉଁ ନିର୍ବାଚନ ଖର୍ଚ୍ଚ ମୁଁ ଦାଖଲ କରିଛୁ, ତାହା ଠିକ୍। ତେଣେ ଏକାଉଣ୍ଟାଣ୍ଟ ଜେନେରାଲଠାରୁ ଲକ୍ଷେ କେତେ ଟଙ୍କାର ସର୍ଟିଫାଇ ରିପୋର୍ଟ ସମ୍ବନ୍ଧରେ ଯେଉଁ କୈଫିୟତ୍ ଆସିଥିଲା, ତାର ଜବାବ ମୁଁ ଅଳ୍ପରେ ନିର୍ଭୟରେ ଲେଖିଦେଇଥିଲି। ଏହାର ଜବାବ ଠିକ୍ କରିବାକୁ ବଡ଼ ବଡ଼ ବାରିଷ୍ଟରଙ୍କ ସହିତ ପରାମର୍ଶ କରିବାପାଇଁ ମୋତେ କେତେକ ଅନୁରୋଧ କରିଥିଲେ—ମାତ୍ର କଥାଟା ମୋତେ ଏତେ ସ୍ପଷ୍ଟ ଜଣା ଯାଉଥାଏ ଯେ, ମୁଁ ଭାବିଲି ମୁଁ ଏହାର ଜବାବ ଦେଇ ପାରିବ ଓ ଦେଲି ମଧ୍ୟ। ମୁଁ ଜବାବରେ ଲେଖିଥିଲି ଯେ, ମୁଁ ସେ ଟଙ୍କା ଦେବାପାଇଁ ପ୍ରସ୍ତୁତ, ମାତ୍ର ସେ ଟଙ୍କାରେ ଯେଉଁ କାମ ହୋଇଛି, କୂଅ, ପୋଖରୀ ଓ ଡାକ୍ତରଖାନା ସେ ସବୁ ମୋର ହେବ। କାରଣ ଜିଲ୍ଲାବୋର୍ଡ଼ ବା ସରକାର ଟଙ୍କାକୁ ଟଙ୍କା ଓ ସେଥିରେ ହୋଇଥିବା କାମ ଉଭୟ ନେଇ ପାରିବେ ନାହିଁ।

ଏ ବିପତ୍ତିରି ପରିଷ୍କାର ଖବରରେ ମୁଁ ଏଠାରେ ଜଣାଇ ଦିଏ। ନିର୍ଦ୍ଦିଷ୍ଟ କାର୍ଯ୍ୟ କେତେକ କରିବାପାଇଁ ସରକାରଙ୍କଠାରୁ ଜିଲ୍ଲାବୋର୍ଡ଼କୁ କେତେଟଙ୍କା ମିଳିଥିଲା। ସେ ଟଙ୍କା ଏକାବର୍ଷକେ ଖର୍ଚ୍ଚ ହୋଇ ପାରିବାର ନୁହେଁ। ଏଣୁ ମୁଁ ସରକାରଙ୍କୁ ଜିଲ୍ଲାବୋର୍ଡ଼ ତରଫରୁ ଲେଖିଥିଲି ଯେ, ସେ ଟଙ୍କାକୁ ଜଳଦାନ, ଔଷଧ ଦାନ ଓ ବନ୍ୟା ସାହାଯ୍ୟରେ ଖର୍ଚ୍ଚ କରିବା ପାଇଁ ଅନୁମତି ଦିଆଯାଉ ଏବଂ ସେ ଟଙ୍କା ଜିଲ୍ଲା ବୋର୍ଡ଼ ବର୍ଷକୁ ବର୍ଷ ଖର୍ଚ୍ଚ କରିବା ମୁତାବକ ସରକାରଙ୍କ ନିର୍ଦ୍ଦିଷ୍ଟ କାର୍ଯ୍ୟ କରି ଶୁଝି ଦେବ। ଜିଲ୍ଲାବୋର୍ଡ଼ର ଏ ଦରଖାସ୍ତ କଲେକ୍ଟର ଓ କମିଶନର ସୁପାରିଶ କରି-ଥିଲେ। ଏପରିକି ତତ୍କାଳୀନ କମିଶନର ଚିଠି ଲେଖିଥିଲେ ଯେ, ସରକାରଙ୍କ ମଞ୍ଜୁର ମିଳିବା ଆଶାରେ ସେ ଟଙ୍କା ଖର୍ଚ୍ଚ କରାଯାଇପାରେ। ମାତ୍ର ଇତି ମଧ୍ୟରେ ଜିଲ୍ଲାବୋର୍ଡ଼ ଆମ ହାତରୁ ଗ୍ଲିଗଲା—ସେ ଟଙ୍କା ଉପରୋକ୍ତ ଉଦ୍ଦେଶ୍ୟରେ ଖର୍ଚ୍ଚ ହୋଇଥିଲା, ସେ କମିଶନର ମଧ୍ୟ ବଦଳି ହୋଇଯାଇଥିଲେ। କଲେକ୍ଟର ତ ନୂଆ ଅବସ୍ଥାରେ ଗଲେ ତା' ଆଗରୁ ଜଣାଇଛି। ଏହି ଟଙ୍କା ବେଆଇନ ଖର୍ଚ୍ଚ ଓ ଏ ଖର୍ଚ୍ଚ ମୋଠାରୁ ଆଦାୟ କରିବାର ବ୍ୟବସ୍ଥା କରି ହେଉଥାଏ। ଏଣେ ଫୌଜଦାରୀ ମୋକଦ୍ଦମାର ରାୟ ବାକି ଥାଏ, ତେଣେ ଏକାଉଣ୍ଟାଣ୍ଟ ଜେନେରାଲଙ୍କ ମୋ କୈଫିୟତ୍ ବିଚାର ବାକି ଥାଏ।

ବିପଦ ଯେତେବେଳେ ଆସେ ସେତେବେଳେ ଏକା ସଙ୍ଗରେ ଅନେକ-ଗୁଡ଼ିଏ ଆସେ ବୋଲି କଥା ଅଛି। ମୁଁ ତାହା ଅଙ୍ଗେ ନିଭେଇ ଥିଲି। ମୋର ପାଳିକା ମାଆ ସେତେବେଳେ ଭାରି ବେମାର ପଡ଼ିଲେ। ମୁଁ ମୋର ପରିବାରବର୍ଗଙ୍କ ମନରକ୍ଷା କେବେ କରିନାହିଁ। ଏ ଅବସାଦ ମୋ ଭିତରେ ତାର କାମ କରୁଥାଏ, ମାଆ ବେମାର ପଡ଼ିବା ଖବର ପାଇ ମୁଁ ଭାବିଲି ଯେ ଏହି ଅବସରରେ ମୁଁ ତାର କିଛି

ସେବା କରିବି, ପ୍ରାୟ ୧୬ ଦିନକାଳ ଦିନରାତି ଲାଗି ତା'ର ସେବା କରିଛି । ଯେତେ-ଦୂର ସମ୍ଭବ ଭଲ ଚିକିତ୍ସା କରାଇଛି—ମାତ୍ର ମାଆ ବଞ୍ଚିଲେ ନାହିଁ । ମାତ୍ର ମୃତ୍ୟୁ ପୂର୍ବରୁ ସେ ମୋ ପ୍ରତି ସନ୍ତୁଷ୍ଟ ହୋଇ କହିଥିଲେ, 'ପୁଅ କରିଥିଲି ବୋଲି ସିନା, ମୋ ସେବା କଲୁ' ଏତିକି ଶୁଣି ମୋ ମନ କୃତାର୍ଥ ହୋଇ ଯାଇଥିଲା—ଏଥିରେ ବାବା ମଧ୍ୟ ସନ୍ତୁଷ୍ଟ ହୋଇଥିଲେ । ମୋଟ କଥା ମୋର ପରିବାରବର୍ଗ ଜାଣିଲେ ଯେ, ମୁଁ ଯୁଆଡ଼େ ଯାହା କରେ ପଛକେ ଦରକାରବେଳେ ସେମାନଙ୍କୁ ପରିଚର୍ଯ୍ୟା ଓ ଯତ୍ନ ନେବି । ମାଆ ମରିଗଲା ପରେ ଆମ ଘରର ସମୁଦାୟ ଢଙ୍ଗ ବଦଳିଗଲା । ମାତ୍ର ମୁଁ ମୋର ସାନଭାଇ କାହ୍ନୁ ଚରଣ ଉପରେ ଯେପରି ଭାର ଦେଇ ନିଶ୍ଚିନ୍ତ ଥିଲି, ସେହି ପରି ବର୍ତ୍ତମାନ ମଧ୍ୟ ରହିଲି । ମୁଁ ଯେ ବାଲେଶ୍ୱରରେ ଏତେ ବିପଦରେ ପଡ଼ିଥାଏ ସେ କଥା ବାବା ଶୁଣି ତାଙ୍କର ମୋ ପ୍ରତି ସହାନୁଭୂତି ଜାଗ୍ରତ ହୋଇଥିଲା । ସେ ମୋତେ ଦବି ନ ଯିବାପାଇଁ ଉତ୍ସାହ ଦେଉଥାଆନ୍ତି ।

ଦବିଯିବା କଥା ମୋ ମନରେ ଆଦୌ ଉଠୁ ନ ଥାଏ । ଏଣେ ମୋକଦ୍ଦମା, ସରଗୁଜି ଯାହା ହେଉଥାଏ, ଲୋକଙ୍କ ଭିତରେ ମୋର ସମ୍ମାନ ଦିନକୁ ଦିନ ବଢ଼ି ଚାଲିଥାଏ । ସେତେବେଳେ ଅନେକଥର ଭାବିଛି, ଏ ଲୋକସହାନୁଭୂତି ସବୁଦିନ ପାଇଁ ରହିବ ନାଁ ତାଳପତ୍ର ନିଆଁ ଭଳି ଅଳ୍ପକାଳ ପରେ ନିଭିଯିବ । ସରଗୁଜି କଥା ଗସ୍ତ ହେବା ପରେ ବହୁ ସ୍ଥାନରୁ ମୁଁ ସମ୍ବାଦ ପାଇଲି ଯେ, ଲୋକେ ଚାନ୍ଦା କରି ଲକ୍ଷେ ଟଙ୍କା ଉଠାଇଦେବେ, କିନ୍ତୁ ତାକୁ ମୁଁ ପ୍ରଶ୍ରୟ ଦେଇନାହିଁ । ଲୋକସହାନୁଭୂତି ଉପରେ ନିର୍ଭର ନ କରି ନିଜ ଗୋଡ଼ରେ ନିଜେ ଛିଡ଼ା ହେବା ସବୁ ଅବସ୍ଥାରେ ଶ୍ରେୟସ୍କର ବୋଲି ମୁଁ ମନେ କରିଛି । ସବୁ କାମ ଯେପରି ଚାଲିବାର ସେପରି ଚାଲିଥାଏ । 'ପ୍ରଜାତନ୍ତ୍ର'ର ଗ୍ରାହକସଂଖ୍ୟା ଖୁବ୍ ବଢ଼ି ଯାଇଥାଏ । 'Adventure' ମଧ୍ୟ ଭଲ ଚାଲିଥାଏ । ଏହାଛଡ଼ା ଆମେ ଯେପରି ଜିଲ୍ଲାର ଯାବତୀୟ ଖବର ବୁଝି ଯେଉଁଠି ଯାହା କିଛି ଅତ୍ୟାଚାର ହୁଏ ତା'ର ପ୍ରତିକାର କରିବାକୁ ଚେଷ୍ଟା କରୁ ତା' ମଧ୍ୟ ଚାଲିଥାଏ । ମୋ ନିଜ ଆଚରଣରେ ମୁଁ ଚଳେହେଲେ କାହାକୁ ଭାବିବାକୁ ଦେଇନାହିଁ ଯେ, ମୁଁ କନିକା ଦଳର ନିର୍ଯ୍ୟାତନାରେ କେଶ ପ୍ରମାଣ ସୁଦ୍ଧା ଦବି ଯାଇଛି । ଏ ସମୟରେ ନୀଳଗିରିରେ ରାଜକନ୍ୟାଙ୍କ ବିବାହ ଉପଲକ୍ଷେ ମାଗଣ ଧାର୍ଯ୍ୟ ହେବାରୁ ପ୍ରଜାମେଳି ଆରମ୍ଭ ହେଲା । ସେମାନେ ମୋ ପାଖକୁ ଆସିଲେ, ସେମାନଙ୍କ ପ୍ରତି ଯାହାକିଛି ଅତ୍ୟାଚାର ହେଉଛି, ସବୁ ଲେଖିକରି ଦେବାପାଇଁ ମୁଁ ତାଙ୍କୁ କହିଲି । ସେମାନଙ୍କ ସମସ୍ତ ଅତ୍ୟାଚାର 'ନୀଳଗିରି ଅତ୍ୟାଚାର' ନାମରେ ଏକ ପୁସ୍ତିକା ଆକାରରେ ନିଜ ନାମ ନ ଦେଇ ଆମ ପ୍ରେସରେ ଛପାଇ ବଣ୍ଟାଇଥିଲି । ପ୍ରଚାର ଫଳରେ ନୀଳଗିରିରେ ଖୁବ୍ ଉତ୍ତେଜନା ଆସିଲା । ସାଙ୍ଗେ ସାଙ୍ଗେ ଅତ୍ୟାଚାର ମଧ୍ୟ ବଢ଼ିଲା ।

ସେତେବେଳେ ମୋତେ ତୃକି ଦେଖାଯାଇଥିଲା ଯେ, ପ୍ରଜାମାନେ ରାଜ୍ୟ ଛାଡ଼ି ଚାଲିଯିବା ସତ୍ୟାଗ୍ରହର ଏକ କୌଶଳ, ଯାହା ପରେ ବର୍ଦୋଲିରେ ଓ ଗଡ଼ଜାତ ଆନ୍ଦୋଳନରେ ପ୍ରଯୁକ୍ତ ହେଲା । ମାତ୍ର ସବୁଆଡ଼କୁ ଭାବି ମୋତେ ତାହାହିଁ କର୍ତ୍ତବ୍ୟ ବୋଲି ଆନ୍ଦୋଳନ ଦୃଷ୍ଟିରୁ ଜଣାପଡ଼ିଲା । ମୁଁ ତାଙ୍କୁ ସେଇଆ ପରାମର୍ଶ ଦେଇଥିଲି । ହଜାର ହଜାର ସଂଖ୍ୟାରେ ଲୋକ ରାଜ୍ୟ ଛାଡ଼ି ଚାଲିଆସି ବାଲେଶ୍ୱରରେ ରହିଲେ । ଏଣେ ମୁଁ ଏଣ୍ଡ୍ରୁଜ୍ ସାହେବଙ୍କଠାକୁ ତାର କଲି । ସେ ଆସି ଏତେ ଲୋକ ଗ୍ରାମ ଛାଡ଼ିଆସି ଥିବାର ଦେଖି ଅଭିଭୂତ ହେଲେ ଏବଂ ତାଙ୍କ ଚେଷ୍ଟାରେ ସେତେବେଳକାର ନୀଳଗିରି ପ୍ରଶ୍ନ ସମାହିତ ହେଲା । ଏ ବିଷୟକୁ ଏଣ୍ଡ୍ରୁଜ୍ ସାହେବ ତାଙ୍କ India and Simon Commission ବହିରେ ଉଲ୍ଲେଖ କରିଛନ୍ତି ।

୧୯୨୮ ମସିହାରେ କଲିକତାରେ କଂଗ୍ରେସ ଅଧିବେଶନ ସମୟରେ ପ୍ରବାସୀ ଉତ୍କଳ ସମ୍ମିଳନୀର ଏକ ଅଧିବେଶନ ହୋଇଥିଲା । ସେଥିରେ ମୋ ଉପରେ ଭାର ଦିଆ ହୋଇଥିଲା ପ୍ରବାସୀ ଓଡ଼ିଆମାନଙ୍କୁ ସଂଗଠିତ କରିବାପାଇଁ । ସେ କାମ ମଧ୍ୟ ମୁଁ ନିୟମିତ ଭାବରେ କରୁଥାଏ । ଓଡ଼ିଆ ସମାଜ ନାମରେ ଏକ ଅନୁଷ୍ଠାନ ଆରମ୍ଭ କରି ତା'ର ଶାଖା ବିଭିନ୍ନ ଅଞ୍ଚଳରେ ଖୋଲିବାର ଚେଷ୍ଟା କରିଥାଏ । ଅଳ୍ପ ଦିନରେ ପ୍ରାୟ ୪ଟି ଓଡ଼ିଆ ସମାଜର ଶାଖା ଖୋଲା ଯାଇଥିଲା । ଏହି ସମୟରେ ମୁଁ କଲିକତା ପ୍ରବାସୀ ଓଡ଼ିଆ ଓ ଅନ୍ୟ ଶ୍ରମଜୀବୀମାନଙ୍କ ଆଭ୍ୟନ୍ତରୀଣ ଜୀବନ ଜାଣିବାର ସୁଯୋଗ ପାଇଥିଲି । ଓଡ଼ିଆ ସମାଜକୁ ମୁଁ ଶ୍ରମଜୀବୀ ଅନୁଷ୍ଠାନ ହିସାବରେ ଗଢ଼ି ନ ଥିଲି । ଶ୍ରମଜୀବୀ ହିସାବରେ ସ୍ୱାର୍ଥରକ୍ଷା କରିବାକୁ ହେଲେ ଓଡ଼ିଆ, ହିନ୍ଦୁସ୍ଥାନୀ, ବିହାରୀ ପ୍ରଭୃତି ପ୍ରାଦେଶିକ ଗୋଷ୍ଠୀ ଗଢ଼ି ଲାଭ ନାହିଁ ବରଂ ସେଥିରେ କ୍ଷତି ଅଛି; ମାତ୍ର ଓଡ଼ିଆ ହିସାବରେ ଜାଗରଣ ଆଣିବା ପାଇଁ ଓଡ଼ିଆ ସମାଜକୁ ଏକ ସାମାଜିକ ଅନୁଷ୍ଠାନ ହିସାବରେ ସଂଗଠନ କରିଥିଲି ।

ଏସବୁ କାମ ତ ଖୁବ୍ ବେଗରେ ଚାଲିଥାଏ—ମାତ୍ର ମୋର ହେବ କଅଣ ? ଅବଶେଷରେ ଫୌଜଦାରି ମୋକଦ୍ଦମାର ରାୟ ଦେବା ଦିନ ଆସିଗଲା । ମୋତେ ଜେଲ ହେବ ଏକଥା ପ୍ରାୟ ମୁଁ ନିଶ୍ଚିତ ଅନୁମାନ କରୁଥିଲି । ମିଥ୍ୟା ହିସାବ ଦାଖଲ କରିବା ହେତୁ କାରାଦଣ୍ଡ । ଏକଥା ଭାବିବା ମାତ୍ରକେ ମନ ଅବସନ୍ନ ହୋଇ ଯାଉଥାଏ, ମାତ୍ର ମୁଁ ଅବସାଦକୁ ପୂର୍ଣ୍ଣ ଶକ୍ତିରେ ଠେଲି ଚାଲିଥାଏ । କଚେରୀରେ ଯାଇ ପହଞ୍ଚିଲି । ସବୁ ବନ୍ଧୁମାନଙ୍କଠାରୁ ବିଦାୟ ନେଲି । ଶେଷରେ ହାକିମ ରାୟ ଦେଲେ ଯେ ମୁଁ ନିର୍ଦୋଷ ଓ ମୋର ହିସାବ ଭୁଲ୍ ନୁହେଁ । ମୁଁ ଅବାକ୍ ହୋଇ ଚାହିଁଥାଏ— ମୋର ବିଶ୍ୱାସ ହେଲା ନାହିଁ । ହାକିମ ଶ୍ରୀ ନନ୍ଦଲାଲ ସିଂହ ତାହା ଜାଣି ପାରିଲେ

ଓ ପୁଣି ଜୋରରେ କହିଲେ, 'ଆପଣ ନିର୍ଦ୍ଦୋଷ ଓ ସେଥିପାଇଁ ମୁକ୍ତ' । ମୁଁ ଧନ୍ୟବାଦ ଦେଇ ଚାଲିଆସିଲି ଓ ଆସି ଟିକିଏ ବାହାଦୁରୀ ଦେଖାଇବା ପାଇଁ ଜିଲ୍ଲା ବୋର୍ଡ଼ ଅଫିସରେ ନୂତନ ଚେୟାରମ୍ୟାନଙ୍କ ସହିତ ଯାଇ କଥାବାର୍ତ୍ତା କଲି । ସେଇଠି ବସି କଥାବାର୍ତ୍ତା କରୁଥାଏ, ସେ ତାଙ୍କ ଡାକ ସେଇଠି ପାଇଲେ । ଖଣ୍ଡେ ଚିଠି ଏକାଉଣ୍ଟାଣ୍ଟ ଜେନେରାଲଙ୍କ ପାଖରୁ ଆସିଥାଏ, ମୁଁ ଦେଖିଲି । ମୁଁ ପରିହାସରେ କହିଲି, 'ଦେଖନ୍ତୁ ଏ ଚିଠି, ମୋ ଜମିଦାରୀ ଆପଣମାନେ ନେବାର ଆଦେଶ ଏଥିରେ ଥିବ' । ସେ ଟିକିଏ ସଙ୍କୁଚିତ ହୋଇ ଚିଠିଟି ଖୋଲିଲେ, ଦେଖିଲି ଦେଲକୁ ଆଦେଶ ଆସିଛି ଯେ, ମୋର କୈଫିୟତ ଗୃହୀତ ହେଲା ଓ ସରଚାର୍ଜ ଆଦେଶ ରଦ୍ଦ ହେଲା । ମୋ ଉପରୁ ଗୋଟାଏ ବୋଝ ଯେପରି ଚାଲିଗଲା, ମୁଁ କିଛି କ୍ଷଣପାଇଁ ନିଜକୁ ଏତେ ହାଲକା ମନେ କଲି ଯେ, ଉଡ଼ିଯିବା ପାଇଁ ମୋର ମନ ହେଉଥାଏ । ମୁଁ ପରିହାସ କରି ଚେୟାରମାନଙ୍କୁ କହିଲି, "ଆପଣଙ୍କ ରାଜା ଏକ୍‌-ଜିକ୍ୟୁଟିଭ କାଉନସିଲରେ ଥାଇ ସୁଦ୍ଧା ଏକାଉଣ୍ଟାଣ୍ଟ ଜେନେରାଲଙ୍କୁ ପ୍ରଭାବିତ କରିପାରିଲେ ନାହିଁ ।" ସେ ଏ ମନ୍ତବ୍ୟରେ ବିରକ୍ତ ହେଲେ । ମୁଁ ଏକାଦିନେ ଦୁଇ ବିପଦରୁ ମୁକ୍ତ ହୋଇ ମୋର ସମସ୍ତ ବନ୍ଧୁମାନଙ୍କୁ ଏକ ଭୋଜି ଦେବି ବୋଲି ଠିକ୍ କରି ତାଲିକା କରିବାକୁ ବାହାରିଲି । ବହୁଲୋକ ମୋତେ ଧନ୍ୟବାଦ ଦେବାପାଇଁ ଆସୁଥାଆନ୍ତି । ସାଧାରଣଙ୍କ ସହାନୁଭୂତି ମୋ ପ୍ରତି କେତେଦୂର ଥିଲା ମୁଁ ସେହିଦିନ ଜାଣିପାରିଛି । ଭୋଜିର ତାଲିକା ତିଆରି କରୁଛି, ଏହି ସମୟରେ ତାର ଆସି ପହଞ୍ଚିଲା ଯେ ପଣ୍ଡିତ ଗୋପବନ୍ଧୁ ସତ୍ୟବାଦୀରେ ହୃଦ୍‌ରୋଗରେ ପ୍ରାଣତ୍ୟାଗ କରିଛନ୍ତି । ମୋ ମୁଣ୍ଡରେ ଚଞ୍ଚକ ପଡ଼ିଲାପରି ବୋଧହେଲା, ଭୋଜି ତାଲିକାକୁ ଛିଣ୍ଡାଇ ଫୋପାଡ଼ି ଦେଲି । ବଡ଼ ବଡ଼ ବିପଦରୁ ମୁକ୍ତ ହୋଇ ଟିକିଏ ଆନନ୍ଦିତ ହେବାପାଇଁ ମଧ୍ୟ ସମୟ ମିଳିଲା ନାହିଁ । ଏଥିରେ ବଡ଼ ଦୁଃଖିତ ହେଲି । ଲୁହାକୁ ତତାଇ ପାଣିରେ ବୁଡ଼ାଇ ପୁଣି ତତାଇ ପାଗ ଦେଲା ଭଳି ମୋ ମନ ଉଲ୍ଲାସ ଓ ବିଷାଦର ସାମୟାମୟିକ ପ୍ରୟୋଗରେ ପାଗ ଦିଆ ହେଉଥାଏ । ଏକାବେଳେ ଜିଲ୍ଲା ବୋର୍ଡ଼ ଓ ନିର୍ବାଚନ ଇତ୍ୟାଦି କଥା ଭୁଲି ଗୋପବନ୍ଧୁଙ୍କ ମୃତ୍ୟୁ ଓ ତା'ପରେ ଓଡ଼ିଶାରେ କଂଗ୍ରେସ ଅନୁଷ୍ଠାନର ବ୍ୟବସ୍ଥା ବିଷୟରେ ଚିନ୍ତିତ ହୋଇପଡ଼ିଲି ।

ସେତେବେଳେ କଂଗ୍ରେସ ଅନୁଷ୍ଠାନର ଅବସ୍ଥା କଅଣ ? ଜିଲ୍ଲାବୋର୍ଡ଼ ବ୍ୟବସ୍ଥା ସଭା ଇତ୍ୟାଦିରେ ମାତିବା ଫଳରେ ଆମର ବ୍ୟକ୍ତିଗତ ପ୍ରତିଷ୍ଠା ବଢ଼ିଥାଏ ଓ ସାଧାରଣ ଭାବରେ କଂଗ୍ରେସର ପ୍ରଭାବ ମଧ୍ୟ ବଢ଼ିଥାଏ, ମାତ୍ର ଅନୁଷ୍ଠାନ ଓ ସଂଗଠନ ହିସାବରେ କଂଗ୍ରେସ ଅତି ଦୁର୍ବଳ ହୋଇପଡ଼ିଥାଏ । ବାଲେଶ୍ୱର ଜିଲ୍ଲା କଥା କହୁଛି, କଂଗ୍ରେସ କମିଟି ପ୍ରାୟ ନ ଥାଏ କହିଲେ ଚଳେ । ମୋର ମନେ ଅଛି ସେହି ସମୟରେ ଗୋଟିଏ ବର୍ଷ ମୋଟେ ୩୨ ଜଣ ବାଲେଶ୍ୱର

କଂଗ୍ରେସ ମେମ୍ବର ତାଲିକାରେ ଥିଲେ । ଆମେ କେତେଜଣ କଂଗ୍ରେସ ଲୋକ କଂଗ୍ରେସ କମିଟି କରି ଚଳାଉଥାଉଁ, ମାତ୍ର କଂଗ୍ରେସକୁ ଅନୁଷ୍ଠାନ ହିସାବରେ ବଢ଼ାଇବା ଓ ଦୃଢ଼ କରିବା—ଏଥିପ୍ରତି ଆମର ଲକ୍ଷ୍ୟ ନ ଥାଏ । ବର୍ତ୍ତମାନ ଜିଲ୍ଲାବୋର୍ଡ଼ ପ୍ରଭୃତି ଯେତେବେଳେ ଗ୍ଭଲିଗଲା, ସେତେବେଳେ ଦେଖିଲି ବେଳକୁ ଆମେ ଯାହା ଉପରେ ଛିଡ଼ା ହୋଇଥିଲୁଁ, ତାହା ତଳକୁ ଖସିଗଲାଣି । ଖଦୀ ପ୍ରଭୃତି ଗଠନମୂଳକ କାମରେ ମୁଁ ଆଦୌ ମନ ଦେଇ ନ ଥିଲି, କେବଳ ଜିଲ୍ଲାବୋର୍ଡ଼ କରିଆରେ ଯାହା ସେ ସବୁ କାମ ପ୍ରତି ଉତ୍ସାହ ଦେଖାଇଛୁ ମାତ୍ର ।

ଆମ ଜିଲ୍ଲାରେ ତଥା ଓଡ଼ିଶାରେ ଖଦୀ ପ୍ରଭୃତି ଗଠନମୂଳକ କାମ ମଧ୍ୟ ସେତେ ଭଲ ଗ୍ଭଲୁ ନ ଥାଏ । ଆମ ଜିଲ୍ଲାରେ ଆଦୌ ଗ୍ଭଲୁ ନ ଥାଏ କହିଲେ ଚଳେ । ମୁଁ ପରିଷ୍କାର ଭାବରେ ଦେଖିପାରିଲି ଯେ, ବିପ୍ଳବକୁ ଧ୍ୟେୟ ରଖି କଂଗ୍ରେସ ଅନୁଷ୍ଠାନ ଗଢ଼ିବା ଓ ବିପ୍ଳବର ବାତାବରଣ ସୃଷ୍ଟି କରିବା ପାଇଁ ଗଠନମୂଳକ କାମ କରିବା ସଙ୍ଗେ ଜିଲ୍ଲାବୋର୍ଡ଼ ବା ବ୍ୟବସ୍ଥା ସଭା କାର୍ଯ୍ୟକ୍ରମର କୌଣସି ସମ୍ପର୍କ ନାହିଁ । ଏ ଦୁଇ କାର୍ଯ୍ୟ ପରସ୍ପରଠାରୁ ଏତେ ପୃଥକ୍ ଯେ, ଗୋଟିଏ ଭଲଭାବରେ ଗ୍ଭଲିଲେ ଅନ୍ୟଟି ଯେ ଆପେ ଆପେ ଗ୍ଭଲିବ—ଏହା ସୁନିଶ୍ଚିତ ନୁହେଁ । ଏଣୁ ଜିଲ୍ଲାବୋର୍ଡ଼ ପ୍ରଭୃତିରୁ ଠେଲା ଖାଇ ବାହାରି ଆସିବାରେ ପ୍ରଥମେ ମୋର ମନ ଯେପରି ଅବସନ୍ନ ହୋଇଥିଲା, ଏ ଚିନ୍ତା ମୋ ମନକୁ ଆସିବା ପରେ ମୁଁ ବରଂ ସୁଖୀ ହେଲି ଯେ ମୋ ଜୀବନ ଯେଉଁ ବିପ୍ଳବକୁ ଲକ୍ଷ୍ୟ କରି ଆରମ୍ଭ ହୋଇଥିଲା, ତାହା ବାଟବଣା ହୋଇ ସାମାନ୍ୟ ଜିଲ୍ଲାବୋର୍ଡ଼ କାମରେ ବ୍ୟାପୃତ ହୋଇଯାଇନାହିଁ । ବାସ୍ତବିକ୍ ସେତେବେଳେ କନିକା ରଜା ଓ ତାଙ୍କ ଦଳକୁ ମୁଁ ଧନ୍ୟବାଦ ଦେଇଛୁ ଯେ, ସେମାନେ ମୋତେ ଅବାଟରୁ ଟାଣିଆଣି ମୋ ନିଜ ବାଟରେ ମୋତେ ପକାଇ ଦେଇଛନ୍ତି । ସେତିକବେଳେ ମୁଁ ଏକ ପ୍ରତିଜ୍ଞା କରିଥିଲି ଯେ, ଅନ୍ତତଃ ଦଶବର୍ଷ ପର୍ଯ୍ୟନ୍ତ ମୁଁ ଏ ସବୁଥିରେ ଆଉ ପଶିବି ନାହିଁ । କ୍ଷୁବ୍ଧଭଗ୍ନ ହେବାରୁ ଭଗବାନଙ୍କ ନାମ ନେଉଛୁ କି ନାଁ, ସ୍ୱତଃ ହୃଦୟର ଭାବ ସେହି ଢଙ୍ଗରେ ଯାଉଛୁ କି ନାଁ ମୁଁ ଏ ବିଷୟରେ ମଧ୍ୟ ମନକୁ ପରୀକ୍ଷା କରିଥିଲି, ମାତ୍ର ଯେତେଦୂର ସମ୍ଭବ ମୋ ମନକୁ ପରିଷ୍କାର କରି ନେଇ ବୁଝିଥିଲି ଯେ, ଜିଲ୍ଲାବୋର୍ଡ଼ ପ୍ରଭୃତିରେ ମାତି ଏତେ ଶକ୍ତି ଦେବା ଏକ ପର୍ବତ ପ୍ରମାଣ ଭୁଲ ହୋଇଛି । ତା' ପରେ କଂଗ୍ରେସ ଅନୁଷ୍ଠାନ ପ୍ରତି ଓ ଗଠନମୂଳକ କାର୍ଯ୍ୟ ପ୍ରତି ମୋର ମନ ଗ୍ଭଲିଲା । ମୋର ପ୍ରାୟ ସମସ୍ତ ସହକର୍ମୀ ମୋ ସହିତ ଜିଲ୍ଲାବୋର୍ଡ଼ରେ ପଶିଲେ । ସେମାନଙ୍କୁ ସେଠି କଷ୍ଟରେ ଫେରାଇଥିଲି । ପ୍ରଜାତନ୍ତ୍ର କାର୍ଯ୍ୟ ପାଇଁ ଉପେନ୍ଦ୍ରନାଥ ପଣ୍ଡାଙ୍କୁ ଆଣିଥିଲି, କଂଗ୍ରେସ କାମ ପାଇଁ ସୁରେନ୍ଦ୍ରଙ୍କୁ ଟାଣିଥିଲି । ଅଳ୍ପ ସମୟ ଭିତରେ କଂଗ୍ରେସକୁ ଅନୁଷ୍ଠାନ ହିସାବରେ ଚଳାଇବାର ବନ୍ଦୋବସ୍ତ କରିଥିଲି । ଜିଲ୍ଲାର କେତେକ ସ୍ଥାନରେ ଖଦୀ ଉତ୍ପନ୍ନ କାର୍ଯ୍ୟ ମଧ୍ୟ ଆରମ୍ଭ କରାହୋଇଥିଲା ।

ଏହି ସମୟରେ ସାହିତ୍ୟଚର୍ଚ୍ଚା ମଧ୍ୟ କିଛି କିଛି କରିଥିଲି, 'ପୁଣ୍ୟାତ୍ମା ଗୋପବନ୍ଧୁ', 'ଚଷା ଭାଇ' ଓ 'ପଲ୍ଲୀ ଅବସାନେ' ଏହି ସମୟରେ ପ୍ରକାଶିତ ହୋଇଥିଲା । ଏସବୁ କବିତାରେ ଜନତାପାଇଁ ସାହିତ୍ୟ ସୃଷ୍ଟି କରିବା ଓ ସେଥିପ୍ରତି ସାହିତ୍ୟିକମାନଙ୍କ ଦୃଷ୍ଟି ଆକର୍ଷଣ କରିବା ମୋର ଉଦ୍ଦେଶ୍ୟ ଥିଲା । ଏ ଧରଣେଟି ବହି ଖୁବ୍ ବିକ୍ରି ହୋଇଥିଲା ଓ ସେଥି ମଧ୍ୟରୁ 'ପଲ୍ଲୀ ଅବସାନେ'କୁ ସରକାର ବାଜ୍ୟାପ୍ତି କରିଥିଲେ ।

ମାତ୍ର ମୋ ପ୍ରତି କନିକା ଦଳର ପ୍ରତିହିଂସା ଭାବ ଶାନ୍ତ ହେଉ ନ ଥାଏ ; ବରଂ ସେମାନଙ୍କ ଫାଶରୁ ମୁଁ ମୁକୁଳି ଯାଇଥିବାରୁ ସେମାନେ ବେଶୀ ଉତ୍‌କ୍ଷିପ୍ତ ହେଉଥାନ୍ତି । ମୋ ନାମରେ ପୁଣି ଦୁଇଟା ଫୌଜଦାରୀ ମୋକଦ୍ଦମା ଦାଏର ହେଲା । ଜିଲ୍ଲାବୋର୍ଡ଼ ସମ୍ପର୍କରେ ମୁଁ ଅର୍ଥ ଆତ୍ମସାତ୍ କରିଛି ଏହି ଅଭିଯୋଗ ମୋ ବିରୁଦ୍ଧରେ ଆସିଥାଏ । ଏହାକୁ ବିଚାର କରିବା ପାଇଁ ଜଣେ ବିହାରୀ ଡେପୁଟୀ ମାଜିଷ୍ଟ୍ରେଟ୍ ଖାସ୍ କରି ଆସିଥାନ୍ତି । କାରଣ ସରକାରଙ୍କ କାନରେ କୁହା ହେଉଥାଏ ଯେ, ମୁଁ ହାକିମମାନଙ୍କୁ ବଶ କରିନେଇଛି । ସେ କାନକୁହା ଫଳରେ ନବାଗଡ଼ ହିସାବ ସଂକ୍ରାନ୍ତ ଫୌଜଦାରୀ ମୋକଦ୍ଦମା ବିଚାର କରିଥିବା ନନ୍ଦଲାଲ୍ ସିଂହଙ୍କୁ ହଠାତ୍ ବଦଳି କରି ଦିଆହୋଇ ତାଙ୍କୁ ଅସମ୍ମାନଜନକ ସ୍ଥାନ ଦିଆ ହୋଇଥିଲା, ବର୍ତ୍ତମାନ ଏ ବିହାରୀ ଡେପୁଟୀ ମାଜିଷ୍ଟ୍ରେଟ୍ ମଧ୍ୟ ନୂତନ ଦାଏର ହୋଇଥିବା ଦୁଇଟି ମୋକଦ୍ଦମାରୁ ଗୋଟିଏ ମିଥ୍ୟା ବୋଲି ଡିସ୍‌ମିସ୍ କରିଦେଲେ । ଏ ମୋକଦ୍ଦମାରେ ଯେଉଁ ଜିଲ୍ଲାବୋର୍ଡ଼ କାଗଜପତ୍ରରୁ ଜଣାଗଲା ଯେ, ଅଭିଯୋଗ ମିଥ୍ୟା । ଔଷଧ ରୂପରେ ତାଟିଆ କାମୁଡ଼ିଲା ପରି ଏ ସମ୍ପର୍କରେ ଜିଲ୍ଲାବୋର୍ଡ଼ କିରାଣୀ କେତେ ଜଣ ନିଗୃହୀତ ହେଲେ । ଅନ୍ୟ ମୋକଦ୍ଦମାର ରାୟ ଦେବା ପୂର୍ବରୁ ବିହାରୀ ହାକିମ ଘୁରିଅଡ଼େ କହି ବୁଲିଲେ ଯେ, ବାଲେଶ୍ୱରକୁ ଜଣେ ଗୋରା ଜିଲ୍ଲା ମାଜିଷ୍ଟ୍ରେଟ୍ ଆସିବା ଉଚିତ । ଯେତେବେଳେ ଯେ ଭାରତୀୟ ଜିଲ୍ଲା ମାଜିଷ୍ଟ୍ରେଟ୍ ଥିଲେ ସେ ପୂରାପୂରି କନିକା ଦଳ ପ୍ରଭାବରେ ଥିଲେ । ଏ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ସହିତ ଆମର ଖୁବ୍ ସଂଘର୍ଷ ହୋଇଥିଲା । ଶେଷରେ ସେ ବଦଳି ହୋଇଗଲେ; ମାତ୍ର ତା' ପୂର୍ବରୁ ମୋ ମୋକଦ୍ଦମାରେ ବିହାରୀ ହାକିମ ରାୟ ଦେଲେ ଯେ, ମୁଁ ଦୋଷୀ ଏବଂ ସେଥିପାଇଁ ଛଅ ମାସ ଜେଲ । ମୋତେ ଏହା ଆଦୌ ବିଚଳିତ କରି ନ ଥିଲା—କାରଣ ଏହା ଜଣାଶୁଣା କଥା ଯେ ଏହା ଏକ ମିଥ୍ୟା ମୋକଦ୍ଦମା । ଶେଷରେ ହାଇକୋର୍ଟରେ ଏ ମୋକଦ୍ଦମାରେ ମୁଁ ନିର୍ଦ୍ଦୋଷ ପ୍ରମାଣିତ ହୋଇ ମୁକ୍ତ ହୋଇଥିଲି । ସେ ସମୟରେ ଏ ମୋକଦ୍ଦମା ଏପରି ଏକ ଉତ୍ତେଜନା ସୃଷ୍ଟି କରିଥାଏ ଯେ, ବହୁ ଅପ୍ରତ୍ୟାଶିତ ଅଞ୍ଚଳରୁ ମୁଁ ସାହାଯ୍ୟ ସହାନୁଭୂତି ପାଉଥାଏ । ଯେଉଁଦିନ ମୁଁ ହାଇକୋର୍ଟରେ ଖଲାସ ହେଲି ସେହିଦିନ କେନ୍ଦ୍ର ବ୍ୟବସ୍ଥା ସଭାର ସଦସ୍ୟ ମିଃ ବି. ଦାସ ମୋତେ

ସମ୍ମାନ ଦେଖାଇବା ପାଇଁ ଏକ ଭୁ ଭୋଜି ଦେଇଥିଲେ ଓ ସେଠାକୁ ଅନେକ ସରକାରୀ ବେସରକାରୀ ଭଦ୍ରଲୋକ ଆସିଥିଲେ । ସମସ୍ତେ ଆନନ୍ଦ ପ୍ରକାଶ କଲେ ଯେ ଅନ୍ତତଃ ହାଇକୋର୍ଟରେ କିଛି ହେଲେ ନ୍ୟାୟ ବିଚାର ଅଛି । ମୁଁ ସେମାନଙ୍କୁ କହିଥିଲି ଯେ, ତଳ କୋର୍ଟରେ ସାକ୍ଷୀ ପ୍ରମାଣ ନେବା ଇତ୍ୟାଦି ଠିକ୍ ନ ଥିଲେ ହାଇକୋର୍ଟ ବା କରିଥାନ୍ତା କଅଣ ? ମିଥ୍ୟା ମୋକଦ୍ଦମା ବିରୋଧରେ ପ୍ରବଳ ଜନମତ ସଗଠିତ ନ ହେବାଯାଏ ଖାଲି ହାଇକୋର୍ଟ ଉପରେ ନିର୍ଭର କରିବା ଠିକ୍ ନୁହେଁ । ସେତେବେଳକାର ଜନମତ ଯେପରି ମୁଁ ଜାଣିଥିଲି, ସେଥିରେ ମୁଁ ଉତ୍ସାହିତ ହୋଇଥିଲି । ଏତିକରେ ମୋକଦମା ଦାୟର କରିବା ଶେଷ ହେଲା ଓ କନିକା ଦଳ ଆଉ ସେ ଦିଗରେ ଅଗ୍ରସର ହୋଇ ନାହାନ୍ତି । ସେମାନଙ୍କ ଭିତରେ କେତେକଙ୍କ ମନରେ ମଧ୍ୟ ଏ ପ୍ରକାର କାର୍ଯ୍ୟର ତୀବ୍ର ପ୍ରତିକ୍ରିୟା ଆରମ୍ଭ ହୋଇଯାଇଥିଲା । ସେତେବେଳକୁ କେତେକ ସେ ଦଳ ଛାଡ଼ିଦେଇ ସାରିଲେଣି ଓ କଂଗ୍ରେସ ପ୍ରତି ସହାନୁଭୂତି ଦେଖାଇବା ଆରମ୍ଭ କଲେଣି । ସେତେବେଳକାର ସେ ଦଳର ଜଣେ ମୁଖ୍ୟ ସଦସ୍ୟ ଭୂୟାଁ ଭାସ୍କରଚନ୍ଦ୍ର ମହାପାତ୍ର ମୋତେ କହିଥିଲେ, ବାସ୍ତବିକ ଭଗବାନ ଆପଣଙ୍କ ପକ୍ଷରେ । ଆପଣଙ୍କୁ ଚାପି ଦେବାପାଇଁ ଯେଉଁ ଉଦ୍ୟମ ହୋଇଥିଲା, ତାହା ମୋତେ ସବୁ ଜଣାଅଛି । ସେଥିରୁ ଯେ ଆପଣ ମୁକ୍ତ ପାଇଲେ ଏହା କେବଳ ଭଗବାନଙ୍କ ସାହାଯ୍ୟ ଛଡ଼ା ଆଉ କିଛି ନୁହେଁ । ଏହି ଭଦ୍ରଲୋକ ପ୍ରଜାତନ୍ତ୍ର କାଗଜକୁ ଦୈନିକ କରିବା ପାଇଁ ମେସିନ ପ୍ରେସ କିଣିବାକୁ ଟ ୨୦୦୦୧ ଦେଇଥିଲେ ।

ଯାହାହେଉ, ଏସବୁ ନିର୍ଯ୍ୟାତନାରୁ ମୁକ୍ତ ହୋଇ ଆଉ ଏକ ମହା ଅସୁବିଧାରେ ପଡ଼ିଲି । ସେ ହେଉଛି ଅର୍ଥାଭାବ । ପ୍ରାୟ ଦୁଇବର୍ଷ କାଳ ମାଲିମୋକଦ୍ଦମାରେ ଏପରି ଖର୍ଚ୍ଚାନ୍ତ ହୋଇ ପଡ଼ିଥାଏ ଯେ, ଅନେକ ଆଡ଼େ ମୋର ଧାର କରଜ ହୋଇ ଯାଇଥାଏ, ଶେଷରେ କଟକ ବ୍ୟାଙ୍କରୁ ଟ ୭୫୦୦ ଙ୍କା କରଜ ଆଣି ଏସବୁ ଖୁଚୁରା ଧାର ଶୁଝିଦେଇ ମୁଁ ଆପାତତଃ ନିଶ୍ଚିନ୍ତ ହେଲି । ପ୍ରଜାତନ୍ତ୍ର ମୋର ମୁଖ୍ୟ କାମ ହେଲା । ଏହା ଭିତରେ ଏହା ଏକ ଶକ୍ତିଶାଳୀ କାଗଜ ହୋଇଗଲାଣି, ଗ୍ରାହକ ସଂଖ୍ୟା ଓ ବିକ୍ରୀ ପରିମାଣ ହିସାବରେ କେବଳ ନୁହେଁ, ସାଧାରଣଙ୍କ ଆପତ୍ତି ଅଭିଯୋଗ ଓ କର୍ତ୍ତୃପକ୍ଷଙ୍କ ଯଥେଚ୍ଛାଚାରକୁ ପଦାରେ ପକାଇବାରେ ଏହା ବିଶେଷତ୍ୱ ଅର୍ଜନ କରିଥିଲା । ଗଡ଼ଜାତର ନାନାବିଧ ଅତ୍ୟାଚାର ଏଥିରେ ପ୍ରକାଶିତ ହେଉଥିଲା । ସେତେବେଳେ ପ୍ରଜାତନ୍ତ୍ର ଯେପରି ଜନପ୍ରିୟ—ସେହିପରି ଯଥେଚ୍ଛାଚାରୀଙ୍କର ଭୟର ବସ୍ତୁ ଥିଲା ମଧ୍ୟ ।

ଇତିମଧ୍ୟରେ ମୋର ଧର୍ମପତ୍ନୀ ସୁଭଦ୍ରା ଦେବୀଙ୍କୁ ଆଣି ବାଲେଶ୍ୱରରେ ମୋ ପାଖରେ ରଖି ଅଲଗା ବସା କରିଥାଏ, ସେ ବିଚାରି ବାଧ୍ୟ ହୋଇ ମୋତେ ସନ୍ତୁଷ୍ଟ

କରିବା ପାଇଁ ଯଥାସାଧ୍ୟ ଚେଷ୍ଟା କରୁଥାନ୍ତି; କିନ୍ତୁ ମୁଁ ଲକ୍ଷ୍ୟ କରୁଥାଏ ଯେ ତାଙ୍କ ମନରେ ଆଦୌ ସୁଖ ନ ଥାଏ । ତାଙ୍କ ଚେହେରା ଦେଖିଲେ ମୋ ମନରେ ଏକ କରୁଣାର ଭାବ ଆସେ, ମାତ୍ର ମୋର ଅନ୍ୟ ଉପାୟ ନ ଥାଏ ।

ସବୁଆଡ଼ୁ ନିଜକୁ ସମ୍ପାଡ଼ି ସୁତୁଡ଼ି ନେଇ କଂଗ୍ରେସ ସଂଗଠନ ଦିଗରେ କାମ ଲଗାଇଛୁ, ଏହି ସମୟରେ ଲାହୋର କଂଗ୍ରେସରେ ପୂର୍ଣ୍ଣ ସ୍ୱାଧୀନତା ପ୍ରସ୍ତାବ ପାଶ୍ ହେଲା ଓ ଏକ ଗଣ ଆନ୍ଦୋଳନ ଶୀଘ୍ର ହେବାର ସୂଚନା ମିଳିଲା । ସେତେବେଳେ ମୋର ସହକର୍ମୀ ସୁରେନ୍ଦ୍ର ସହିତ ମୁଁ ନିଭୃତରେ ଆଲୋଚନା କରିଛୁ ଯେ, ଲୁଣମରା ପାଇଁ ଆମେ ସ୍ୱାଧୀନ ଭାବରେ ଗଣ ଆନ୍ଦୋଳନ କରିପାରିବା କି ନାହିଁ । ୨୫ ଜଣ ଲୋକ ମୃତ୍ୟୁ ପାଇଁ ପ୍ରସ୍ତୁତ ହେବାକୁ ବାହାର କରି ପାରିଲେ ଗାନ୍ଧିଜୀ ଓଡ଼ିଶାରେ ଲୁଣମରା ପାଇଁ ଗଣ ଆନ୍ଦୋଳନ କରନ୍ତେ; ମାତ୍ର ହୋଇପାରୁ ନ ଥାଏ । ତଥାପି ଲୁଣ ଅଞ୍ଚଳରେ ଲୁଣମରା ଭିତ୍ତି କରିବା ପାଇଁ ସଭା ସମିତି କରିବାରେ ଆମେ ଲାଗିଲୁ । ପରରେ ଯେଉଁ ଲବଣ ସତ୍ୟାଗ୍ରହ ହେବ ତାର ପୂର୍ବାଭାସ ସ୍ୱତଃ ମୋ ମନରେ କପରି କାମ କରିଥିଲା, ଏହା ଭାବିଲେ ମୋତେ ଆଶ୍ଚର୍ଯ୍ୟ ଲାଗେ ।

# ୧୯୩୦-୧୯୩୧

୧୯୩୦ ମସିହା ମାର୍ଚ୍ଚ ମାସ ବେଳକୁ ଜଣାପଡ଼ିଗଲାଣି ଯେ, ମହାତ୍ମାଗାନ୍ଧି ଲୁଣମରା ଗୁଡ଼କୁ କେନ୍ଦ୍ର କରି ସ୍ୱରାଜ୍ୟ ଆନ୍ଦୋଳନ ଚଳାଇବେ । ସେ ବର୍ଷ ମୋର ଅନୁପସ୍ଥିତିରେ ମୋତେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ସଭାପତି କରି ଦେଇଥାନ୍ତି । ମୁଁ ସେ ପଦଗ୍ରହଣ କରିଥିଲେ ମଧ୍ୟ ମୋ ମନ ଏହି ଲୁଣମରା ଆନ୍ଦୋଳନ ଉପରେ ଲାଗିଥାଏ । ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ହିସାବରେ ଏହି ସମୟରେ ଏପରି ଏକ କାର୍ଯ୍ୟ କରିବାକୁ ପଡ଼ିଥିଲା, ଯାହା ପଛକୁ ମୋତେ ଉତ୍କଟ ବାଦବିବାଦ ଓ ଦଳାଦଳିରେ ପକାଇଥିଲା । କଂଗ୍ରେସ ନିର୍ଦ୍ଦେଶ ଦେଲେ ଯେ, ବ୍ୟବସ୍ଥାସଭାର ସଦସ୍ୟମାନେ ଇସ୍ତଫା ଦିଅନ୍ତୁ । ଓଡ଼ିଶାର ସମସ୍ତ ସଭ୍ୟ ଇସ୍ତଫା ଦେଲେ । ପଣ୍ଡିତ ନୀଳକଣ୍ଠ ମଧ୍ୟ କେନ୍ଦ୍ର ବ୍ୟବସ୍ଥାସଭାରୁ ଇସ୍ତଫା ଦେଲେ । ମାତ୍ର ପୁଣି ସ୍ୱାଧୀନ ଭାବରେ ସେ ପଦପାଇଁ ପ୍ରାର୍ଥୀ ହୋଇ ମୋ ଠାରୁ ଆଶା କଲେ ଯେ, ମୁଁ ତାଙ୍କୁ ସମର୍ଥନ କରେ ଓ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ମଧ୍ୟ ସମର୍ଥନ କରୁ । ମାତ୍ର ମୁଁ ଏଥିରେ ରାଜି ହେଲିନାହିଁ । ତାଙ୍କୁ ମୁଁ ଖୁବ୍ ବୁଝାଇଛି; ମାତ୍ର ସେ ମହାତ୍ମାଗାନ୍ଧିଙ୍କ ନେତୃତ୍ୱ ପ୍ରତି ଏପରି ବୀତସ୍ପୃହ ଯେ କୌଣସି କଥା ସେ ଶୁଣିଲେ ନାହିଁ । ସବୁ ଜିଲ୍ଲାରେ କଂଗ୍ରେସ କର୍ମୀମାନଙ୍କୁ ନାନା ପ୍ରଲୋଭନ ଦେଖାଇ କଂଗ୍ରେସ ବିରୁଦ୍ଧରେ ତାଙ୍କ ନିର୍ବାଚନ କାମରେ ଲଗାଇବାର ଚେଷ୍ଟା କଲେ ।

ମୋ ନାମରେ ଏକ ଜାଲ ପ୍ରଚାରପତ୍ର ବଣ୍ଟାହେଲା ଯେ, ମୁଁ ତାଙ୍କୁ ସମର୍ଥନ କରୁଛି । ଏହାର ମୁଁ ପ୍ରତିବାଦ କଲି ଓ କଂଗ୍ରେସ କର୍ମୀମାନଙ୍କୁ ନିବର୍ତ୍ତାଇବା ପାଇଁ ଚେଷ୍ଟା କଲି । ନୀଳକଣ୍ଠ ବାବୁ ସେତେବେଳେ ଜିଦ୍ କରୁଥା'ନ୍ତି ଯେ, ଓଡ଼ିଶା କଂଗ୍ରେସ ବାହାରେ ନୀତି ବଜାୟ ରଖି ଭିତରେ ସାହାଯ୍ୟ କରୁ । ମୋତେ ଏହା ବଡ଼ ଅନ୍ୟାୟ ବୋଧ ହେଲା । ତେଣୁ ମୁଁ ମୋର ଶକ୍ତିମତେ କଂଗ୍ରେସ କର୍ମୀଙ୍କୁ ବିପଥଗାମୀ କରିବାର ଉଦ୍ୟମରେ ବାଧା ଦେଇଥିଲି । ମାତ୍ର ଅନେକ କର୍ମୀ ନୀଳକଣ୍ଠ ବାବୁଙ୍କ କଥାରେ ମଜ୍ଜିଥିଲେ । ଏହିଠାରୁ ତାଙ୍କ ସହିତ ମୋର ସଂଘର୍ଷ ଆରମ୍ଭ ହେଲା । ଏ କଥାକୁ ସେତେବେଳେ କିଏ ପଚାରୁଛି, ଆମେ ସମସ୍ତେ ସତ୍ୟାଗ୍ରହ ପାଇଁ ମାତୁଥାଉ । ମୋ ସହିତ ବେଶୀ ସହକର୍ମୀ ନ ଥାଆନ୍ତି । ଗତ କେତେବର୍ଷ ହେଲା ମାଟ୍ରିକ୍ୟୁଲେସନ ପରୀକ୍ଷା ଦେବାକୁ ଆସୁଥିବା

ଛାତ୍ରମାନଙ୍କୁ ମୁଁ ନିମନ୍ତ୍ରଣ କରି ସମ୍ବର୍ଦ୍ଧନା କରି ଆସୁଥାଏ । ସେମାନଙ୍କ ସହିତ ନାନା କଥାର ଆଲୋଚନା ହୁଏ ଓ ସେମାନଙ୍କୁ ଦେଶକାମରେ ଉତ୍ସାହିତ କରିବା ପାଇଁ ଚେଷ୍ଟା କରେ । ସେତେବେଳେ ଯୁବକ ଆନ୍ଦୋଳନ ଚାରିଆଡ଼େ ଚାଲିଥାଏ । ଓଡ଼ିଶାରେ ମଧ୍ୟ । କଟକରେ ଏକ ଯୁବକ ଅଫିସ ଖୋଲାହୋଇ ଯୁବକ ନାମରେ ଗୋଟିଏ ସାପ୍ତାହିକ ପତ୍ରିକା ବାହାର କରାଯାଉଥାଏ । ବାଲେଶ୍ୱରରେ ଗୋଟିଏ ଯୁବକ ଅଫିସ ଖୋଲିଥାଏ । ଗ୍ରାମ ପ୍ରତି ଠାରେ ଗୋଟିଏ ସଂଘ ଖୋଲିଥାଏ । ୧୯୩୦ ମସିହାର ଯେଉଁ ମାଟ୍ରିକ୍ୟୁଲେଶନ ପରୀକ୍ଷାର୍ଥୀମାନଙ୍କୁ ନିମନ୍ତ୍ରଣ କରିଥିଲି, ସେମାନଙ୍କୁ ନିବେଦନ କରିଥିଲି, ଏହି ଲୁଣମାରି ପାଇଁ କାର୍ଯ୍ୟ କରିବାକୁ । ଏହା ଗାନ୍ଧିଜୀଙ୍କ ଲୁଣମାରି ଆନ୍ଦୋଳନ ଘୋଷଣା କରିବା ପୂର୍ବରୁ । ସେଥି ଭିତରୁ ପ୍ରାୟ ବାରଜଣ ଛାତ୍ର କାମ କରିବା ପାଇଁ ରାଜି ହୋଇଥିଲେ । ସେମାନଙ୍କୁ ଇଞ୍ଚୁଡ଼ି ଗ୍ରାମଙ୍କ ଅଞ୍ଚଳରେ ପୋଖରୀ ସାଫ୍ କରିବା, ଔଷଧ ବାଣ୍ଟିବା ଇତ୍ୟାଦି କାମରେ ମୁଁ ଲଗାଇଥିଲି । ସୁରେନ୍ଦ୍ର ଓ ମୁଁ ସେହି ଅଞ୍ଚଳରେ ସଭା କରି ବୁଲୁଥାଉଁ । ଏସବୁ ସଭାରେ ମୁଁ ରାଜନୀତିକ ବକ୍ତୃତା ଦେଉ ନ ଥାଏ । ଦରିଦ୍ରକୁ ଦାନାର ଯୋଗାଡ଼ କରିଦେବାପାଇଁ ଜୀବନ ପର୍ଯ୍ୟନ୍ତ ଦେବା ହିଁ ଉତ୍କୃଷ୍ଟ ଧର୍ମ । ଏହି ମର୍ମରେ ସବୁଆଡ଼େ ପ୍ରଚାର କରୁଥିଲି । ସୁରେନ୍ଦ୍ର, ମୁଁ ଓ କେତେଜଣ ଛାତ୍ର ଯେ ଏ କାମରେ ଲାଗିଛୁ, ଏ କଥା ଅନ୍ୟ କେହି ଜାଣି ନ ଥିଲେ ।

କ୍ଷେତ୍ର ପ୍ରସ୍ତୁତ କରି କୌଶଳ ଅନୁକ୍ରମେ ଆନ୍ଦୋଳନ ଆରମ୍ଭ କରିବାକୁ ମୋର ଇଚ୍ଛା ଥାଏ । ଏହି ସମୟରେ ସେତେବେଳେ ମହାତ୍ମା ଗାନ୍ଧୀ ଲବଣ ସତ୍ୟାଗ୍ରହ କରିବାର ଘୋଷଣା କଲେ, ସେତେବେଳେ ପ୍ରାଣ ମୋର ନାଚିଉଠିଲା । ମୁଁ କଟକ ଗଲି, ସେଠାରେ ଗୋପବନ୍ଧୁ ଚୌଧୁରୀଙ୍କ ଘରେ ପ୍ରାଦେଶିକ କଂଗ୍ରେସ କମିଟିର ବୈଠକ ହେଲା । ସେତେବେଳେ ଗୋପବାବୁ, ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିହାରୀ, ନବକୃଷ୍ଣ ଚୌଧୁରୀ ଏମାନେ ଭାବୁଥା'ନ୍ତି ଯେ ଓଡ଼ିଶାରେ ତ ଗଣ-ଆନ୍ଦୋଳନ ହେବାର ସମ୍ଭାବନା ଦେଖାଯାଉନାହିଁ, ଅତଏବ ସେମାନେ କେତେଜଣ ଯାଇ ଗୁଜୁରାଟରେ ଗାନ୍ଧିଜୀଙ୍କ ସହିତ ଯୋଗଦେବେ । ଏ ପ୍ରସ୍ତାବରେ ପଢ଼ିଆରୀ ମହାଶୟ ବାଧା ଦେଉଥା'ନ୍ତି । ଏହି ସମୟରେ ମୁଁ ନିର୍ଭର ଜବାବ ଦେଲି ଯେ, ବାଲେଶ୍ୱରରେ ଗଣ ଆନ୍ଦୋଳନ ଯଶସ୍ୱୀ ହେବାର ସମ୍ଭାବନା ଅଛି । ଆଲୋଚନା ପରେ ତାହା ହିଁ ଠିକ୍ ହେଲା । ଗୋପବନ୍ଧୁ ଚୌଧୁରୀଙ୍କ ସେନାପତିତ୍ୱରେ ବାଲେଶ୍ୱରରେ ଲବଣ ସତ୍ୟାଗ୍ରହ ହେବାର ପ୍ରାଦେଶିକ କଂଗ୍ରେସ କମିଟି ଦ୍ୱାରା ସ୍ୱୀକୃତ ହୋଇଗଲା ପରେ ଆମେ ଦୁଇଗୁଣ ଉତ୍ସାହରେ କାମରେ ଲାଗିଲୁ । ଆମେ ସେଠି ଏପରି କ୍ଷେତ୍ର ପ୍ରସ୍ତୁତ କରିଥିଲୁ ଯେ, ପୋଲିସ ବା ସରକାରୀ କର୍ମଚାରୀଙ୍କୁ କେହି ଯେପରି ସ୍ଥାନ ନ ଦିଅନ୍ତି । ତେଣେ ଗୁଜୁରାଟରେ ଦାଣ୍ଡୀ



ଶ୍ରୀ ହରେକୃଷ୍ଣ ମହତାବ୍ ଓ ଶ୍ରୀମତୀ ସୁଭଦ୍ରା ମହତାବ୍



ନିଖିଳ ଭାରତ କଂଗ୍ରେସ କାର୍ଯ୍ୟକାରିଣୀ କମିଟିର ସଦସ୍ୟ ଭାବେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ,
ମୌଲାନା ଆଜାଦଙ୍କ ସହ ମଦ୍ଭାବ

ଅଭିଯାନ ଗାନ୍ଧିଜୀ ଆରମ୍ଭ କଲେ । ଏଣେ ଗୋପବନ୍ଧୁ ଚୌଧୁରୀ ଇଞ୍ଚୁଡ଼ି ପାଇଁ ଅଭିଯାନ ପଦବ୍ରଜରେ କଟକରୁ ଆରମ୍ଭ କଲେ । ମାତ୍ର ଗାନ୍ଧିଜୀଙ୍କ ନିର୍ଦ୍ଦିଷ୍ଟ ତାଲିକାରେ ସେ ପହଞ୍ଚିବାର ସମ୍ଭାବନା ନ ଥିବାରୁ ଆଚାର୍ଯ୍ୟ ହରିହର ପୁରୋଧା ହୋଇ ପ୍ରଥମେ ଇଞ୍ଚୁଡ଼ି ତଟାଞ୍ଚଳରେ ଲୁଣମାରି ଗିରଫଦାର ହେଲେ । ସେତେବେଳକାର ସାଧାରଣ ଉତ୍ସାହ ଏଠାରେ ବର୍ଣ୍ଣନା କରିବାକୁ ସ୍ଥାନ ନାହିଁ । ବାଲେଶ୍ୱରରୁ ଇଞ୍ଚୁଡ଼ି ପ୍ରାୟ ଚାର ମାଇଲ ବାଟ । ହଜାର ହଜାର ପୁରୁଷ ସ୍ତ୍ରୀ ବାଳକଙ୍କ ଅଭ୍ୟର୍ଥନା ଓ ବନ୍ଦାପନା ଭିତରେ ଆଚାର୍ଯ୍ୟ ମହାଶୟ ଓ ତାଙ୍କ ଦଳ ଲୁଣମରା ଅଭିଯାନ କରିଥିଲେ । ଲୁଣମରା ଦିନ ସେଠି ହଜାର ହଜାର ଲୋକ ଥିଲେ । ସେଠି ପୋଲିସକୁ ବସିବା ପାଇଁ ସ୍ଥାନ କେହି ଦେଇନାହାନ୍ତି । ପାନ ଖଣ୍ଡେ ସୁଦ୍ଧା କେହି ଯାଚି ନାହାନ୍ତି । ତମ୍ବୁରେ ଯେଉଁ ପୋଲିସ୍ ଥିଲେ, ସେମାନେ ଜାଲ ଚୁଲି ନେଇ ସେଠି ଖାଉଥିଲେ । ଏପରି ବର୍ଜ୍ଜନ ସେଠି ଜାରି ହେବ ବୋଲି ଆମ କାହାରି ଧାରଣା ନ ଥିଲା । ଏଣେ ବାଲେଶ୍ୱରରେ ମୁଁ ଓ ଦୁଇ ତିନି ଜଣ କର୍ମୀ ବାହାରିଯାଇ ଅଲଗା ଏକ ସତ୍ୟାଗ୍ରହ ଶିବିର କଲୁ । ପ୍ରଥମେ ଖୁନ୍ଦାର ବ୍ୟବସ୍ଥା କରି ନ ଥିଲୁ । ମାତ୍ର ପରେ ଡାକ୍ତର କୃଷ୍ଣ ପ୍ରସାଦ ମହାନ୍ତିଙ୍କ ଯତ୍ନରେ ଦୈନିକ ବଜେଟ୍ ଅନୁସାରେ ୫୬୦ଙ୍କା ଗୁନ୍ଦା ଉଠିଥିଲା । ଏ ଖର୍ଚ୍ଚ ମଧ୍ୟରେ ଦୈନିକ ପ୍ରଜାତନ୍ତ୍ର ବାହାରିବାର ବ୍ୟବସ୍ଥା ମଧ୍ୟ ଥିଲା । ଏହି ଅବସରରେ ପ୍ରଜାତନ୍ତ୍ର ଦୈନିକ ହୋଇଗଲା । ନିତି ନିତି ଅତି ଉତ୍ତେଜକ ଭାବରେ ସତ୍ୟାଗ୍ରହ ବର୍ଣ୍ଣନା ସେଥିରୁ ବାହାରୁଥିଲା । ସେତେବେଳେ ଶ୍ରୀ ଉପେନ୍ଦ୍ରନାଥ ପଣ୍ଡା ପ୍ରଜାତନ୍ତ୍ରର ସମ୍ପାଦକ ଓ ପରିଚାଳକ, ତାଙ୍କ ସହକାରୀ ଶ୍ରୀ ବିଶ୍ୱନାଥ ହୋତା ସତ୍ୟାଗ୍ରହରେ ଯୋଗଦେବେ ବୋଲି ସତ୍ୟାଗ୍ରହ ଶିବିରକୁ ବାହାରି ଆସିଥାନ୍ତି । ଗରମ ପିଠା ପରି ପ୍ରଜାତନ୍ତ୍ର ସେତେବେଳେ ବିକ୍ରୀ ହେଉଥାଏ । ଓଡ଼ିଶାର ସବୁଆଡ଼ୁ ଦଳକୁଦଳ ସତ୍ୟାଗ୍ରହୀ ବାଲେଶ୍ୱର ଶିବିରକୁ ଆସି ଇଞ୍ଚୁଡ଼ି ଅଞ୍ଚଳକୁ ଯାଉଥାନ୍ତି । ସେ ଅଞ୍ଚଳର ଜନତାଙ୍କ ଏକତା ଓ ଉତ୍ସାହ ଦେଖି ସମସ୍ତେ ଅଭିଭୂତ ହୋଇଛନ୍ତି । ଯେତେବେଳେ ସାଧାରଣ ଭାବରେ ଲୁଣମରା ଆଇନ୍ ଅମାନ୍ୟ କରାହେଲା, ସେତେବେଳେ ହଜାର ହଜାର ଲୋକ ଏ ଆଇନ୍ ଅମାନ୍ୟ କରି ଲୁଣ ମାରିଛନ୍ତି, ଲଠିମାଡ଼ ଖାଇଛନ୍ତି । ସରକାରୀ ରିପୋର୍ଟ ଅନୁସାରେ ଇଞ୍ଚୁଡ଼ି ସତ୍ୟାଗ୍ରହ ଭାରତରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲା, ପ୍ରଥମ ଥିଲା ଗୁଜରାଟ ଯେଉଁଠି ଗାନ୍ଧିଜୀ ସତ୍ୟାଗ୍ରହ ଆରମ୍ଭ କରିଥିଲେ । ଏହି ଇଞ୍ଚୁଡ଼ି ଲୁଣ ସତ୍ୟାଗ୍ରହ ବେଳେ ମୋର ସହକର୍ମୀ ଶ୍ରୀ ସୁରେନ୍ଦ୍ରନାଥ ଦାସ ଯେଉଁ ନିଷ୍ଠା ଓ ତ୍ୟାଗର ପ୍ରମାଣ ଦେଇଥିଲେ, ତାହା ତାଙ୍କୁ ସର୍ଦ୍ଦାର ଉପାଧି ଦାନ ଦ୍ୱାରା ସୂଚାଇ ଦିଆ ହୋଇଥିଲା । ସେହିଦିନରୁ ସର୍ଦ୍ଦାର ସୁରେନ୍ଦ୍ର ନାମ ଡାକ ହୋଇଗଲା । ଲୁଣ ଆନ୍ଦୋଳନ ପରେ ପରେ ଚୌକିଦାରୀ ଟିକସ ବନ୍ଦ ଓ ସେଥିରେ ପୋଲିସକୁ ମାଡ଼

ଦେବାର ନିମିତ୍ତ କରି ସେ ଅଞ୍ଚଳରେ ଅଧିକ ପୋଲିସ ରଖିବାର ବ୍ୟବସ୍ଥା ଓ ଶ୍ରୀଜଙ୍ଗ ଗ୍ରାମରେ ପୋଲିସ ଅତ୍ୟାଚାର, ତତ୍ପୂର୍ବରୁ ବାଲେଶ୍ୱର ସମୁଦ୍ର ଉପକୂଳସାରା ଲୁଣମାରା ସତ୍ୟାଗ୍ରହ ଏବଂ ଓଡ଼ିଶାର ସବୁ ଜିଲ୍ଲାରେ ଲବଣ ସତ୍ୟାଗ୍ରହ ଓ ଆଇନ ଅମାନ୍ୟ ଏ ସବୁର ବିସ୍ତୃତ ବର୍ଣ୍ଣନା ଏଠାରେ ଦିଆଯାଇ ପାରିବ ନାହିଁ । ୧୯୩୦ ଅପ୍ରେଲ ୧୭ ତାରିଖ ଦିନ ବାଲେଶ୍ୱର ସତ୍ୟାଗ୍ରହ ଶିବିରରେ ଗୋପବନ୍ଧୁ ଚୌଧୁରୀ କଟକରୁ ଆସି ଥାଆନ୍ତି । ସେହିଦିନ ସେ ଓ ମୁଁ ଏକ ସଙ୍ଗରେ ଧରାହେଲୁଁ ଓ ଦୁହିଁଙ୍କୁ ଦେଢ଼ ବର୍ଷ କରି କାରାଦଣ୍ଡ ହେଲା ।

ସେତେବେଳକୁ ବନ୍ଦୀଙ୍କ ସୁବିଧା ପାଇଁ ଯତୀନ ଦାସ ଅନଶନ କରି ପ୍ରାଣ ଦେବା ଫଳରେ ଜେଲଖାନାର ନିୟମ ସବୁ ପରିବର୍ତ୍ତିତ ହୋଇଯାଇଥାଏ । 'କ' ଶ୍ରେଣୀ, 'ଖ' ଶ୍ରେଣୀ ଓ 'ଗ' ଶ୍ରେଣୀ—ଏହିପରି ତିନି ଶ୍ରେଣୀରେ ବନ୍ଦୀ ହେବାର ନିୟମ ଚାଲୁହେଲା । 'ଗ' ଶ୍ରେଣୀ ହେଉଛି ସାଧାରଣ କଏଦୀ ଶ୍ରେଣୀ, ତା' ଉପରକୁ 'ଖ' ଶ୍ରେଣୀ ଓ ତା' ଉପରକୁ 'କ' ଶ୍ରେଣୀ । ଏ ସବୁ ଶ୍ରେଣୀର ଆଲୋଚନା କରି ଲାଭନାହିଁ । କ୍ରମଶଃ ତାହା ବଲେ ଜଣା ପଡ଼ିବ । ପ୍ରଥମେ ଗୋପବାବୁଙ୍କୁ ଓ ମୋତେ 'କ' ଶ୍ରେଣୀରେ ରଖା ହୋଇଥିଲା । ବାଲେଶ୍ୱର ଜେଲରୁ ଆମେ ହଜାରିବାଗ ଗଲୁ । ଓଡ଼ିଶାର 'କ' ଓ 'ଖ' ଶ୍ରେଣୀର ବନ୍ଦୀମାନେ ସେଇଠି ରହୁଥିଲେ । ଆମେ ଯାଇ ହଜାରିବାଗରେ ପହୁଞ୍ଚିବା ବେଳକୁ ବିହାରର ଅନେକ ପୁରାତନ ବନ୍ଧୁ ସେଠି ଆସି ପହଞ୍ଚି ସାରିଲେଣି । ଜୀବରାମଜୀ କଲ୍ୟାଣଜୀ କୋଠାରୀ, ଯେ ୧୯୨୮ ସାଲରେ ଗାନ୍ଧିଜୀଙ୍କ ସହ ଓଡ଼ିଶା ଆସିଥିଲେ ଓ ଓଡ଼ିଶାର ଦାରିଦ୍ର୍ୟ ନିବାରଣ ପାଇଁ ଏକ ଲକ୍ଷ ଟଙ୍କା ଖଦୀକାର୍ଯ୍ୟ ସକାଶେ ଦାନ କରି ଭଦ୍ରଖରେ ଆଶ୍ରମ କରିଥିଲେ, ସେ ଲୁଣ ଆଇନ ଅମାନ୍ୟ କରି ୬ ମାସ ଶିକ୍ଷା ପାଇ ହଜାରିବାଗ ଅସିଥାନ୍ତି । ଆଚାର୍ଯ୍ୟ ହରିହର, କରୁଣାକର, ବିଶ୍ୱନାଥ, ନନ୍ଦବାବୁ ଏମାନେ ସମସ୍ତେ ଧୀରେ ଧୀରେ ଆସିଗଲେ, ଓଡ଼ିଶାରୁ ଆହୁରି ଅନେକ ଆସିଗଲେ । ଖବର ମିଳୁଥାଏ ଯେ, ଲୁଣ ସତ୍ୟାଗ୍ରହ ବିଶାଳ ସଫଳତାର ସହିତ ଚାଲିଛି । କିଛିଦିନ ପରେ ପଣ୍ଡିତ ନୀଳକଣ୍ଠ ମଧ ଜେଲ ଆସିଲେ । ତାଙ୍କ କଥାରୁ ଜଣାପଡ଼ିଲା ଯେ, ଏ ସତ୍ୟାଗ୍ରହରେ ଯୋଗ ନ ଦେଇଥିଲେ ସାଧାରଣ ଜୀବନରେ ସ୍ଥିତି ରହି ନ ଥାନ୍ତା—ସାଧାରଣଙ୍କ ଭିତରେ ଏତେ ଉତ୍ସାହ ଓ ଉନ୍ମାଦନା । ଆମେ ସମସ୍ତେ କିଛିଦିନ ରହିବା ପରେ ସରକାର ରାଜନୈତିକ ବନ୍ଦୀମାନଙ୍କର ଶ୍ରେଣୀ ବିଭାଗ ପରିବର୍ତ୍ତନ କଲେ । ଆମ ଓଡ଼ିଶାରୁ କେବଳ ଗୋପବନ୍ଧୁ ଚୌଧୁରୀ 'କ' ଶ୍ରେଣୀର ହୋଇ ରହିଲେ; କରୁଣାକର, ବିଶ୍ୱନାଥ ପ୍ରଭୃତି 'ଗ' ଶ୍ରେଣୀଭୁକ୍ତ ହୋଇ ପାଟଣା କେମ୍ପ ଜେଲକୁ ଗଲେ, ନନ୍ଦବାବୁ, ମୁଁ, ନୀଳକଣ୍ଠବାବୁ, ଆଚାର୍ଯ୍ୟ ମହାଶୟ, ଜୀବରାମଜୀ ପ୍ରମୁଖ କେତେଜଣ 'ଖ' ଶ୍ରେଣୀଭୁକ୍ତ ହୋଇ ରହିଲୁ । ପରେ ନୀଳକଣ୍ଠ ବାବୁ ସେତେବେଳକାର ଏକ୍‌ଜିକ୍ୟୁଟିଭ କାଉନ୍‌ସିଲ ମେମ୍ବର କନିକା ରାଜାଙ୍କଠାରୁ

ପତ୍ର ଲେଖି 'କ' ଶ୍ରେଣୀଭୁକ୍ତ ହେଲେ । ଜେଲରେ ଜୀବରାମଜୀଙ୍କ ସନ୍ତ ଆଶ୍ରମ ନିୟମରେ ମୁଁ ଚଳିବାକୁ ମନସ୍ଥ କଲି । ମୂଳରୁ ଜୀବରାମଜୀଙ୍କର ମୋ ପ୍ରତି ସ୍ନେହ ଥାଏ ଓ ସେ ଆଶା କରୁଥାନ୍ତି ଯେ ମୁଁ ପୂରାପୂରି ଗାନ୍ଧିଜୀଙ୍କ ଗଠନମୂଳକ କାମରେ ଯୋଗ ଦିଏ—ଯେ ଆଶା ସେ ମୃତ୍ୟୁ ପର୍ଯ୍ୟନ୍ତ ପୋଷଣ କରି ନିରାଶ ହୋଇଥିଲେ । ପ୍ରତିଦିନ ନିୟମିତ ରୂପେ ସୂତା କାଟିବା, ପ୍ରାର୍ଥନା କରିବା, ଗୀତା ପଢ଼ିବା ଓ ଜେଲ୍ ନିୟମ ଅନୁସାରେ ଜେଲ୍‌ରେ ଚକ୍ରି କାମ କରିବା ଏ ସବୁ କରି ବଡ଼ ଆନନ୍ଦ ଅନୁଭବ କରୁଥିଲି । ଏଠାରେ ବାଲ୍ମୀକି ରାମାୟଣକୁ ସଂସ୍କୃତରୁ ଓଡ଼ିଆ ଅନୁବାଦ କରିଥିଲି । ଆଉ ମଧ୍ୟ ଗୀତାକୁ ଅତି ସରଳ ଓଡ଼ିଆରେ ଗଦ୍ୟାକାରରେ ଲେଖିଥିଲି ।

ଏଥରକ ଜେଲ୍ ପୂର୍ବ ଜେଲ୍‌ଠାରୁ ଏତେ ପୃଥକ୍ ଯେ, ଏଥର ମୁଁ ଜେଲ୍‌ରେ ଅଛି ବୋଲି ଜଣାପଡ଼ୁ ନ ଥାଏ । ଏକମାତ୍ର ଚିନ୍ତା ମୋର ଥାଏ ଦୈନିକ ପ୍ରଜାତନ୍ତ୍ର କିପରି ଚାଲିଛି । ଗତ କେତେବର୍ଷ ହେଲା 'ପ୍ରଜାତନ୍ତ୍ର' ପ୍ରତି ମୋର ମମତା ଏତେ ବଢ଼ି ଯାଇଥାଏ ଯେ, ତାକୁ ସର୍ବାଙ୍ଗ ସୁନ୍ଦର କରିବା ପାଇଁ ସବୁ କିଛି କରିବା ଲାଗି ମୁଁ ତିଆରି ହେଉଥାଏ । ଖବର ପାଇଲି ଯେ କନିକା ରାଜା ଖଜଣା ଅସୁଲି ପାଇଁ ସର୍ଟିଫିକେଟ୍ କ୍ଷମତା ପାଇବାକୁ ପୁଣି ଚେଷ୍ଟା କରୁଛନ୍ତି । ଏ କ୍ଷମତା ପାଇଁ ସେ ଆଗରୁ ଚେଷ୍ଟା କରି ଆସୁଥିଲେ । ମାତ୍ର ମୁଁ ସେଥିରେ ଏତେ ବାଧା ଦେଇଥିଲି ଯେ, ତାହା ହୋଇପାରୁ ନ ଥିଲା । ଥରେ ଏ ସମ୍ପର୍କରେ ତତ୍କାଳୀନ ଲାଟ୍ ସାହେବଙ୍କୁ ଦେଖା କରି ତାଙ୍କୁ ସବୁ ବୁଝାଇ କହିବା ଫଳରେ ଏହା ବନ୍ଦ ହୋଇଥିଲା । ମାତ୍ର ବର୍ତ୍ତମାନ ରାଜନୈତିକ ପରିସ୍ଥିତିର ସୁବିଧା ନେଇ ପୁଣି ସେ ଦିଗରେ ଉଦ୍ୟମ ହେବାର ଶୁଣି ମୁଁ ବିଚଳିତ ହେଲି । ଏଣେ ମଧ୍ୟ ପତ୍ର ପାଇଲି ଯେ ଉପେନ୍ଦ୍ର ଧରା ହୋଇ ଜେଲ୍ ଚାଲିଗଲେଣି । ପ୍ରଜାତନ୍ତ୍ର ପାଇଁ ଲେଖିବାକୁ କେହି ନାହାନ୍ତି । ଆଉ ମଧ୍ୟ ଚୌକିଦାରୀ ଟିକସ୍ ବନ୍ଦ ଆନ୍ଦୋଳନ, ଶ୍ରୀଜଙ୍ଗରେ ପୋଲିସ୍ ଅତ୍ୟାଚାର, ଲୁଟତରାଜ ଓ ସେ ଅଞ୍ଚଳରେ ପିଉନିଟିଭ୍ ପୋଲିସ ରହିବାର ଆଦେଶ, ଏସବୁ ଖବର ପାଇ ମୁଁ ବ୍ୟସ୍ତ ଅନୁଭବ କଲି । ଯେତେବେଳେ ଏତେଲୋକ ଜେଲ୍ ଆସୁଥାନ୍ତି ଓ ପ୍ରାୟ ପ୍ରତିଦିନ ଏତେ ଜେଲ୍‌ରୁ ଖଲାସ ହେଉଥାନ୍ତି ଯେ, ଖବର ମିଳିବା ଅତି ସହଜ ବ୍ୟାପାର ହୋଇଥାଏ । ତା'ଛଡ଼ା ଜେଲ୍‌କୁ ଅତି ବେଶୀ ରାଜବନ୍ଦୀ ଆସିବା ଫଳରେ ଜେଲ୍‌ର କଟକଣା ମଧ୍ୟ ଢିଲା ଧରି ଯାଇଥାଏ । ଏହାର ସୁବିଧା ନେଇ ମୁଁ ପ୍ରଜାତନ୍ତ୍ର ପାଇଁ ଦୈନିକ କିଛି ଲେଖା ଅବୈଧ ଭାବରେ ପଠାଇବାରେ ଲାଗିଲି । ଦିନାକେତେ ଏହା ବେଶ୍ ଚାଲିଲା, ମାତ୍ର ତେଣେ ସରକାରଙ୍କ ତରଫରୁ ବନ୍ଦୋବସ୍ତ ହେଲାଣି ଯେ, ଡାକଘରେ ସି. ଆଇ. ଡି. ଚିଠି ଖୋଲି ଦେଖିବ, ଏହା ମୋତେ ଜଣା ନ ଥିଲା । ଅନେକଗୁଡ଼ିଏ ମୋର ଲେଖା ବାଲେଶ୍ୱର ଡାକଘରେ ଧରା ପଡ଼ିଲା । ସେଥି ଭିତରୁ ଗୋଟିଏ ହେଉଛି କନିକା

ରାଜା ସାର୍ଟିଫିକେଟ୍ କ୍ଷମତା ପାଇଁ କରୁଥିବା ଉଦ୍ୟମ ବିରୁଦ୍ଧରେ । ଏସବୁ ଲେଖା ଧରାପଡ଼ି ସରକାରଙ୍କ ପାଖକୁ ଗଲା । ୧୯୩୦ ସାଲ ଅକ୍ଟୋବର ମାସରେ ଦିନେ ଜେଲର ଆସି ମୋତେ ଖବର ଦେଲେ ଯେ, ମୁଁ ଅବୈଧ ଭାବରେ ଚିଠି ଲେଖିଥିବା ହେତୁ 'ଖ' ଶ୍ରେଣୀରୁ 'ଗ' ଶ୍ରେଣୀକୁ ଖସାଇ ଦିଆଯାଇଛି, ତେଣୁ ମୋତେ ପାଟଣା କ୍ୟାମ୍ପ୍ ଜେଲକୁ ଯିବାକୁ ହେବ । ଏ ସମ୍ବାଦରେ ମୁଁ ଆଦୌ ବିଚଳିତ ହୋଇ ନ ଥିଲି, କାରଣ ଯେତେ 'ଗ' ଶ୍ରେଣୀ ହେଉପଛକେ ସେ କେବେ ୧୯୨୨ ସାଲର ଭାଗଲପୁର ଜେଲ୍ ହେବ ନାହିଁ । ମାତ୍ର ମୋର କେତେକ ବନ୍ଧୁ ମୋର ଏ କାର୍ଯ୍ୟକୁ ନାପସନ୍ଦ କରିଥିଲେ ଓ ମୋତେ ନିନ୍ଦା ଚକ୍ଷୁରେ ଦେଖିଥିଲେ ।

ପାଟଣା କ୍ୟାମ୍ପ ଜେଲକୁ ଯିବା ପୂର୍ବରୁ ଆଉ ଏକ ବିଷୟ ମୁଁ ଲକ୍ଷ୍ୟ କରିଥିଲି, ତାହା ଉଲ୍ଲେଖ କରିବା ପ୍ରୟୋଜନ । କଂଗ୍ରେସର ପ୍ରତିଷ୍ଠା ବର୍ତ୍ତିମାନ ବଢ଼ୁ ଉପରେ, ନୂତନ ଶାସନ ସଂସ୍କାରର ପରିକଳ୍ପନା ସେତେବେଳେ ଚାଲିଥାଏ । ଯାହା କିଛି ହେଉ ବର୍ତ୍ତିମାନ ଯେତିକ କ୍ଷମତା ଭାରତୀୟଙ୍କ ହାତକୁ ଦିଆ ହୋଇଛି, ତା'ଠାରୁ ବେଶୀ ନିଶ୍ଚୟ ନୂତନ ଆଇନ ଫଳରେ ମିଳିବ । କଂଗ୍ରେସ ଯେପରି ସୁପ୍ରତିଷ୍ଠିତ ହୋଇଗଲାଣି, ସେଥିରେ ଅତିଶୀଘ୍ର ଯେ ଶାସନ କ୍ଷମତା କଂଗ୍ରେସ ହାତକୁ ଆସିବ ଏହା ଅନେକଙ୍କର ଦୃଢ଼ବିଶ୍ୱାସ—ବିଶେଷତଃ ଯେଉଁମାନେ ବିପ୍ଳବ ଦିଗରେ ବେଶୀ ଦୂର ଯିବାକୁ ଇଚ୍ଛୁକ ବା ପ୍ରସ୍ତୁତ ନୁହନ୍ତି, ସେହିମାନଙ୍କର । ଏମାନେ କଂଗ୍ରେସ ଭିତରେ ନିଜର କର୍ତ୍ତୃତ୍ୱ କିପରି ସ୍ଥାପନ କରିବେ ଓ କଂଗ୍ରେସ ପ୍ରତିଷ୍ଠାକୁ ବ୍ୟବହାର କରିପାରିବେ, ଏଥିପାଇଁ ଜେଲ୍ ଭିତରେ ପ୍ରବଳ ଉଦ୍ୟମ ଚାଲିଥାଏ । ଜେଲ୍ ଆସିବାରେ ଯେ ତ୍ୟାଗ କରାହେଲା ତା'ର ମୂଲ୍ୟ କ'ଣ ରହିଲା, ଯଦି ବାହାରେ ସେ ତ୍ୟାଗ ବିନିମୟରେ କ୍ଷମତା ହାତକୁ ନ ଆସେ—ଏହା ହିଁ କେତେକଙ୍କ ପ୍ରଚାର ଥିଲା । ମୋ ସହିତ ଏ ବିଷୟରେ ଅନେକ ଯୁକ୍ତି କରି ମୋତେ ଟଣାଟଣି କରିଛନ୍ତି, ମାତ୍ର ସେତେବେଳେ ମୁଁ ସମସ୍ତଙ୍କୁ କହିଛି ଯେ ତାହା ବିପ୍ଳବର ପନ୍ଥା ନୁହେଁ; ତଦ୍ଦ୍ୱାରା ସ୍ୱରାଜ୍ୟ ସ୍ଥାପିତ ହୋଇ ପାରିବ ନାହିଁ । କଂଗ୍ରେସର ପ୍ରତିଷ୍ଠା ପ୍ରମାଣିତ ହେବା ସଙ୍ଗେ ସଙ୍ଗେ ଆଉ ଏକ ବିକାର ଦେଖା ଦେଇଥିଲା । ତାହା ହେଉଚି ନିର୍ବାଚନ ଇତ୍ୟାଦିରେ ଯଶସ୍ୱୀ ହେବାକୁ କଂଗ୍ରେସ ପ୍ରତିଷ୍ଠା ଆବଶ୍ୟକ । ଏଣୁ ନିର୍ବାଚନକୁ ଦୃଷ୍ଟି ରଖି ଅନେକ କଂଗ୍ରେସ ଭିତରକୁ ଆସି ଯାଉଥାନ୍ତି ଓ କିଛିଦିନ ପାଇଁ ଜେଲ୍‌କୁ ମଧ୍ୟ ଆସି ଯାଉଥାଆନ୍ତି । ଜେଲରେ ଏମାନଙ୍କର ଚିନ୍ତା ଚାଲିଥାଏ, କିପରି ଆସନ୍ତା ନିର୍ବାଚନରେ କଂଗ୍ରେସକୁ ବ୍ୟବହାର କରିବାକୁ ହେବ । ଏ ନୂତନ ଆଗନ୍ତୁକମାନେ ପୂର୍ବ ବର୍ଣ୍ଣିତ କ୍ଷମତାପ୍ରୟାସୀ ପୁରାତନ କଂଗ୍ରେସ ଲୋକଙ୍କ ସହିତ ମେଣ୍ଟ ବାନ୍ଧୁଥାନ୍ତି । ଏହା ଯେ କଂଗ୍ରେସ ଅନୁଷ୍ଠାନକୁ କାଳକ୍ରମେ ଦୁର୍ବଳ କରି ପକାଇବ, ଏହା ସେତେବେଳେ ମୁଁ ସମସ୍ତଙ୍କୁ କହିଥିଲି ।

ମାତ୍ର ମୁଁ ନଜେ ଏକ ସମୟରେ ସମ୍ବାଦପତ୍ର ଇତ୍ୟାଦରେ ଏତେ ମାଡ଼ିଥିଲି ଯେ, ମୋ କଥାର ଯେ କେବଳ ମୂଲ୍ୟ ରହୁ ନଥାଏ ତାହା ନୁହେଁ, ଅପରନ୍ତୁ ମୋତେ ସନ୍ଦେହ କରାଯାଉଥାଏ ଯେ ମୁଁ କେବଳ ଉପର ମୁହଁରେ ବିପ୍ଳବ ଓ ଗଠନମୂଳକ କାମ କଥା କହୁଛି; କିନ୍ତୁ ପେଟ ଭିତରେ ମୁଁ ମୋର ଦଳ ଗଠନ କରି କ୍ଷମତା ମାଡ଼ି ବସିବାକୁ ଉଦ୍ୟମ କରୁଛି । ଏପରି ସନ୍ଦେହ ନ୍ୟାୟସଙ୍ଗତ ଏହା ବୋଲିବା ନିଷ୍ପ୍ରୟୋଜନ । ସେହିଠାରୁ କଂଗ୍ରେସକୁ ନିଜର ବ୍ୟବହାର କରିବାର ପରିକଳ୍ପନା ୧୯୩୦ରେ ଆରମ୍ଭ ହୋଇଥିଲା, ତାହାର ଚରମବିକାଶ ଓ ପରିଣତି ୧୯୩୭ରେ କେବଳ ଓଡ଼ିଶାରେ ନୁହେଁ, ଭାରତର ସର୍ବତ୍ର ପରିସ୍ଫୁଟ ହେଲା—ଅବଶ୍ୟ ଓଡ଼ିଶାରେ ସବୁଠାରୁ ବେଶୀ ତା' କାମ କରିଥିଲା ।

ଏ ତ ଗଲା ଅନ୍ଧକାର ପାର୍ଶ୍ୱ । ଆଲୋକ ପାର୍ଶ୍ୱ ଅତି ପ୍ରଶସ୍ତ ଓ ଆଶାଜନକ । ଅଦ୍ଭୁତ ଭାବରେ ନାରୀଜାଗରଣ ଦେଶବ୍ୟାପୀ ଏପରି ପ୍ରକାଶ ପାଇଲା ଯେ, ସର୍ବୋତ୍କୃଷ୍ଟ ଆଶାବାଦୀ ମଧ୍ୟ ତାହାର କଳ୍ପନା କରି ନ ଥିଲେ । ଓଡ଼ିଶା ପରି ପ୍ରଦେଶରେ ଯେଉଁଠି ନାରୀଶିକ୍ଷା ବୋଧହୁଏ ସବୁଠାରୁ ତଳ ସ୍ତରରେ, ସେଠି ଶହଶହ ନାରୀ ଘର କୋଣରୁ ବାହାରି ଆସି ଆଇନ୍ ଅମାନ୍ୟ କରି କାରାବରଣ କରିବା ଏକ ଅଭିନବ ବ୍ୟାପାର । ମୋ ପକ୍ଷରେ ଅତି ଉଲ୍ଲାସର ବିଷୟ ହୋଇଥାଏ ଯେ ସୁଭଦ୍ରା ଦେବୀ ଆଇନ୍ ଅମାନ୍ୟ କରି ଲଗ୍ ଲଗ୍ ଦୁଇଥର ମାସ ମାସକି ପାଇଁ ଜେଲ୍ ଗଲେଣି । ମୁଁ ଯେତେବେଳେ ଏକଥା ଭାବି ଦେଉଥାଏଁ, ମୋ ମନ ପୂରି ଉଠୁଥାଏ । ମୋ ସାନଭାଇ ଗୋପୀନାଥ ସ୍କୁଲର ପାଠପଢ଼ା ଛାଡ଼ି ସତ୍ୟାଗ୍ରହ କରି ଜେଲ୍ ଯାଇଥାଏ । ଏହା ବାବାଙ୍କୁ ଆଘାତ ଦେଇଥିବ ଭାବି ସୁଦ୍ଧା ମୋ ମନରେ ଆନନ୍ଦ ଜାତ ହେଉଥାଏ । ମୋର ଭଉଣୀ ଶ୍ରୀମତୀ ମଇନାବତୀ ସତ୍ୟାଗ୍ରହ କରି ଜେଲ୍ ମଧ୍ୟ ଗଲେ । ମୋ ନିଜ ଘରର ଉତ୍ସାହ ଦେଖି ମୋର ବିଶ୍ୱାସ ଦିନକୁ ଦିନ ବଢ଼ୁଥାଏ ଯେ, ଏ ସତ୍ୟାଗ୍ରହ ନିଶ୍ଚୟ ସଫଳକାମ ହେବ; ତେଣୁ ବନ୍ଦୀ ହିସାବରେ ଶ୍ରେଣୀ ଯେଉଁ ମୋ ମନ ବିଚଳିତ ହୋଇ ନଥିଲା ।

ମୁଁ ପାଟଣା କ୍ୟାମ୍ପ ଜେଲରେ ପହଞ୍ଚିଲି । ସେଠି ଏକ ବିରାଟ ବ୍ୟାପାର । ଲମ୍ବା ତାରବାଡ଼ ଘେରା ହୋଇଛି । ମଝିରେ ମଝିରେ ବନ୍ଧୁକଧାରୀ ପୋଲିସ ବନ୍ଧୁକ ଧରି ବାଡ଼ପାଖେ ଛିଡ଼ା ହୋଇଛନ୍ତି । ଭିତରେ ଟିଣଘର ସବୁ ଛିଡ଼ା ହୋଇଛି, ଟିଣ ଛଡ଼, କାନ୍ଥ ସବୁ ଟିଣର । ଏଇଥିରେ ମୁଁ ଯିବାବେଳକୁ ପ୍ରାୟ ପ.ଞ୍ଚହଜାର ଅଛନ୍ତି । ପାଣି ଯିବା ନାଳ, ପାଇଖାନା, ପାଣିକଳ, ରୋଷେଇ ଘର, ବିଜୁଳି ଆଲୁଅ ଏ ସବୁର ବନ୍ଦୋବସ୍ତ ହୋଇଛି । ଏତେ ରାଜବନ୍ଦୀ ଏକ ସଙ୍ଗରେ ଦେଖି ବିପ୍ଳବର ଏକ ଝଲକ ମନ ଭିତରେ ଖେଳିଗଲା । ମୋର ସହକର୍ମୀ ନୀଳାମ୍ବର, ବିଶ୍ୱନାଥ,

କରୁଣାକର ଏମାନେ ଏଠାରେ ଥାଆନ୍ତି । ଓଡ଼ିଶାରୁ ପ୍ରାୟ ୭୦୦ ପର୍ଯ୍ୟନ୍ତ ଏଠାରେ ଥାଆନ୍ତି । ମୁଁ ଯାଇ ସେଠି ପହଞ୍ଚିବା ମାତ୍ରକେ ସମସ୍ତେ ବିସ୍ମିତ ହେଲେ; ମାତ୍ର ସେ ବିସ୍ମୟ କିଛି କ୍ଷଣ ପରେ ଆନନ୍ଦରେ ପରିଣତ ହେଲା । କାରଣ ଏକ ସଙ୍ଗରେ ରହିବାର ସୁବିଧା ମିଳିଲା ।

ଏଠାରେ ମଧ୍ୟ ମୁଁ ନିଜର ଏକ ଦୈନିକ କାର୍ଯ୍ୟନିର୍ଘଣ୍ଟ କରି ତଦନୁସାରେ ନିଯୁକ୍ତ ହୋଇ ଚଳିଲି । ମୋ ସହିତ ଅନ୍ୟ କେତେକ ବନ୍ଦୀ ମଧ୍ୟ ଯୋଗ ଦେଲେ । ଏଠାରେ ମୁଁ ଦେଖିଲି ଯେ, ଜେଲ୍ କର୍ତ୍ତୃପକ୍ଷଙ୍କ ସହିତ ବନ୍ଦୀମାନଙ୍କର ବରାବର ସଂଘର୍ଷ ଚାଲିଛି । ବନ୍ଦୀମାନେ ଯାହା ଦରକାରୀ ବୋଲି ଦାବୀ କରୁଛନ୍ତି, ତାହା ନିୟମବିରୁଦ୍ଧ କହି ଜେଲ୍ କର୍ତ୍ତୃପକ୍ଷ ମଞ୍ଜୁର କରୁନାହାନ୍ତି । ତେଣେ ନିୟମ ନାମରେ ଜେଲ କର୍ତ୍ତୃପକ୍ଷ ଯାହା ଦାବୀ କରୁଛନ୍ତି, ତାହା ଆତ୍ମସମ୍ମାନବିରୁଦ୍ଧ କହି ବନ୍ଦୀମାନେ ମଞ୍ଜୁର କରୁନାହାନ୍ତି—ଏହିପରି ଚାଲିଥାଏ । ଅନେକ ଥର ଲଠିଧାରୀ ଓ ବନ୍ଧୁକଧାରୀ ପୋଲିସ ଜେଲ୍ ଭିତରକୁ ଆସିଲେଣି । ସେଠି ଜଣେ ମୁସଲମାନ ଜେଲର ଥିଲେ—ଯାହାଙ୍କ କଥା ମୁଁ କେବେହେଲେ ଭୁଲି ପାରିବିନାହିଁ । ସେ ଏତେ ଶାନ୍ତ ଓ ସହିଷ୍ଣୁ ଯେ, ସେ ଉତ୍କୃଷ୍ଟ ସତ୍ୟାଗ୍ରହୀ ହୋଇପାରିଥାନ୍ତେ । ହଜାର ହଜାର ଲୋକ ତାଙ୍କୁ ଗାଳି ଦେଉଥାନ୍ତି, ନାନାପ୍ରକାର ବିରକ୍ତ କରୁଥାନ୍ତି, ମାତ୍ର ସେ କାହାରିକୁ ହେଲେ ହେଲେ ପାଟି କରି କିଛି କହୁନାହାନ୍ତି । ମୁଁ ଚେଷ୍ଟା କରିଥିଲି ବନ୍ଦୀ ଓ କର୍ତ୍ତୃପକ୍ଷଙ୍କ ଭିତରେ ସଂଘର୍ଷ ବନ୍ଦ କରିବାପାଇଁ । ପ୍ରଥମ କଥା— ଜେଲ୍ କାମ । ହଜାର ହଜାର ଲୋକଙ୍କୁ କାମ ଦେବା ଅସମ୍ଭବ ବ୍ୟାପାର । ମାତ୍ର ଜେଲ୍ କର୍ତ୍ତୃପକ୍ଷ ଚାହୁଁଥା'ନ୍ତି ଯେ ସେହି ଜେଲ୍‌ରେ ଯେଉଁ ଅଟା ଓ ଡାଲି ଖରଚ ହେଉଛି, ତାହା ବନ୍ଦୀମାନେ ପେଷି ଦିଅନ୍ତୁ; ମାତ୍ର ତାହା ହେଉ ନ ଥାଏ । ମୁଁ ଜେଲର ସହିତ କଥାବାର୍ତ୍ତା କରି ଅଳ୍ପ କମ୍ ଗହମ ଓ ଡାଲି ନିଜ ଦାୟିତ୍ୱରେ ପେଷାଇବା ପାଇଁ ଆଣିଲି । ଅନ୍ୟ ସାତ ଆଠଜଣ ମିଶି ଆମେ ତା' କରି ଦେଉଥିଲୁ । ଏତଦ୍ୱାରା ସେ ବିଷୟରେ ଆଉ ସଂଘର୍ଷ ରହିଲା ନାହିଁ । ବନ୍ଦୀମାନେ କାମ କରୁଛନ୍ତି ବୋଲି ନିୟମ ରକ୍ଷା ହେଲା ଓ ଜେଲ କର୍ତ୍ତୃପକ୍ଷ ପୂରା କାମ ଯାହା ଚାହୁଁଥିଲେ ତାହା ନେଲେନାହିଁ । ସକାଳ ଓଳି ଆମେ ତିନିଘଣ୍ଟା ଏହି ଜେଲ୍ କାମ କରୁଥିଲୁ । ମୁଁ ଲକ୍ଷ୍ୟ କରିଛି ଯେ, ଆମେ କେତେଜଣ ଯେ ଏ କାମ କରୁଥିଲୁ ତାହା ଦୁର୍ବଳତା ବୋଲି ଅନେକ ନିନ୍ଦା କରୁଥିଲେ । ତା'ପରେ ରହିଲା ବନ୍ଦୀଙ୍କ ଦାବୀ—ଏକାଦଶୀ ବା ଅନ୍ୟ ଉପବାସ ଦିନ ଜେଲ୍ ତରଫରୁ ଫଳ ଦିଆହେଉ । ଯେଉଁମାନେ କେବେହେଲେ ବାହାରେ ଉପାସ କରନ୍ତି ନାହିଁ, ସେମାନେ ମଧ୍ୟ ଉପାସ ଆରମ୍ଭ କରିଥାନ୍ତି । ଆଉ ଗୋଟିଏ ସାଧାରଣ ଦାବୀ ହେଉଛି ଭାତ ପରିବର୍ତ୍ତେ ରୋଟି, ଏ ଦୁଇଟି ଦାବୀ ନ୍ୟାୟସଙ୍ଗତ ନୁହେଁ

ବୋଲି ମୋ ସାଙ୍ଗମାନଙ୍କୁ ମୁଁ ଯେତେ ବୁଝାଉଥାଏ, କେହି ମାନୁ ନ ଥାନ୍ତି । ଥରେ ଜେଲର ଜଣେ କଣ୍ଟ୍ରାକ୍ଟରଙ୍କ ସହିତ ଦୈବାତ୍ ଜେଲ ଅଫିସରେ ଦେଖା ହୋଇଗଲା । ସେଦିନ ତାଙ୍କର ଜିନିଷ ଯୋଗାଇବା ବାବଦ୍ ବିଲ କରି ଟଙ୍କା ନେଉଥାନ୍ତି । ମୁଁ ତାଙ୍କୁ ଅନୁରୋଧ କରିବାରେ ସେ ସେଦିନ ଏକାଦଶୀ ପାଇଁ ଫଳ ଖରିଦ କରିବାକୁ କିଛି ଟଙ୍କା ଦେଇଦେଲେ । ସେଥିରେ ଫଳ ଆସିଲା । ମାତ୍ର ଏହାକୁ ନଜର କରି ଥରେ ଫଳ ଦିଆ ହୋଇଛି—ବରାବର କାହିଁକି ନ ଦିଆଯିବ ବୋଲି ଆନ୍ଦୋଳନ ଚାଲିଲା । ମୁଁ ଏପରି ଅଡୁଆରେ ପଡ଼ିଗଲି ଯେ କିଛି ହେବ ନାହିଁ । ବଡ଼ ଆଶ୍ଚର୍ଯ୍ୟର କଥା, ମୋ ସହକର୍ମୀମାନଙ୍କୁ ସୁଦ୍ଧା ସେମାନଙ୍କ ଅନ୍ୟାୟ ଦାବୀ ବିଷୟ ବୁଝାଇ ପାରୁ ନ ଥାଏ । ଜେଲରେ ସମସ୍ତଙ୍କର ଟିକିଏ ବୁଦ୍ଧିର ବିଭ୍ରାଟ ସାଧାରଣତଃ ଘଟିଥାଏ । ଅନ୍ୟଥା ସେଠାରେ ସଂଘର୍ଷର ସେପରି କିଛି କାରଣ ନ ଥିଲା । ସେଠାରେ ଖାଲି ବସି ରହି, ଅତି ସୀମାବଦ୍ଧ କ୍ଷେତ୍ରରେ ନିଜକୁ ରଖିବାକୁ ବାଧ୍ୟ ହୋଇ ମନ ମଧ୍ୟ ଟିକିଏ ଛୋଟ ହୋଇଯାଏ । ଛୋଟ ଛୋଟ କଥାରେ ଜିଦ୍, ସାମାନ୍ୟ ଗୁଡ଼ ଟିକିଏ, ଦୁଧ ଟିକିଏ ପାଇବା ପାଇଁ ଅଦମ୍ୟ ଲାଳସା ଓ ତାର ଅତୃପ୍ତିରେ ନାନାପ୍ରକାର ଆନ୍ଦୋଳନ, ଏସବୁ ଦେଖି ମୁଁ ଭାବିଲି ଯେ, ନିଜକୁ କାର୍ଯ୍ୟରେ ନିଯୁକ୍ତ ଓ ମନକୁ ପ୍ରଫୁଲ୍ଲ ରଖିବା ପାଇଁ କିଛି ଉପାୟ ବାହାର କରିବା ଦରକାର । ଏକ କବିତା ପ୍ରତିଯୋଗିତା ସମ୍ମିଳନୀ ଦିନ ଦିନରେ ଥରେ ଲେଖାଏଁ ବସାଇଲି । ନିଜେ ଦୁଇଟି ନାଟକ ଲେଖି ଅଭିନୟ କରାଇଲି । କବିତା ପ୍ରତିଯୋଗିତାରେ ଅନେକ ଲୋକ ଯୋଗଦେଲେ । ମୁଁ ଦେଖି ବିସ୍ମିତ ହେଲି ଯେ, ଅନେକ ଅପଢ଼ା ଲୋକ ଭଲ ଭଲ କବିତା ଲେଖୁଥାନ୍ତି । ଏସବୁ କବିତାକୁ ମୁଁ ବାଛି ପରେ ପ୍ରକାଶ କରିବି ବୋଲି, କହିବାରେ ସମସ୍ତେ ଭାରି ଖୁସି ହେଲେ । ସେହି କବିତାବଳୀ 'ବେଡ଼ିର ଝନ ଝନ' ନାମରେ ପାଣ୍ଡୁଲିପି ଆକାରରେ ମୋ'ଠାରେ ବହୁ ବର୍ଷ ରହି ଶେଷରେ ୧୯୪୭ରେ 'ନିଗଡ଼ନିସ୍ୱନ' ନାମରେ ଶ୍ରୀ ବୀରକିଶୋର ଦାସଙ୍କ ଦ୍ୱାରା ପ୍ରକାଶିତ ହେଲା । ମୋର 'ସ୍ୱରାଜ୍ୟ ସାଧନ' ନାଟକ ଦୁଇବାର ଅଭିନୀତ ହୋଇଥିଲା । ଏହା ଅତି ଚିତ୍ତାକର୍ଷକ ହୋଇଥିଲା ବୋଲି ସମସ୍ତେ ମତ ଦେଇଥିଲେ । ସେହି ଜେଲରେ ଏହାର ହିନ୍ଦି ଅନୁବାଦ ମଧ୍ୟ ହୋଇଥିଲା । ଜେଲରୁ କେତେକ ଏହାକୁ ନେଇ ଆସି ବାହାରେ ଅନେକ ସ୍ଥଳରେ ଅଭିନୟ କରିଛନ୍ତି । ଅନ୍ୟ ନାଟକଟି ଛୋଟ ହୋଇଥିଲେ ମଧ୍ୟ ସମସ୍ତଙ୍କ ମନ ମାନିଥିଲା । ଜେଲରେ କେତେ ବୁଦ୍ଧି ବାହାରେ, ଏହି ନାଟକର ସାଜସଜ୍ଜାରୁ ଜଣେ ସହଜରେ ଜାଣି ପାରିବ । ଅତି ଟିକିନିଖି ଜିନିଷ ଯୋଗାଡ଼ ହୋଇ ଆସୁଥାଏ । ବାହାରେ ନାଟକ ହୋଇଥିଲେ ଯେପରି ହୋଇଥାନ୍ତା, ଜେଲରେ ପ୍ରାୟ ଠିକ୍ ସେହିପରି ହୋଇଥିଲା । କମ୍ବଳକୁ ସିନ୍ ପରି ବ୍ୟବହାର କରାହୋଇଥିଲା । ଏହାଛଡ଼ା ବାଗୁଡ଼ି ଖେଳ ମଧ୍ୟ ଆରମ୍ଭ ହୋଇଥିଲା । ଏସବୁ ଫଳରେ ଅବସ୍ଥା କେତେକ ପରିମାଣରେ ବାଗକୁ ଆସୁଥାଏ ।

ଏହି ସମୟରେ କଂଗ୍ରେସ-ସହିତ ଇଂରେଜ ସରକାରଙ୍କର ଅସ୍ଥାୟୀ ସନ୍ଧି ହୋଇଗଲା; ବନ୍ଦୀମାନେ ମୁକ୍ତ ହୋଇଯିବାର କଥା ହୋଇଗଲା । ସେ ସମୟରେ କି ଉତ୍ସାହ, କି ଆନନ୍ଦ ଓ କି ଉଦ୍‌ବେଗ !!! ଦଳକୁ ଦଳ ପ୍ରତିଦିନ ଖଲାସ ହେବାରେ ଲାଗିଲେ । ଘଟଣାକ୍ରମେ ମୁଁ ପ୍ରାୟ ସର୍ବଶେଷ ଦଳକୁ ରହିଲି । ମୁକ୍ତିରେ ଜଣିବାର ଯେ ମାନସିକ ହାସ, ତାହା ସେହି ସମୟରେ ମୁଁ ଅନୁଭବ କରିଥିଲି ।

ମୋର ବନ୍ଧୁମାନେ ଆଗେ ମୁକ୍ତ ହୋଇଗଲେ, ମୁଁ ଶେଷରେ ଏକୁଟିଆ ହୋଇ ଓଡ଼ିଶା ଫେରିଲି । ମୁଁ ଖଡ଼ଗପୁରରେ ପହଞ୍ଚିଲାରୁ ଜଣେ ଓଡ଼ିଆ ରେଲ-ବିଭାଗର କର୍ମୀ ମୋତେ ପଚାରିଲେ, 'ଆପଣ କେଉଁ ଗାଡ଼ିରେ ବାଲେଶ୍ୱରରେ ପହଞ୍ଚିବେ ?' ମୁଁ କହିଲି 'କାହିଁକି ?' ସେ କିଛି ନ କହି ହସିଲେ—ତା'ପରେ ମୁଁ ଯେତେବେଳେ ପାସେଞ୍ଜର ଟ୍ରେନ୍‌ରେ ଚଢ଼ିଲି, ସେତେବେଳେ ସେ ମୋତେ ଦେଖି ଟେଲିଫୋନ୍‌ରେ ଜଳେଶ୍ୱର, ବସ୍ତା, ବାଲେଶ୍ୱର ପ୍ରଭୃତି ଷ୍ଟେସନକୁ ଜଣାଇ ଦେଲେ ଓ ମୋତେ ଆସି କହିଲେ ଆପଣ କାଲେ ଠିକ୍ ବେଳରେ ଯାଇ ନ ପହଞ୍ଚିବେ; ତେଣୁ ଏପରି କରିବା ପାଇଁ ମୋତେ ପତ୍ର ଆସିଥିଲା—ଆପଣ ଆଗେ କୁଆଡ଼େ ଥିବେ ସମସ୍ତଙ୍କୁ ଯେଉଁଦିନ ଯିବେ ବୋଲି କହିଥିଲେ ସେ ଦିନ ଗଲେ ନାହିଁ । ମୁଁ ଜାଣିପାରିଲି ଯେ ମୋର ୧୯୨୩ ମସିହାର ସେହି ସହକର୍ମୀ ଏପରି ବନ୍ଦୋବସ୍ତ କରିଛନ୍ତି । ବାଲେଶ୍ୱର ଜିଲ୍ଲା ଆରମ୍ଭ ହେବା ମାତ୍ରକେ ପ୍ରତ୍ୟେକ ଷ୍ଟେସନରେ ମୋତେ ଅଭିବାଦନ ମିଳିଲା । ବାଲେଶ୍ୱରରେ ବିପୁଳ ଅଭ୍ୟର୍ଥନାର ବନ୍ଦୋବସ୍ତ ହୋଇଥିଲା—ମୋତେ ବଡ଼ ସଙ୍କୋଚ ବୋଧ ହେଉଥାଏ । ସଭାରେ ସମସ୍ତେ ସେହି ମହାତ୍ମା ଗାନ୍ଧୀଙ୍କୁ ଆନ୍ତରିକ ଅଭ୍ୟର୍ଥନା କରିବା ପାଇଁ କହିଥିଲି । ତା'ପରେ ଭଦ୍ରକରେ ଯେଉଁ ଅଭ୍ୟର୍ଥନା ମୋତେ ମିଳିଥିଲା, ସେଥିରେ ମୁଁ ଲଜ୍ଜା ଓ ସଙ୍କୋଚରେ ମୁଣ୍ଡ ନଇଁ ଦେଇଥିଲି । ମନ ଭିତରେ ମୁଁ ପ୍ରାର୍ଥନା କରୁଥାଏଁ ବାସ୍ତବିକ ଏ ସବୁ ଅଭ୍ୟର୍ଥନାର ମୁଁ ଉପଯୁକ୍ତ ହୁଏ !

ଏହି ସମୟରେ ମୋତେ ଏକ ପ୍ରବଳ ଧକ୍କା ଲାଗିଲା—ବିଶ୍ୱନାଥର ଆକସ୍ମିକ ମୃତ୍ୟୁରେ । ଜେଲରୁ ମୁକ୍ତ ହୋଇ ଆସିବାର କିଛିଦିନ ପରେ ହଠାତ୍ ସେ କଲେରାରେ ମରିଗଲା । ସୁବୋଧ ମୃତ୍ୟୁରେ ଯେ ଆଘାତ ମୋତେ ଲାଗିଥିଲା, ତା'ଠାରୁ ବେଶୀ ଆଘାତ ଏଥିରେ ଲାଗିଲା । ସେ ପ୍ରଜାତନ୍ତ୍ରର ମେରୁଦଣ୍ଡ ଥିଲା । ତା'ପରି ଉତ୍ସାହୀ ସରଳ ଯୁବକଙ୍କୁ ସହକର୍ମୀ ହିସାବରେ ପାଇବା ସୌଭାଗ୍ୟର ବିଷୟ ଥିଲା । ବହୁଦିନ ପର୍ଯ୍ୟନ୍ତ ମୁଁ ତାକୁ ଝୁରି ହୋଇଛି ।

ଏହା ପରେ କରାଚୀ କଂଗ୍ରେସ ହେଲା । ପ୍ରଥମ ଥର ବିଜେତାର ଉଲ୍ଲାସ ଭୂମିରେ ଧରି କଂଗ୍ରେସ ଅଧିବେଶନ ବସିଛି । ସର୍ଦ୍ଦାର ବଲ୍ଲଭ ଭାଇ ଯେ ବର୍ଦ୍ଦୋଲି

ସତ୍ୟାଗ୍ରହରେ ଜୟଶ୍ରୀକା ଯେଉଁ ଆସିଥିଲେ, ସେ ସ୍ୱରାଜ । ଏ କଂଗ୍ରେସକୁ ଓଡ଼ିଶାର ବହୁ ଲୋକ ଯାଇଥିଲେ । ଏହି କଂଗ୍ରେସରେ 'ଗାନ୍ଧି ଇରଉଇନ୍ ଚୁକ୍ତି' ଗୃହୀତ ହେଲା ଓ କଂଗ୍ରେସ ପକ୍ଷରୁ ଜନସାଧାରଣଙ୍କ ଅଧିକାର ବିଷୟରେ ଗୋଟିଏ ଘୋଷଣା କରାହେଲା । ଏହି କରାଚୀ କଂଗ୍ରେସରେ ଓଡ଼ିଶାକୁ ଆସନ୍ତା କଂଗ୍ରେସ ଅଧିବେଶନ ନିମନ୍ତ୍ରିତ ହୋଇଥିଲା । ଆଚାର୍ଯ୍ୟ ହରିହର ଓ ଗୋପବନ୍ଧୁ ଚୌଧୁରୀ ଏ ବିଷୟରେ ଅତି ଉତ୍ସାହୀ ଥିଲେ । ମାତ୍ର ମୁଁ ନିଜପାଇଁ ଏକ ସ୍ୱତନ୍ତ୍ର କାର୍ଯ୍ୟକ୍ରମ କଳ୍ପନା କରୁଥିବାରୁ ମୋର ଏ କଂଗ୍ରେସ ଅଧିବେଶନ ନିମନ୍ତ୍ରଣରେ ଉତ୍ସାହ ନ ଥିଲା । ତଥାପି ଆଚାର୍ଯ୍ୟ ମହାଶୟ ଓ ଗୋପବାବୁଙ୍କ ସହିତ ଏକମତ ହୋଇଥିଲି ।

ଏହି କରାଚୀରେ ସତୀଶଚନ୍ଦ୍ର ଦାସଗୁପ୍ତ, ଯେ କି ସେତେବେଳେ ଓଡ଼ିଶାର ଖଦୀକାର୍ଯ୍ୟ ଭାରରେ ଥିଲେ ଓ କରାଚୀ କଂଗ୍ରେସ ସମୟରେ ପ୍ରଦର୍ଶନୀ ଉଦ୍‌ଘାଟନ କରିବା ପାଇଁ ଯାଇଥିଲେ, ସେ ମୋତେ ତାଙ୍କ ପାଖରେ ରଖାଇ ମୋତେ ଓଡ଼ିଶାର ଖଦୀବିଭାଗର ଭାର ନେବାପାଇଁ ପ୍ରବର୍ତ୍ତାଇ ଥିଲେ । ମାତ୍ର ମୁଁ ସେତେବେଳେ ରାଜି ହୋଇ ନ ଥିଲି । ମୁଁ ସେତେବେଳେ ଗାନ୍ଧିଜୀଙ୍କ ପାଖରେ ରହି ତାଙ୍କର ପ୍ରତ୍ୟକ୍ଷ ପ୍ରେରଣା ଅନୁଭବ କରିବା ପାଇଁ ଆକାଂକ୍ଷୀ ହୋଇଥିଲି । କରାଚୀ କଂଗ୍ରେସ ପରେ ମୁଁ ଦିନାକେତେ ଗାନ୍ଧିଜୀଙ୍କ ସହିତ ରହିଲି । ସେ ତା'ପରେ ମୋତେ ଆଶ୍ରମ ଅଭିଜ୍ଞତା ଲଭ ପାଇଁ ସାବରମତୀ ପଠାଇଦେଲେ । ମୁଁ ସେଠାରେ ପ୍ରାୟ ଏକମାସ ରହିଲି । ସେଠାରେ ସବୁ ରକମର କାମ ସମସ୍ତଙ୍କୁ ପାଳିକରି ହେଉଥିଏ । ଘରେ ପଡ଼ିଥିବା କାମ, ବାସନ ମଜା କାମ ମୋତେ କେତେଥର ଦିଆହୋଇଛି । ତା'ପରେ ମୁଁ ଓଡ଼ିଶାକୁ ଫେରିଲି । ଯେ ଉତ୍ସାହରେ ମୁଁ ସେତେ-ବେଳେ ଥିଲି ତଦନୁସାରେ ନିଜକୁ ସୁବିଧାଜନକ ଅବସ୍ଥାରେ ପାଇ ନ ଥିଲି ।

ବାହାରେ ସାଧାରଣଙ୍କ ଭିତରେ ଅପୂର୍ବ ଉତ୍ସାହ, ଶତବର୍ଷର ପରାଜିତ ଜାତି ବର୍ତ୍ତମାନ ଜୟର ଆସ୍ୱାଦନ ପାଇଛି । କଂଗ୍ରେସର ସବୁଆଡ଼େ ଜୟ ଜୟକାର । ଏହି ପ୍ରତିଷ୍ଠା ହିଁ କଂଗ୍ରେସକୁ ଅଡ଼ୁଆରେ ପକାଇବାକୁ ବସିଥାଏ; କାରଣ ଏ ପ୍ରତିଷ୍ଠାକୁ ବ୍ୟକ୍ତିଗତ ବ୍ୟବହାରରେ ଆଣିବା ପାଇଁ ବହୁଲୋକ ହୋଇଗଲେଣି । ଜେଲ ଭିତରେ ଯାହା ମୁଁ ଅନୁଭବ କରିଥିଲି, ବାହାରେ ତାହା କାମରେ ଦେଖିବାକୁ ମଧ୍ୟ ମିଳିଲା । ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର କର୍ମକର୍ତ୍ତା ନିର୍ବାଚନ ବେଳେ ମୁଁ ପ୍ରସ୍ତାବ କରିଥିଲି ଯେ, ସତ୍ୟାଗ୍ରହର ପ୍ରଥମ ସେନାପତି ସଭାପତି ହୁଅନ୍ତୁ ଓ ଶ୍ରୀ ଗୋପବନ୍ଧୁ ଚୌଧୁରୀ ସମ୍ପାଦକ ହୁଅନ୍ତୁ । ଏ ଦୁଇଜଣ ନିଷ୍ଠାରେ ଓ ତ୍ୟାଗରେ ଓଡ଼ିଶାରେ ପଣ୍ଡିତ ଗୋପବନ୍ଧୁଙ୍କ ପରେ ସର୍ବସମ୍ମାନିତ । ଏମାନେ ରାଜନୈତିକ କ୍ଷେତ୍ରକୁ ୧୯୩୦ ସାଲ ପର୍ଯ୍ୟନ୍ତ କର୍ମ୍ମଠ ଭାବରେ ଆସି ନ ଥିଲେ ବୋଲି

ତାଙ୍କ ବିରୋଧରେ ଅଭିଯୋଗ ଥିଲା । ସେମାନେ ଯେତେବେଳେ ବର୍ତ୍ତମାନ ରାଜନୀତିର ମେରୁଦଣ୍ଡ ରୂପେ ଛିଡ଼ା, ତେତେବେଳେ ସେମାନଙ୍କ ବେକରେ ଫୁଲମାଳ ଦେଇ ପରିଚାଳକ ବୋଲି ବରଣ କରିବା ଆମର ଉଚିତ । ମାତ୍ର ଏ ପ୍ରସ୍ତାବକୁ ନିଷ୍ଠ ଦାନ୍ତ ଲଗାଇ ବିରୋଧ କରିଥିଲେ । କେତେକ ଗୁହିଁଲେ ପଣ୍ଡିତ ନୀଳକଣ୍ଠ ସଭାପତି ହୁଅନ୍ତୁ, ମାତ୍ର ସେଥିରେ ମୁଁ ରାଜି ହେଲି ନାହିଁ; କାରଣ ତାଙ୍କ ସମ୍ବନ୍ଧରେ ମୁଁ ଯାହା ଜାଣେ ତାହା ଆଗରୁ ଲେଖିସାରିଛି । ଏ ବିଷୟରେ ବହୁ ବାଦାନୁବାଦ ହୋଇ ପ୍ରାଦେଶିକ କଂଗ୍ରେସ କମିଟିରେ ଭୋଟ୍ ନିଆ ହେଲା । ଅତ୍ୟଧିକ ସଂଖ୍ୟାରେ ଭୋଟ୍ ପାଇ ଆଗ୍ରହୀ ହରିହର ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ହେଲେ ଓ ଶ୍ରୀ ଗୋପବନ୍ଧୁ ଚୌଧୁରୀ ସମ୍ପାଦକ ହେଲେ । ଏଥିକରେ ଯେ କଥା ଛିଡ଼ିଗଲା ତା' ନୁହେଁ, ଏହା ପରେ ପରେ କଂଗ୍ରେସ ଅନୁଷ୍ଠାନ ଭିତରେ ଟଣାଟଣି ଲାଗି ରହିଲା ।

ଏଣେ ମୁଁ ସାବରମତୀ ଆଶ୍ରମରେ ଥିବାବେଳେ ଆମ ଜିଲ୍ଲା କଂଗ୍ରେସ କମିଟି ଗଠିତ ହୋଇ ସାରିଛି । ଯେପରି ଭାବରେ ଏହା ଗଠିତ ହୋଇଥିବାର ମୁଁ ଦେଖିଲି, ମୁଁ ନିଜପାଇଁ କିଛି କାମ କରିବାର ସୁବିଧା ଦେଖି ପାରିଲିନାହିଁ । ମୋତେ କେବଳ ଚାନ୍ଦା ଆଦାୟ ଛଡ଼ା ଅନ୍ୟ କାମ ଦିଆ ହୋଇ ନ ଥିଲା । ଏହି ସମୟରେ ଲକ୍ଷ୍ୟ କଲି ଯେ, କେତେକ କର୍ମୀ ଭାବୁଛନ୍ତି ମୁଁ ସେମାନଙ୍କର ପ୍ରତିଷ୍ଠା ଅର୍ଜନ କରିବାରେ ଅନ୍ତରାୟ ହେଉଛି; ଏଣୁ ସେମାନେ ଯେତେଦୂର ପାରନ୍ତି ମୋତେ ଦୂରରେ ରଖି କଂଗ୍ରେସ କମିଟି ପରିଚାଳନା କରିବା ପାଇଁ ବସିଛନ୍ତି । କେବଳ ଯେ କଂଗ୍ରେସ ଅନୁଷ୍ଠାନ ଭିତରେ ଏ ଭାବ ଦେଖିଲି ତା' ନୁହେଁ, 'ପ୍ରଜାତନ୍ତ୍ର' ଅନୁଷ୍ଠାନରେ ମଧ୍ୟ ତାହା ହିଁ ଚାଲିଛି । 'ପ୍ରଜାତନ୍ତ୍ର' ପାଇଁ ମୁଁ, ବିଶ୍ୱନାଥ ଓ ଉପେନ୍ଦ୍ର ରକ୍ତ ମାଂସ ଦେଇଛୁ କହିଲେ ଚଳେ । ତା' ଫଳରେ ସେତେବେଳେ ଦୈନିକ ପ୍ରଜାତନ୍ତ୍ର ଏକ ବଡ଼ ଅନୁଷ୍ଠାନ ହୋଇ ଛିଡ଼ା ହୋଇଥାଏ । ମାତ୍ର ସେଥିରେ ସାଧାରଣ ଚାନ୍ଦା ଓ କଂଗ୍ରେସ କମିଟିର ସାହାଯ୍ୟ ରହିଥିବାରୁ ନୂତନ ଗଠିତ କଂଗ୍ରେସ କମିଟି 'ପ୍ରଜାତନ୍ତ୍ର'କୁ ଅଧୀନକୁ ନେବାକୁ ଚେଷ୍ଟା କରୁଥାଏ । 'ପ୍ରଜାତନ୍ତ୍ର'ରେ କାମ କରୁଥିବା ଲୋକେ ସେଥିରେ ରାଜି ହେଉ ନ ଥା'ନ୍ତି—ଏପରି ଟଣାଟଣି ଲାଗିଥାଏ । ଏଣେ ମୋତେ ମଧ୍ୟ ଦୂରେଇ ଦେବାର ଉଦ୍ୟମ । ଏ ଅବସ୍ଥାରେ ମୋର ଉଚିତ୍ ଥିଲା, କିଛିଦିନ ପାଇଁ ସମ୍ପୂର୍ଣ୍ଣ ଭାବରେ ଅପସରି ଯିବା ଓ ନିଜ ଶକ୍ତି ଅନୁସାରେ ଯାହା କରିବା । ମୁଁ ସେତେବେଳେ ତାହା ହିଁ ଭାବିଲି—ମାତ୍ର ସେ ଭାବନାକୁ ଯେପରି ଭାବରେ କାମରେ ପରିଣତ କଲି, ତାହା ବର୍ତ୍ତମାନ ଭାବି ଦେଖୁଛି ଠିକ୍ ହୋଇ ନ ଥିଲା । ସେହି ବାଲେଶ୍ୱରରେ 'ଗାନ୍ଧି କର୍ମ ମନ୍ଦିର' ନାମରେ ଗୋଟିଏ ଅନୁଷ୍ଠାନ ଆରମ୍ଭ କଲି । ସେଥିରେ ଖଦୀ କାର୍ଯ୍ୟ ଶିକ୍ଷାର ଓ ଯେଉଁ ନୂତନ ଯୁବକସବୁ ସତ୍ୟାଗ୍ରହ ସମୟରେ ଯୋଗ

ଦେଇଥିଲେ, ସେମାନଙ୍କ ପାଇଁ କିଛି ପଢ଼ାପଢ଼ିର ବ୍ୟବସ୍ଥା କରିଥିଲି । ଏଥିରେ ଗୌରଚନ୍ଦ୍ର ଦାସ, ନିତ୍ୟାନନ୍ଦ ମହାପାତ୍ର, ଗଜେନ୍ଦ୍ରନାଥ ସାହୁ ପ୍ରମୁଖ ନୂତନ ଆଗନ୍ତୁକ କର୍ମୀମାନେ ଯୋଗ ଦେଇଥିଲେ । 'କର୍ମମନ୍ଦିର'ରେ ମୁଁ, ସୁଭଦ୍ରାଦେବୀ ଓ ଅନ୍ୟ ଜଣେ ଦୁଇଜଣ ନାରୀକର୍ମୀ ରହୁଥିଲେ । ଆଶ୍ରମ ନିୟମାନୁସାରେ ନିଜକୁ ଚଲାଇବା ପାଇଁ ଆମେ ଯଥାସାଧ୍ୟ ଚେଷ୍ଟା କରିଥିଲୁ । ଏଣେ ଏ ଆଶ୍ରମ ଚାଲିଥାଏ, ତେଣେ ଜିଲ୍ଲା କଂଗ୍ରେସ କମିଟିର ଅଫିସ ଏକ ଆଶ୍ରମ ହୋଇ ଚାଲିଥାଏ । ଏ ଦୁଇଟି ଭିତରେ ପରସ୍ପର ପ୍ରତିଦ୍ୱନ୍ଦ୍ୱିତା ବଢ଼ୁଥାଏ । ତେଣେ 'ପ୍ରଜାତନ୍ତ୍ର' ଅନୁଷ୍ଠାନଟିକୁ ଉପେନ୍ଦ୍ର ସେତେବେଳକାର ଟଣାଟଣିରେ ପଡ଼ି ଅତି କଷ୍ଟରେ ଠେଲି ଚଲାଇଥାଏ । ଏ ସମ୍ପର୍କରେ ମୁଁ ଆଉ କିଛି ବେଶୀ ଲେଖୁନାହିଁ ବା ଅନ୍ୟ କାହାରି ଦୋଷ ମୁଁ ଦେଉନାହିଁ । ମୁଁ ନିଜକୁ ଦୋଷ ଦେଉଛି ଯେ, ମୁଁ ସେତେବେଳେ ନିଜର ଆଚରଣଦ୍ୱାରା ଅନ୍ୟମାନଙ୍କ ଦ୍ୱେଷର ବାହାରେ ନିଜକୁ ରଖି ପାରିଲି ନାହିଁ; ନିଜର ନମ୍ରତା ଦ୍ୱାରା ଅନ୍ୟମାନଙ୍କୁ ଆକର୍ଷଣ କରିପାରିଲି ନାହିଁ । ସେତେବେଳେ ଯେଉଁ ଅବସ୍ଥାର ସୃଷ୍ଟି ହେଲା, ତାହାପାଇଁ ମୁଁ ପ୍ରସ୍ତୁତ ନ ଥିଲି କିମ୍ବା ତାହାର ସମ୍ମୁଖୀନ ହେବାପାଇଁ ଯୋଗ୍ୟତା ମଧ୍ୟ ମୋର ନ ଥିଲା । ତଥାପି ମୁଁ ସାହସର ସହିତ ଚାଲିଥାଏଁ । ଅନେକ ବର୍ଷ ଧରି ଯେପରି ଭାବରେ ମୁଁ କାମ କରି ଆସିଛି; ସେଥିରେ ସାଧାରଣ ଉତ୍ସାହ ବଢ଼ିବା ସାଙ୍ଗେ ସାଙ୍ଗେ ଚାରିଆଡ଼ର ଲୋକେ ମୋଠାରୁ ନାନାପ୍ରକାର କାମ ଆଶା କରୁଥାନ୍ତି, ନାନାପ୍ରକାର ପ୍ରଶ୍ନ ମଧ୍ୟ ମୋ'ଠାକୁ ଆସୁଥାଏ । ମାତ୍ର ନାନା ପ୍ରଶ୍ନ ହାତକୁ ନେବାକୁ କଂଗ୍ରେସ ଅନୁଷ୍ଠାନ ମୋତେ ସାହାଯ୍ୟ କରିବାପାଇଁ ନାହିଁ । ଏପରି ସ୍ଥଳେ ମୁଁ ନିଜେ ଯେତିକି ପାରିବି ସେତିକି କରିବାର କଥା । ସର୍ବୋପରି କର୍ମମନ୍ଦିର ପାଇଁ ଅର୍ଥ ସଂଗ୍ରହ ଓ ଜିଲ୍ଲା କଂଗ୍ରେସ କମିଟି ସହିତ କୌଣସି ପ୍ରକାର ସଂଘର୍ଷ ନ ହୋଇ ପ୍ରଜାତନ୍ତ୍ରକୁ ଚଲାଇବା ମଧ୍ୟ ଦୁର୍ବହ ହୋଇପଡ଼ିଥାଏ । ପ୍ରଜାତନ୍ତ୍ରର ତତ୍କାଳୀନ ସମ୍ପାଦକ କମଳାକାନ୍ତ ମହାପାତ୍ର ବେମାର ହୋଇ ଘରେ ଥାଆନ୍ତି । ତାଙ୍କ ନାମରେ ବାମଣ୍ଡା ଗଡ଼ଜାତର ଦେୱାନ୍ ମାନହାନି ମୋକଦ୍ଦମା ଦାଏର କରିଥାନ୍ତି । ମାତ୍ର କମଳାକାନ୍ତଙ୍କ ଅକାଳ ବିୟୋଗରେ ସେ ମୋକଦ୍ଦମା ଆପେ ଆପେ ଚାଲିଗଲା । ତାଙ୍କ ପରେ ଏକା ଉପେନ୍ଦ୍ର ପ୍ରଜାତନ୍ତ୍ରର ଭାର ନେଇ ଯେଉଁ ସାହସ ଓ ଧୈର୍ଯ୍ୟର ସହିତ ଚଲାଇଛି, ତାହା ଅତି ପ୍ରଶଂସନୀୟ । କନିକା ପ୍ରଶ୍ନ, ଯାହା ମୋର ନିତ୍ୟ ନୈମିତ୍ତିକ କାର୍ଯ୍ୟ ହୋଇଥାଏ, ସେ ତ' ଲାଗିଥାଏ । ପ୍ରଜାଙ୍କ ଆପତ୍ତି ନେଇ ସେ ସମୟର କମିଶନର ଫିଲିପ୍ସ ସାହେବଙ୍କଠାରେ ଜଣାଇବା, ସେଥିପାଇଁ ଆନ୍ଦୋଳନ କରିବା, ଏ ଭିତ୍ତି ଚାଲିଥାଏ । ସେ ସମୟରେ ପ୍ରାଦେଶିକ କଂଗ୍ରେସ କମିଟି ତରଫରୁ ଗାନ୍ଧି-ଇରଉଇନ୍ ଚୁକ୍ତି ଅନୁସାରେ ସମସ୍ତ ସର୍ତ୍ତ ପାଳିତ ହେଉଛି କି ନା, ନ ହେଉଥିଲେ ସେଥିପାଇଁ ପ୍ରତିକାର କରିବାର ଭାର ମୋ ଉପରେ ଦିଆ ହୋଇଥିଲା । ମୋର ପ୍ରଥମ

ଚେଷ୍ଟା ହୋଇଥିଲା ଶ୍ରୀକଙ୍କ ବନ୍ଦୀମାନଙ୍କୁ ଖଲାସ କରିବା ଓ ଆଦାୟ ହେଉଥିବା ପିଉନିଟିଭ ଟ୍ୟାକ୍ସକୁ ବନ୍ଦ କରିବା । ପିଉନିଟିଭ ଟ୍ୟାକ୍ସ ବନ୍ଦ ହୋଇଗଲା—ମାତ୍ର ଶ୍ରୀକଙ୍କ ବନ୍ଦୀଙ୍କ ପାଇଁ ଯେତେ ଚେଷ୍ଟା କଲି କିଛି ହେଲାନାହିଁ । ପାଟଣା ଯାଇ ହୋମ୍ ମେମ୍ବର ହେଲେଟ୍ ସାହେବଙ୍କ ସାଙ୍ଗରେ ଦେଖାକରି ସବୁ ବୁଝାଇ କହିଥିଲି, ତଥାପି ଫଳ କିଛି ହେଲା ନାହିଁ । ଏଥିପାଇଁ ମଧ୍ୟ ଆନ୍ଦୋଳନ ଆରମ୍ଭ କରିବାର ମନସ୍ଥ କଲି । ଓଡ଼ିଶାର ବିଭିନ୍ନ ଓକିଲ ସମିତିମାନ ବନ୍ଦୀମାନଙ୍କୁ ମୁକ୍ତି ଦେବାର ଦାବି କଲେ । ବାଲେଶ୍ୱରର ଏକ ସଭାରେ ଶ୍ରୀକଙ୍କ ବ୍ୟାପାର ନେଇ ସରକାରଙ୍କୁ ତୀବ୍ର ନିନ୍ଦା କରିଥିବା ହେତୁ ମୋ ନାମରେ ରାଜଦ୍ରୋହ ଅପରାଧରେ ମୋକଦ୍ଦମା କରିବାର ଶୁଣାଗଲା । ମାତ୍ର ପ୍ରକୃତରେ ମୋକଦ୍ଦମା ହୋଇ ନଥିଲା । ସମ୍ବଲପୁରରେ ସେଠାର କଂଗ୍ରେସ ନେତା ଲକ୍ଷ୍ମୀନାରାୟଣ ମିଶ୍ରଙ୍କୁ ସେଠା ସ୍ଥାନୀୟ ହାକିମ ହଇରାଣ କରିବା ତଦନ୍ତ କରି ତାର ବ୍ୟବସ୍ଥା କରିବାକୁ ହେଉଥିଲା । ଲାଲ ପାଇକ ଦଳ ନାମରେ ବାଲେଶ୍ୱରରେ ଏକ ସ୍ୱେଚ୍ଛାସେବକ ଦଳ ସଂଗଠନ କରିବାର ଉଦ୍ୟମ କରିଥିଲି । ଏ ସବୁ କାମ ଏକା ଏକା କରି ନିଜ ଭିତରେ ଟଣାଟଣି ଥିବାରୁ ମୁଁ ବରାବର ବ୍ୟସ୍ତ ଅନୁଭବ କରୁଥିଲି । ଶ୍ରୀକଙ୍କ ଦିବସ ପାଳନ ଉପଲକ୍ଷେ ଅତି ପ୍ରବଳ ବର୍ଷାରେ ୧୪ ମାଇଲ ବାଟ ଚାଲିକରି ଯିବାରେ ମୋତେ ଭୟଙ୍କର ଜ୍ୱର ହେଲା । ଏହି ଜ୍ୱର ମୁଁ ବହୁଦିନ ଭୋଗିଲି । ଶେଷରେ ସମୁଦ୍ରକୂଳ ଗୁନ୍ଦପୁରରେ ଯାଇ କିଛି ଦିନ ରହିଲି ।

ଇତିମଧ୍ୟରେ ଓଡ଼ିଶାର କଂଗ୍ରେସ ଅଧିବେଶନ ସ୍ଥାନ ନିରୂପଣ ଯେନି କଂଗ୍ରେସ ମହଲରେ ଟଣାଟଣି ଚାଲିଥାଏ ପୁରୀ ଓ କଟକ ଭିତରେ । ଶେଷରେ ପୁରୀରେ ହେବାର ସ୍ଥିର ହେଲା । ତା ପରେ କର୍ମକର୍ତ୍ତା ନିର୍ବାଚନ ଯେନି—ଶେଷରେ ପଣ୍ଡିତ ନୀଳକଣ୍ଠ ଦାସ, ଗୋପବନ୍ଧୁ ଚୌଧୁରୀ ସାଧାରଣ ସମ୍ପାଦକ ନିର୍ବାଚିତ ହେଲେ । ମୁଁ କ. ଓ. ସି. ଅର୍ଥାତ୍ ସ୍ୱେଚ୍ଛାସେବକଙ୍କ ଭାର ନେଇ ରହିବାର ସ୍ଥିର ହେଲା । କର୍ମ ମନ୍ଦିରରେ ଯେତେଜଣ କର୍ମୀ ଥିଲେ, ସମସ୍ତଙ୍କୁ କଂଗ୍ରେସ ଅଧି-ବେଶନରେ ଲାଗିବାକୁ ପଡ଼ିଲା । ତେଣୁ ସେ ଅନୁଷ୍ଠାନ ଆପାତତଃ ବନ୍ଦ ହୋଇଗଲା, ମୁଁ ନିଜେ ଯାଇ ପୁରୀରେ ରହିଲି, ସ୍ୱେଚ୍ଛାସେବକ ଶିକ୍ଷାକେନ୍ଦ୍ର ପ୍ରତ୍ୟେକ ଜିଲ୍ଲାର ନାନା ସ୍ଥାନରେ ଖୋଲା ହେଲା । ସେଥିପାଇଁ ବହୁ ଅର୍ଥବ୍ୟୟ ମଧ୍ୟ ହୋଇଥିଲା । ବର୍ତ୍ତମାନ ଭାବି ଦେଖୁଛି ଯେ, ସେ ବ୍ୟୟ ନିରର୍ଥକ ହୋଇଥିଲା ଓ ସେ ପ୍ରକାର ଶିକ୍ଷାର ପ୍ରୟୋଜନୀୟତା ମଧ୍ୟ ନ ଥିଲା । ମାତ୍ର ନିଖିଳ ଭାରତ ସ୍ୱେଚ୍ଛାସେବକ ସଂଘର ନିର୍ଦ୍ଦେଶାନୁସାରେ ତାହା ହେଉଥିଲା ଏବଂ ଆମେ ମଧ୍ୟ ସେତେବେଳେ ସେଥିରେ ଉତ୍ସାହୀ ଥିଲୁ । ସ୍ୱେଚ୍ଛାସେବକ ସଂଗ୍ରହ ଓ ଶିକ୍ଷା କାର୍ଯ୍ୟ ସଙ୍ଗେ ସଙ୍ଗେ କଂଗ୍ରେସ ଅଧିବେଶନ ପାଇଁ ଅର୍ଥ ସଂଗ୍ରହର ଭାର ମଧ୍ୟ ମୋ ଉପରେ ଥିଲା ।

ଏହି ସମୟରେ ମୋ ବ୍ୟକ୍ତିଗତ ଜୀବନରେ ଏକ ପରିବର୍ତ୍ତନ ଘଟିବା ଫଳରେ ମୋ ମନ ଉଲ୍ଲସିତ ହେଉଥାଏ । ସେ ହେଉଛି, ବାବା ଯେ ମୂଳରୁ କଂଗ୍ରେସକୁ ପସନ୍ଦ କରୁ ନ ଥିଲେ, ସେ ବର୍ତ୍ତମାନ କଂଗ୍ରେସର ଜଣେ ସମର୍ଥକ । ଆମ ଗାଁରେ ଗୋଟିଏ ସ୍ୱେଚ୍ଛାସେବକ ଶିକ୍ଷାକେନ୍ଦ୍ର ସେ ଖୋଲାଇଥିଲେ । କଂଗ୍ରେସ ଅଧିବେଶନ ପାଇଁ ସେ ଟ ୧୬୦୦ଙ୍କା ଚାନ୍ଦା ଦେଇଥିଲେ ।

ପୂର୍ବରୁ ମୋତେ ଅତି ପରିଶ୍ରମ କରିବାକୁ ପଡ଼ୁଥିଲା । ଓଡ଼ିଶା ସାରା ଓ କଲିକତା ତମାମ ଅର୍ଥ ସଂଗ୍ରହ ପାଇଁ ବୁଲିବାକୁ ପଡ଼ୁଥିଲା । ପୂର୍ଣ୍ଣ ଉଦ୍ୟମରେ ଆଚାର୍ଯ୍ୟ ହରିହର ଓ ଗୋପବାବୁ ଏ କାର୍ଯ୍ୟରେ ଲଗିଥିଲେ । ସ୍ତ୍ରୀଲୋକେ ଏଥିପାଇଁ ଉତ୍ସାହ ଦେଖାଯାଉଥାଏ ।

ଗାନ୍ଧିଜୀ ଗୋଲଟେବୁଲ ବୈଠକକୁ ଯାଇଥାନ୍ତି, କଂଗ୍ରେସ ହାତକୁ କ୍ଷମତା ଆସିବାର ସୂଚନା ଦେଖାଯାଉଥାଏ, ଏଣୁ ଯେଉଁମାନେ କେବଳ କଂଗ୍ରେସ ସମର୍ଥକ ଥିଲେ ସେମାନେ ବର୍ତ୍ତମାନ କଂଗ୍ରେସ ପାଇଁ ବଡ଼ ଉତ୍ସାହୀ, ମାତ୍ର ଏହା ହେଲେ ମଧ୍ୟ ଆବଶ୍ୟକାନୁଯାୟୀ ଅର୍ଥ ସଂଗ୍ରହ ହୋଇପାରୁ ନ ଥାଏ—ଏହା ଏକ ଚିନ୍ତାର କାରଣ ହୋଇଥାଏ । ପ୍ରାୟ ଏକ ଲକ୍ଷ ଟଙ୍କା ଚାନ୍ଦା ଉଠାଇବାର କଥା । ସେଥିରୁ ମୋଟେ ପ୍ରାୟ ପଚିଶ ହଜାର ଟଙ୍କା ଚାନ୍ଦା ଉଠାଯାଇଥାଏ । କଂଗ୍ରେସ ଅଧିବେଶନର କିଛି ଦିନ ପୂର୍ବରୁ କଂଗ୍ରେସ ନଗରରେ ଇଲେକଟ୍ରିକ୍ ଆଲୁଅର ବନ୍ଦୋବସ୍ତ ପାଇଁ ପ୍ରାୟ ଟ ୨୦,୦୦୦ଙ୍କା କଣ୍ଟ୍ରାକ୍ଟରଙ୍କୁ ଆଗତୁରା ଦେବାକୁ ହେବ । କେଉଁଠୁ ଆଉ ଟଙ୍କା ଆସିବ ଏଥିପାଇଁ, ଆଚାର୍ଯ୍ୟ ହରିହର, ଗୋପବନ୍ଧୁ ଚୌଧୁରୀ ଓ ମୁଁ ଗଭୀର ଚିନ୍ତାରେ ପଡ଼ିଥାଉଁ । ନିଜ ଦାୟିତ୍ୱରେ ହ୍ୟାଣ୍ଡନୋଟ୍ ଲେଖିଦେଇ ଟଙ୍କା ଆଣିବାର ବନ୍ଦୋବସ୍ତ କରୁଥାଉଁ, ଏହି ସମୟରେ ପବନ ବୁଲିଗଲା ।

## ୧୯୩୨-୧୯୩୭

ଗାନ୍ଧିଜୀ ବ୍ରିଟିଶ୍‌ମନୋରଥ ହୋଇ ବିଲାତରୁ ଗୋଲ୍ ଟେବୁଲ ବୈଠକରୁ ଫେରିଆସି ଦେଖନ୍ତି ଯେ, ଯୁକ୍ତ ପ୍ରଦେଶରେ କୃଷକମାନଙ୍କ ଭିତରେ ମହା ଆନ୍ଦୋଳନ ଓ ପଣ୍ଡିତ ଜହ୍ୱରଲାଲ ନେହେରୁ ଜେଲରେ । ସେହିପରି ସୀମାନ୍ତ ପ୍ରଦେଶରେ ଖାଁ ଅବଦୁଲ ଗଫର ଖାଁ ପ୍ରଭୃତିଙ୍କର ଜେଲ ଦିଆ ହୋଇଗଲାଣି । ଏହାଛଡ଼ା ବଙ୍ଗଦେଶରେ ସନ୍ତ୍ରାସବାଦକୁ ସମୂଳେ ନିପାତ କରିବା ପାଇଁ ଗାଁକୁ ଗାଁ ସୈନ୍ୟ ପଠାଇ ଅକଥନୀୟ ଅତ୍ୟାଚାର ଲୀଳା ଲାଗିଛି । ଏ ଅବସ୍ଥାରେ କଂଗ୍ରେସ କାର୍ଯ୍ୟ ନିର୍ବାହକ ସମିତି ବସି ଗାନ୍ଧିଜୀଙ୍କୁ ପୁଣି ଆନ୍ଦୋଳନ ଚଳାଇବାକୁ ନିର୍ଦ୍ଦେଶ ଦେଲେ । ଗାନ୍ଧିଜୀ ପ୍ରଥମେ ବଡ଼ଲାଟଙ୍କ ସହିତ ଦେଖା କରିବାକୁ ଚାହିଁଥିଲେ, ମାତ୍ର ତାହା ମିଳିଲା ନାହିଁ । ଏଣୁ ହଠାତ୍ ଆନ୍ଦୋଳନ ଆରମ୍ଭ ହୋଇଗଲା ! ଏଥର ସରକାରଙ୍କ ପକ୍ଷରୁ ସବୁ ଠିକ୍ ଥିଲା, ଇଙ୍ଗିତ ମାତ୍ରକେ ଏକ ସଙ୍ଗରେ ସବୁ ଆଇନ୍ ଜାରି କରି ଭୀଷଣ ବେଗରେ ଦମନନୀତି ଚଳାଇ ଦେବାପାଇଁ । ତାହା ହିଁ ସେମାନେ କଲେ । ଏକ ସଙ୍ଗରେ କଂଗ୍ରେସ ଅନୁଷ୍ଠାନ ବେଆଇନ୍, ସ୍ୱେଚ୍ଛାସେବକ ଦଳ ବେଆଇନ, ଖବର କାଗଜ ଉପରେ କଟକଣା, ନେତା କର୍ମୀ ସମସ୍ତେ ଗିରଫ୍ତାର, ଏ ସବୁ ଘଟିଥିଲା । ମୁଁ ସେ ସମୟରେ ବ୍ୟସ୍ତ ହୋଇ ପୁରୀରେ କଂଗ୍ରେସ ଅଧିବେଶନ ପାଇଁ ହଜାର ହଜାର ଟଙ୍କା ଖରଚ ହୋଇ ଯାହା ମାଲମତା ଯୋଗାଡ଼ କରାଯାଇଛି, ତାକୁ ନିରାପଦ ରଖିବା ପାଇଁ ସେ ସବୁକୁ ସେଠାକାର ଜଣେ ଲୋକକୁ ବିକ୍ରି କରି ଦିଆ ହୋଇଛି ବୋଲି କାଗଜପତ୍ର କରି ଦେଇ ଓକିଲ ଜିମା କରିଦେଲି । ସରକାର ସେ ମାଲକୁ ଜବତ କରିବା ପରେ ସେ ଭଦ୍ରଲୋକ ଲଢ଼ି ସେସବୁ ଜିନିଷ ଫେରସ୍ତ ପାଇଲେ । ମାତ୍ର ଯେ ଉଦ୍ଦେଶ୍ୟରେ ସେ ଆଇନଗତ ପେଞ୍ଚ ଖେଳା ହୋଇଥିଲା, ତାହା ସାର୍ଥକ ହେଲାନାହିଁ । କାରଣ ସେ ଭଦ୍ରଲୋକ କଂଗ୍ରେସ ପ୍ରତି ଅସାଧୁ ବ୍ୟବହାର କଲେ । ଫଳରେ କଂଗ୍ରେସର ବହୁତ କ୍ଷତି ହେଲା, ସରକାର କିଛି ମଧ୍ୟ ପାଇଲେ ନାହିଁ ।

ଆଚାର୍ଯ୍ୟ ମହାଶୟ, ଗୋପବାବୁ ଓ ନୀଳକଣ୍ଠ ବାବୁ ପ୍ରଭୃତି ନେତାମାନେ, ସ୍ୱେଚ୍ଛାସେବକ ଯେ ଯେଉଁଠି ଶିବିରରେ ଥିଲେ, ଯେତେ ଜଣାଶୁଣା କର୍ମୀ ଥିଲେ,

ସମସ୍ତେ ଧରା ହୋଇଗଲେ । ମୁଁ ବାଲେଶ୍ୱରରେ ଯାଇ ଧରା ହେଲି । ସେଥର ମୋତେ ମୋଟେ ଛ'ମାସ ଜେଲ ହେଲା ଓ 'ଖ' ଶ୍ରେଣୀଭୁକ୍ତ କରାହେଲା । ମାତ୍ର ମୁଁ 'ଗ' ଶ୍ରେଣୀଭୁକ୍ତ ହେବାପାଇଁ ଦରଖାସ୍ତ କରିଥିଲି—ତାହା ନାମଞ୍ଜୁର ହୋଇ-ଥିଲା । ୬ ମାସ ଜେଲ୍ ହେବାରେ ମୁଁ ଟିକିଏ ଆନନ୍ଦିତ ହୋଇଥିଲି । ଏଇଥିପାଇଁ ଯେ ଆନ୍ଦୋଳନ ମଝିରେ ବାହାରକୁ ଆସି ଆନ୍ଦୋଳନ ପରିଚାଳନା କରିବାର ଅବକାଶ ମିଳିବ । ଏଥର ମଧ୍ୟ ସେହି ହଜାରିବାଗକୁ ଗଲି । ପୂର୍ବେ ଯେଉଁମାନେ ସେଠାରେ ଥିଲେ ଏଥର ମଧ୍ୟ ପ୍ରାୟ ସେହିମାନେ । ମୁଁ ପୂର୍ବପରି ଏକ ଦୈନିକ କାର୍ଯ୍ୟ ନିର୍ଘଣ୍ଟ ପ୍ରସ୍ତୁତ କରି ସେହି ଅନୁସାରେ ଚଳିଲି ।

ଏଥର ଜେଲରେ ମୋ ପକ୍ଷରେ ଉଲ୍ଲାସର ବିଷୟ ଏହା ଥିଲା ଯେ, ସୁଭଦ୍ରା ତିନି ମାସ ଜେଲ ଦଣ୍ଡ ଘେନି ହଜାରିବାଗ ଜେଲ୍‌ରେ ଆସି ପହଞ୍ଚିଲେ । ଜେଲର ସାହେବଙ୍କ ଅନୁମତି କ୍ରମେ ଜେଲ ଅଫିସରେ ଆମର ପ୍ରାୟ ପ୍ରତିଦିନ ସାକ୍ଷାତ ହେଉଥିଲା । ମୁଁ ଶୁଣି ପୁଲକିତ ହେଲି ଯେ, ସେ ବାଲେଶ୍ୱର ଜିଲ୍ଲାରେ ଅନେକ ଅଞ୍ଚଳ ବୁଲି ନାରୀ ସେବିକା ସଂଗ୍ରହ କରି ଖୁବ୍ ଉତ୍ସାହ ଜନ୍ମାଇଛନ୍ତି—ନିଜକୁ ଦିନେ ଦିନେ ୨୦।୨୨ ମାଇଲ ବାଟ ଚାଲି କାମ କରିବାକୁ ହୋଇଛି । ଏସବୁ ମୋ ମନରେ ଆନନ୍ଦ ଜନ୍ମାଉଥାଏ । ମୁଁ ଭାବୁଥାଏ ମୋ ମନ ଅନୁସାରେ ମୋ ସ୍ତ୍ରୀ କାମ କଲା ବୋଲି ମୋର ଯେପରି ଆନନ୍ଦ ହେଉଛି, ମନ ଅନୁସାରେ ତା ସ୍ୱାମୀ ଯଦି କାମ କରୁଥାନ୍ତା, ତେବେ ସେ ତ ସେହିପରି ଆନନ୍ଦିତ ହେଉଥାନ୍ତା ! ଅର୍ଥାତ୍ ବର୍ତ୍ତମାନ କେବଳ ମୋ ମନ ନେବା ଛଡ଼ା ତା'ର ତ କାମରେ ଆଉ ସରସତା ନ ଥିବ । ଏ ଚିନ୍ତା ମନକୁ ଆସିବା ମାତ୍ରକେ ମୁଁ ତାକୁ ବନ୍ଦ କରିଦିଏ ।

ଆଉ ଏକ ଆନନ୍ଦର ବିଷୟ ମୋ ପକ୍ଷରେ ଥାଏ ଯେ, ସେତେବେଳେ ଖାଁ ଅବ୍‌ଦୁଲ୍ ଗଫର ଖାଁ ଓ ତାଙ୍କ ଭାଇ ହଜାରିବାଗ ଜେଲ୍‌ରେ ନଜରବନ୍ଦରେ ରଖା ହୋଇଥାନ୍ତି । ସେ ଦୁହିଁଙ୍କ ସାଙ୍ଗରେ ଘନିଷ୍ଠ ଭାବରେ ମିଶିବାର ସୁଯୋଗ ମିଳିଥାଏ । ପ୍ରତିଦିନ ସକାଳେ ଓ ସନ୍ଧ୍ୟା ସମୟରେ ଏକ ସଙ୍ଗରେ ବୁଲିବା ହେଉଥାଏ । ଦୁହେଁଯାକ ହାଡ଼େ ହାଡ଼େ ବିପ୍ଳବୀ । ହିନ୍ଦୁ ଓ ମୁସଲମାନଙ୍କ ଭିତରେ ଧର୍ମକୁ ବାଦ ଦେଇ ସାମାଜିକ ସମ୍ପର୍କ ସ୍ଥାପିତ ହେଲେ ଭାରତର ସାମ୍ପ୍ରଦାୟିକ ପ୍ରଶ୍ନ ସମାହିତ ହେବ ବୋଲି ସେମାନେ ବିଶ୍ୱାସ କରୁଥିଲେ ଓ ମୋର ମଧ୍ୟ ସେ ବିଶ୍ୱାସ ଥିଲା । ଏଇଠି ମୁଁ 'ନୂତନ ଧର୍ମ' ନାମକ ଏକ ଉପନ୍ୟାସ ଲେଖିଥିଲି—ଯାହା ପରେ ପ୍ରକାଶିତ ହୋଇଛି । ଯେଉଁ ହରିଜନ ଆନ୍ଦୋଳନ ପ୍ରାୟ ଦେଢ଼ବର୍ଷ ପରେ ମହାତ୍ମା ଗାନ୍ଧି ଆରମ୍ଭ କଲେ, ସେହି ହରିଜନ ଆନ୍ଦୋଳନ ବିଷୟ ସେତେବେଳେ ମୋ ମନକୁ ଆସିଥିଲା ଓ ସେଥିପାଇଁ ସେ ଉପନ୍ୟାସ ଲେଖିଥିଲି ।

ମୁଁ ବରାବର ଲକ୍ଷ୍ୟ କରିଛି ଯେ, ଗାନ୍ଧିଜୀଙ୍କ ଆନ୍ଦୋଳନର ମୂଳ ଦର୍ଶନ ଜଣେ ଉପଲବ୍ଧି କଲେ ତାଙ୍କର ଗତିବିଧିର ସୂଚନା ଜଣେ ଆଗରୁ ପାଇ ପାରିବ । ଏହି ଜେଲ୍‌ରେ ମୋ ମନରେ ଏକଥା ଉଠିଲି ଯେ ଗାନ୍ଧିଜୀ ଯେଉଁ ବିପ୍ଳବ ସୃଷ୍ଟି କରିଛନ୍ତି ତାହା କେବଳ ସାମୟିକ ରାଜନୈତିକ କ୍ଷେତ୍ରର ସୀମାବଦ୍ଧ ରହିଛି ଓ ତାହା ସବୁବେଳେ ଜନସାଧାରଣଙ୍କ ଉତ୍ତେଜନା ଉପରେ ନିର୍ଭର କରୁଛି । ଏଣୁ ମୁଁ ଭାବିଲି ଯେ ଗାନ୍ଧିଜୀଙ୍କ ବିପ୍ଳବର ପରିକଳ୍ପନା ଅନୁସାରେ ଅସଂଖ୍ୟ ଲୋକ ନିଜର ଜୀବନ ଅତିବାହିତ କରିବା ଉଚିତ; ଅନ୍ତତଃ ମୁଁ ନିଜେ ସେ ଦିଗରେ ଚିନ୍ତା କରିବା ଉଚିତ । ଏହି ଚିନ୍ତାର ଗତିରେ ଅସ୍ପୃଶ୍ୟତା ନିବାରଣ ମନକୁ ଆସିଲା—ଏହା ୧୯୨୧ ସାଲରୁ ପ୍ରଚାରିତ ହୋଇଛି—କଥାର କଥା ହିସାବରେ, ମାତ୍ର କାମରେ ଖୁବ୍ କମ୍ କରୁଛନ୍ତି । ଖଦୀ ଆନ୍ଦୋଳନ ମଧ୍ୟ ସେହିପରି, ପୋଷାକ ହିସାବରେ ଖଦି ପିନ୍ଧା ହେଉଛି; ମାତ୍ର ତା'ର ତତ୍ତ୍ୱ ଅନୁସରଣ କରି ଚଳିବା ହେଉନାହିଁ । ତେଣୁ ମୁଁ ମନ ଭିତରେ ସ୍ଥିର କଲି ଯେ, ଏ ଆନ୍ଦୋଳନ ପରେ ଅନ୍ତତଃ ଦୁଇଟି କାର୍ଯ୍ୟ ମୁଁ କରିବି, ପ୍ରଥମ—ନିଜ ଗାଁ ଓ ଆଖ ପାଖରେ ସୂତା କଟାଇ ସେଥିରୁ ପ୍ରସ୍ତୁତ ଲୁଗା ଆମ ଘର କିଣିବ—କେବଳ ନିଜ ବ୍ୟବହାର ପାଇଁ ନୁହେଁ, ପ୍ରଥମାଷ୍ଟମୀ ପ୍ରଭୃତିରେ ଅନ୍ୟମାନଙ୍କୁ ଦେବାପାଇଁ ମଧ୍ୟ; ଏହାଦ୍ୱାରା ଆମ ଘର ପଇସା ଆମ ସେଇଠି ବିତରିତ ହେବ । ଦ୍ୱିତୀୟ—ଅସ୍ପୃଶ୍ୟତାର ପୂର୍ଣ୍ଣ ବର୍ଜନ, ଯାହାର ଅର୍ଥ ଜାତିପ୍ରଥାର ନିପାତ ମଧ୍ୟ ଆମ ଘରେ କରାଇବାକୁ ହେବ । ଏହାକୁ ହିଁ ମୂଳ ଭିତ୍ତି କରି 'ନୂତନ ଧର୍ମ' ଲେଖିଲି । ଏ ସବୁ କାମ ଘରେ କରାଇବାକୁ ଭାବୁଥିବାବେଳେ ବାପାଙ୍କ ଚେହେରା ମୋ ଆଖିରେ ନାଚଯାଇ ମୋତେ ଦବାଇ ଦେଉଥାଏ । ମାତ୍ର ଦୃଢ଼ତାର ସହିତ ଏହା କରିବି ବୋଲି ସ୍ଥିର କଲି । ସେହି ଜେଲରେ ଜାତିପ୍ରଥା ନିପାତର ପ୍ରଥମ ମୋ ନିଜ ଜୀବନରେ ଆରମ୍ଭ କଲି—ତାହା ହେଉଛି ମୋ ପଇତାକୁ କାଢ଼ି ଫୋପାଡ଼ି ଦେଲି । ବିନା ପଇତାରେ ଖାଇବା ଓ ରହିବା ଆମ ଜାତିରେ ଅଚିନ୍ତନୀୟ ବ୍ୟାପାର, ସେହି ଧାରଣାରେ ପିଲାଦିନୁଁ ବଢ଼ି ଆସିଛି । ଏପରିକି ଯେଉଁମାନେ ପଇତାକୁ ଓ ଜାତି ଇତ୍ୟାଦିରେ ବିଶ୍ୱାସ କରନ୍ତି ନାହିଁ, ସେମାନେ ସମାଜକୁ ସମ୍ମାନ ବା ଭୟ କରନ୍ତି କିମ୍ବା ନିଜ ମନ ଭିତରେ କେଉଁ ଗଭୀର କୋଣରେ ସେ ସବୁ ପ୍ରତି ଥିବା ବିଶ୍ୱାସ ଦ୍ୱାରା ପରିଚାଳିତ ହୋଇ ତାକୁ ବର୍ଜ୍ଜନ କରନ୍ତି ନାହିଁ । ଘରକୁ ଗଲେ ବିନା ପଇତାରେ ବାପାଙ୍କ ସମ୍ମୁଖୀନ ହେବାକୁ ହେବ, ଏଥିପାଇଁ ମନକୁ ଦୃଢ଼ କରୁଥାଏଁ ।

ମାତ୍ର ସେ ଦିଗରେ ଆଉ ଉଦ୍ୟମ ଦରକାର ପଡ଼ିଲା ନାହିଁ । ବାବାଙ୍କ ମତ ବିରୋଧରେ ଯିବାପାଇଁ ନିଜକୁ ଯେ ଦୃଢ଼ କରୁଥିଲି, ଏଥିପାଇଁ ଅଳ୍ପଦିନ

ସଙ୍କୋଚ ଅନୁଭବ କରିବାକୁ ହେଲ । ଆନ୍ଦୋଳନରେ ଆଜପର୍ଯ୍ୟନ୍ତ, ବାବାଙ୍କୁ ମୁଁ ସନ୍ତୋଷ ତ ଦେଇନାହିଁ, ଅପରନ୍ତୁ ତାଙ୍କ ମନରେ ଭୀଷଣ ଆଘାତ ଦେଇଛୁ । ଏସବୁ କଥା ଚିନ୍ତାକରି ମନେ ପଡ଼ି ମୋତେ ଦାରୁଣ ବ୍ୟଥା ଦେଲା । ଦିନେ ଜେଲର ମୋତେ ଡାକିନେଇ ନାନାପ୍ରକାର ଏଣୁ ତେଣୁ କଥାବାର୍ତ୍ତା କରି ଶେଷରେ ଏକ ତାର ଦେଖାଇଲେ ଯେ, ବାବା ନିଉମୋନିଆ ରୋଗରେ ମରିଯାଇଛନ୍ତି । ମୁଁ କିଛି ନ କହି ସେଠାରୁ ଉଠି ଆସିଲି । ମୁହଁମାଡ଼ି ବିଛଣାରେ ପଡ଼ିରହିଲି । ଜୀବନରେ ବାବାଙ୍କର ମୁଁ ସେବା କେବେ କରିପାରିଲି ନାହିଁ, ବରଂ ପ୍ରମାଣ କେତେ ତାଙ୍କର ଆଶା ଚୂରମାର୍ କରି ଧୂଳିସାତ୍ କରି ଦେଇଛି, ତାଙ୍କ କଥା ନ ମାନି କଲେଜରେ ପଢ଼ିବା, ତାପରେ ତାଙ୍କୁ ଠକିଦେଇ ଅସହଯୋଗ ଆନ୍ଦୋଳନରେ ଯୋଗଦେବା, ତା'ପରେ ସେ ମୂର୍ଖତାର କାର୍ଯ୍ୟ ତାଙ୍କୁ ରେଜିଷ୍ଟ୍ରୀ ନୋଟିସ୍ ଦେବା; ଶେଷରେ ସେ ମୋ ପ୍ରତି ସ୍ନେହଭର ହୋଇ ମୋ ମନ ରକ୍ଷା କରିବା ପାଇଁ କଂଗ୍ରେସ ପ୍ରତି ସହାନୁଭୂତିଶୀଳ ହେବା, ଏ ସବୁ ବଡ଼ ବଡ଼ କଥା ସଙ୍ଗେ କେତେ ଛୋଟ ଛୋଟ ଚିନ୍ତାକରି କଥା ମୋ ମନରେ ଯେଉଁ ଘଟଣା ପରି ଅଭିନୟ ଏପରି ଆରମ୍ଭ କଲେ ଯେ, ମୁଁ ଆତ୍ମଗ୍ଲାନିରେ ସଢ଼ି ଗଲା ପରି ହୋଇଗଲି । ଏହି ସମୟରେ ସୁଭଦ୍ରା ଦେବୀ ମଧ୍ୟ ଜେଲ୍‌ରେ । ଅନ୍ତତଃ ସେ ଘରେ ଥିଲେ, ବାବାଙ୍କ ମନ ବୋଧ ହୋଇଥାନ୍ତା । ଯାହା ହେବାର ହୋଇଗଲା, ଆମେ ଜେଲ୍‌ରେ ଥିବାବେଳେ ମୃତ୍ୟୁ ମଧ୍ୟ ତା ଦାଉ ସାଧିଥିଲା—ଏହି ଚିନ୍ତାରେ ମୁଁ ଅସ୍ଥିର ହୋଇଗଲି । ଏହା ପରେ ପରେ ତାଙ୍କ ଅନୁପସ୍ଥିତିରେ ଘରର ଅବସ୍ଥା କଅଣ ହେବ ଓ ମୁଁ ନିଜେ ସେଥିରେ କିପରି ପ୍ରଭାବିତ ହେବି, ଏ ଚିନ୍ତା ମଧ୍ୟ ମୋ ମନକୁ ଗ୍ରାସ କଲା । ତାଙ୍କର ପ୍ରତିପତ୍ତି ଆମ ଘରକୁ ନାନା ସ୍ଥାନୀୟ ବାଦ ବିବାଦରୁ ରକ୍ଷା କରୁଥିଲା । ତାଙ୍କ ବିନା ସେସବୁକୁ ମୋତେ ତୁଲାଇବାକୁ ହେବ । ହୁଏତ ସେଥିପାଇଁ ମୁଁ ଟିକିଏ ଛନ୍ଦି ହୋଇଯାଇ ପାରେ, ଏ ଆଶଙ୍କା ମଧ୍ୟ ହେଉଥାଏ ।

ବାସ୍ତବିକ୍ ଜେଲ୍ ଭିତରେ ମୃତ୍ୟୁ-ଖବର ପାଇବାଠାରୁ ଯନ୍ତ୍ରଣାର ବିଷୟ ଆଉ କିଛି ନାହିଁ । ଯେତେ ଯାହା ମନରେ ଚିନ୍ତା ହେଉ, ଜେଲ ଭିତରେ କିଛି କରିବାର ବାଟ ନ ଥାଏ । ଶେଷରେ ଚିନ୍ତା ନିଜ ଗତିରେ ହିଁ ନିଜେ ଶେଷ ହେବାକୁ ବସିଲା, ଧୀରେ ଧୀରେ ପ୍ରକୃତିସ୍ଥ ହୋଇ ମୁଁ ନୂଆକରି ମୋ ଜୀବନ ଓ ପରିବାର କଥା ଭାବିଲି । ଇତିପୂର୍ବେ ଯେଉଁ ଦୁଇଟି ବିପ୍ଳବ ସାଧନ କରିବି ଭାବିଥିଲି, ତାକୁ ହିଁ ଆଲୋଚନା କଲି । ମୁଁ ସ୍ଥିର କଲି ଯେ, ଆମ ଘରେ ଯେପରି ଭାବରେ ଦେବପୂଜା ହେଉଛି, ତାକୁ ବଦଳାଇବାକୁ ହେବ । ପ୍ରତ୍ୟେକ ପର୍ବରେ ଠାକୁରଙ୍କଠି ଭୋଗରାଗ,

ସାଙ୍ଗସାଥୀ ଓ ଠାକୁରଙ୍କ ପଛରେ ଯେତେ ପ୍ରକାର ଖର୍ଚ୍ଚ ତାକୁ ନିୟନ୍ତ୍ରିତ କରି ସେହି ଖର୍ଚ୍ଚକୁ ଏପରି ପରିଚାଳନା କରିବାକୁ ହେବ, ଯେଉଁଥିରେ ସେହି ଦେବ-ପୂଜାର ଅର୍ଥ ହେବ ବାସ୍ତବିକ୍ ଜନସେବା । ଏ ଚିନ୍ତା ମୋ ମନକୁ ଏପରି ମାନିଲି ଯେ, ଏହାକୁ ମଧ୍ୟ ସେହି 'ନୂତନ ଧର୍ମ' ଉପନ୍ୟାସରେ ଦେଲି । ବାବାଙ୍କ ଦଶାହ ଶ୍ରାଦ୍ଧକର୍ମ ବେଳକୁ ମୋ ସାନଭାଇ କାହ୍ନୁଚରଣଠାକୁ ତାର କଲି ଯେ, ଶ୍ରାଦ୍ଧରେ ବେଶୀ ପଇସା ଯେପରି ଖର୍ଚ୍ଚ ନ ହୁଏ । ଯେତେବେଳେ ରାମନବମୀ ନିକଟ ହୋଇ ଆସୁଥାଏ, ସେ ଉପଲକ୍ଷେ ଯାତ୍ରା ବନ୍ଦ କରିବା ପାଇଁ ମଧ୍ୟ ତାରରେ ଉଲ୍ଲେଖ କରିଥିଲି । ତାର ଅନୁସାରେ ସେଠି କାମ ହେଲା ଓ ମୁଁ ପରେ ଶୁଣିଲି ଯେ, ମୁଁ ଓ ମୋର ସ୍ତ୍ରୀ ଯଦି ସେତେବେଳେ ଜେଲରେ ନ ଥାନ୍ତୁ, ତେବେ ଲୋକେ କହୁଥାନ୍ତେ 'ବେଶ୍ ଏ କୁଳାଙ୍ଗାର ପୁଅ, ବାପ ମଲା ମାତ୍ରକେ ସବୁ ବନ୍ଦବାନ୍ଦ କରିଦେଲା ।'

•

ପ୍ରଥମ ଛଅମାସର ଜେଲ୍ କାଳ ଶେଷ ହେବାକୁ ବସିଲା । ଏଠାରେ ଏହା ଉଲ୍ଲେଖ କରିବାକୁ ହେବ ଯେ, ଏଥର ମଧ୍ୟ ଜେଲରେ, ଆସୁଥିବା ଶାସନ ଆଇନ୍ ପ୍ରବର୍ତ୍ତିତ ହେଲେ କିପରି କ୍ଷମତା ଲାଭ କରିବାକୁ ହେବ, ସେଥିପାଇଁ ଜୋର ସୋରରେ ଦଳଗଠନ ଚାଲିଥାଏ । ପ୍ରତିଦିନ ସେହି ବିଷୟ ଆଲୋଚନା ଓ ସେଥିପାଇଁ କର୍ମ-କୌଶଳ ନିର୍ଣ୍ଣୟ ଦେଖି ମୋତେ ବଡ଼ ବିରକ୍ତ ବୋଧ ହେଉଥାଏ । ଯେତେବେଳେ ତୃତୀୟ ଗୋଲଟେବୁଲ ବୈଠକ ଶେଷ ହୋଇ ଶାସନ ପରିବର୍ତ୍ତିତ କିଅଣ ହେବ ଓ ସେ ଦିଗରେ ବିଭିନ୍ନ ବିଷୟରେ କମିଶନମାନ ନିଯୁକ୍ତ ହୋଇ କାର୍ଯ୍ୟ ଆରମ୍ଭ ହୋଇଯାଇଥାଏ । ଯଥାକଥା ଏହି ସମୟରେ କଂଗ୍ରେସକୁ ନିଜ ହାତରେ ରଖିନେଲେ ଶେଷରେ କଂଗ୍ରେସ ଜରିଆରେ ଆମ ହାତକୁ କ୍ଷମତା ଆସିବ, ଏହା ହିଁ ସମସ୍ତ ଉଦ୍ୟମର ଲକ୍ଷ୍ୟ ଥାଏ । ଆମ ଓଡ଼ିଶାର କେତେଜଣ ବନ୍ଦୀ ନୀଳକଣ୍ଠ ବାବୁଙ୍କୁ କେନ୍ଦ୍ରକରି ଉଦ୍ୟମ ଚଳାଇଥାନ୍ତି । ଏଥିରୁ ଗୋପବାବୁ, ଆଚାର୍ଯ୍ୟ ମହାଶୟ, ଲିଙ୍ଗରାଜବାବୁ ଓ ମୋତେ ବାଦ ରଖି ଏ ସବୁ କାମ ଚାଲିଥାଏ । ଏପରିକି ସେମାନଙ୍କ ଉଦ୍ୟମକୁ ଯଶସ୍ୱୀ କରିବା ପାଇଁ ହେଲେ ଆମର ପ୍ରତିଷ୍ଠା ନଷ୍ଟ କରିବାକୁ ହେବ, ଏ ମଧ୍ୟ କର୍ମକୌଶଳ ଭିତରେ ରଖାଯାଇଥାଏ । ଆହୁରି ମଧ୍ୟ ମୁଁ ଶୁଣିଲି ଯେ, ତଦନୁସାରେ କାମ ଆରମ୍ଭ ହୋଇଗଲାଣି । ମୁଁ ଏତେ ବ୍ୟସ୍ତ ଅନୁଭବ କଲି ଯେ, ଏ ଦେଶ ସ୍ୱରାଜ୍ୟ ପାଇଁ ବାସ୍ତବିକ ଉପଯୁକ୍ତ ହୋଇନାହିଁ ବୋଲି ମନେ କଲି —ମାତ୍ର ପୁଣି ଭାବିଲି ସବୁ ଦେଶରେ ସବୁ ଆନ୍ଦୋଳନରେ ଏ ଶ୍ରେଣୀର ଲୋକ ଥାଆନ୍ତି ଓ ଯେକୌଣସି ରାଜନୈତିକ ଆନ୍ଦୋଳନରେ ଏସବୁ ଏକ ଅପରିହାର୍ଯ୍ୟ ଦୋଷ

ଜେଲରୁ ଖଲାସ ହୋଇ ବାଲେଶ୍ୱର ଆସିଲି । ପ୍ରଥମେ ମୋର ଚନ୍ତାର ବିଷୟ ହେଲା ଯେ, ବାବାଙ୍କ ମୃତ୍ୟୁ ପରେ ମୁଁ ଥରେ ଘରକୁ ଯାଇ ଚାଲି ଆସିବି କି ନାଁ; ମାତ୍ର ମୁଁ ଭାବି ଦେଖିଲି ଯେ, ଆନ୍ଦୋଳନ ଚାଲିଥିବାବେଳେ ମୋର ଘରକୁ ଯିବା ଉଚିତ ନୁହେଁ । ତେଣୁ ମୁଁ ଗଲିନାହିଁ । ଏହି ସମୟରେ ଶୁଣିଲି ଯେ, ଗୋପବାବୁଙ୍କ ବିରୁଦ୍ଧରେ, ରମା ଦେବୀଙ୍କ ବିରୁଦ୍ଧରେ ଓ ମୋ ବିରୁଦ୍ଧରେ ପାଟଣା କ୍ୟାମ୍ପ ଜେଲରେ ବନ୍ଦୀମାନଙ୍କ ଭିତରେ ନାନା କୁତ୍ସା ରଟନା ଚାଲିଛି । ଦଳେ ଲୋକ ଲାଗିପଡ଼ି ବିଶ୍ୱାସ ଜନ୍ମାଇବାକୁ ଚାହୁଁଛନ୍ତି ଯେ, ମନୁଷ୍ୟର ଯେତେ ଖରାପ ଗୁଣ ଅଛି, ସବୁ ଆମଠାରେ । ଏହି ସମ୍ପର୍କରେ ମୁଁ ଶୁଣିଲି ଯେ, ବାବାଙ୍କ ମୃତ୍ୟୁ ଖବର ଶୁଣି କ୍ଷମା ପ୍ରାର୍ଥନା ମାଗି ମୁଁ ଜେଲରୁ ଚାଲି ଆସିଛି ବୋଲି ପ୍ରଚାରିତ ହେଉଛି—ଏହା ଛଡ଼ା ଆଉ କେତେ କଥା ପ୍ରଚାରିତ ହେଉଥିବାର ମୁଁ ଶୁଣିଲି, ଯାହା ଲେଖିବା ଅଶ୍ଳୀଳ । ଆହୁରି ମଧ୍ୟ ଶୁଣିଲି ଯେ, ଦଳେ ଆମକୁ ସମର୍ଥନ କରିବାରେ ଲାଗିଛନ୍ତି । ଏ ଦୁଇ ଦଳ ଭିତରେ ପିଟାପିଟି ପର୍ଯ୍ୟନ୍ତ ହୋଇଗଲଣି । ମୁଁ ଭାବିଲି, ସ୍ୱରାଜ୍ୟ ଆନ୍ଦୋଳନରେ ଜେଲ୍ ଯାଇ ସ୍ୱରାଜ୍ୟର ଚିନ୍ତା କଅଣ ବନ୍ଦୀମାନଙ୍କ ମନରୁ ଚାଲିଗଲଣି । ଧରିନିଆଯାଉ ଯେ ମୁଁ ଜଣେ ଅତି ଖରାପ ଲୋକ ଓ ମୋ ବିରୋଧରେ ପ୍ରଚାର ହେଉଥିବା ଦୋଷଯାକ ସବୁ ସତ୍ୟ, ତାହାହେଲେ କଅଣ ଆମେ ହିଁ ଆଲୋଚନାର ବିଷୟ, ସ୍ୱରାଜ୍ୟ ନୁହେଁ ? ଅହିଂସାତ୍ମକ ଆନ୍ଦୋଳନ ବୋଲି ସିନା ପ୍ରତିଷ୍ଠାର କଥା ଉଠୁଛି, ନଇଲେ ତ ସଶସ୍ତ୍ର ବିଦ୍ରୋହରେ କିଏ କେଉଁଠି ଲୁଚି ବୁଲୁଥାନ୍ତେ ବା ଜେଲରେ କେତେ କଟକଣାରେ ରଖା ହୋଇଥାନ୍ତେ; ତା'ର କଳ୍ପନା ସୁଦ୍ଧା କରି ହେବ ନାହିଁ । ମୁଁ ଆମ କଂଗ୍ରେସ ଅନୁଷ୍ଠାନର ଦୁର୍ବଳତା ବୁଝିପାରିଲି । ପରେ ଶୁଣିଲି ଯେ, ଭାରତସାରା ସବୁ ଜେଲ୍‌ରେ ଏହିପରି ଦଳାଦଳି ଚାଲିଥିଲା । ବୋଲିବା ବାହୁଲ୍ୟ ଯେ ଆନ୍ଦୋଳନକାରୀଙ୍କ ନିଷ୍ଠାର ଅଭାବ ଯୋଗୁଁ ଆନ୍ଦୋଳନ ଯଶସ୍ୱୀ ହୋଇ ପାରିଲା ନାହିଁ । ଆଉ ଏକ ବଡ଼ କଥା ଏହି ଯେ, ଏ ଆନ୍ଦୋଳନରେ ଅନେକ ନୂଆ ଲୋକ ଜେଲ ଯାଇଥାନ୍ତି । ସେମାନେ ସ୍ୱରାଜ୍ୟର ଉନ୍ମାଦନାରେ ସବୁ ଛାଡ଼ି ଜେଲ୍‌ରେ ଯାଇ ଦେଖିବା ବେଳକୁ ସେମାନଙ୍କ ସମ୍ମାନିତ ବ୍ୟକ୍ତିମାନେ ସ୍ୱରାଜ୍ୟ ଆଲୋଚନା ପରିବର୍ତ୍ତେ ବାଭତ୍ସ ବ୍ୟକ୍ତିଗତ ଆଲୋଚନାରେ ନିଯୁକ୍ତ । ସେମାନେ ଅଧିକାଂଶ ଯେ ନିରୁତ୍ସାହିତ ହୋଇ ଆସି କଂଗ୍ରେସ ଛାଡ଼ିଦେଲେ, ଏଥିପାଇଁ ଦାୟୀ ଯେ ସମସ୍ତଙ୍କର ଜେଲଜୀବନ ।

ବାଲେଶ୍ୱରରେ ମୁଁ ଆସି ଶୁଣିଲି ଜଣେ ବିଶିଷ୍ଟ ଲୋକ ପ୍ରକାଶ କରୁଛନ୍ତି ଯେ, ମହତାବ୍ ବଞ୍ଚିଥିବା ପର୍ଯ୍ୟନ୍ତ ତାଙ୍କର ଓ ତାଙ୍କ ପରିବାରର ପ୍ରତିଷ୍ଠା ବଢ଼ି

ପାରିବ ନାହିଁ । ମୁଁ ସିଧା ଯାଇ ତାଙ୍କୁ ସମ୍ମାନ ସହକାରେ ପଚାରିଲି ମୋ ଶୁଣିବା କଥା ସତ୍ୟ କି ନା ? ସେ ମାନିଲେ ଓ କହିଲେ ଯେ ଏହା ତାଙ୍କର ବିଶ୍ୱାସ । ମୁଁ ସେତେବେଳେ ଭାବିଲି ଯେ ମୁଁ ବାଲେଶ୍ୱରରେ ଆନ୍ଦୋଳନ ସମ୍ପର୍କରେ କାମ ନ କରି କଟକ ଗଲେ ଭଲ ହେବ । ସେତେବେଳେ ଯେଉଁମାନେ ବାହାରେ ରହି ଯାଇଥାନ୍ତି, ସେମାନଙ୍କୁ ନିଜକୁ ଗୋପନରେ ରଖି ଲୋକ ସଂଗ୍ରହ କରି ସେହିମାନଙ୍କ ଦ୍ୱାରା ଆଇନ୍ ଅମାନ୍ୟ କରାଇ ଆନ୍ଦୋଳନ ଚଳାଇଥାନ୍ତି । ବାଲେଶ୍ୱର ଜିଲ୍ଲାରେ ଆନ୍ଦୋଳନର କେନ୍ଦ୍ରସ୍ଥଳ ଥାଏ ଫରାସୀଡଙ୍ଗା । ଏହା ଫରାସୀ ସରକାରଙ୍କ ଅଧୀନରେ; ଏଣୁ ଏଠି ରହି ସର୍ଦ୍ଦାର ସୁରେନ୍ଦ୍ର ଜିଲ୍ଲାର ଆନ୍ଦୋଳନ ଚଳାଇଥାନ୍ତି । ମୁଁ ନିଜକୁ ଧରାଇ ଦେବି ନାହିଁ ଅଥଚ ଯେତେଦୂର ସମ୍ଭବ ପ୍ରକାଶ୍ୟ ଭାବରେ କାମ କରିବି—ଏହା ମନେ ମନେ ଭାବିଲି । ପ୍ରଥମେ 'ପ୍ରଜାତନ୍ତ୍ର' ପ୍ରେସ ଦେଖିବାକୁ ଗଲି । ଦେଖିଲି ପ୍ରେସ୍ ଘର ହତାକୁ ବେଆଇନ୍ ଘୋଷଣା କରି ପୋଲିସ୍ ଚାବି ପକାଇ ଦେଇଛି । ଆଉ ମଧ୍ୟ ଶୁଣିଲି ଯେ, ପ୍ରେସକୁ ଟ ୩୦୦୦ଙ୍କା ଓ ଖବରକାଗଜକୁ ଟ ୨୦୦୦ଙ୍କା ଏପରି ଜାମିନ୍ ମଗାଯାଇଛି । ପ୍ରେସ୍ ଘରସବୁ ଭାଙ୍ଗିପଡ଼ିଲାଣି । ସେଥିପାଇଁ ମୋ ମନ ବ୍ୟସ୍ତ ହେଲା ନାହିଁ—ମୁଁ ଫରାସୀଡଙ୍ଗା ଗଲି; ସେଠାରେ ସୁରେନ୍ଦ୍ରଙ୍କ ସହିତ କଥାବାର୍ତ୍ତା କରି ସମସ୍ତ ଜାଣିଲି । ମାଳାମ୍ବର ସେତେବେଳକୁ ଉତ୍ତର ବାଲେଶ୍ୱରରେ ନିଜକୁ ନିଜେ ଏତେ ଗୋପନରେ ରଖି ଏତେ ଲୋକ ସଂଗ୍ରହ କରି ଆଇନ୍ଅମାନ୍ୟ ପାଇଁ ପଠାଉଛି ଯେ, ମୁଁ ସମସ୍ତ ବୃତ୍ତାନ୍ତ ଶୁଣି ବିସ୍ମିତ ହେଲି, ମାତ୍ର ମୋତେ ଏସବୁ କିଛି ସୁଖ ଲାଗିଲା ନାହିଁ; କାରଣ ଅନ୍ୟ ବାଟ ମୋତେ ଦେଖା ଯାଉ ନ ଥାଏ । ନିଖିଳ ଭାରତ-କଂଗ୍ରେସକମିଟି ଅଫିସ ମଧ୍ୟ ସେହିପରି ଗୋପନରେ ଚାଲୁଥାଏ ।

ତା'ପରେ ମୁଁ କଟକ ଗଲି । ସେଠାରେ ଯାଇ ରହିବି କେଉଁଠି ? ସେଠି ଯେଉଁମାନେ ଆନ୍ଦୋଳନ ପରିଚାଳନା କରୁଛନ୍ତି ସେମାନେ ଲୁଚିକରି ଏପରିଭାବରେ ରହୁଥାନ୍ତି ଯେ, ସେମାନେ କେଉଁଠି ଖାଉଛନ୍ତି ଓ କେଉଁଠି ରହୁଛନ୍ତି ଜାଣିବା ଦୁଷ୍କର । ମୁଁ ଭାବିଲି, ପ୍ରଚାରପତ୍ର ଛାପିବା ଓ ଚାରିଆଡ଼କୁ ଚିଠିପତ୍ର ଲେଖି ଆନ୍ଦୋଳନର ସଂଗଠନ କରିବା ଏସବୁ ପଛେ ଗୋପନରେ ହେଉ, ମାତ୍ର ଆନ୍ଦୋଳନ କର୍ତ୍ତାମାନେ ଲୁଚି ରହିଲେ ଆନ୍ଦୋଳନରେ ବାଧା ଆସିବ । ତେଣୁ ମୁଁ ଯାଇ ଅଟଳବିହାରୀ ଆଚାର୍ଯ୍ୟଙ୍କ ଡାକ୍ତରଖାନା ବାରଣ୍ଡାରେ ରହିଲି । ମୋର ସୁପରିଚିତ ବନ୍ଧୁମାନେ କାଳେ ହଇରାଣରେ ପଡ଼ିବେ ବା ତାଙ୍କୁ ଅଡ଼ୁଆ ଲାଗିବ, ଏଣୁ ସେମାନଙ୍କ ଘରେ ରହିବା ପସନ୍ଦ କରି ନ ଥିଲି । ସେ ଡାକ୍ତରଖାନା ବାରଣ୍ଡାରେ ରାତିରେ ଶୁଏ—ଗୋଟିଏ ଷ୍ଟୋଭ୍‌ରେ କିଛି ରାନ୍ଧିଦେଇ ଖାଇନିଏ

ବା ହୋଟେଲରେ ଖାଏ—ପାଖରେ ଗୋଟିଏ ପାଇଖାନା ଥାଏ, ସେଠି ନିତ୍ୟକର୍ମ ସମାପନ କରେ । କଂଗ୍ରେସ ଅଫିସ୍ ସବୁବେଳେ ମୋ ପକେଟରେ ଥାଏ । ପ୍ରସ୍ତୁତ-ପତ୍ର ଛପାଇବା ଓ ସେଗୁଡ଼ିକ ସବୁ ଜିଲ୍ଲାର ବିଭିନ୍ନ କେନ୍ଦ୍ରକୁ ପଠାଇବାପାଇଁ ଦୁଇଟି ବିଭାଗରେ ବିଭକ୍ତ କରି ଗୋଟିଏ ଗୋପନୀୟ ପ୍ରେସରେ ପ୍ରାପ୍ତ ଦଶହଜାର ପ୍ରସ୍ତାବପତ୍ର ଛପା ହେଉଥିଲା ଓ ଆଉ ଗୋଟିଏ ଗୋପନୀୟ ସ୍ଥାନରେ ଡାକବିଭାଗ କାର୍ଯ୍ୟ କରୁଥାଏ । ସେହିଠାରୁ ସେସବୁ ଓ ଅନ୍ୟାନ୍ୟ ଚିଠିପତ୍ର ସବୁ ଯାଉଥିଲା । ଯେଉଁମାନେ ବିଲାତି ଲୁଗା ଦୋକାନ ଓ ଅଫିମ ଦୋକାନରେ ପିକେଟିଂ କରୁଥିଲେ, ସେମାନେ ଅନ୍ୟତ୍ର ରହୁଥିଲେ ଓ ସେମାନଙ୍କ ସତ୍ୟାଗ୍ରହୀମାନେ ମଧ୍ୟ ଆଉ ଏକ ସ୍ଥାନରେ ରହୁଥିଲେ । ମୋଟ କଥା ମୁଁ ଓ ଆଉ ଜଣେ ଦୁଇଜଣ ପ୍ରକାଶ୍ୟ ଭାବରେ ରହିଲୁ, ଆଉ ସବୁ ଗୋପନରେ ରହିଲେ । ଏହିପରି ବନ୍ଦୋବସ୍ତ କଲୁ । ସେତେବେଳେ ବାସ୍ତବିକ୍ ଜୀବନ-ମରଣ ସମସ୍ୟା । ସେତେବେଳକାର ସରକାର କଂଗ୍ରେସକୁ ମୂଳୋତ୍ପାଟିତ କରିଦେବ ବୋଲି ବଦ୍ଧପରିକର । କୌଣସି ପ୍ରକାର ବଞ୍ଚି ରହିବା ପାଇଁ କଂଗ୍ରେସ ନାକେଦମ୍ ହୋଇଁ ଚେଷ୍ଟା କରୁଥାଏ । ଏ ଅବସ୍ଥାରେ ମଧ୍ୟ ଛୋଟ ଛୋଟ କଥାରେ ଠେଲାଠେଲି କର୍ମୀମାନଙ୍କ ଭିତରେ ହେଉଥିବାର ଦେଖି ମୁଁ ନିତାନ୍ତ ଦୁଃଖ ଅନୁଭବ କରୁଥିଲି । ନିଖିଳ ଭାରତ କଂଗ୍ରେସ ଅଫିସରୁ ଗୋପନୀୟ ଭାବରେ କଲିକତା ବାଟେ ଆସିବାର ବନ୍ଦୋବସ୍ତ ହୋଇଥାଏ । ଏ ସମ୍ପର୍କରେ ମୁଁ କଲିକତା କେତେଥର ଯାଇଛି । କର୍ମୀମାନଙ୍କ ସହିତ ମୋର ଦେଖା ଓ କଥାବାର୍ତ୍ତା ହେବାର ସମୟ ରାତି ଦୁଇଟା ତିନିଟାବେଳେ ଟାଉନ୍‌ହଲ ପିଣ୍ଡାରେ ଥାଏ ।

ସେତେବେଳେ ଆଇନ୍ ଅମାନ୍ୟ କଲେ ପୋଲିସ ଧରୁ ନ ଥାଏ, ଯଦି ଧରୁଥାଏ, ତେବେ ଦିନେ ଦୁଇଦିନ ଥାନାରେ ଅଟକାଇ ଛାଡ଼ିଦେଉଥାଏ । ଏହା ଏପରି ଦେହସୁହା ହୋଇଯାଇଥାଏ ଯେ, କର୍ମୀମାନଙ୍କର ମଧ୍ୟ ଶୈଥିଲ୍ୟ ଆସି ଯାଇଥାଏ । ମୁଁ ଭାବିଲି ଜେଲଠାରୁ ବଳି ଆଉ କିଛି କଷ୍ଟକର ବରଣ କରିନା ଭଳି କାମ କରିବା ଦରକାର, ଯଦ୍ଦ୍ୱାରା ଜେଲ ନ ଦେଇ ପୋଲିସର ଅନ୍ୟ ଉପାୟ ନ ରହିବ । ଏଥିପାଇଁ କଂଗ୍ରେସ ତରଫରୁ ପ୍ରବଳ ଜିଦ୍ ଓ ଖୁବ୍ ସାହାସ ଦରକାର । ସେଥିପାଇଁ ମୁଁ ସେତେବେଳେ କଚେରି ଆକ୍ରମଣର ଏକ କାର୍ଯ୍ୟକ୍ରମ ବାହାର କରିଥିଲି—ଅର୍ଥାତ୍ ସ୍ୱେଚ୍ଛାସେବକମାନେ କଚେରି ଭିତରକୁ ଯାଇ ହାକିମଙ୍କୁ କହିବେ ଯେ, ତାଙ୍କର ସେଠି ବସି ହୁକୁମ ଦେବାର କ୍ଷମତା ନାହିଁ ଓ ସେଠାରେ ଥିବା କାଗଜପତ୍ର ନଷ୍ଟ କରିଦେବେ । ଏ କାର୍ଯ୍ୟକ୍ରମ ସୁଧୀର ଘୋଷ ଅତି ଦକ୍ଷତାର ସହିତ କରିଥିଲେ । କେତେକ କର୍ମୀ ସେତେବେଳେ ଏହାକୁ ପସନ୍ଦ କରି ନ ଥିଲେ । ସେତେବେଳୁଁ

କଂଗ୍ରେସ ଭିତରେ ହିଂସା ଓ ଅହିଂସାର ପ୍ରଶ୍ନ ଉଠିଲାଣି; ଅର୍ଥାତ୍ କେତେକ ନିଜକୁ ଅହିଂସାବାଦୀ ମନେ କରି ଅନ୍ୟକୁ ହିଂସାବାଦୀ କହି ଉଡ଼ାଇ ଦେବା ବା ଘୃଣା କରିବା ଗ୍ଭଲିଲାଣି । ମୋର ଉପଯୁକ୍ତ କାର୍ଯ୍ୟକ୍ରମ ହିଂସାତ୍ମକ ବୋଲି କେତେକ କହିଲେ, ମାତ୍ର ମୁଁ ଦେଖୁଥାଏ ଯେ ନିପଟ କାପୁରୁଷତା ଧୀରେ ଧୀରେ ଗ୍ରାସ କରି-ଯାଉଛି । ସେପରି ସ୍ଥଳେ ସାହସର ସଞ୍ଚାର ପାଇଁ ଯେ କାର୍ଯ୍ୟକ୍ରମ ମୋତେ ସୁଝୁଥାଏ, ତାହା ମୁଁ କରିଯାଉଥାଏ । ତା'ପରେ ଆଉ ଏକ କଥା ମୋ ମନରେ ପଡ଼ିଲା, ସେ ହେଉଛି ଗିରପ୍ତାରର ପ୍ରତିରୋଧ କରିବା—ଅର୍ଥାତ୍ ପୋଲିସ୍ ଗିରପ୍ତାର ହେଲି ବୋଲି କହିଦେଲେ ତା' କଥା ମାନି ସିଧା ତା' ସଙ୍ଗରେ ନିଜ ବଳ ଖରଚ କରି ନ ଯାଇ ତା' କଥାକୁ ନ ମାନିବା ଓ ପୋଲିସ ବଳରେ ଜେଲକୁ ଯିବା । ଏହାକୁ ମଧ୍ୟ ଚଳାଇଲି । ବହୁ ସ୍ବେଚ୍ଛାସେବକ ତଳେ ପଡ଼ି ଟଣାଟଣିରେ ଦେହ ହାତ ରକ୍ତାକ୍ତ ହୋଇଯାଇ ମଧ୍ୟ ଆପେ ଆପେ ଜେଲକୁ ଗଲେ ନାହିଁ । ଏହାର ନେତୃତ୍ୱ ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ଗ୍ରହଣ କରି ଦକ୍ଷତାର ସହିତ କାମ କରାଇଥିଲେ । ତା'ପରେ ଆଉ ଏକ କଥା ମୋ ମନରେ ଉଠିଲା, ସେ ହେଉଛି ବିଲାତି ଲୁଗା ଦୋକାନୀକୁ ନୋଟିସ ଦେଇ ସେ ଦୋକାନଭିତରେ ପଶି ବିଲାତି ଲୁଗାକୁ ନଷ୍ଟ କରିଦେବା । ଏ ପ୍ରଶ୍ନ ଉଠିଲା ଜଣେ ବକ୍‌ସିବଜାର ଲୁଗାଦୋକାନୀ ଜିଦ୍‌କରି କଂଗ୍ରେସ ନିର୍ଦ୍ଦେଶ ନ ମାନିବାରୁ । ତାକୁ ଆଗରୁ ନୋଟିସ ଦିଆଗଲା ଓ ନିର୍ଦ୍ଦିଷ୍ଟ ସମୟରେ ସ୍ବେଚ୍ଛାସେବକମାନେ ତା' ଦୋକାନରେ ପଶିବାକୁ ଚେଷ୍ଟା କଲେ । ସେ ପୋଲିସ୍ ଆଣି ସେଠାରେ ରଖାଇଥାଏ । ପୋଲିସ୍ ସ୍ୱେଚ୍ଛାସେବକମାନଙ୍କୁ ନିର୍ମମ ମାଡ଼ ଦେଉଥାନ୍ତି । ଏଣେ ଏମାନେ ଠେଲି ପଶିବାକୁ ଭୀଷଣ ପ୍ରୟାସ କରୁଥାନ୍ତି । ଶେଷରେ ଜଣେକେତେ ପଶିଯାଇ ଏସିଡ୍ ଢାଳିଦେବା ଫଳରେ ଗୋଟିଏ ଗାଣ୍ଠି ଲୁଗା ନଷ୍ଟ ହୋଇଗଲା । ଏ କାର୍ଯ୍ୟ ନିତାନ୍ତ ହିଂସାତ୍ମକ ହେଲା ବୋଲି ମୋ ବିରୋଧରେ ଅଭିଯୋଗ ଆସିଥିଲା । ଏ ସବୁ ମୁଁ ବହୁତ ବିଗ୍ଭରି ଚିନ୍ତା କରି ସ୍ଥିର କରିଥିବାରୁ ମୁଁ ହିଂସା ଅହିଂସାର ଧୂଆଁରେ ବିବ୍ରତ ହେଉ ନ ଥିଲି ।

ଏସବୁ କାର୍ଯ୍ୟକ୍ରମ ଭିତରେ ଆଉ ଗୋଟିଏ ବିଷୟ ମୋତେ ଲାଗୁଥିଲା, ସେ ହେଉଛି ଭାରତୀୟ କର୍ମଚ୍ଭରୀମାନଙ୍କ ମନର ପରିବର୍ତ୍ତନ । ସେ ଉଦ୍ଦେଶ୍ୟରେ ସୁଭଦ୍ରା ମହତାବଙ୍କ ନାମରେ ଅନେକ ଇଂରାଜୀ ଚିଠି ସବୁ ଭାରତୀୟ ହାକିମ-ମାନଙ୍କଠାକୁ ଡାକରେ ପଠାଉଥିଲି । ସେମାନଙ୍କ ହୃଦୟକୁ ସ୍ପର୍ଶ କରିବାପାଇଁ ମୁଁ ବହୁ କଥା ଲେଖୁଥିଲି । ଏହା କେଉଁଠି କିପରି କାମ କରୁଥିଲା, ତାହା ମୋତେ ଜଣା ନାହିଁ, ମାତ୍ର ଏହା ନିଶ୍ଚିତ ଜାଣୁଥିଲି ଯେ, ଆମର ଲୋକ କୁର୍ଷୀ-ବେଣ୍ଟ

ହୋଇଥିବା ପର୍ଯ୍ୟନ୍ତ ଆମ ଉପରେ ଗ୍ରେଟ ଲାଗୁଥିବ; ଏଣୁ ସେଠି ମନର ପରିବର୍ତ୍ତନ ଆବଶ୍ୟକ ।

ଇତିମଧ୍ୟରେ ଆଉ ଏକ କାର୍ଯ୍ୟକ୍ରମ ଗ୍ରହଣ କଲୁ—ସେ ହେଉଛି ଆଶ୍ରମ ଦଖଲର ଉଦ୍ୟମ । କଟକରେ ସ୍ୱରାଜ୍ୟାଶ୍ରମ ପୋଲିସ୍ ଦଖଲ କରି ରଖିଥାଏ । ମୁଁ ବନ୍ଦୋବସ୍ତ କଲି ଯେ ଦଳ ଦଳ ସ୍ୱେଚ୍ଛାସେବକ ଲାଠି ବନ୍ଧୁକର ସମ୍ମୁଖୀନ ହୋଇ ସେ ଆଶ୍ରମ ଦଖଲ କରି ସେଇଠାରେ ରହିବେ । ଏଥିପାଇଁ ସ୍ୱେଚ୍ଛାସେବକଙ୍କୁ ପ୍ରସ୍ତୁତ କରିବା, ବିଶେଷତଃ ମୁଁ ନିଜେ ଦୂରରେ ରହି ଅନ୍ୟମାନଙ୍କୁ ଏଥିରେ ପ୍ରବର୍ତ୍ତାଇବା କି କଠିନ କାମ ଥିଲା, ସହଜରେ ଅନୁମେୟ । ଟାଉନ୍ ହଲ ପିଣ୍ଡାରେ ସ୍ୱେଚ୍ଛା-ସେବକମାନଙ୍କୁ ମୋର ଶକ୍ତିମତେ ପ୍ରବର୍ତ୍ତନା ଦେଲି—ସେମାନେ ଉତ୍ସାହିତ ହେଲେ । ଚାରିଆଡ଼େ ଏ କାର୍ଯ୍ୟକ୍ରମର ସମର୍ଥକ ବାୟୁମଣ୍ଡଳ ସୃଷ୍ଟି କରିବା ପାଇଁ ନାନାପ୍ରକାର ପ୍ରଚାରପତ୍ର ବିତରଣ କରାଇଲି । ଏଥିପାଇଁ ବିଧିମତେ ଏକ ଯୋଜନା ପ୍ରସ୍ତୁତ କଲି । ଠିକ୍ ଏକାଦିନକେ ଅନେକ ଆଡ଼େ ଏହିପରି କରାଇବାର ବନ୍ଦୋବସ୍ତ କଲି, ବାଲେଶ୍ୱର ନାରୀ ଆଶ୍ରମ—ଯାହା ନାରୀଶିକ୍ଷା ସମିତି ୧୯୩୧ ସାଲରେ ସ୍ଥାପନ କରିଥିଲେ, ତାହା ପୋଲିସ ଦଖଲ କରିନେଇଥାଏ । ସେଠି ମୋ ଭଉଣୀ ଶ୍ରୀମତୀ ମଇନା ଦେବୀଙ୍କ ନେତୃତ୍ୱରେ ନାରୀ ସ୍ୱେଚ୍ଛାସେବିକାମାନେ ନାରୀ ଆଶ୍ରମ ଦଖଲ କରିବାରି ଉଦ୍ୟମ କରିଥିଲେ । ଏମାନଙ୍କ ଉପରେ ଲାଠିମାଡ଼ ହୋଇଥିଲା ଓ ଏମାନେ ଗିରଫ୍ତାର ହୋଇଯିବା ପରେ ଏ କାର୍ଯ୍ୟକ୍ରମ ଆଉ ଚାଲିପାରିଲା ନାହିଁ ।

କଟକ କିନ୍ତୁ ସଫଳତା ଲାଭ କଲା । ପ୍ରଥମ ଦିନ ମୋଟେ ୬ ଜଣ ଖୁବ୍ ସାହସ କରି ଆଶ୍ରମ ଭିତରକୁ ପଶିବାକୁ ଚେଷ୍ଟା କଲେ । ଆଗରୁ ନୋଟିସ୍ ଦିଆ ହୋଇଥିବାରୁ ଲାଠିଧାରୀ ପୋଲିସ ସହିତ ନିଜେ ପୋଲିସ୍‌ସାହେବ ଥାଆନ୍ତି । ସ୍ୱେଚ୍ଛାସେବକମାନଙ୍କ ଉପରେ ଭୀଷଣ ମାଡ଼ ହେଲା, ଏପରିକି ସମସ୍ତେ ବେହୋସ ହୋଇ ପଡ଼ିଗଲେ । ତା'ପରେ ପୋଲିସ୍ ଚାଲିଗଲେ । ଏ ସମସ୍ତଙ୍କୁ ଡାକ୍ତରଖାନାକୁ ବହି ନିଆହେଲା । ଚାରିଆଡ଼େ ରଟ୍ଟି ହୋଇଗଲା ଯେ, ଦୁଇଜଣ ସତ୍ୟାଗ୍ରହୀ ମରିଗଲେ । ଏହା ଫଳରେ ପ୍ରବଳ ଉତ୍ତେଜନା ସହରସାରା ବ୍ୟାପିଗଲା । ପୁଣି ପରଦିନ ୧୩ ଜଣ ସତ୍ୟାଗ୍ରହୀ ସେହିପରି ଉଦ୍ୟମ କରି ପ୍ରବଳ ମାଡ଼ ଖାଇ ପଡ଼ିଗଲେ; ଦ୍ୱିତୀୟ ଦିନ ଦର୍ଶକ ପ୍ରାୟ ଦୁଇହଜାର ଥିଲେ—ଦର୍ଶକମାନଙ୍କ ଭିତରୁ ଅନେକ ମଧ୍ୟ ମାଡ଼ ଖାଇଲେ, ପୁଣି ଉତ୍ତେଜନା ବଢ଼ିଲା । ତୃତୀୟ ଦିନ ମୁଁ ଶୁଣିଲି ଯେ ବନ୍ଧୁକଧାରୀ ପୋଲିସ୍ ଆସିଛନ୍ତି ଓ ପୋଲିସ୍‌ସାହେବଙ୍କ ସାଙ୍ଗେ ଜିଲ୍ଲା ମାଜିଷ୍ଟ୍ରେଟ୍ ଆସିଛନ୍ତି । ମୁଁ ଭାବିଲି ଯେ ସେଦିନ ନିଶ୍ଚୟ ଗୁଳିହେବ ଓ ଗୁଳି ଖାଇ ମରିବାର

ସୌଭାଗ୍ୟ ମୋତେ ଅର୍ଜ୍ଜନ କରିବାକୁ ହେବ । ମୁଁ ନିର୍ଦ୍ଦିଷ୍ଟ ସମୟରେ ଆସି ଘଟଣା ସ୍ଥଳରେ ପହଞ୍ଚିଲି । ପ୍ରାୟ ପାଞ୍ଚ ହଜାର ଦର୍ଶକ ଜମା ହୋଇଥା'ନ୍ତି । ତତ୍ପୂର୍ବରୁ ଆଶ୍ରମ ଚାରିପାଖେ ପାଞ୍ଚଜଣରୁ ବେଶୀ ଲୋକ ଏକତ୍ର ହେବେ ନାହିଁ ବୋଲି ୧୪୪ ଧାରା ନୋଟିସ୍ ଜାରି ହୋଇଥିଲେ ମଧ୍ୟ ଏତେ ଲୋକ ଆଇନ୍ ଅମାନ୍ୟ କରି ରୁଣ୍ଡ ହୋଇଥା'ନ୍ତି । ମୋର ସେତେବେଳେ ମୁହୁର୍ମୁହୁ ରୋମାଞ୍ଚ ଜାତ ହେଉଥାଏ । ନିର୍ଦ୍ଦିଷ୍ଟ ସମୟରେ ୧୪ ଜଣ ସତ୍ୟାଗ୍ରହୀ 'ଜୟ ମହାତ୍ମା ଗାନ୍ଧିଙ୍କ ଜୟ, ଇନ୍‌କିଲାବ୍ ଜିନ୍ଦାବାଦ୍' ନିନାଦ କରି ଆଶ୍ରମ ଫାଟକଭିତରକୁ ପଶିବାକୁ ଉଦ୍ୟମ କରିବାବେଳେ ଜିଲ୍ଲା ମାଜିଷ୍ଟ୍ରେଟ୍ ଯାଇ ଆଗରୁ ଭଗାଳି ଖୁବ୍ ନରମ ଭାବରେ ପଚାରିଲେ, କଅଣ ଆପଣମାନେ ଚାହାନ୍ତି ?' ପୂର୍ବରୁ ଏ ଭାରତୀୟ ମାଜିଷ୍ଟ୍ରେଟ୍‌ଙ୍କ ପାଖକୁ ସୁଭଦ୍ରା ମହତାବଙ୍କ ନାମରେ ତାଙ୍କ ହୃଦୟ ସ୍ପର୍ଶ କରିବା ଭଳି ଏକ ପତ୍ର ଯାଇଥାଏ । ମାଜିଷ୍ଟ୍ରେଟ୍‌ଙ୍କ ଉତ୍ତରରେ ସତ୍ୟାଗ୍ରହୀ ନେତା ଶ୍ରୀମାନ୍ ଯୋଗେନ୍ଦ୍ର ବୋଷ କହିଲେ, 'ଆମେ ଚାହୁଁ ଏଠି ରହିବା ପାଇଁ ।' ଏହାର ଉତ୍ତରରେ ମାଜିଷ୍ଟ୍ରେଟ୍ କହିଲେ ଆଚ୍ଛା, 'ଏଠି ରହିବାକୁ ଅନୁମତି ଦେବି, ମାତ୍ର ଏଠି ଯେ ରହିବେ ତାଙ୍କୁ ଧରି ନେଇ ଜେଲ ଦିଆଯିବ ।' ଏହାର ଉତ୍ତରରେ ଯୋଗେନ୍ଦ୍ର କହିଲେ, 'ତା' ଆପଣ କରନ୍ତୁ ପଛକେ ମାତ୍ର ଆମେ ଏଠି ରହିବାପାଇଁ ଚାହୁଁ ।' ପରେ ମାଜିଷ୍ଟ୍ରେଟ୍ ସମସ୍ତ ସତ୍ୟାଗ୍ରହୀଙ୍କୁ ଆଶ୍ରମ ଭିତରକୁ ଛାଡ଼ିଦେଲେ । ତା'ପରେ ଆଇନ୍ ଅମାନ୍ୟ କରିବା ସତ୍ୟାଗ୍ରହୀମାନେ ଏହିଠାରେ ରହିଲେ । ମଝିରେ ମଝିରେ ପୋଲିସ୍ ଆସି ଯେତେ-ଜଣଙ୍କୁ ପାଆନ୍ତି ଧରି ନେଇ ଯାଆନ୍ତି—ମାତ୍ର ଆଶ୍ରମ ଆମ ଦଖଲକୁ ଆସିଲା । ସେତେବେଳେ ଲୋକଙ୍କ ଭିତରେ ଭାରି ଉତ୍ସାହ ହୋଇଥିଲା, ମାତ୍ର ଜିଲ୍ଲା ମାଜି-ଷ୍ଟ୍ରେଟ୍‌ଙ୍କ ଏ ଆଚରଣ ଫଳରେ ଉତ୍ସାହ କମିଗଲା—ଏପରିକି ସତ୍ୟାଗ୍ରହୀମାନଙ୍କ ଉତ୍ସାହ ମଧ୍ୟ କମିଗଲା । ମୋଟ କଥା ସେତେବେଳେ ଯେଉଁ ଅବସ୍ଥା ହୋଇଥାଏ, ସେଥିରେ ସରକାରଙ୍କୁ ଅଚଳ କରିଦେବା ଭଳି ଆନ୍ଦୋଳନ କରିବାପାଇଁ ଲୋକଙ୍କର ଶକ୍ତି ନ ଥାଏ, ଏପରିକି କିଏ କେଉଁଠି ପିକେଟିଂ କଲା, କିଏ 'ମହାତ୍ମା ଗାନ୍ଧିଙ୍କ ଜୟ' କହିଲା, କିଏ ଯାଇ ଆଶ୍ରମରେ ରହିଲା, ଇତ୍ୟାଦି କଥାକୁ ସରକାର ଯଦି ଖାତିର୍ ନ କରୁଥାନ୍ତେ, ତେବେ ଆନ୍ଦୋଳନ ବନ୍ଦ ହୋଇଯାଇ ପାରିଥାନ୍ତା । ସେତେବେଳେ ବାସ୍ତବିକ ସରକାରଙ୍କ ତରଫରୁ ଚମୁଟାଚମୁଟି କରୁଥିବାରୁ ଯାହା କିଛି ତାଙ୍କର ପ୍ରତିକ୍ରିୟା ହେଉଥାଏ, ଅହିଂସାତ୍ମକ ଆନ୍ଦୋଳନରେ ଏ ଅବସ୍ଥାର କିପରି ସମ୍ମୁଖୀନ ହେବାକୁ ହେବ, ଏହା ହିଁ ପ୍ରଶ୍ନ ଥାଏ । ଏ ପ୍ରଶ୍ନ ସେତେବେଳେ ନବକୃଷ୍ଣ ଚୌଧୁରୀ ଖଲାସ ହୋଇ ଆସିବା ପରେ ଆମ ଭିତରେ ବହୁ'ଥର ବହୁ ସମୟ ଆଲୋଚିତ ହୋଇଛି—ଜନତା ଆନ୍ଦୋଳନ ପ୍ରତି ସାନୁକମ୍ପା, ମାତ୍ର ସେମାନେ କର୍ମଠ ଭାବରେ ଯୋଗ ଦେଉ ନ ଥାନ୍ତି । ମୁଷ୍ଟିମେୟ ଲୋକ ଏଠୁସେଠୁ ସଂଗୃହୀତ ହୋଇ ଆସି ପିକେଟିଂ ଇତ୍ୟାଦି କଲେ ସରକାର ତ ଅଚଳ ହୋଇଯିବେ ନାହିଁ ।

ଏକମାତ୍ର ଉପାୟ ଯଦି ଭାରତୀୟ କର୍ମଚାରୀମାନେ ହାତ ଛାଡ଼ି ଦିଅନ୍ତେ । ସେମାନେ ବା ସେ ଅବସ୍ଥାକୁ କିପରି ଆସିବେ—ଏହା ଚିନ୍ତା କରି ସେ ସମୟର କେତେକ ଅତ୍ୟାଚାରୀ ପୋଲିସ୍-କର୍ମଚାରୀଙ୍କ ଗାଁରେ ସେମାନଙ୍କ ବିରୋଧରେ ଜନମତ ସୃଷ୍ଟି କରିବାର ଚେଷ୍ଟା କରିଥିଲି, ମାତ୍ର ସେଥିରେ ନିଷ୍ଫଳ ହୋଇଥିଲି । ମୋଟ କଥା ଓତଃପ୍ରୋତ ଭାବରେ ଦେଶରେ ଜାତୀୟତା ଓ ଜାଗ୍ରତିର ପ୍ରବାହ ନ ଚହଲେ—ଏପରି ପ୍ରବାହ ଯାହା ବେଗରେ ବିଦେଶୀ ସରକାରଙ୍କ ସହିତ ସମ୍ପର୍କ ରଖିଥିଲି ଯେ କେହି କୁଆଡ଼େ ଭାସିଯିବେ, ସେପରି ଅବସ୍ଥା ସୃଷ୍ଟି ନ ହେଲେ, ଗଣ-ଆନ୍ଦୋଳନ ସଫଳ ହୋଇ ପାରିବ ନାହିଁ ବୋଲି ଆମେ ଚିନ୍ତା କରୁଥିଲୁଁ । ତେବେ ସେ ଦିଗରେ ଶିକ୍ଷିତ ହେବାପାଇଁ ଚାଲିଥିବା ଆନ୍ଦୋଳନର ପ୍ରୟୋଜନୀୟତା ଆମେ ଉପଲବ୍ଧି କରୁଥାଉଁ, ମାତ୍ର ସେତେବେଳେ ପ୍ରଶ୍ନ ଥାଏ –ବ୍ରିଟିଶ୍ ସରକାରଙ୍କ ପ୍ରବଳ ଦମନ-ନୀତି ଫଳରେ କୌଣସି ପ୍ରକାର ହମ୍ବ୍ର୍‌କଯିବା ; ସେଥିପାଇଁ ବା ବାଟ କଅଣ ? ଧୀରେ ଧୀରେ ଅବସ୍ଥା ଏପରି ହେଲା ଯେ, ଅର୍ଥାଭାବରୁ ଆନ୍ଦୋଳନରେ ମଧ୍ୟ ବାଧା ଘଟିଲା । ସେତେବେଳେ ଘରୁ କେତେକ ସୁନା ଅଣାଇ ବିକି କରି ଦଳାକେତେ କାମ ଚଳାଇଥିଲି । ତା’ପରେ ମୁଁ ଓ ମୋ ସାଙ୍ଗରେ ଥିବା ଗୁଣନିଧି ମହାନ୍ତି ଦୁହେଁ ଆମ ଖାଇବା କମାଇଲୁ, ମାତ୍ର ଜେଲରେ ଯେଉଁ ବନ୍ଦୀମାନେ ଥାଆନ୍ତି ସେମାନଙ୍କ ଆଚରଣର ସମ୍ବାଦ ପାଇ ଓ ଥରେ ଗୁଣନିଧି ବାବୁ ଓ ମୁଁ ଅନେକ ନିଭାଇ ଅତ୍ୟନ୍ତ ହତାଶ ହୋଇପଡ଼ିଥିଲୁଁ । ଥରେ କଟକ ଜେଲରୁ ଦଳେ ରାଜବନ୍ଦୀ ପାଟଣା କେମ୍ପ୍ ଜେଲକୁ ବଦଳି ହେଉଥିବାର ଖବର ପାଇ ଗୁଣନିଧି ବାବୁ ଓ ମୁଁ ଷ୍ଟେସନ ଗଲୁଁ ସେମାନଙ୍କୁ ଭେଟିବା ପାଇଁ । ଯେଉଁ ଇଂରେଜ ସର୍ଜେଣ୍ଟ ସେମାନଙ୍କୁ ନେଇଯାଉ-ଥିଲେ, ସେ ଏପରି ବନ୍ଦୋବସ୍ତ କରିଥାନ୍ତି ଯେ, କେହି ସେମାନଙ୍କ ପାଖକୁ ଯାଇ ପାରିବେ ନାହିଁ । ମୁଁ ସେ ସର୍ଜେଣ୍ଟଙ୍କ ସହିତ ଖୁବ୍ ନରମ ଭାବରେ କଥାବାର୍ତ୍ତା କରି ତାଙ୍କ ମନରେ ଧାରଣା ଜନ୍ମାଇଥିଲି ଯେ କଂଗ୍ରେସଠାରୁ ମୁଁ ବହୁ ଦୂରରେ ଓ ମୋର କେତେକ ବନ୍ଧୁଙ୍କ ସହିତ ମୁଁ ଦେଖା କରିବାକୁ ଚାହେଁ । ସେ ଶେଷରେ ରାଜି ହୋଇ ଆମକୁ ସେମାନଙ୍କ ପାଖକୁ ଛାଡ଼ିଦେଲେ । ଆମେ ଯାଇ ପହଞ୍ଚିବା ମାତ୍ରକେ ହେଲା ଆମ ଉପରେ ଗାଳି ବୃଷ୍ଟି ଯେ, ଆମେ କାହିଁକି ସାବୁନ୍, ଘରର ଲୁଗା ପ୍ରଭୃତି ବରାଦ ଅନୁଯାରେ ଷ୍ଟେସନକୁ ନ ନେଇ ଯାଇଛୁ । ଅର୍ଥାଭାବ, ଆନ୍ଦୋଳନର ଅବସ୍ଥା ମୁଁ ଯେତେ ବୁଝେଇବାକୁ ଚେଷ୍ଟା କରୁଥାଏ, ତେତେ ଗାଳି ବୃଷ୍ଟି ହେବାରେ ଲାଗିଥାଏ । ଶେଷରେ ଜଣେ ଲଙ୍ଗଳା ହୋଇ ଲୁଗା ଆମ ଉପରକୁ ରାଗରେ ଫୋପାଡ଼ି ଦେଲେ । ମ୍ରିୟମାଣ ହୋଇ ମୁଁ ଫେରି ବାଟରେ ଗୁଣନିଧି ବାବୁଙ୍କୁ କହିଲି—‘ଏଇ ତ ଆମେ, ଏଥିରେ କେତେ ଦୂର ଯିବା ।’

ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରହିର ପ୍ରଭୃତି ଖଲାସ ହୋଇ ଆସିଲେ । ଏହି ସମୟରେ ସେପ୍‌ଟେମ୍ବର ମାସରେ ହରିଜନମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନର ବ୍ୟବସ୍ଥା କରି ସେମାନଙ୍କୁ ହିନ୍ଦୁ ସମାଜରୁ ବଳାତ୍କାର ବହିଷ୍କାରର ପ୍ରତିରୋଧକଳ୍ପେ ଗାନ୍ଧିଜୀଙ୍କ ଆମରଣ ଉପବାସର ଦୃଢ଼ ସଂକଳ୍ପ ପ୍ରକାଶିତ ହେଲା । ଦେଶଯାକରେ ଉତ୍ତେଜନା ବ୍ୟାପିଗଲା । ହରିଜନମାନଙ୍କ ଭିତରେ ଅପୂର୍ବ ଉତ୍ସାହ । କେତେଜଣ ସନାତନୀଙ୍କୁ ଛାଡ଼ିଦେଲେ ଅନ୍ୟ ଉଦାର୍ତ୍ତ ହିନ୍ଦୁମାନେ ମଧ୍ୟ ଉତ୍ସାହୀ ହୋଇ ପଡ଼ିଲେ । ଦେଶଯାକରେ ସଭା ସମିତି ହେବାରେ ଲାଗିଲା—ମାତ୍ର ସେ ସମୟରେ ମୁଁ ଲକ୍ଷ୍ୟ କରିଛି ଯେ, ଅସ୍ପୃଶ୍ୟତା ବର୍ଜନର ସ୍ୱାଭାବିକ ପରିଣତି, ଜାତିପ୍ରଥା ଲୋପ ଓ ଜାତିପ୍ରଥା ଲୁପ୍ତ ନ ହେଲେ ଯେକୌଣସି ଆକାରରେ ଅସ୍ପୃଶ୍ୟତା ରହିବ, ଏ କଥା ଉତ୍ସାହୀ ସଦସ୍ୟ ଲୋକେ ଭାବୁ ନ ଥିଲେ; କିମ୍ବା ଯଦିବା ଭାବୁଥିଲେ ତାକୁ ଆଖିପିଛା ମାରିଦେଇ ଚାଲିଯାଉଥିଲେ । ଅନେକେ ମନେ କରୁଥିଲେ ଏହା ଗାନ୍ଧିଜୀଙ୍କ ଏକ ରାଜନୀତିକ ଚାଲ୍, ମାତ୍ର ମୁଁ ଅନେକ ଧାର୍ମିକ ବୈଷ୍ଣବଙ୍କଠାରୁ ଶୁଣିଛି, ସେମାନେ କହୁଥାନ୍ତି ଯେ, ବୁଦ୍ଧ, ତାଙ୍କ ପରେ ଶ୍ରୀ ଚୈତନ୍ୟ ଓ ତାଙ୍କ ପରେ ମହାତ୍ମା ଗାନ୍ଧୀ ପତିତପାବନଙ୍କ ଅବତାର ହୋଇ ଜନ୍ମିଛନ୍ତି । ମୁଁ ଜେଲ୍ ଭିତରେ ମନକୁ ଯେପରି ଭାବରେ ତିଆରି କରିଥିଲି, ବର୍ତ୍ତମାନ ଅବସ୍ଥାରେ ଖୁବ୍ ଉତ୍ସାହିତ ଅନୁଭବ କଲି । ଆମ ଘର-ମନ୍ଦିରମାନଙ୍କରେ ହରିଜନ ପ୍ରବେଶ ମହାସମାରୋହରେ କରାଗଲା । ଗୋପବନ୍ଧୁ ଚୌଧୁରୀ ସେ ସମୟରେ ଆମ ଗାଁକୁ ଯାଇଥିଲେ, ପଣ୍ଡିତ ବାସୁଦେବ ରଥ ସେ ଉତ୍ସବର ପୁରୋଧା ହୋଇଥିଲେ । ପ୍ରାୟ୍ଟ-ଚାରି ପାଞ୍ଚ ହଜାର ଲୋକଙ୍କର ସମାଗମ ହୋଇଥିଲା । ବାବାଙ୍କ ମୃତ୍ୟୁ ପରେ ମୁଁ ପ୍ରଥମ ଘରକୁ ଯାଇ ଏ କାର୍ଯ୍ୟ କରାଇଲି । ହରିଜନ ରୋଷେଇ ଘରେ ରଖିଲି । ଏହି ସମୟରେ ଯେ ଦୁଇ ତିନି ଦିନ ଘରେ ଥିଲି, ତା'ରି ଭିତରେ ମୋର ବନ୍ଧୁବାନ୍ଧବ, ଭାଇ, ଭଉଣୀ ଭଣଜା ପ୍ରଭୃତି ସମସ୍ତେ ଆସି ବାପ ବାବା ଗଲା ପରେ ମୋତି ଆଶା ଆଖିଛନ୍ତି ବୋଲି ଜଣାଇଲେ । ମୁଁ ସବୁ ଶୁଣୁଥାଏ, ମୋ ହୃଦୟ କମ୍ପିତ ହେଉଥାଏ, ସେମାନଙ୍କୁ ସାନ୍ତ୍ୱନା ଦେଉଥାଏ, ମାତ୍ର ମନ ଭିତରେ କହୁଥାଏ, 'ନିରାଶ ହେବ ସମସ୍ତେ' । ଯାହାହେଉ ଆମ ଗ୍ରାମରେ ହରିଜନ ଆନ୍ଦୋଳନ ଯଥାବିଧି ଚାଲିଲା—ମୋ ସାନ ଭାଇ ଗୋପୀନାଥ ଜେଲରୁ ଫେରି ଆସିଥାଏ । ସେ ଏଥିରେ ପ୍ରାଣପଣେ କାର୍ଯ୍ୟ କଲା । ସୁଭଦ୍ରା ଦେବୀ ମଧ୍ୟ ଘରେ ରହି ଏ କାର୍ଯ୍ୟ ଦେଖିଲେ । ଆମ ଗାଁରେ ଖଦି କାର୍ଯ୍ୟ କିଛି ଆରମ୍ଭ ହୋଇଥାଏ । ଖଦିକାର୍ଯ୍ୟ ଓ ହରିଜନ-କାର୍ଯ୍ୟ ପାଇଁ ବାବା ଯେଉଁ ମନ୍ଦିରରେ ସନ୍ନ୍ୟାସୀ ହେବା ପରେ ରହୁଥିଲେ, ସେହି ମନ୍ଦିରରେ ସ୍ଥାନ ଦେଲି ଓ ତାକୁ 'କର୍ମ-ମନ୍ଦିର' ଆଖ୍ୟା ଦେଲି, ମାତ୍ର ସେ ସମୟର ଅବସ୍ଥା ଦୃଷ୍ଟିରେ ମୁଁ ଗାଆଁରେ ରହିପାରିଲି ନାହିଁ, କଟକ ଆସିଲି । ଗାନ୍ଧିଜୀଙ୍କ ଉପବାସ ସଫଳ ହେଲା, ହରିଜନଙ୍କ ସ୍ୱତନ୍ତ୍ର

ନିର୍ବାଚନ ରଦ୍ଦ ହେଲା । ଓଡ଼ିଶାରେ ହରିଜନ କାର୍ଯ୍ୟ ଚଳାଇବା ପାଇଁ ରମା ଦେବୀ ଭାର ନେଲେ । ଆମେ ଏଣେ ରାଜନୀତିକ ଆନ୍ଦୋଳନ ପାଇଁ ରହିଲୁ, ମାତ୍ର ସେତେବେଳେ ଆନ୍ଦୋଳନ ବନ୍ଦପ୍ରାୟ । ଅନେକ ଦୋଷ ଦିଅନ୍ତି ଯେ, ହରିଜନ ଆନ୍ଦୋଳନ ରାଜନୀତିକ ଆନ୍ଦୋଳନକୁ ଦବାଇ ଦେଲା—ମାତ୍ର ମୁଁ ଭଲ କରି ଜାଣେ ଯେ, ଆନ୍ଦୋଳନ ଆଗରୁ ଦବି ଯାଇଥିଲା ଏବଂ ମୁଁ ସେତେବେଳେ ଭାବୁଥିଲି ଆନ୍ଦୋଳନକୁ ବନ୍ଦ କରିଦେଇ ଓ ହରିଜନ-କାମରେ କର୍ମୀମାନଙ୍କୁ ଉତ୍ସାହ ଦେବା ଉଚିତ । ମାତ୍ର ତାହା କରିବା ମୋର ସାଧ୍ୟାତୀତ । ତେଣୁ ପୁଣି ମୁମୂର୍ଷୁ ଆନ୍ଦୋଳନରେ ଇତସ୍ତତଃ ହେବାକୁ ପଡ଼ିଲା ।

ମୁଁ ଜଣେ ବ୍ରତୀ ହୋଇପଡ଼ିଥିଲି—ଏହି ସମୟରେ ମୋର ନିଖିଳ ଭାରତ-ଅଫିସ୍‌କୁ ଦେଇଥିବା ଖଣ୍ଡେ ଚିଠି ବମ୍ବେରେ ଧରା ପଡ଼ି ସବୁ ଲେଖା ଆସିବାରୁ ମୁଁ ଏଠାରେ ଧରା ହେଲି । ବାହାରେ ମୁଁ ପ୍ରାୟ ଦୁଇ ତିନିମାସ ରହିଲି । ଏତେଦିନ ନିଜକୁ ବଞ୍ଚାଇ ଆନ୍ଦୋଳନ ଦିଗରେ ଯାହା କିଛି କରି ପାରିଲି, ସେଥିପାଇଁ ଖୁସି ହେଲି । ଏଥର ମଧ୍ୟ ଛ'ମାସ ଜେଲ୍ ହେଲା । ପୁଣି ହଜାରିବାଗ୍ ଜେଲକୁ ଗଲି ।

ଏଥର ଜେଲ୍‌ରେ ମୁଁ ବିଶେଷ ଉତ୍ସାହରେ ନ ଥିଲି । କେବଳ ବାହାରେ ଯେଉଁସବୁ କାର୍ଯ୍ୟକ୍ରମର ସୂତ୍ରପାତ କରିଥିଲି, ତାହା ଧ୍ୱଂସାତ୍ମକ କି ନୁହେଁ, ଏହି ବିଷୟରେ ବିଶେଷ ଭାବରେ ଆଲୋଚନା ହୋଇଥିଲା—ଏ ଆଲୋଚନା ସଙ୍ଗେ ସଙ୍ଗେ ଉପସ୍ଥିତ ଅବସ୍ଥାରେ କିପରି ଗଣ-ଆନ୍ଦୋଳନକୁ ଦୃଢ଼ ଓ ଯଶସ୍ୱୀ କରିବାକୁ ହେବ, ସେ ବିଷୟରେ କୌଣସି ରଚନାତ୍ମକ ସୂଚନା ଆଲୋଚକମାନେ ଦେଉ ନ ଥାନ୍ତି ବା ସେ ବିଷୟ ବୋଧହୁଏ ଚିନ୍ତା କରୁ ନ ଥାନ୍ତି ।

କ୍ରମଶଃ ଆନ୍ଦୋଳନ ଯେତେ ଦୁର୍ବଳ ହୋଇଆସୁଥାଏ, ତେତେ ଆସୁଥିବା ଭାରତ-ଶାସନ-ଆଇନ୍ ବଳରେ କ୍ଷମତା ଅଧିକାର ପାଇଁ ଲାଳସା ଓ ଉଦ୍ୟମ ବଢ଼ୁଥାଏ । ଏ ଉଦ୍ୟମ ଜେଲ୍ ଭିତରେ ଥିବା ନେତାମାନଙ୍କ ଭିତରେ ବର୍ତ୍ତମାନ ଆଉ ଲୁଚିଲୁଚି ହୋଇ ନାହିଁ । ପରିଷ୍କାର ଭାବରେ ଆନ୍ଦୋଳନର ନୈତିକ ଓ ନିର୍ବାଚନରେ ଯୋଗଦେବା ପାଇଁ ସଜବାଜ ଚାଲିଥାଏ । ଏହାର ଆନୁସଙ୍ଗିକ କାର୍ଯ୍ୟ ଥାଏ, ଯେଉଁମାନେ ସେ କ୍ଷମତା-ଲାଭର ବିରୋଧୀ ବା ପ୍ରତିଦ୍ୱନ୍ଦ୍ୱୀ ହେବା ସମ୍ଭବ, ସେମାନଙ୍କୁ ଲୋକଚକ୍ଷୁରେ ହୀନ ପ୍ରତିପନ୍ନ କରିବା ପାଇଁ ସତ୍ ଓ ଅସତ୍ ସବୁ ପ୍ରକାର ଚେଷ୍ଟା । ନିର୍ବାଚନ ପୂର୍ବରୁ ଜିଲ୍ଲାବୋର୍ଡ଼ ସବୁ ଦଖଲ କରିନେଲେ ପ୍ରାଦେଶିକ ବ୍ୟବସ୍ଥାପକ ନିର୍ବାଚନରେ ସୁବିଧା ହେବ; ଏଣୁ ଜିଲ୍ଲାବୋର୍ଡ଼

ନିର୍ବାଚନରେ ଯୋଗ ଦେଇ ସେଥିରେ ଯଶସ୍ୱୀ ହେବାକୁ ହେବ । ଏହା ହେଲା ପ୍ରଥମ କାର୍ଯ୍ୟକ୍ରମ । ଏ ବିଷୟରେ କେତେ ଜଣ ଏପରି ମାତିଲେ ଯେ, ସେମାନଙ୍କର ଯଥାକଥା ଜେଲ୍ ବାହାରକୁ ଯିବାର ପ୍ରବଳ ଅଭିଳାଷ ଜନ୍ମିଲା—ଏପରିକି ଜଣେ ନେତୃସ୍ଥାନୀୟ ବ୍ୟକ୍ତି ରୋଗର ଛଳନା କରି ମୁକ୍ତିପ୍ରାର୍ଥୀ ହୋଇ ଡାକ୍ତର ପରୀକ୍ଷା ପରେ ନିରସ୍ତ ହୋଇଥିଲେ । ଏ ଘଟଣା ଜେଲ୍‌ରେ ଆମ ସମସ୍ତଙ୍କୁ ସଙ୍କୋଚରେ ପକାଇଥିଲା ।

ଗୃହଅନ୍ତର ବ୍ୟବସ୍ଥା ଦେଖି ମୁଁ କେଉଁଣେ ଅନୁକୂଳ ପାଉ ନ ଥାଏ—ଏହି ଅବସ୍ଥାରେ ମୁଁ ଖଲାସ ହେଲି । ଏଥର ପାଟଣା ବାଟେ ଆସିଲି—ପାଟଣା କେମ୍ପ-ଜେଲ୍‌ରେ ସହକର୍ମୀମାନଙ୍କୁ ଦେଖା କରିବା ମୋର ଉଦ୍ଦେଶ୍ୟ ଥିଲା, ମାତ୍ର ଜେଲ୍ କର୍ତ୍ତୃପକ୍ଷ ଅନୁମତି ଦେଲେ ନାହିଁ । ତେଣୁ ଗୋପନୀୟ ଭାବରେ ଖଣ୍ଡେ ଚିଠି ପଠାଇ ଦେଇ ଆସିଲି । ସେ ଚିଠି ଜେଲ୍ ଭିତରେ ସେମାନେ ପାଇଥିଲେ । ଏହି ସମୟରେ ପାଟଣାରେ ଖଣ୍ଡେ ସରକାରୀ ଗୋପନୀୟ ପତ୍ର ପାଇଥିଲି । ଓଡ଼ିଶା କମିଶନର ବିହାର-ଓଡ଼ିଶା ସରକାରଙ୍କୁ ସେ ପତ୍ର ଲେଖିଥିଲେ । ସେଥିରେ ଓଡ଼ିଶା ପ୍ରଦେଶ ସ୍ୱତନ୍ତ୍ର ଭାବରେ କିପରି ଚଳିବ ତାହାର ସୂଚନା ଦେଇ ସେ ସମୟର 'ଓଡ଼ିଆ' ଆନ୍ଦୋଳନରେ ନେତାମାନଙ୍କ ପ୍ରତି କେତେକ ଆକ୍ଷେପ କରିଥିଲେ । ସେତେବେଳେ 'ଓଡ଼ିଆ' ନେତାମାନେ ବରାବର କଂଗ୍ରେସକୁ ନିନ୍ଦା କରୁଥିବାରୁ ଓ ଖାତିର୍ କରି ସେହି କମିଶନରଙ୍କୁ ଓଡ଼ିଆ ସମର୍ଥକ ବୋଲି ମୁଣ୍ଡରେ ଧରି ବୁଲୁଥିବାରୁ ମୁଁ ଭାବିଲି ସେ ଚିଠିଖଣ୍ଡି ଓଡ଼ିଶାରେ ଅତି କୌତୂହଳପ୍ରଦ ହେବ । ଏଣୁ ତାକୁ ମୁଁ ନେଇ ଆସିଲି । କଟକ ଷ୍ଟେସନ୍‌ରେ ପହଞ୍ଚିବା ମାତ୍ରକେ ମୁଁ ଧରାହେଲି । ଏଥିପାଇଁ ମୁଁ ପ୍ରସ୍ତୁତ ନ ଥିଲି, ମାତ୍ର ଏପରି ଧରା ହେବାରେ ବିଚଳିତ ହେଲି ନାହିଁ । ମୋ'ଠାରେ ଜିନିଷପତ୍ର ଖାନତଲାସ କରି କଂଗ୍ରେସ ସମ୍ବନ୍ଧୀୟ କିଛୁ ପୋଲିସ୍ ପାଇଲେ ନାହିଁ । କେବଳ କମିଶନର ସାହେବଙ୍କ ସେହି ଗୋପନୀୟ ଚିଠିଖଣ୍ଡି ଥାଏ, ମାତ୍ର ଯେତେବେଳେ ଧରାହୋଇ ଗଲି, ସେତେବେଳେ କିଛି ନା କିଛି ମୋ ବିରୁଦ୍ଧରେ ଅଭିଯୋଗ ବାହାର କରିବାକୁ ହେବ । ତେଣୁ ଶେଷରେ ସରକାରୀ ଗୁପ୍ତ ବିଷୟ ପ୍ରଚାରସମ୍ବନ୍ଧୀୟ ଅଇନ୍ ( official secrecy act ) ଅନୁସାରେ ମୋ ନାମରେ ମୋକଦ୍ଦମା ଚଳିବାର ଯୋଗାଡ଼ ହେଲା, ମାତ୍ର ତାହା ଚଳି ପାରିଲା ନାହିଁ, ତେଣୁ ଶେଷରେ ଉଠାଇ ନିଆ ହେଲା । ମଝିରେ ମୁଁ ପ୍ରାୟ ୧୬।୧୭ ଦିନ ବିଚାରାଧୀନ ଅବସ୍ଥାରେ କଟକ ଜେଲରେ ରହିଲି ।

ଏହି ଅବସ୍ଥାରେ ମୁଁ ଶୁଣିଲି ଯେ, ଜିଲ୍ଲାବୋର୍ଡ଼ ନିର୍ବାଚନ କାମ ଆରମ୍ଭ ହେବା ଉପରେ ଓ ସେଥିପାଇଁ ଜେଲ୍ ଭିତରର ପରାମର୍ଶ ଅନୁସାରେ କେତେକ

ଉପର ଶ୍ରେଣୀର କଂଗ୍ରେସ ଲୋକ ବଡ଼ ତତ୍ପର । କଂଗ୍ରେସ ହିସାବରେ ଜୟ ଲାଭ କରିବା ଉଦ୍ଦେଶ୍ୟ ଥିଲେ ବୋଧହୁଏ ସେତେବେଳେ ବେଶୀ ଦୁରବସ୍ଥା ଘଟି ନ ଥାନ୍ତା, ମାତ୍ର କଂଗ୍ରେସ ଭିତରେ ଦଳ ହିସାବରେ ନିର୍ବାଚନରେ ଜୟ ପାଇଁ ଚେଷ୍ଟା କରିବା ଫଳରେ ଅତି ବିଷମୟ ଫଳ ଘଟିଲା । ବାଲେଶ୍ୱରରେ କଂଗ୍ରେସ ଲୋକେ ଦୁଇ ଦଳ ହୋଇ ଜିଲ୍ଲାବୋର୍ଡ଼ ନିର୍ବାଚନରେ କଳହ ଆରମ୍ଭ କଲେ । ମୁଁ ବନ୍ଦୀଧୀନ ଅବସ୍ଥାରେ ଜେଲ୍‌ରେ ଥିବା ସମୟରେ ଗୋଟିଏ ଦଳ ମୋ ସହିତ ଦେଖା କରିଥିଲେ । ମୁଁ ସେତେବେଳେ ନିର୍ବାଚନ ବର୍ଜନ କରିବା ପାଇଁ କହିଥିଲି । ମୁଁ ମୁକ୍ତ ହେବା ପରେ ବାହାରେ ଦେଖିଲି ଯେ, ଆନ୍ଦୋଳନ କିଛି ନାହିଁ କହିଲେ ଚଳେ, ଆଉ କେତେକ କଂଗ୍ରେସ ଲୋକ ଦଳହିସାବରେ ଜିଲ୍ଲାବୋର୍ଡ଼କୁ ଦଖଲ କରିବା ପାଇଁ ବ୍ୟସ୍ତ । ଏହି ପରିସ୍ଥିତିରେ ମୁଁ ଚେଷ୍ଟାକଲି ଅନ୍ତତଃ ଆମ ଜିଲ୍ଲାର କଥା ବେଶୀ ଦୂରକୁ ନ ଯାଉ, ମାତ୍ର ମୁଁ କୌଣସି ପ୍ରକାରେ କିଛି କରିପାରିଲି ନାହିଁ । ଅପରନ୍ତୁ ମୋ ଉପରେ ଦୋଷାରୋପ କରାଗଲା ଯେ ମୁଁ ଦଳବିଶେଷର ବିରୋଧୀ ଥିବାରୁ ନିର୍ବାଚନ ସମ୍ବନ୍ଧରେ ବିରୁଦ୍ଧ ମତ ଦେଉଛି । ଏହି ସମୟରେ ମହାତ୍ମା ଗାନ୍ଧୀ ପୁନର୍ବାର ଉପବାସ ଆରମ୍ଭ କଲେ । ଜେଲ୍ ଭିତରେ ହରିଜନ-ଆନ୍ଦୋଳନ କାର୍ଯ୍ୟ ଚଳାଇବାପାଇଁ ଅନୁମତି ନ ପାଇବାରୁ ଏ ଉପବାସ ଆରମ୍ଭ କରିଥିଲେ । ଶେଷରେ ତାଙ୍କର ମୃତ୍ୟୁ ଆଶଙ୍କା କରି ସରକାର ଅତି ଅନିଚ୍ଛା ସହକାରେ ତାଙ୍କୁ କାରାମୁକ୍ତ କଲେ । ସେ ପୁନା ନିକଟରେ ଜୁହୁରେ ଆଇ ଉପସ୍ଥିତ ହୋଇ ଥାଆନ୍ତି । ତାଙ୍କ ସହିତ ଦେଖା କରିବାପାଇଁ ରମା ଦେବୀ ଓ ମୁଁ ଜୁହୁ ଯାଇଥିଲୁ । ଏହି ଅବସରରେ ଜିଲ୍ଲାବୋର୍ଡ଼ ନିର୍ବାଚନକୁ ମୁଁ ଏଡ଼େଇ ଦେଇଥିଲି, ମାତ୍ର ଯେଉଁମାନେ ନିର୍ବାଚନ ଯୁଦ୍ଧରେ ମୋର ସାହାଯ୍ୟ ଲୋଡ଼ିଥିଲେ, ସେମାନେ ପ୍ରତ୍ୟାଖ୍ୟାତ ହୋଇ ମୋ ପ୍ରତି ଅସନ୍ତୁଷ୍ଟ ହେଲେ । ଏମାନେ ସମସ୍ତେ ମୋର ସହକର୍ମୀ ଓ ଏହିମାନଙ୍କ ସହିତ ପୁଣି କାମ କରିବାକୁ ହେବ । ଏଇଠି ମୁଁ ଭାବି ଦେଖୁଛି ଯେ, ଅହିଂସାତ୍ମକ-ଭାବରେ ଏମାନଙ୍କ ସହିତ ମୁଁ କାମକରି ପାରିଲି ନାହିଁ, ତା' ହୋଇଥିଲେ ଏମାନେ ମୋର ଆନ୍ତରିକତା ଉପଲବ୍ଧି କରି ମୋ ସହିତ ଏକମତ ନ ହୋଇଥିଲେ ମଧ୍ୟ ମୋ ପ୍ରତି ବିରକ୍ତ ହୋଇ ନ ଥାନ୍ତେ ।

ଯାହାହେଉ ଜୁହୁରେ ଗାନ୍ଧିଜୀଙ୍କ ସହିତ ସାକ୍ଷାତ ହେଲା । ତାଙ୍କର କଥାବାର୍ତ୍ତା ମୁଁ ଶୁଣିଲି, ଅନ୍ୟ ପ୍ରଦେଶରୁ ଅନେକ କର୍ମୀ ପରାମର୍ଶ ନେଇବା ପାଇଁ ଆସିଥାନ୍ତି । ଗାନ୍ଧିଜୀଙ୍କ କଥାବାର୍ତ୍ତା ଶୁଣି ମୋର ଧାରଣା ହେଲା ଯେ, ଯେଉଁପରି ଗୋପନୀୟ ଆନ୍ଦୋଳନ ଚାଲିଛି, ସେ ତାହା ପସନ୍ଦ କରୁ ନାହାନ୍ତି । ସେ ଅତି ଅଳ୍ପ ହେଉ ପଛକେ ଆନ୍ଦୋଳନକୁ ସିଧା ଭାବରେ ଚଳାଇଲେ ଭଲ ହେବ ବୋଲି

ଭାବୁଛନ୍ତି, ଆଉ ମଧ୍ୟ ସେ ଗଠନମୂଳକ କାମ ଉପରେ ଜୋର ଦେଉଛନ୍ତି। ସମୁଦାୟ କଥାବାର୍ତ୍ତା ଶୁଣି କୁତ୍ରୁରୁ ଫେରିବା ସମୟରେ ମୁଁ ଏହି ଧାରଣା ନେଇ ଆସିଲି ଯେ, ଓଡ଼ିଶାରେ ଗଠନମୂଳକ କାମରେ ଯେପରି ଅଭାବ ଓ କଂଗ୍ରେସ-ଭିତରେ ନାନା କାରଣରୁ ଯେଉଁ ଚକ୍ରାନ୍ତବିକ୍ଷେପ ଘଟିଛି ଓ ତାହା ଯେପରି କାମ କରୁଛି, ସେଥିରେ ଗଠନମୂଳକ କାମ କରିବାପାଇଁ କର୍ମୀମାନଙ୍କୁ ଉତ୍ସାହ ଦେବା ହିଁ ଆବଶ୍ୟକ ଏବଂ ଗଠନମୂଳକ କାମରେ ଅନେକ କଂଗ୍ରେସକର୍ମୀ ନିମୁକ୍ତ ହୋଇଗଲେ କଂଗ୍ରେସ ବ୍ରିଟିଶ ସରକାର ଦ୍ୱାରା ଧ୍ୱସ୍ତ ନ ହୋଇ ସମ୍ଭାଳି ହୋଇ ରହିଯିବ ବୋଲି ମୁଁ ଭାବିଲି।

ତେଣୁ ସେଠୁ ଫେରି ସାଧାରଣ କର୍ମୀମାନଙ୍କୁ ଖଦି ଓ ହରିଜନ-କାମରେ ପ୍ରବର୍ତ୍ତାଇଲି। ଇତିମଧ୍ୟରେ ଗଣ ଆନ୍ଦୋଳନ ବନ୍ଦ କରି ବ୍ୟକ୍ତିଗତ ସତ୍ୟାଗ୍ରହ କରିବାପାଇଁ କଂଗ୍ରେସ ତରଫରୁ ନିର୍ଦ୍ଦେଶ ଆସିଲା। ମହାତ୍ମାଗାନ୍ଧୀଙ୍କ ଏହା ମଧ୍ୟ ମତ ବୋଲି ଜଣା ପଡ଼ିଲା। ମୁଁ ଏଥିରୁ ବୁଝିଲି ଯେ, ଖୁବ୍ ବଡ଼ ବଡ଼ ଲୋକ ସତ୍ୟାଗ୍ରହ କରନ୍ତୁ ଓ ଅନ୍ୟମାନେ ଗଠନମୂଳକ କାମକରନ୍ତୁ ବୋଲି ଗାନ୍ଧିଜୀ ଚାହାନ୍ତି କରୁଛନ୍ତି। ଏଣୁ ସାଧାରଣ କର୍ମୀଙ୍କୁ ଗଠନମୂଳକ କାମରେ ଉତ୍ସାହିତ କରିବା କର୍ତ୍ତବ୍ୟ ବୋଲି ମୁଁ ଭାବିଲି। ଏହି ସମୟରେ ଆମ ଜିଲାସାରା ବୁଲି, ଯେଉଁମାନେ ଥରେ ଦୁଇଥର ଜେଲ୍ ଯାଇ ଘରେ ବସି ଯାଇଛନ୍ତି ସେମାନଙ୍କୁ ଉତ୍ସାହ ଦେଇ ଖଦି ଓ ହରିଜନ-କାମରେ ପ୍ରବର୍ତ୍ତାଇଲି। ସେହି ଗସ୍ତ ସମୟରେ ମୁଁ ଜାଣିଲି ଯେ ଆନ୍ଦୋଳନରେ ଯୋଗ ଦେଇଥିବା ଅନେକ ସ୍ତ୍ରୀ-ଲୋକ ସମାଜ ଦ୍ୱାରା ବଡ଼ ନିର୍ଯାତିତ ହେଉଛନ୍ତି। ସୁଭଦ୍ରା ମହତାବଙ୍କୁ କହିବାରୁ ସେ ସବୁଆଡ଼େ ଯାଇ ଅନେକଙ୍କୁ ନିଜ ଘରେ ସୁବିଧାରେ ରଖାଇଲେ। ମାତ୍ର କେତେକ ବରାବର ପାଇଁ ଅସୁବିଧାରେ ପଡ଼ିଗଲେ। ନୂଆ ହୋଇ ପରଦା ଉଠୁଥିବା ଅବସ୍ଥାରେ ଓ ପୁରୁଷ ସ୍ତ୍ରୀ ଏକ ସଙ୍ଗରେ ଏକ ଆନ୍ଦୋଳନରେ ଲଗିବା ଫଳରେ ଯେଉଁ ସବୁ ସ୍ଖଳନ ଘଟିଲା, ତାହା ବୋଧହୁଏ ଅପରିହାର୍ଯ୍ୟ, ମାତ୍ର ସେ ସମୟରେ ମୋତେ ତାହା ବଡ଼ ଆଘାତ କରିଥିଲା ଓ ସେ ଅବସ୍ଥାକୁ ସମ୍ଭାଳିବା ପାଇଁ ମୁଁ ଚେଷ୍ଟା କରିଥିଲି। ସେହି ସମୟର ଅସାବଧାନତା ଓ ଶିଥିଳତା ଯୋଗୁ ଓଡ଼ିଶାରେ ନାରୀ-ଜାଗରଣ ଏକ ଧକ୍କା ପାଇଲା।

ଆମ ଗାଁରେ ଖଦୀକାମ ଖୋଲି କରି ତାକୁ 'କର୍ମ ମନ୍ଦିର' ବୋଲି ଆଖ୍ୟା ଦେଇ ତା'ର ଶାଖାମାନ ଆମ ଜିଲାର ଚାରିଆଡ଼େ ଖୋଲିବାର ଚେଷ୍ଟା କରିଥିଲି। ମୋର ଏ କାର୍ଯ୍ୟକୁ ଅନେକ ସହକର୍ମୀ ଅତି ଅପସନ୍ଦ କରୁଥିଲେ। ସେମାନେ ଭାବୁଥିଲେ ଯେ, ମୋର ଏପରି କରିବାଦ୍ୱାରା ବ୍ୟକ୍ତିଗତ ସତ୍ୟାଗ୍ରହ ବାଧା ପାଉଛି।

ଯେଉଁମାନେ ଘରେ ବସି ଯାଇଛନ୍ତି, ସେମାନଙ୍କୁ ଶିଖାଁ ବୁଝା କରି ପୁଣି ସେମାନଙ୍କ-ଦ୍ୱାରା ଆଇନ୍ ଅମାନ୍ୟ କରାଇବାକୁ ବ୍ୟକ୍ତିଗତ ସତ୍ୟାଗ୍ରହ ବୋଲି ସେମାନେ ମନେ କରୁଥିଲେ । ଗୋପବନ୍ଧୁ ଚୌଧୁରୀ ଦ୍ୱିତୀୟଥର ଜେଲରୁ ମୁକ୍ତ ହୋଇ ଆସି ଏହି ମତ ପୋଷଣ କଲେ । ସେ ନିଜେ ସବୁଆଡ଼କୁ ଯାଇ ବ୍ୟକ୍ତିଗତ ସତ୍ୟାଗ୍ରହ ପାଇଁ ଅନେକଙ୍କୁ ପ୍ରବର୍ତ୍ତାଇଲେ । ବ୍ୟକ୍ତିଗତ ସତ୍ୟାଗ୍ରହ ପାଇଁ ପ୍ରବର୍ତ୍ତନ ଓ ଗଠନମୂଳକ କାମ ପାଇଁ ପ୍ରବର୍ତ୍ତନା ଏ ଦୁଇ ଜିନିଷ ପରସ୍ପର ବିରୁଦ୍ଧ ମୂଳ ନୁହେଁ, ଯାହା ୧୯୪୧ ମସିହା ସତ୍ୟାଗ୍ରହରେ ପ୍ରମାଣିତ ହେଲା, ମାତ୍ର ସେତେବେଳେ ଜଣାପଡ଼ୁଥିଲା ଯେପରି କି ଏ ଦୁଇକାର୍ଯ୍ୟ ପରସ୍ପର ବିରୋଧୀ । ଏଣୁ ଯେଉଁମାନେ ବ୍ୟକ୍ତିଗତ ସତ୍ୟାଗ୍ରହ ସଙ୍ଗଠନରେ ଲାଗିଥିଲେ ସେମାନେ ଯେ କେବଳ ମୋର ଖଦୀ ସଂଗଠନକୁ ପସନ୍ଦ କରି ନ ଥିଲେ ତାହା ନୁହେଁ, ସେମାନେ କହିଲେ ଯେ ମୁଁ ଜମିଦାର ଥିବାରୁ ଆଇନ୍ ଅମାନ୍ୟ ରୂପକ ତ୍ୟାଗମୂଳକ କାର୍ଯ୍ୟରେ ବେଶୀ ଦୂର ଯାଇ ପାରୁ ନାହିଁ, ତେଣୁ ଗଠନମୂଳକ କାମକୁ ଆଶ୍ରା କରୁଛି । ଏହାଠାରୁ ବଳି କରୁର ସମାଲୋଚନା ମୁଁ ଶୁଣିଛି, ମୋତେ ସେଥିରୁ କିଛି ଲାଗିନାହିଁ । ମାତ୍ର ଏ ସମାଲୋଚନା ଯେତେବେଳେ ମୋର ସମ୍ମାନିତ ସହକର୍ମୀଙ୍କ ଠାରୁ ଆସିଲା, ମୁଁ ନିତାନ୍ତ ଅବନତମନା ହୋଇଗଲି । ମାତ୍ର ମୋ କାର୍ଯ୍ୟରେ ମୁଁ ନିରୁତ୍ସାହିତ ହେଲିନାହିଁ । ମୁଁ ସେଇ କର୍ମ-ମନ୍ଦିର ନେଇ ରହିଲି । ଯେଉଁମାନେ ବ୍ୟକ୍ତିଗତ ସତ୍ୟାଗ୍ରହ ଉପରେ ଜୋର ଦେଇଥିଲେ, ସେମାନେ ନିଜକୁ ଖାଣ୍ଟି ଗାନ୍ଧି ମତବାଦୀ ବୋଲି ଭାବିଲେ ଓ ସେହି ଅନୁସାରେ ମଧ୍ୟ ବାୟୁମଣ୍ଡଳ ସୃଷ୍ଟି ହେଲା । ଓଡ଼ିଶାରୁ ୩।୪ ଜଣ ବ୍ୟକ୍ତିଗତ ସତ୍ୟାଗ୍ରହ କରି ଜେଲ୍‌ଯିବା ପରେ ଗାନ୍ଧିଜୀ ଓ କଂଗ୍ରେସ ସତ୍ୟାଗ୍ରହ ଆନ୍ଦୋଳନ ବନ୍ଦ କରିଦେଲେ ଓ ସମସ୍ତ କଂଗ୍ରେସକର୍ମୀଙ୍କୁ ଗାଁକୁ ଯାଇ ଗଠନମୂଳକ କାମ କରିବାକୁ ପରାମର୍ଶ ଦେଲେ ।

ଏଣୁ ମୁଁ ଠିକ୍ ସ୍ଥଳରେ ଥିଲି ବୋଲି ଅନୁଭବ କଲି, ମାତ୍ର ସେତେବେଳକୁ ଜିଲାବୋର୍ଡ଼ ନିର୍ବାଚନରେ କୌଣସି ଶୃଙ୍ଖଳା ବିନା କଂଗ୍ରେସଲୋକ କଂଗ୍ରେସ ବିରୁଦ୍ଧରେ କାର୍ଯ୍ୟ କରି ମୋଟ ଉପରେ କଂଗ୍ରେସଦଳର ପରାଜୟ ଘଟିବା ଫଳରେ କେତେକ ନିର୍ବାଚନୋତ୍ସାହୀ ମୁଖ୍ୟ କର୍ମୀଙ୍କ ବିରକ୍ତିଭାଜନ ମୁଁ ହୋଇଥାଏ । ତା'ପରେ ସତ୍ୟାଗ୍ରହ ବନ୍ଦ ରହିବାଟା ମଧ୍ୟ ଏକ ସାଧାରଣ ଅବସାଦ ଆଣିଦେଲା । ଏ ଅବସ୍ଥାରେ ମୁଁ ନିଜକୁ ନିଜେ ସେତେବେଳେ ଏକବାର ଏକାକୀ ଦେଖିବାକୁ ପାଇଲି । ଯେଉଁମାନଙ୍କ ସଙ୍ଗେ ମିଶି କାମ କରି ପାରନ୍ତି ସେମାନେ ମୋତେ ପୁରା ଗାନ୍ଧୀ ନୀତିରେ ବିଶ୍ୱାସୀ ବୋଲି ମନେ କରୁ ନାହାନ୍ତି ଓ ଜମିଦାର ବୋଲି ତ୍ୟାଗରେ

ଅକ୍ଷମ ବୋଲି ମନେ କରୁଛନ୍ତି । ୧୯୩୧ ମସିହାରେ ଙ୍ଗ୍ରେସ୍ ଏହି ଅବସ୍ଥାରେ ଠେଲା-ଠେଲି କରି ଅଗ୍ରସର ହେବାର ଯେ ଭୁଲ କରି ପରସ୍ପର ଭିତରେ ଭେଦ ବଢ଼ାଇଥିଲା, ଏଥର ସେ ବିଷୟରେ ସାବଧାନ ହେଲି । ମୁଁ ଭାବିଲି ଯେ ସବୁ ଅବସ୍ଥାରେ ସହକର୍ମୀମାନଙ୍କ ଅନୁରକ୍ତିଭାଜନ ହେବାର ଯୋଗ୍ୟତା ମୋ'ଠାରେ ନାହିଁ; ଏଣୁ ମୁଁ କିଛିଦିନ ପାଇଁ ଅଲଗା ହୋଇଯାଇ ସାଧାରଣ କର୍ମୀ ହିସାବରେ କିଛି କାମ କରେ, ପରେ ପୁଣି ସୁବିଧାଜନକ ଅବସ୍ଥା ଆସିଲେ ଯାହା ହେବ ଦେଖାଯିବ । ଏ ସିଦ୍ଧାନ୍ତକୁ ଆସିବାପାଇଁ ମୋତେ କମ୍ ହାର୍ଦ୍ଦିକ ଯନ୍ତ୍ରଣା ଓ ନୈରାଶ୍ୟ ଭିତର ଦେଇ ଯିବାକୁ ହୋଇ ନାହିଁ । ଜୀବନର ସର୍ବ ଶ୍ରେଷ୍ଠ ଅଂଶ ଯେଉଁ ସ୍ୱରାଜ୍ୟ-ମନ୍ଦିରରେ, ଯେଉଁ ପ୍ରଜାତନ୍ତ୍ର ପଛରେ, ଯେଉଁ ସହକର୍ମୀମାନଙ୍କ ଭିତରେ, ଯେଉଁ ବାୟୁମଣ୍ଡଳରେ କଟାଇଥିଲି ଓ ଯାହାକୁ ମୋ ନୂତନ ପରିବାର କହି ଉଲ୍ଲସିତ ମନେ କରୁଥିଲି, ସେ ସବୁକୁ ହୃଦ୍ ମନରୁ ମୂଳରୁ ପୋଛିପକାଇ ପୁଣି ଏକ ନୂଆପ୍ରକାର ଜୀବନ ପରିଚାଳନାର ସିଦ୍ଧାନ୍ତ ମର୍ମନ୍ତୁଦ ଯନ୍ତ୍ରଣା ଦେଇଥିଲା । ମୋର ପୁରାତନ ସହକର୍ମୀ ସୁବୋଧ ଓ ବିଶ୍ୱନାଥ ବର୍ତ୍ତମାନ ସ୍ୱର୍ଗରେ, ବଂଶୀଧର ରଥ ବର୍ତ୍ତମାନ ଚରଖା ସଂଘର ସମ୍ପାଦକ, ବାଳକ ନୀଳାମ୍ବର ବର୍ତ୍ତମାନ ସୋରରେ କିଛି କାମ କରିବାପାଇଁ ଇଚ୍ଛୁକ । ବାକି ଥାଏ ଉପେନ୍ଦ୍ର, ଯେ ମୋ ସିଦ୍ଧାନ୍ତ ଶୁଣି କାନ୍ଦି ପକାଇଲା, ବିଶେଷତଃ ପ୍ରଜାତନ୍ତ୍ର ବନ୍ଦ କରିଦେବା କଥା ଶୁଣି । ପ୍ରଜାତନ୍ତ୍ର ପାଇଁ ସେ ରକ୍ତବିନ୍ଦୁ ଦାନ କରିଛି—ମାତ୍ର ମୋର ଗ୍ରାହ୍ୟ ନାହିଁ ? ଏଣେ ବାହାରୁ ସରକାରଙ୍କ ଆକ୍ରମଣ, ତେଣେ ଭିତରୁ ବନ୍ଧୁମାନଙ୍କ ବହିଷ୍କାରଣ, ଏଥିରେ ପ୍ରଜାତନ୍ତ୍ର ବା ସ୍ୱରାଜ୍ୟ ମନ୍ଦିରକୁ ମୁଁ ଚଳାଇବି କିପରି ? ମୋ ସିଦ୍ଧାନ୍ତରେ ଉପେନ୍ଦ୍ର ଭଗ୍ନମନୋରଥ ହୋଇ କିଛିଦିନ ପାଇଁ ରାଜନୀତିରୁ ଅଲଗା ହୋଇ ଗାଁରେ କିଛି କାମ କଲା । ଏହିପରି ଭାବରେ ବାରବର୍ଷର ଉଦ୍ୟମ ଓ ଅକ୍ଳାନ୍ତ ପରିଶ୍ରମର ଚିହ୍ନ ଯାହାକିଛି ଲେକଯୁଗ ତରେ ଥିବ ସିନା, ନ ହେଲେ ଆଖିରେ ଦେଖିବାପାଇଁ ବର୍ତ୍ତମାନ କିଛି ନାହିଁ । ଏଥିପାଇଁ ମୁଁ ଆଉ କାହାକୁ ଦୋଷ ଦେବି ? ସବୁ ଦୋଷ ମୁଁ ମୁଣ୍ଡାଇ ନେଇଛି । ମୁଁ ନିଜକୁ ଈର୍ଷା ଓ ଦ୍ୱେଷର ବାହାରେ ରଖି-ପାରିଲି ନାହିଁ । ପୃଥିଆଡ଼କୁ ଜଗି ସାବଧାନତା ସହକାରେ ଚଳି ପାରିଲି ନାହିଁ । ତେଣୁ ଏ ବିଷାଦର ସ୍ମୃତି ଘେନି ଚାଲିଛି, ମାତ୍ର ଜୀବନର ଗତି ବିଷାଦ-ମନ୍ତ୍ରରେ ପଥହରା ହୋଇନାହିଁ, ଏତିକି ଆନନ୍ଦ ।

୧୯୩୩ ମସିହା ସତ୍ୟାଗ୍ରହ ବନ୍ଦଠାରୁ ୧୯୩୭ ମସିହା ପର୍ଯ୍ୟନ୍ତ ମୁଁ ଆମ ଗାଁରେ ହିଁ ମୁଖ୍ୟ ଅବସ୍ଥାନ କରି ରହିଲି । ଏହି ସମୟରେ ମୋର ସମସ୍ତ ଧ୍ୟାନ କର୍ମ-ମନ୍ଦିର ଓ ନିଜ ଗାଁରେ ଯାହାକିଛି କରିବାର କଥା, ସେଇଥିରେ ନିବଦ୍ଧ ରହିଲି, କେବଳ ଇତିପୂର୍ବରୁ କର୍ମ-ମନ୍ଦିରର ଗୋଟିଏ ଶାଖା ଉତ୍ତର ବାଲେଶ୍ୱର ଝାଡ଼ଙ୍ଗ

ପିପ୍‌ପଲରେ ହୋଇଥିବାରୁ ତା'ର ତତ୍ତ୍ୱ ନେବାକୁ ହେଉଥିଲା । ଏହା ଛଡ଼ା କନକା ଆନ୍ଦୋଳନ ସହିତ ବହୁକାଳ ସମ୍ପୃକ୍ତ ଥିବାରୁ ସେ ସମ୍ବନ୍ଧରେ ଟ୍ରେଡେଡେବେଲେ ଯାହା କିଛି କରିବାକୁ ହେଉଥିଲା । କର୍ମ-ମନ୍ଦିରପାଇଁ ଗୃହ ଦାନ ସୁଭଦ୍ରା ଦେବୀ ଓ ମୁଁ ପରିଶ୍ରମ କଲୁ । ସାହୁ ସାହୁ ବୁଲି ସୂତାକଟା ଶିଖାଇବା, ଗାଁ ସଫାଇ କରିବା, ହରିଜନମାନଙ୍କ ଭିତରେ କାମ କରିବା ଏ ସବୁ ଆମେ କଲୁ । ଗୋପୀନାଥ ଓ ଚନ୍ଦ୍ରମଣି ସାହୁ ସ୍ଥାନୀୟ କର୍ମୀ ଆମ ସହିତ ପୂର୍ଣ୍ଣପ୍ରାଣରେ ଯୋଗ ଦେଲେ । ଅନେକ ନାରୀ ସ୍ୱେଚ୍ଛାସେବିକା କାମ କରିବା ପାଇଁ ବାହାରିଲେ । ମୁଁ ସବୁଆଡ଼ୁ ମନ ମାରିଦେଇ ଏଥିରେ ଲଗିଥାଏ । ଇତିମଧ୍ୟରେ ମୋର ବଡ଼ଭାଇ ଶ୍ରୀନୃସିଂହଚରଣ ବଡ଼ ବେମାର ପଡ଼ିଲେ । ସେ ଲୋକବ୍ୟବହାରରେ ଏତେ ଅମାୟିକ ଥିଲେ ଯେ, ତାଙ୍କପରି ସରଳ ଲୋକ ମୁଁ ଆଉ କାହାକୁ ଦେଖି ନାହିଁ । ସେ ବାବାଙ୍କ ପରେ ଘରକରଣା କଥା ଦେଖାଶୁଣା କରୁଥିଲେ । ତାଙ୍କର ଚିକିତ୍ସାର ଯଥାସାଧ୍ୟ ବନ୍ଦୋବସ୍ତ କଲି; ମାତ୍ର ସେ ବଞ୍ଚିଲେ ନାହିଁ । ତାଙ୍କର ମୃତ୍ୟୁ ମୋତେ ଆହୁରି ଅସୁବିଧାରେ ପକାଇଲା । ଏହିଠାରେ ମୁଁ ଉଲ୍ଲେଖ କରିଦିଏ ଯେ, ଏହାଙ୍କ ଦଶାହ କାର୍ଯ୍ୟରେ ମୁଁ ମୋଟେ ଦୁଇଅଣା ପଇସା ଖରଚ କରିଥିଲି । ତାଙ୍କ ଶୁଦ୍ଧି କ୍ରିୟାରେ ଯାହା ଖର୍ଚ୍ଚ ହୋଇଥାନ୍ତା, ସେହି ଅର୍ଥରେ ଗାଁରେ ଏକ ଚିକିତ୍ସାଳୟ ଖୋଲିବାର ସ୍ଥିର କଲି । ଏଥିପାଇଁ ଗ୍ରାମର ଅନେକେ ମୋ ପ୍ରତି ବିରକ୍ତ ହୋଇଥିଲେ ।

ମୋ ମନରେ ଉଠିଲା ଯେ ଆମ ଗାଁରେ ଗୋଟିଏ ଡାକ୍ତରଖାନା ହେବା ଉଚିତ, ଅନ୍ୟଥା ପଇସା ଖର୍ଚ୍ଚ କରି ସାଧାରଣ ଲୋକ ଚିକିତ୍ସିତ ହେବା ସହଜ ନୁହେଁ । ସେହି କର୍ମମନ୍ଦିରରେ ଜଣେ ଡାକ୍ତର ନିଯୁକ୍ତି କରି ଚିକିତ୍ସାଳୟଟିଏ ଖୋଲିଲି । ମୁଁ ଜାଣି ନ ଥିଲି ଯେ ଚିକିତ୍ସାଳୟଟିଏ ସରକାରଙ୍କ ଦ୍ୱାରା ପ୍ରମାଣପ୍ରାପ୍ତ ନ ହେଲେ ଅନେକ ଔଷଧ ଅଣାଇ ହେବ ନାହିଁ । ଆମ ଗାଁ ଜଙ୍ଗଲ ପାଖ ଥିବାରୁ ଭାଲୁକାମୁଡ଼ା ରୋଗୀ ଅନେକ ଆସିଲେ । ଔଷଧ ଅଭାବରୁ ସେମାନଙ୍କର ଚିକିତ୍ସା ହୋଇ ପାରୁ ନ ଥାଏ । ଏଣୁ ଡାକ୍ତରଖାନାକୁ ପ୍ରମାଣିତ କରିବା ପାଇଁ ଦରଖାସ୍ତ କଲି । ତଦନ୍ତ ଉପରେ ତଦନ୍ତ ହେଲା, ମାତ୍ର ସେ ସମୟକାର ଜିଲ୍ଲା ହାକିମ ରିପୋର୍ଟ କଲେ ଯେ, ଏ ଡାକ୍ତରଖାନା ପଛରେ ରାଜନୀତିକ ଉଦ୍ଦେଶ୍ୟ ଅଛି । ଏଣୁ ସରକାର ତାକୁ ପ୍ରମାଣିତ କଲେ ନାହିଁ । ମୁଁ ତା'ପରେ ସ୍ୱେଡେବେଲକାର ମନ୍ତ୍ରୀ ଗଣେଶଦତ୍ତ ସିଂହଙ୍କ ପାଖକୁ ଲେଖିଲି । ସେ ସରକାରଙ୍କ ତରଫରୁ କଅଣ କଲେ ଜଣାନାହିଁ, ମାତ୍ର ନିଜ ବିଶ୍ୱସ୍ତାଧୀନ ଟଙ୍କାରୁ ୨୦୦ ଟଙ୍କା ଏ ଡାକ୍ତରଖାନାକୁ ଦାନ କରିଥିଲେ । ତା'ପରେ ମୋ ଲେଖାଲେଖି କରିବା ଫଳରେ ବିହାର-ଓଡ଼ିଶାର ଇନ୍‌ସପେକ୍‌ଟର ଜେନେରାଲ

ନଜେ ସେ ଡାକ୍ତରଖାନା ଦେଖିବାକୁ ଆସିଥିଲେ ଓ ସେ ସବୁ ଦେଖି ପ୍ରୀତ ହୋଇଥିଲେ; ତଥାପି ପ୍ରମାଣ ପତ୍ର ମିଳିଲା ନାହିଁ । ଶେଷରେ କଂଗ୍ରେସ ମନ୍ତ୍ରୀତ୍ୱ ଗ୍ରହଣ କରିବା ପରେ ଓଡ଼ିଶା ସରକାରଙ୍କଦ୍ୱାରା ସେ ଡାକ୍ତରଖାନା ପ୍ରମାଣିତ ହେଲା । କିପରି ଲାଲ୍‌ଫିତାରେ ଏ ଦେଶ ସେତେବେଳେ ବନ୍ଧା ହୋଇଥିଲା, ତାହା ଏଇଥିରୁ ଜଣା ପଡ଼ିବ ।

ଆମ ଅଞ୍ଚଳରେ ଶିକ୍ଷା ସେପରି ବିସ୍ତୃତ ନୁହେଁ । ଏହି ଗାଁରେ ବାବାଙ୍କ ଦ୍ୱାରା ଯେଉଁ ମାଇନର ସ୍କୁଲ ସ୍ଥାପିତ ହୋଇଥିଲା, ତାକୁ ହାଇସ୍କୁଲରେ ପରିଣତ କରିବାର ଉଦ୍ୟମ କଲି । ଏଥିପାଇଁ ମଧ୍ୟ ଶିକ୍ଷା ବିଭାଗର ଅନୁମତି ଦରକାର, ତାହା ସହଜରେ ମିଳିଲା ନାହିଁ । ଅତି ଅସୁବିଧା ଓ ପ୍ରଗାଢ଼ ଯତ୍ନ ଫଳରେ ସେ ଅନୁମତି ବହୁଦିନ ପରେ ମିଳିଲା । ବର୍ତ୍ତମାନ ସେ ଡାକ୍ତରଖାନାଟି ସରକାର ହାତକୁ ନେଇ ନେଇଛନ୍ତି ଓ ସ୍କୁଲଟି ସରକାରୀ ହୋଇପାରିଛି । ମାତ୍ର ପ୍ରଥମ ତିନି ଚାରି ବର୍ଷରେ ପ୍ରାୟ ଦୁଇ ହଜାର ଟଙ୍କା ମୋତେ ବାର୍ଷିକ 'ଖର୍ଚ୍ଚ' କରିବାକୁ ପଡ଼ିଥିଲା—ଏହାଛଡ଼ା ମୋତେ କଠିନ ପରିଶ୍ରମ କରିବାକୁ ପଡ଼ୁଥିଲା, । ୧୯୩୪ ର ଉଦ୍ୟମ ୧୯୫୨ ଠାରୁ ୧୯୬୦ ସାଲ ମଧ୍ୟରେ ସରକାରଙ୍କ ପୂର୍ଣ୍ଣ ସାହାଯ୍ୟ ପାଇଲା ।

ଏ ସବୁ କାର୍ଯ୍ୟ ସଙ୍ଗେ କର୍ମ୍ମ ମନ୍ଦିର କାମ ମଧ୍ୟ ଖୁବ୍ ଜୋରସୋର୍‌ରେ ଚାଲିଥାଏ । ଆମର ହରିଜନ କାମ ଫଳରେ ମୋତେ ବାସନ୍ଦ କରା ହୋଇଥିଲା ଓ ସେ ବାସନ୍ଦ ଦୁଇବର୍ଷ ବ୍ୟାପି ରହିଥିଲା । ଏଥିରେ ଆଖପାଖର ଅନେକ ପ୍ରତିପତ୍ତି-ଶାଳୀ ଲୋକ ମୋ ବିରୋଧରେ ଲାଗିଥିଲେ । ମାତ୍ର ଏ ବାସନ୍ଦକୁ ମୁଣ୍ଡ ପାତି ସହି ନେଇ ନିଜ ମତରେ ଦୃଢ଼ ରହି ବାସନ୍ଦକାରୀମାନଙ୍କ ପ୍ରତି କୌଣସି ପ୍ରକାର ଦ୍ୱେଷ ନ କରିବା ଫଳରେ ଶେଷରେ ଧୀରେ ଧୀରେ ବାସନ୍ଦ ଉଠିଗଲା ଓ ତା'ପରେ ଆମ ଘରେ ଜାତି ବିଚାର ନାହିଁ; ଏପରିକି ମୁସଲମାନମାନଙ୍କ ସାଙ୍ଗରେ ମଧ୍ୟ ଖିଆପିଆ ହୁଏ । ମାତ୍ର ତାକୁ ସମାଜରେ କେହି ଧରନ୍ତି ନାହିଁ । ଆମ କଥା ଦେଖି ଚାରିଆଡ଼େ ଅନେକ ସେହିପରି କରୁଛନ୍ତି । ମୁଁ ନିଜେ ଅତି ସୁଖୀ ଯେ ଜାତି ବିଚାର ଓ ତା'ର ପରିଣତି ଏବଂ ହରିଜନ ସମସ୍ୟାର ଗୁରୁତ୍ୱ ଆମ ଅଞ୍ଚଳରେ ବହୁ ପରିମାଣରେ କମି ଯାଇଛି ଓ ତାହା ଏତେ ଅଳ୍ପ ଉଦ୍ୟମରେ । ଏଥିପାଇଁ କେବଳ ମୁଁ ସେହି ଅହିଂସା ନୀତି ପ୍ରତି କୃତଜ୍ଞତା ଜଣାଉଛି ।

ଏହି ସମସ୍ତ ଭିତରେ କନିକା ପ୍ରଜାମାନେ ଥରେ ଜିଲ୍ଲା ହାକିମ ଓ ଉତ୍ତର ସବ୍‌ଡିଭିଜନ୍ ଅଫିସରଙ୍କ ଦ୍ୱାରା ସେମାନଙ୍କର ନ୍ୟାଯ୍ୟ ଅଧିକାରରୁ ବଞ୍ଚିତ ହେବାକୁ ବସିଲେ । ବନ୍ଧୁକଧାରୀ ପୋଲିସ ଯାଇ ପ୍ରଜାଙ୍କ ଦଖଲରେ ଥିବା ଗୋଟିଏ ସର୍ବ-ସାଧାରଣ ସ୍ଥାନକୁ ରଜାଙ୍କ ଦଖଲକୁ ନେଇନେଲେ । ଏ ବିଷୟରେ ଆନ୍ଦୋଳନ

କରିବାକୁ ହୋଇଥିଲା ଓ ତା' ଫଳରେ ସେ ଜିଲ୍ଲା ହାକିମ ଓ ସବ୍‌ଡିଭିଜନ ଅଫିସର ଉଭୟ ହଠାତ୍ ବଦଳି ହୋଇଯାଇଥିଲେ । ଏ ସମ୍ପର୍କରେ ସେତେବେଳକାର କମିଶନର ହର୍ଣ୍ଣେଲ ସାହେବଙ୍କ ସହିତ ସାକ୍ଷାତ କରିଥିଲି । ସେ ବିଷୟଟିକୁ ବୁଝିବା ପରେ ହାକିମମାନଙ୍କୁ ବଦଳି କରିଦେଇଥିଲେ ।

ଡାକ୍ତରଖାନା, ସ୍କୁଲ ଓ କନିକା ବ୍ୟାପାରରେ ମୋର ସେତେବେଳେ ଏକମାତ୍ର ସହାୟକ ଥିଲେ ଶ୍ରୀ ଜଗନ୍ନାଥ ଦାସ । ସେ ସେତେବେଳେ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାର ସଦସ୍ୟ ହୋଇଥିଲେ । ସେ ଏକଦା କନିକା ଦଳର ସମ୍ପାଦକ ଥିଲେ—ମଧ୍ୟ ସେ ଦଳର କାରବାରରେ ବୀତସ୍ପୃହ ହୋଇ ତ.କୁ ଗୁଡ଼ି କଂଗ୍ରେସ ଭିତରକୁ ଆସିବାକୁ ଚେଷ୍ଟା କରୁଥାନ୍ତି । ତାଙ୍କୁ କଂଗ୍ରେସ ଭିତରେ ନେବାକୁ ଅନେକ ବାଧା ଦେଉଥାଆନ୍ତି—ମାତ୍ର ମୁଁ ତାଙ୍କୁ ବରାବର ସମର୍ଥନ କରି କଂଗ୍ରେସ ଭିତରକୁ ଆସିବାରେ ସାହାଯ୍ୟ କରୁଥାଏ । କ୍ଷମତାଲାଭରେ ସଫଳତା ଲାଭ କରିବା ସଙ୍ଗେ ସଙ୍ଗେ କଂଗ୍ରେସକୁ ସଙ୍କୁଚିତ କରିବାର ଚେଷ୍ଟା ସେହିଦିନୁ ମୁଁ ଲକ୍ଷ୍ୟ କରିଛି । ଆମ ତ୍ୟାଗ ଫଳରେ ଯେଉଁ କ୍ଷମତା ଆସିବ, ତାହା ଦେଶବାସୀ ସମସ୍ତେ ଭୋଗ କରିବେ—ଏ ଆଦର୍ଶ ଥିବା ସ୍ଥଳେ ଘଟଣାଚକ୍ରରେ ଆମ ତ୍ୟାଗଲବ୍ଧ ଯାହା କିଛି ଆମେ ହିଁ ତାକୁ ଭୋଗ କରିବୁ—ଏ ଇଚ୍ଛା ଜାଗ୍ରତ ହୋଇଥିଲା । ଏହା ଆମର ଦୁର୍ବଳତା ଓ ଏହା ବିରୁଦ୍ଧରେ ଆମକୁ ସଜାଗ ରହିବାକୁ ହେବ ବୋଲି ସେତେବେଳୁ ଜଣାପଡ଼ିଥିଲା ।

ଏହି ସମୟ ମଧ୍ୟରେ ମୁଁ ସିନା ଏହିପରି ନିଜ ଗାଁ କାମରେ ନିଯୁକ୍ତ ରହିଲି—ମାତ୍ର ଏହା ମଧ୍ୟରେ ୧୯୩୪ ସାଲରେ ଓଡ଼ିଶାରେ ଏକ ଐତିହାସିକ ଘଟଣା ହୋଇଛି, ମହାତ୍ମା ଗାନ୍ଧୀଙ୍କ ପୁରୀଠାରୁ ଭଦ୍ରଖ ପର୍ଯ୍ୟନ୍ତ ପଦଯାତ୍ରା । ଦୈନିକ ସକାଳଓଳି ପ୍ରାୟ ପାଞ୍ଚ ମାଇଲ ଓ ଉପର ଓଳି ପାଞ୍ଚ ମାଇଲ ଏହିପରି ପଦଯାତ୍ରା କରି ବାପୁଜୀ ଓଡ଼ିଶାର ଆବାଳବୃଦ୍ଧବନିତାଙ୍କ ମନରେ ଶ୍ରୀ ଚୈତନ୍ୟଙ୍କ ଉତ୍କଳଲୀଳା କଥା ମନେ ପକାଇଥିଲେ । କିଏ ଜାଣେ ଯେଉଁଠି ମହାତ୍ମାଗାନ୍ଧୀ ବିଶ୍ରାମ ନେଉଥିଲେ, ତାହା ଦିନେ ହଜାର ହଜାର ଲୋକଙ୍କ ପାଇଁ—ତୀର୍ଥଭୂମିରେ ପରିଣତ ହୋଇଯିବ । ମୁଁ ମହାତ୍ମା ଗାନ୍ଧୀଙ୍କ ଗହଣରେ ସେ ସମୟରେ ପୁରୀରୁ କଟକ ପର୍ଯ୍ୟନ୍ତ ଥିଲି । ସେତେବେଳକାର ଦୈନିକ ଘଟଣା ବିସ୍ତୃତ ଭାବରେ ବର୍ଣ୍ଣନା କରିବାର ବିଷୟ । ବାସ୍ତବିକ ସେ ସମୟରେ ଗାନ୍ଧିଜୀ ହିନ୍ଦୁଧର୍ମ ରକ୍ଷା ପାଇଁ ଆଧ୍ୟାତ୍ମିକତାର ଏକ ବାତ୍ୟା ବୁହାଇ ଦେଇଥିଲେ ।

ବାଲେଶ୍ବର ଜିଲ୍ଲା ଗସ୍ତରେ ବାପୁଜୀ ଆମର ଏକ କଟେଜ୍ ଘରେ ଡୋଡ଼ଙ୍ଗାରେ ଦିନକ ପାଇଁ ବିଶ୍ରାମ କରିଥିଲେ ଓ ତା'ପରେ ତାଙ୍କର ଶେଷ ଗସ୍ତ ମୋର ଭଦ୍ରଖ ଘରେ ବିଶ୍ରାମ ନେଇଥିଲେ । ଭଦ୍ରଖରେ ମହାତ୍ମାଜୀ ମୋତେ ଓ ସୁଭଦ୍ରା ଦେବୀଙ୍କୁ ସୂତା କଟାଇ ପରୀକ୍ଷା କରିଥିଲେ । ଏ ଇତିହାସପ୍ରସିଦ୍ଧ ପଦଯାତ୍ରାର ସଂକ୍ଷିପ୍ତ ବିବରଣୀ ପାଇଁ ସୁଦ୍ଧା ଏଠାରେ ସ୍ଥାନ ନାହିଁ । ଏତିକି କେବଳ କହିଲେ ଯଥେଷ୍ଟ ହେବ ଯେ, ସେ କେତେଦିନ ମହାତ୍ମାଗାନ୍ଧୀଙ୍କ ସଂସ୍ପର୍ଶରେ ଆସି ମୁଁ ନିଜକୁ ନିଜେ ଉନ୍ନତ ଓ ଦୃଢ଼ମନା ଅନୁଭବ କଲି । ତାଙ୍କ ଜୀବନର ଦୈନନ୍ଦିନ ଶ୍ରେଷ୍ଠ ଶ୍ରେଷ୍ଠ କାର୍ଯ୍ୟରୁ ନିଜ ଜୀବନର ଅନେକ ବଡ଼ ବଡ଼ ସମସ୍ୟା ସମାଧାନର ଉପାୟ ଦେଖିପାରିଲି । ବାପୁଜୀଙ୍କୁ ବିଦାୟ ଦେବା ପାଇଁ ମୁଁ ତାଙ୍କ ସହିତ ଖଡ଼ଗପୁର ପର୍ଯ୍ୟନ୍ତ ଯାଇଥିଲି ।

•

ଗାନ୍ଧିଜୀ ମୋର ଭଦ୍ରଖ ଘରେ ଥିବା ସମୟରେ ଏକ କୌତୁହଳଜନକ ଘଟଣା ଘଟିଥିଲା, ତାହା ଉଲ୍ଲେଖ ନ କରି ରହିପାରୁନାହିଁ । ଗାନ୍ଧିଜୀଙ୍କ ଗହଣରେ ବୁଟୋ ନାମକ ଜଣେ ପାଶ୍ଚାତ୍ୟ ଦେଶବାସୀ ଥିଲେ । ଅତିଥି ହିସାବରେ ମୁଁ ସମସ୍ତଙ୍କୁ ସେମାନଙ୍କ ସୁବିଧା ଅନୁସାରେ ଚର୍ଚ୍ଚା କରିଥିଲି । ବୁଟୋଙ୍କୁ ତାଙ୍କର ରୁଚି ଅନୁଯାୟୀ ଖାଦ୍ୟ ଯୋଗାଇଥିଲି । ଗାନ୍ଧିଜୀଙ୍କ ଠାରେ ଏ ଆପତ୍ତି କରି ହୋଇଥିଲା ଯେ, ତାଙ୍କ ଗହଣରେ ଆମିଷ ଖାଦ୍ୟ ବ୍ୟବହାର କରି ହେଉଛି ଓ ମୁଁ ଅନ୍ୟାୟ କରିଛି । ଗାନ୍ଧିଜୀ ସବୁ କଥା ଶୁଣି ମୋ କାର୍ଯ୍ୟକୁ ସମର୍ଥନ କରିଥିଲେ । ଅତିଥି ସତ୍କାରରେ ମୁଁ ମୋର କର୍ତ୍ତବ୍ୟ ପାଳନ କରିଛି ବୋଲି ସେ ମତ ଦେଇଥିଲେ ।

ରାଜନୀତି କ୍ଷେତ୍ରରେ ଆଉ ବିଶେଷ ଏକ ଘଟଣା ଏହି ସମୟରେ ଘଟିଥିଲା— ସେ ହେଉଛି କଂଗ୍ରେସ ସାମ୍ୟବାଦୀ ଦଳ ଗଠନ । ଏମାନେ ମାର୍କସଙ୍କ ଦର୍ଶନାନୁସାରେ ସାମ୍ୟବାଦ ନୀତିରେ ବିଶ୍ୱାସ କରି ଭାରତର ରାଜନୈତିକ ପରିସ୍ଥିତି ଦୃଷ୍ଟିରୁ କଂଗ୍ରେସକୁ ସେହି ନୀତି ଆଡ଼କୁ ନେବା ପାଇଁ ସଂଘବଦ୍ଧ ହୋଇଥିଲେ । ଏମାନଙ୍କ ଭିତରେ ଅନେକ ଲବ୍ଧପ୍ରତିଷ୍ଠ ପୁରାତନ କଂଗ୍ରେସ ଲୋକ ଥିଲେ । ମୋର ସେ ସମୟରେ ଧାରଣା ହୋଇଥିଲା ଯେ, କଂଗ୍ରେସରେ ସୁବିଧାବାଦୀ ଦଳର ଆବିର୍ଭାବ ଓ ସେମାନଙ୍କ ସାଙ୍ଗରେ ଗାନ୍ଧିନୀତିକୁ ଏକ ନିର୍ଜୀବ ଅହିଂସାତ୍ମକ ବସ୍ତୁ କରି ଥୋଇରଖିବା ଏବଂ ଗାନ୍ଧିବାଦୀଙ୍କ ଅହଂଭାବର ପ୍ରତିକ୍ରିୟା ରୂପେ ଏ ସାମ୍ୟବାଦୀ ଦଳର ଆବିର୍ଭାବ ହେଲା । ସେ ଯାହାହେଉ ସେ ଦଳର ଶାଖା ମଧ୍ୟ ଓଡ଼ିଶାରେ ସ୍ଥାପିତ ହେଲା । ସେଥିରେ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀ ନେତୃତ୍ୱ ନେଲେ । ଏମାନେ ମୋର ଏତେ ଅନ୍ତରଙ୍ଗ ବନ୍ଧୁ ଓ ଏତେ ଦିନର ସହକର୍ମୀ ଯେ, ମୁଁ ନିଜକୁ ଏକ ଅତି ଅସୁବିଧାଜନକ ସ୍ଥାନରେ ଦେଖିଲି । ବାଲେଶ୍ୱରରେ ଯେଉଁମାନଙ୍କୁ ନେଇ ୧୯୩୧ରେ

କର୍ମମନ୍ଦିରର ଆରମ୍ଭ କରିଥିଲି, ସେମାନଙ୍କ ମଧ୍ୟରୁ ଶ୍ରୀ ଗଜେନ୍ଦ୍ର ସାହୁ ସତ୍ୟାଗ୍ରହ ସମୟରେ ପୀଡ଼ିତ ହୋଇ ପରଲୋକ ଗମନ କଲେ । ବଞ୍ଚିଥିଲେ ସେ ଜଣେ ଉତ୍କୃଷ୍ଟ ଧରଣର କର୍ମୀ ହୋଇଥାନ୍ତେ । ଆମର ଦୁର୍ଭାଗ୍ୟକ୍ରୁ ସେ ଆମକୁ ଛାଡ଼ିଗଲେ, ବାକି ଶ୍ରୀ ଗୌରଚନ୍ଦ୍ର ଦାସ ଯେ କାର୍ଯ୍ୟତଃ କର୍ମ-ମନ୍ଦିରର ପରିଚାଳକ ଥିଲେ ଓ ଯାହାଙ୍କୁ ପୁଣି ଆଣି କର୍ମ-ମନ୍ଦିର ଚଳାଇବି ବୋଲି ଭାବିଥିଲି, ସେ ନୂତନ ପ୍ରବୃତ୍ତି ସାମ୍ୟବାଦ ନୀତି ପ୍ରତି ଆକୃଷ୍ଟ ହୋଇ କଟକ ଚାଲିଗଲେ ।

ଏହା ମୋର କର୍ମ-ମନ୍ଦିର କାମରେ ଏକ ବଡ଼ ଅସୁବିଧା ଜନ୍ମାଇଲା । ତା’ ଛଡ଼ା ମୁଁ ଯିବି କୁଆଡ଼େ ? ଏକ ଦିଗରେ ଦେଖେ ମୋର ସମ୍ମାନିତ ସହକର୍ମୀ ଅନେକ ନିଜକୁ ନିଜେ ଗାନ୍ଧିନୀତିର ଏକମାତ୍ର ଅନୁଗାମୀ ମନେ କରି ସେମାନଙ୍କ ସହିତ ଏକମତ ନ ହେଉଥିବା ସମସ୍ତଙ୍କୁ ଗାନ୍ଧିନୀତି ବିରୋଧୀ ବୋଲି ବିଚାର କରୁଛନ୍ତି, ଆଉ ଏକ ଦିଗରେ ଅନେକ ନିକଟତମ ସହକର୍ମୀ ଗାନ୍ଧିନୀତିରେ ସନ୍ତୁଷ୍ଟ ନ ରହି ଏକ ସ୍ୱତନ୍ତ୍ର ଦର୍ଶନ ଉପରେ ପ୍ରତିଷ୍ଠିତ ମତବାଦର ଆଶ୍ରୟ ନେଇଛନ୍ତି । ତୃତୀୟ ଦିଗରେ ଦେଖୁଛି ଯେ ସେହିମାନେ ତତ୍ପର, ଯେଉଁମାନେ ରାଜନୈତିକ କ୍ଷମତା ଆହରଣ ପାଇଁ ଜେଲ ଭିତରୁ ଉଦ୍ୟମ କରି ଆସୁଛନ୍ତି । ଏ ତିନି ଦଳ ସହିତ ମୁଁ ନିଜକୁ ମିଳାଇ ପାରୁ ନ ଥାଏ । ଡିନୋଟିଯାକ ଦଳ ନିଜକୁ ନିଜେ ପୁଷ୍ଟ କରିବା-ପାଇଁ କଂଗ୍ରେସ ଭିତରେ ଉଦ୍ୟମ କରୁଥାନ୍ତି । ଏପରି ସ୍ଥଳେ ସହକର୍ମୀ ଖୋଜିବା ଅର୍ଥ ହୋଇଥାନ୍ତା ମୋ ପକ୍ଷରେ ପୁଣି ଚତୁର୍ଥ ଦଳ ଗଠନ । ଏହା ମୁଁ ଆଦୌ ପସନ୍ଦ କରୁ ନ ଥିଲି । ଏପରି ସ୍ଥଳେ ଏକାକୀ ଗତି କରିବା ଛଡ଼ା ମୋର ଅନ୍ୟ ଉପାୟ ନ ଥିଲା । ମୁଁ ନିଜକୁ ନିଜେ କେନ୍ଦ୍ର ଦଳର ଲୋକ ବୋଲି କହୁଥିଲି । ଯେପରି କେନ୍ଦ୍ରର କୌଣସି ବିସ୍ତାର ନାହିଁ, ମାତ୍ର ତା ଚାରିପାଖ ପରିଧି ଯାହା କିଛି ହୋଇ ପାରେ ଓ ତା ଭିତରେ ଯେ କୌଣସି ଦଳ ଆସିପାରେ, ସେହିପରି ଅବସ୍ଥାରେ ମୁଁ ନିଜେ ରହିବାକୁ ସ୍ଥିର କଲି । ଗାନ୍ଧିଜୀଙ୍କ ପ୍ରଦର୍ଶିତ ପନ୍ଥା ଅନୁସରଣ କରି ତଦନୁସାରେ ପ୍ରତ୍ୟେକ ସମସ୍ୟାର ସମ୍ମୁଖୀନ ହୋଇ ଯେତେବେଳେ ଯାହା କରିବା ବିଧେୟ ତାହା କରିଯିବା ଓ ତା’ ଫଳରେ ଯେ କୌଣସି ଦଳ ସହିତ ସହଯୋଗ ବା ବିରୋଧକୁ ଭ୍ରୂକ୍ଷେପ ନ କରିବା, ଏହା ହିଁ ମୋର ନୀତି ହେଲା — ମୋର ଧାରଣା ଏହା ହିଁ ଗାନ୍ଧିନୀତିକୁ କାର୍ଯ୍ୟକାରୀ କରିବାର ପ୍ରକୃଷ୍ଟ ଉପାୟ । ମୁଁ ଏ ସମ୍ବନ୍ଧରେ ଯେତେବେଳେ ସମାଜରେ କେତେକ ପ୍ରବନ୍ଧ ଲେଖିଥିଲି । ସେ ସବୁ ପ୍ରବନ୍ଧରେ ମୁଁ ବୁଝାଇବାକୁ ଚେଷ୍ଟା କରିଥିଲି ଯେ, କୌଣସି ନୀତିକୁ ଅନୁସରଣ କରିବା ଫଳରେ ଯଦି କୌଣସି ଉପସ୍ଥିତ ସମସ୍ୟାର ସମ୍ମୁଖୀନ ନ ହୋଇ ନୀରବ ଦର୍ଶକ ହେବାକୁ ପଡ଼ିଲା, ତେବେ ସେ ନୀତି ବହିଲେଖା ପାଇଁ ଭଲ ହୋଇପାରେ, ମାତ୍ର ତା’ର କାର୍ଯ୍ୟକ୍ଷେତ୍ରରେ ସ୍ଥାନ ନାହିଁ । ଅହିଂସା ନୀତି ନୂଆ ନୁହେଁ, ମାତ୍ର

ବୈଦେଶିକ ଜୀବନରେ ଏହାର ପ୍ରୟୋଗ କୌଶଳ ହେଉଛି ଗାନ୍ଧୀଜୀଙ୍କ ଜଗତକୁ ଶ୍ରେଷ୍ଠ ଦାନ । ପ୍ରୟୋଗରେ ମାତ୍ରଗତ ଅହିଂସା କେତେଦୂର ସୀମାବଦ୍ଧ ହୋଇଥାଏ, ତାହାର ନିରୂପଣ ହିଁ ଗାନ୍ଧୀମାର୍ଗ । ତେଣୁ ଅହିଂସାକୁ ଲକ୍ଷ୍ୟ ରଖି ତା'ର ପ୍ରୟୋଗ ଉପରେ ସମସ୍ତ ଧ୍ୟାନ କେନ୍ଦ୍ରୀଭୂତ କରିବା ହିଁ ଗାନ୍ଧୀଦର୍ଶିତ ପନ୍ଥା ବୋଲି ମୋର ଧାରଣା । ସେହି ଧାରଣା ଅନୁସାରେ ମୁଁ ଅଗ୍ରସର ହେଲି, କିନ୍ତୁ ଦୁଃଖର ବିଷୟ ଯେ, ଯେଉଁମାନେ ରାଜନୈତିକ କ୍ଷମତା ପରିସରରେ ବାହାରିଥାନ୍ତି, ସେମାନେ ମୋତେ ସନ୍ଦେହ ଚକ୍ଷୁରେ ଦେଖୁଥାନ୍ତି, କାଳେ ମୁଁ ସେମାନଙ୍କର ପ୍ରତିବନ୍ଧକ ହେବି । ମୋର ପୂର୍ବ ନିର୍ବାଚନ-ଜୀବନ ଦୃଷ୍ଟିରେ ଏ ପ୍ରକାର ସନ୍ଦେହ ଯେ ଅନ୍ୟାୟ, ତା' ମୁଁ କହି ପାରିବି ନାହିଁ । ସମୟାନୁସାରେ ସେ ସନ୍ଦେହ ଦୂର କରିବାର ଅବକାଶ ମିଳିବ, ଏହି ପ୍ରତୀକ୍ଷାରେ ମୁଁ ଥାଏ ।'

କଂଗ୍ରେସ ସାମ୍ୟବାଦୀ ଦଳ ତରଫରୁ ଓଡ଼ିଶାରେ କୃଷକ ସଂଘ ସଂଗଠିତ ହେଲା । ସେଥିରେ ଯୋଗଦେବା ପାଇଁ ମୋର ବନ୍ଧୁମାନେ ମୋତେ ଆହ୍ୱାନ କଲେ । ଜମିଦାର ଅତ୍ୟାଚାର ବିରୋଧରେ କୃଷକଙ୍କୁ ଛିଡ଼ା କରାଇବା ଏ ସଂଘର ଉଦ୍ଦେଶ୍ୟ ଥିଲା ଓ ଏହି କାମ ୧୯୨୧ ସାଲରୁ ଆମ ଜିଲ୍ଲାରେ ମୁଁ କରିଆସିଛି । ଏହି କାର୍ଯ୍ୟ ଫଳରେ ଜମିଦାରମାନେ ବାଧ୍ୟ ହୋଇ ଆମ ଜିଲ୍ଲାରେ ସଂଗଠିତ ହୋଇ କଂଗ୍ରେସ ବିରୋଧରେ ଲାଗିଛନ୍ତି । ଏପରି ସ୍ଥଳେ ସେ କୃଷକସଂଘରେ ଯୋଗ-ଦେବାରେ ମୋର ଆପତ୍ତି ନ ଥିଲା । ମୋତେ ମଧ୍ୟ ସେ ସଂଘର ସଭାପତି କରି ଦିଆ ହେଲା । ବଡ଼ ବଡ଼ କୃଷକ ସମ୍ମିଳନୀମାନ ଅନୁଷ୍ଠିତ ହେବାରେ ଲାଗିଲା ଓ ଅନେକ ସ୍ଥଳରେ ମୋତେ ସଭାପତି ହୋଇ ଯିବାକୁ ହେଲା । ଏ କାର୍ଯ୍ୟରେ ଗାନ୍ଧୀମାର୍ଗ ସହିତ ସଂଘର୍ଷର କୌଣସି ଚିହ୍ନ ମୁଁ ଦେଖିନାହିଁ । ମାତ୍ର ସାମ୍ୟବାଦୀଙ୍କ କାର୍ଯ୍ୟରେ ମୋର ଏପରି ସହଯୋଗକୁ ଗାନ୍ଧୀନୀତି ବିରୋଧୀ ବୋଲି ଗୋଟିଏ ଦଳ ମନେ କଲେ ଓ ଆଉ ଗୋଟିଏ ଦଳ ସନ୍ଦେହ କଲେ ଯେ, ଏହି ସୂତ୍ରରେ ମୁଁ ରାଜନୈତିକ କ୍ଷମତା ଆଡ଼କୁ ଗତି କରୁଛି । ମୁଁ ସେତେବେଳେ ପ୍ରତ୍ୟେକ ଦଳର କାର୍ଯ୍ୟ ଓ କାରଣ ବିଚାର କରି ଯେତେ ଦୂର ମୋର ଶକ୍ତି ମୁଁ ନିଜକୁ ସୁନିର୍ଦ୍ଧାରିତ ପଥରେ ଚଳାଇଛି ।

ଏ କେତେବର୍ଷ କଂଗ୍ରେସ ଅନୁଷ୍ଠାନ ସହିତ ମୁଁ କେବଳ ନାମମାତ୍ର ସମ୍ପର୍କ ରଖିଥାଏ ଓ ମୋର ମୁଖ୍ୟ କାମ କର୍ମ-ମନ୍ଦିର ହୋଇଥାଏ । କର୍ମ-ମନ୍ଦିର ତରଫରୁ ଏହି ସମୟରେ ରାଜନୈତିକ ଶିକ୍ଷା ସମ୍ପର୍କୀୟ କେତେଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ବହି ପ୍ରକାଶିତ ହୋଇଥିଲା । ନିତ୍ୟାନନ୍ଦ ମହାପାତ୍ର, ଯେ ୧୯୩୧ରେ ମୋ ସହିତ କର୍ମ-ମନ୍ଦିରରେ ଯୋଗ ଦେଇଥିଲେ, ତାଙ୍କର ସାହିତ୍ୟ ଦିଗରେ ପ୍ରବଳ ଉତ୍ସାହ

ଥିବାରୁ ତାଙ୍କୁ ଏ କାର୍ଯ୍ୟ କରିବାକୁ କହିଥିଲି । ତାଙ୍କର ଗୋଟିଏ ପୁସ୍ତିକା ସରକାର ବାଜ୍ୟାପ୍ତ କରିନେଲେ ।

ଏହି ସମସ୍ତ ଭିତରେ କଂଗ୍ରେସର ପଞ୍ଚାଶତ ବାର୍ଷିକ ଉତ୍ସବ ପାଳିତ ହୋଇଥିଲା । ଆମ ଗାଁରେ ଏ ଉତ୍ସବ ଅତି ବଡ଼ ଆକାରରେ ଅନୁଷ୍ଠିତ ହୋଇଥିଲା । ଏହି ଉତ୍ସବରେ ଗୋଟିଏ ପ୍ରଦର୍ଶନୀ କରାଇଥିଲି । 'ସ୍ୱରାଜ୍ୟ ସାଧନ' ନାଟକ ଅଭିନୀତ ହୋଇଥିଲା । ପୋଲିସ ମଝିରେ ଏ ନାଟକ ଅଭିନୟ ବନ୍ଦ କରି ଦେଇଥିଲେ । ଏହି ଉତ୍ସବ ଉପଲକ୍ଷେ ମୁଁ ଦଶ-ବର୍ଷର ଓଡ଼ିଶା ବହି ଲେଖି ପ୍ରକାଶ କରିଥିଲି । ୧୯୨୦ ସାଲଠାରୁ ୧୯୩୦ ସାଲ ସୁଦ୍ଧା ଓଡ଼ିଶାରେ ରାଜନୈତିକ ପ୍ରଗତିର ଇତିହାସ ଏଥିରେ ଥିଲା । ଏହାକୁ ସରକାର ବାଜ୍ୟାପ୍ତ କରିଥିଲେ । ଏ ବାଜ୍ୟାପ୍ତି ବିଷୟ ବିଲାତରେ ହାଉସ ଅଫ୍ କମନ୍ସରେ ପ୍ରଶ୍ନ ହୋଇଥିଲା ।

ଏସବୁ ସାଧାରଣ କାର୍ଯ୍ୟ ଛଡ଼ା ଗାଁରେ ରହି ଘରକୁ ମଧ୍ୟ ମୋ ଜୀବନାନୁକୂଳ କରିବାପାଇଁ ଚେଷ୍ଟା କରିଥିଲି । ଷାଠିଏ ସତୁରି ବର୍ଷ ଘର ମରାମତି ଅଭାବରୁ ଭାଙ୍ଗିପଡ଼ିବାଭଳି ହୋଇଯାଇଥିଲା, ତାକୁ ଭଲକରି ମରାମତି କରାଇଲି । ବହୁ-ସଂଖ୍ୟକ ଚାକରବାକରଙ୍କୁ ଧୀରେ ଧୀରେ ବିଦାୟ ଦେଇ ଜଣେ ମାତ୍ର ଚାକର ଦ୍ୱାରା ସବୁ କାମ ଚଲାଇବାର ବନ୍ଦୋବସ୍ତ କଲି । ଜଣେ ସାଧାରଣ ଗୃହସ୍ଥ କର୍ମରେ ଯେପରି ଚଳେ, ସେହିପରି ଚଳାଇବାର ବନ୍ଦୋବସ୍ତ କଲି । ସୁଭଦ୍ରା ଦେବୀଙ୍କୁ ମୋ ପାଖକୁ ପୁରାପୂରି ଆଣିବାର ଚେଷ୍ଟା କରିଥିଲି । ସେ ତ ଶରୀର ହିସାବରେ ପୂରାପୂରି ମୋ ପାଖକୁ ଆସିଲେ, ମାତ୍ର ମନ ତାଙ୍କର ସବୁବେଳେ ଦୁଃଖମୟ ରହିଲା । ସେ ଦୁଃଖ ମଧ୍ୟ ମୋ ମନରେ ପ୍ରତିଧ୍ୱନିତ ହେଉଥିଲା; ମାତ୍ର ସେ ପ୍ରତିଧ୍ୱନିକୁ ଉଦ୍ୟମ କରି ବରାବର ଦବାଇ ଆସୁଛି । ମୁଁ ଉପଲବ୍ଧି କଲି ଯେ, ତାଙ୍କ ସନ୍ତାନହୀନ ଜୀବନ ତାଙ୍କୁ ଅତି ବାଧା ଦେଉଛି, ତେଣୁ ନିଜ ମନକୁ ଲଗାଇ ରଖିବା ଭଳି କାମ କିଛି ତାଙ୍କୁ ଜୁଟୁନାହିଁ । ସାଧାରଣ କାର୍ଯ୍ୟରେ ମୁଁ ଯେପରି ମନ ଲଗାଇ ଆନନ୍ଦ ପାଉଛି, ସେପରି କରିବା ପାଇଁ ତାଙ୍କ ମନର ପ୍ରସ୍ତୁତି ନାହିଁ, ତଥାପି ଯେତେଦୂର ସମ୍ଭବ ତାଙ୍କୁ ଆନନ୍ଦ ଦେବାପାଇଁ ମୁଁ ଚେଷ୍ଟା କରୁଥାଏ ।

ଇତିମଧ୍ୟରେ ତେଣେ ରାଜନୈତିକ ହାୱା ବଦଳିବାକୁ ଲାଗିଲାଣି । ସତ୍ୟାଗ୍ରହ ସ୍ଥଗିତ ରହିବା ପରେ ନିଖିଳଭାରତ କଂଗ୍ରେସ କମିଟି ବ୍ୟବସ୍ଥାପକ ପରିଷଦ ପ୍ରବେଶ ପାଇଁ କାର୍ଯ୍ୟ ଆରମ୍ଭ କରି ଦେଇଥିଲା । ଏହା ପୂର୍ବରୁ କଂଗ୍ରେସ ଏ କାର୍ଯ୍ୟ ହାତକୁ ନେବ କି ନାହିଁ, ବାଦାନୁବାଦ ଚାଲିଥିଲା । କେତେକ କହୁଥିଲେ ଯେ,

କଂଗ୍ରେସ ନିର୍ବାଚନ କାର୍ଯ୍ୟ ହାତକୁ ନେଲେ ଏହା ବିପ୍ଳବ ପଥରୁ ଖସିଯିବ । ଅନ୍ୟ-ମାନେ କହୁଥିଲେ ଯେ ନିର୍ବାଚନରେ ଯେଉଁ ଜନଜାଗୃତି ସୃଷ୍ଟି ହେବ, ତଦ୍ଦ୍ୱାରା କଂଗ୍ରେସ ସୁଦୃଢ଼ ହେବ । ସେ ସମୟରେ ମୁଁ ନିଜ ଓଡ଼ିଶା ଖବରକାଗଜରେ ମତ ପ୍ରକାଶ କରିଥିଲି ଯେ, କଂଗ୍ରେସ ନିର୍ବାଚନରେ ପଶିବା ଠିକ୍ ହେବ ନାହିଁ ଏବଂ ଯେଉଁ ସରକାରଙ୍କୁ ଭୟ କରନ୍ତି ନାହିଁ, କିନ୍ତୁ କଂଗ୍ରେସର ବିପ୍ଳବପଥରେ ଯିବାପାଇଁ ପ୍ରସ୍ତୁତ ନୁହନ୍ତି, ଏମାନଙ୍କଦ୍ୱାରା ଏପରି ଗୋଟିଏ ମଧ୍ୟବର୍ତ୍ତୀ ଦଳ ଗଠିତ ହୋଇ ନିର୍ବାଚନ କାମ ହାତକୁ ନେବା ଉଚିତ୍ । ବହୁ ତର୍କ ବିତର୍କ ପରେ ନିଖିଳଭାରତ କଂଗ୍ରେସ କମିଟି ନିଜ ହାତରେ ନିର୍ବାଚନ କାର୍ଯ୍ୟ ନେଲେ । ମହାତ୍ମା ଗାନ୍ଧୀ ନିଜର ମତ ବଜାୟ ରଖିବା ପାଇଁ ଓ କଂଗ୍ରେସକୁ ବେଶୀ ସାହାଯ୍ୟ ପହଞ୍ଚାଇବା ପାଇଁ କଂଗ୍ରେସରୁ ଅଲଗା ହୋଇ ଯାଇଛନ୍ତି—ମାତ୍ର ଅଲଗା ହୋଇ ମଧ୍ୟ କଂଗ୍ରେସର ଜଣେ ହିସାବରେ କଂଗ୍ରେସର ନେତୃତ୍ୱ ଗ୍ରହଣ କରିଛନ୍ତି । ମହାତ୍ମା ଗାନ୍ଧୀ ନିଜେ ଇତିମଧ୍ୟରେ ଗ୍ରାମୋ-ଦ୍ୟୋଗର ପୁନରୁଦ୍ଧାର ଓ ପରିବୃଦ୍ଧି ପାଇଁ ଏକ ନିଖିଳଭାରତ ଗ୍ରାମୋଦ୍ୟୋଗ ସଂଘ ସ୍ଥାପନ କରିଛନ୍ତି, ଏଥିରେ ମୁଁ ଜଣେ ପ୍ରତିନିଧି ହୋଇ ଯାଇଛି । ତେଣେ ନୂତନ ଶାସନ ଆଇନ ପ୍ରବର୍ତ୍ତିତ ହେବା ଉପରେ । ଆମ ଓଡ଼ିଶା ପ୍ରଦେଶ ୧୯୩୬ ସାଲରେ ସ୍ୱତନ୍ତ୍ର ହୋଇଯାଇ ଲାଟଙ୍କ ସାକ୍ଷାତ୍ ଶାସନରେ ଚାଲିଛି । ଏ ସ୍ୱତନ୍ତ୍ର ପ୍ରଦେଶ କିପରି ହେବ ଓ ତା'ର ସମସ୍ତ ବ୍ୟାପାର କିପରି ଚାଲିବ, ସେଥିପାଇଁ ଆଗରୁ ଏକ କମିଟି ବସିଲି—ସେ କମିଟିରେ ମୋତେ ସାକ୍ଷ୍ୟ ଦେବାପାଇଁ ନିମନ୍ତ୍ରଣ ଆସିଥିଲି—ମାତ୍ର ମୁଁ ସାକ୍ଷ୍ୟ ନ ଦେଇ ମୋର ମତ ଦେଇ ପଠାଇ ଦେଇଥିଲି । କ୍ଷୁଦ୍ରତା ଦୃଷ୍ଟିରୁ ଓ ବର୍ତ୍ତମାନ ଶାସନର ଢଙ୍ଗ ବିଗ୍ଭରରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ଉଚିତ ନୁହେଁ ଓ ବ୍ରିଟିଶ ସରକାର ସିନ୍ଧୁକୁ ସ୍ୱତନ୍ତ୍ର କରି ଏକ ମୁସଲମାନ ପ୍ରଦେଶ ସୃଷ୍ଟି କରିଥିବା ହେତୁ ତରାଜୁ ଦଣ୍ଡି ଠିକ୍ ରଖିବା ପାଇଁ ଯଦି ଓଡ଼ିଶା ହିନ୍ଦୁ ପ୍ରଦେଶ ହିସାବରେ ସ୍ୱତନ୍ତ୍ର କରାଯାଏ, ତେବେ ଏହା କଲିକତା ଇଉନିଭରସିଟି ଓ ହାଇକୋର୍ଟ ଅଧୀନରେ ରହିବା ଉଚିତ ବୋଲି ମୁଁ ନାନା ଯୁକ୍ତି ଦେଇ ମତ ଦେଇଥିଲି । ମାତ୍ର ମତକୁ ବା ପଗ୍ଭରୁଛି କିଏ ? ଓଡ଼ିଶାରେ ନୂତନ ଆଇନ ଅନୁସାରେ ଯେ ବ୍ୟବସ୍ଥା ସଭା ଗଠିତ ହେବ, ସେଥିରେ ୬୦ ଜଣ ସଭ୍ୟ ହେବେ । କଂଗ୍ରେସ ବ୍ୟବସ୍ଥାସଭା କାର୍ଯ୍ୟ ଗ୍ରହଣ କରିବା ପରେ ସେ ଦିଗରେ ଓଡ଼ିଶାରେ ମଧ୍ୟ କାର୍ଯ୍ୟ ଆରମ୍ଭ ହେଲଣି । ସର୍ଦ୍ଦାର ବଲ୍ଲଭ ଭାଇ, ରାଜେନ୍ଦ୍ର ବାବୁ ଓ ମୌଲାନା ଆଜାଦ, ଜହରଲାଲ ନେହରୁ ସମସ୍ତେ ନିର୍ବାଚନରେ କଂଗ୍ରେସ ଯେପରି ଜିତିବ ସେଥିପାଇଁ ଖୁବ୍ ଜିଦ୍ ପ୍ରକାଶ କରୁଛନ୍ତି । ମହାତ୍ମା ଗାନ୍ଧି ମଧ୍ୟ ଏ ନିର୍ବାଚନରେ ମନ ଲଗାଇଥାନ୍ତି । ଏ ନିର୍ବାଚନରେ କଂଗ୍ରେସ ଜିତିଲେ ସତ୍ୟାଗ୍ରହରେ ପରାଜୟ ହେତୁ ଯେଉଁ ଅବସାଦ ଆସିଛି, ତାହା ଅପସାରିତ ହେବ ବୋଲି ସମସ୍ତେ ଭାବୁଥାଆନ୍ତି । ଧୀରେ ଧୀରେ ମହାତ୍ମା

ଗାନ୍ଧୀ ଓ ସମସ୍ତ କଂଗ୍ରେସ ନେତା ନିର୍ବାଚନରେ କଂଗ୍ରେସର ଜୟ ପାଇଁ ଉତ୍କଣ୍ଠିତ ହେଲେ ।

ପଣ୍ଡିତ ଜବାହରଲାଲ ନେହେରୁ ସେତେବେଳେ କଂଗ୍ରେସର ସଭାପତି । ସେ ନିର୍ବାଚନ ପୂର୍ବରୁ ଓଡ଼ିଶା ଗସ୍ତରେ ଆସିଥିଲେ ଓ କଟକ,ପୁରୀ ଏବଂ ଗଞ୍ଜାମ ଜିଲ୍ଲାରେ ଗସ୍ତକରି ନିର୍ବାଚନରେ କଂଗ୍ରେସକୁ ଭୋଟ ଦେବାପାଇଁ କହିଥିଲେ । ଏ ସମୟରେ ପଣ୍ଡିତ ଜବାହରଲାଲଙ୍କ ସହିତ ମୋର ବା ଅନ୍ୟ କର୍ମୀମାନଙ୍କର ସାକ୍ଷାତ ସୁଦ୍ଧା ହେବାର ସୁବିଧା ଦିଆଯାଇ ନ ଥିଲା । ପଣ୍ଡିତ ନୀଳକଣ୍ଠ ତାଙ୍କର ଗସ୍ତର ବନ୍ଦୋବସ୍ତ କରୁଥିଲେ, ମାତ୍ର ଜବାହରଲାଲଙ୍କ ସହିତ କର୍ମୀମାନଙ୍କର ସାକ୍ଷାତ ଓ ଆଲୋଚନା ଦରକାର ବୋଲି ସେ ଭାବି ନ ଥିଲେ । ପରେ ଯେତେବେଳେ ଜବାହରଲାଲଙ୍କ ସହିତ ମୋର ଘନିଷ୍ଠତା ହେଲା, ମୁଁ ଜାଣିଲି ଯେ ଏହି ସମୟରେ ବହୁ କଥା ମୋ ବିରୋଧରେ ତାଙ୍କୁ କୁହା ହୋଇଥିଲା ।

ଓଡ଼ିଶାରେ କଂଗ୍ରେସର ଜୟ ହେବା ଆବଶ୍ୟକ । ମୁଁ ଦେଖିଲି ଯେ ଏପରି ସମୟରେ ପରସ୍ପର ଭିତରେ ମତଭେଦକୁ ଯେତେ ଚପାଇ ରଖାଯାଏ, ସେତେ ଭଲ । ତେଣୁ ବ୍ରହ୍ମପୁରଠାରେ ବସିଥିବା ପ୍ରାଦେଶିକ କଂଗ୍ରେସ କମିଟିକୁ ମୁଁ ପ୍ରସ୍ତାବ ଦେଇଥିଲି ଯେ, ନିର୍ବାଚନର ସମସ୍ତ ଭାର ପଣ୍ଡିତ ନୀଳକଣ୍ଠ ଦାସଙ୍କ ଉପରେ ଦିଆଯାଉ । ସେ ଏ ଦିଗରେ ବଡ଼ ଉତ୍ସାହୀ, ଆଉ ମୁଖ୍ୟ ସେ ପ୍ରାଦେଶିକ କଂଗ୍ରେସ କମିଟି କର୍ତ୍ତା ହୋଇ ସେ ସମୟରେ ଥାଆନ୍ତି । ଏ ପ୍ରସ୍ତାବ ସର୍ବସମ୍ମତି କ୍ରମେ ଗୃହୀତ ହୋଇଥିଲା ଓ ତଦନୁସାରେ ପଣ୍ଡିତ ନୀଳକଣ୍ଠ ନିର୍ବାଚନ କାମ ଚଳାଇଲେ । ନିର୍ବାଚନରେ କଂଗ୍ରେସ ଯଶସ୍ୱୀ ହେଉ, ଏଥିପାଇଁ ଚେଷ୍ଟାକରିବା ମୋର କର୍ତ୍ତବ୍ୟ ଓ ମୁଁ ସମସ୍ତ ଶକ୍ତି ଦେଇ କଂଗ୍ରେସ ମନୋନୀତ ପ୍ରାର୍ଥୀଙ୍କ ଜୟ ପାଇଁ ଚେଷ୍ଟା କରିଥିଲି । ମାତ୍ର ଏହା ଗାନ୍ଧୀନୀତି ବିରୋଧୀ ବୋଲି ମନେ କରି ସେତେବେଳେ କେତେକ ଏ ନିର୍ବାଚନରେ ଯୋଗ ଦେଇ ନ ଥିଲେ । ଏ ନିର୍ବାଚନରେ ମୁଁ ଜଣେ ପ୍ରାର୍ଥୀ ହେବାପାଇଁ ମୋତେ ଅନେକ ବନ୍ଧୁ ଖୁବ୍ ପ୍ରବର୍ତ୍ତାଇ ଥିଲେ, ଏପରିକି ଆମ ଜିଲ୍ଲାର ସମସ୍ତ ବନ୍ଧୁ ମୋତେ ଧରି ବସିଥିଲେ ଯେ ମୁଁ ପ୍ରାର୍ଥୀ ହୁଏ । ମୁଁ ଦୃଢ଼ତାର ସହିତ ସମସ୍ତଙ୍କ ଅନୁରୋଧ ଉପରୋଧ ପ୍ରତ୍ୟାଖ୍ୟାନ କଲି । ମାତ୍ର ଏହି ନିର୍ବାଚନ ସମ୍ପର୍କରେ ଆମ ଜିଲ୍ଲାରେ କେତେକ କର୍ମୀଙ୍କ ସହିତ ମନୋମାଳିନ୍ୟ ଘଟିଥିଲା । ଏମାନେ ଜଗନ୍ନାଥ ଦାସଙ୍କୁ କଂଗ୍ରେସ ପ୍ରାର୍ଥୀ ରୂପେ ଗ୍ରହଣ କରିବା ପସନ୍ଦ କରୁ ନ ଥିଲେ । ଆଗରୁ କହିଛି ଯେ, ମୁଁ ତାଙ୍କୁ କଂଗ୍ରେସ ଭିତରକୁ ଆସିବା ପାଇଁ ଯଥେଷ୍ଟ ସାହାଯ୍ୟ କରିଛି, କଂଗ୍ରେସ ପ୍ରାର୍ଥୀ ରୂପେ ମନୋନୀତ ହେବାପାଇଁ ମୁଁ ମଧ୍ୟ ଚେଷ୍ଟା କରିଥିଲି,

କଂଗ୍ରେସ କମିଟି ଦ୍ୱାରା ସେ ମନୋନୀତ ହୋଇସାରଲେଣି; ମାତ୍ର ଯେଉଁମାନେ ତାଙ୍କୁ ପସନ୍ଦ କରୁ ନଥିଲେ, ସେମାନେ କଂଗ୍ରେସ ସିଦ୍ଧାନ୍ତ ହୋଇ ସାରିଲା ପରେ ମଧ୍ୟ ତାଙ୍କର ପ୍ରାର୍ଥୀତ୍ୱର ବିରୁଦ୍ଧାଚରଣ କରିବାର ଚେଷ୍ଟା କଲେ । ମୁଁ ଦୃଢ଼ ହୋଇ ଏ ବିଶୃଙ୍ଖଳା ବିରୁଦ୍ଧରେ ଛିଡ଼ା ହେଲି । ବାଲେଶ୍ୱର ଜିଲ୍ଲାରେ ସବୁ ନିର୍ବାଚନମଣ୍ଡଳୀ, କଟକ ଜିଲ୍ଲାର କେତେକ ନିର୍ବାଚନମଣ୍ଡଳୀ ଓ ପୁରୀ ଜିଲ୍ଲାର ଏକ ନିର୍ବାଚନ-ମଣ୍ଡଳୀରେ ମୁଁ ବୁଲି ବୁଲି ପ୍ରଚାର କରିଥିଲି । ମୌଲବି ମହମ୍ମଦ ହନିଫ୍ ବାଲେଶ୍ୱର ସମ୍ବଲପୁର ନିର୍ବାଚନମଣ୍ଡଳୀରୁ ମୁସଲମାନ ପ୍ରାର୍ଥୀ ହୋଇଥିଲେ, ତାଙ୍କୁ ମଧ୍ୟ ମୋର ଶକ୍ତିମତେ ସାହାଯ୍ୟ କରିଥିଲି । ଏ ନିର୍ବାଚନରେ ପାରଳା ମହାରାଜ ଏକ ଦଳ ଛିଡ଼ା କରାଇଥାନ୍ତି ଓ କନିକା ରାଜା ଏକ ଦଳ ଛିଡ଼ା କରାଇଥା'ନ୍ତି । ଏ ଦୁଇଟି ଦଳ ଅତି ହୀନ ଭାବରେ ନିର୍ବାଚନରେ ପରାଜିତ ହେଲେ—ବିଶେଷତଃ କନିକା ଦଳର ରାଜାଙ୍କ ଛଡ଼ା ଆଉ ସମସ୍ତେ ଅଧମ ପରାଜୟ ଭୋଗ କଲେ । ମୋର ଅତି ଆନନ୍ଦର ବିଷୟ ଏହା ଥିଲି ଯେ, ଶ୍ରୀ ଚକ୍ରଧର ବେହେରା କନିକାରାଜା ଦଳର ପ୍ରାର୍ଥୀଙ୍କୁ ହରାଇ ନିର୍ବାଚନରେ ଯଶସ୍ୱୀ ହେଲେ । ନିର୍ବାଚନରେ ଅଧିକ ସଂଖ୍ୟାରେ କଂଗ୍ରେସ ପ୍ରାର୍ଥୀ ନିର୍ବାଚିତ ହେଲେ । କେବଳ ଗଞ୍ଜାମ ଛଡ଼ା ଅନ୍ୟ ସବୁସ୍ଥାନ ରାଜା ମହାରାଜାଙ୍କ ପ୍ରାର୍ଥୀମାନେ ଭୋଟଦାତାମାନଙ୍କ ଦ୍ୱାରା ପରିତ୍ୟକ୍ତ ହେଲେ । ଭାରତରେ ଓଡ଼ିଶା ନିର୍ବାଚନ ପ୍ରଥମେ ହେଲା ଓ ଏ ନିର୍ବାଚନରେ କଂଗ୍ରେସର ଜୟ ଭାରତରେ ଅନ୍ୟତ୍ର ନିର୍ବାଚନ କାର୍ଯ୍ୟରେ ମଧ୍ୟ ଉତ୍ସାହ ଦେଇଥିଲା ।

ନିର୍ବାଚନ ପରେ କଂଗ୍ରେସ ମନ୍ତ୍ରୀପଦ ଗ୍ରହଣ କରିବ କି ନାହିଁ ଏ ବିଷୟରେ ବାଦାନୁବାଦ ଚାଲିଲା । ଏତେବେଳକୁ କେତେ ରକମର ଚିନ୍ତାସ୍ରୋତ ଚାଲିଥାଏ, ତାହା ଜାଣିବା କୌତୂହଳଜନକ । ଗୋଟିଏ ଚିନ୍ତାଧାରା ଥାଏ ଯେ, ନିର୍ବାଚନ ଇତ୍ୟାଦି ବିଶୁଦ୍ଧ ଗାନ୍ଧିନୀତି ବିରୋଧୀ; ଅତଏବ, ତା'ଠାରୁ ଦୂରରେ ରହିବା, ଦ୍ୱିତୀୟତଃ ନିର୍ବାଚନରେ ଯୋଗଦେଇ ମନ୍ତ୍ରୀପଦ ଗ୍ରହଣ ନ କରିବା—ଏହା ମୁଖ୍ୟତଃ କଂଗ୍ରେସ ସାମ୍ୟବାଦୀ ଦଳର ମତ ଥିଲା, ତୃତୀୟତଃ ମନ୍ତ୍ରୀପଦ ଗ୍ରହଣ କରି ଗାନ୍ଧିନୀତି ଅନୁସାରେ ଶାସନ କାର୍ଯ୍ୟ ଚଳାଇବାକୁ ଚେଷ୍ଟା କରିବା ଓ ଚତୁର୍ଥତଃ ଜେଲ ଯାଇ ତ୍ୟାଗ କରି ତା' ବଦଳରେ ପଦ ଗ୍ରହଣନିତାନ୍ତ ଆବଶ୍ୟକ, ଅନ୍ୟଥା ତ୍ୟାଗର ମୂଲ୍ୟ କିଛି ନାହିଁ । ଏ ଚାରୋଟି ଚିନ୍ତାଧାରା ଓଡ଼ିଶାରେ ମଧ୍ୟ ଚାଲିଥାଏ; ମାତ୍ର ଚତୁର୍ଥ ଦଳର ପ୍ରାଧାନ୍ୟ ଏଠି ବେଶୀ । ଏଣୁ ଭାରତୀୟ ରାଜନୈତିକ ପରିସ୍ଥିତିଠାରୁ ଓଡ଼ିଶାର ପରିସ୍ଥିତି ପୃଥକ ହୋଇଥାଏ ଓ ସେହି ହେଉଛି କାରଣ ଯାହା ପରେ ଅନେକ ଚିନ୍ତାବିଭ୍ରାଟ ଓ ତେଣୁ କର୍ମ-ବାଧା ଜନ୍ମାଇ ଥିଲା ।

## ୧୯୩୭–୧୯୪୦

୧୯୩୩ ମସିହା ସତ୍ୟାଗ୍ରହ ସ୍ଥଗିତ ହେବା ପରେ ମୁଁ କେବଳ ଆମ ଜିଲ୍ଲା କଂଗ୍ରେସ କମିଟିର ମେମ୍ବର ହୋଇ ରହିଥାଏ । ପ୍ରାଦେଶିକ କଂଗ୍ରେସ କମିଟି ବା ଭାରତ କଂଗ୍ରେସ କମିଟିର ସଭ୍ୟ ନ ଥାଏ । ୧୯୩୭ରେ ମୁଁ ପୁଣି ପ୍ରାଦେଶିକ କଂଗ୍ରେସ କମିଟିର ସଭ୍ୟ ହୋଇ ଆସିଲି । ପ୍ରାଦେଶିକ କଂଗ୍ରେସ କମିଟିର ପ୍ରଥମ ବୈଠକରେ ଯୋଗ ଦେବାପାଇଁ ମୁଁ କଟକ ଆସିଲି । ଇତିମଧ୍ୟରେ ପଣ୍ଡିତ ନୀଳକଣ୍ଠଙ୍କ ଦଳ ଓ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ସାମ୍ୟବାଦୀ ଦଳ ଏକ ସଙ୍ଗରେ ମିଶି ନିର୍ବାଚନ କାର୍ଯ୍ୟ କରୁଥିଲେ । ନବ ବାବୁଙ୍କର କାର୍ଯ୍ୟକ୍ରମ ଥାଏ ଯେ, ନୀଳକଣ୍ଠ ବାବୁଙ୍କ ବ୍ୟବସ୍ଥାପକସଭାର କାର୍ଯ୍ୟକ୍ରମ ଛାଡ଼ିଦେଇ କଂଗ୍ରେସ ଅନୁଷ୍ଠାନକୁ ଭଲ କରି ଚଳାଇ ଜନସାଧାରଣଙ୍କ ଭିତରେ ତା' ଜରିଆରେ କାମ ହେଉ । ସେ ଦେଖୁଥାଆନ୍ତି ଯେ ଜନତା ଭିତରେ କାର୍ଯ୍ୟ ବାଧ୍ୟମତେ ନ ହେଲେ, କେବଳ ବ୍ୟବସ୍ଥାପକସଭା କାର୍ଯ୍ୟକ୍ରମ ଦେଶକୁ ବିପ୍ଳବ ପଥରୁ ଦୂରକୁ ନେଇଯିବ । ମାତ୍ର ତେଣେ ନୀଳକଣ୍ଠ ବାବୁ ଦ୍ୱିଧାରେ ପଡ଼ିଥାଆନ୍ତି । କଂଗ୍ରେସ ମନ୍ତ୍ରୀପଦ ଗ୍ରହଣ କରିବ କି ନାହିଁ ତା ସ୍ଥିର ନାହିଁ । ଯଦି ନ କରନ୍ତି, ତେବେ ପ୍ରାଦେଶିକ ବ୍ୟବସ୍ଥାପକସଭାର ସଭ୍ୟ ହୋଇ ରହିବା ଠାରୁ ବରଂ ଯେପରି ସେ କେନ୍ଦ୍ର ବ୍ୟବସ୍ଥାପକସଭାର ସଦସ୍ୟ ଅଛନ୍ତି, ସେପରି ରହିବା ସମସ୍ତ ବିଗ୍ଭରରୁ ଶ୍ରେୟସ୍କର । ଏହି ଦ୍ୱିଧାବଶତଃ ସେ ପ୍ରାଦେଶିକ ବ୍ୟବସ୍ଥାପକସଭାର ସଦସ୍ୟପାଇଁ ପ୍ରାର୍ଥୀ ହୋଇ ନ ଥାନ୍ତି । ମାତ୍ର ଯଦି କଂଗ୍ରେସ ମନ୍ତ୍ରୀପଦ ଗ୍ରହଣ କରନ୍ତି, ସେତେବେ କେନ୍ଦ୍ର ବ୍ୟବସ୍ଥା ସଭାରୁ ବିଦାୟ ନେଇ ପୁଣି ପ୍ରାଦେଶିକ ବ୍ୟବସ୍ଥା ସଭାର କୌଣସି ସଭ୍ୟଙ୍କର ଇସ୍ତଫା ଦିଆଇବାକୁ ବନ୍ଦୋବସ୍ତ କରି ତାଙ୍କ ସ୍ଥାନରେ ସଭ୍ୟ ହୋଇ ମନ୍ତ୍ରୀ ହେବାକୁ ହେବ, ଏପରି ଅନିଶ୍ଚିତ ଅବସ୍ଥାରେ କଂଗ୍ରେସ ଅନୁଷ୍ଠାନ ଉପରୁ କର୍ତ୍ତୃତ୍ୱ ଛାଡ଼ିଦେବା ବଳିଷ୍ଠତାର କାର୍ଯ୍ୟ ହେବ ନାହିଁ; ଏଣୁ ନୀଳକଣ୍ଠ ବାବୁ ପ୍ରାଦେଶିକ କଂଗ୍ରେସ କମିଟିରେ କର୍ତ୍ତୃତ୍ୱ ରଖିବା ପାଇଁ ବଦ୍ଧପରିକର । ମାତ୍ର ଯେଉଁମାନେ ବ୍ୟବସ୍ଥାପକସଭାର କାର୍ଯ୍ୟକ୍ରମରେ ସେତେ ଉତ୍ସାହୀ ନୁହନ୍ତି, ସେମାନେ କଂଗ୍ରେସ ସଙ୍ଗଠନକୁ ସେ କାର୍ଯ୍ୟକ୍ରମରୁ ଯେତେଦୂର ସମ୍ଭବ ଦୂରରେ ରଖିବାକୁ ବଦ୍ଧପରିକର । ଏହିପରି ଟଣାଟଣି ଲାଗିଥାଏ । ସେତେବେଳକୁ କଂଗ୍ରେସ ଅନୁଷ୍ଠାନର ଅବସ୍ଥା ଏପରି ଯେ, ସମୁଦାୟ ଓଡ଼ିଶାରୁ ମୋଟେ ଆଠ ଦଶ ହଜାର ମେମ୍ବର ହୋଇଥାନ୍ତି ଓ ସେହି ଅନୁପାତରେ ମୋଟେ ପଚାଶ କମ୍ବା ତିରିଶ ଜଣ ପ୍ରାଦେଶିକ କଂଗ୍ରେସ କମିଟିର ସଭ୍ୟ ଥାଆନ୍ତି । ପ୍ରାଦେଶିକ କଂଗ୍ରେସ କମିଟିର ସ୍ୱତନ୍ତ୍ର ଅଫିସଟିଏ ମଧ୍ୟ ନ ଥାଏ । ବିଶ୍ୱନାଥ ମାଳମଣି ପ୍ରଧାନ ଅଫିସକୁ ବସ୍ତାନିଟିରେ ବାନ୍ଧି

ଏଠି ସେପରି ବସିଥାନ୍ତି । ଗତ କେତେବର୍ଷ ମଧ୍ୟରେ ଅନୁଷ୍ଠାନ କାର୍ଯ୍ୟତଃ ଲୁପ୍ତ ପ୍ରାୟ—କେବଳ ଏହାର ପ୍ରଭାବ ଜନସାଧାରଣଙ୍କ ଉପରେ ଥାଏ ଓ ଏ ପ୍ରଭାବକୁ ବ୍ୟବହାର କରିବା ପାଇଁ କେତେ ଜଣ ଲୋକ ଅନୁଷ୍ଠାନର ନାମ ଧରି ବସିଥାନ୍ତି । ଶ୍ରୀ ଗୋପବନ୍ଧୁ ଚୌଧୁରୀ ଓ, ଶ୍ରୀମତୀ ରମା ଦେବୀ ପ୍ରମୁଖ କଂଗ୍ରେସ ନେତୃବର୍ଗ ଯେଉଁମାନଙ୍କ ତ୍ୟାଗ ଓ ନିଷ୍ଠା ଓଡ଼ିଶାରେ ଅଦ୍ୱିତୀୟ, ସେମାନେ କଂଗ୍ରେସ ଅନୁଷ୍ଠାନରୁ ନିଜକୁ ଅଲଗା କରି ନେଇଥାନ୍ତି । ଗୋପବାବୁ ମହାତ୍ମା ଗାନ୍ଧୀଙ୍କ ହରିଜନ ଗସ୍ତ ପରେ ପରେ ଗାନ୍ଧୀ ସେବା ସଂଘ ଅନ୍ତର୍ଭୁକ୍ତ ହୋଇ ବରି ଗ୍ରାମରେ ଏକ ଆଶ୍ରମ କରି ସେହିଠାରେ ଥାଆନ୍ତି । ଓଡ଼ିଶାରେ ଖଦୀ କାର୍ଯ୍ୟ ପାଇଁ ଜୀବରାମଜୀ ଯେଉଁ ଏକଲକ୍ଷ ଟଙ୍କା ଗାନ୍ଧୀ ସେବାସଂଘକୁ ଦାନ କରିଥିଲେ, ତାର ପରିଚାଳନା ଭାର ଗାନ୍ଧୀ ସେବାସଂଘ ତରଫରୁ ଗୋପବାବୁଙ୍କ ଉପରେ ଥାଏ । ଆଶ୍ଚର୍ଯ୍ୟ ହରିହର ଏ ବର୍ଷ ପ୍ରାଦେଶିକ କଂଗ୍ରେସ କମିଟିର ସଭ୍ୟ ଥାଆନ୍ତି; ମାତ୍ର ତାଙ୍କ ମତରେ ନୀଳକଣ୍ଠ ବାବୁ ହିଁ କଂଗ୍ରେସ ଅନୁଷ୍ଠାନର କର୍ତ୍ତା ହୋଇ ରହିବା ଉଚିତ, ମାତ୍ର ଏଥିରେ ନବବାବୁ ପ୍ରଭୃତି ରାଜି ନ ଥାନ୍ତି । ଏସବୁ ବିଷୟ କଟକରେ ବିସ୍ତୃତ ଭାବରେ ଆଲୋଚିତ ହେଲା—ଆଲୋଚନାର ବିଷୟବସ୍ତୁ ଏହା ଥିଲା ଯେ, କଂଗ୍ରେସ ଅନୁଷ୍ଠାନକୁ ତ୍ୟାଗ ବିନାମୂଲ୍ୟରେ କ୍ଷମତା ଆହରଣ ପାଇଁ ଛାଡ଼ିଦିଆଯିବ ନା କଂଗ୍ରେସ ଅନୁଷ୍ଠାନକୁ ଜୀବନ୍ତ ଭାବରେ ଚଳାଇ ଜନତା ମଝିରେ ଏକ ବିପ୍ଳବର କେନ୍ଦ୍ର କରି ରଖାଯିବ । ଯେବେ କୌଣସି ସମୟରେ ଦଳେ ସଂଘର୍ଷର ସମ୍ମୁଖୀନ ହେବାକୁ ହେବ, ତେବେ ଆଜି କାହିଁକି ନ ହେବ ! ଏଥିରେ କାହାରି ବ୍ୟକ୍ତିଗତ ପ୍ରଶ୍ନ କିଛି ନ ଥିଲା । ମୋତେ ନବବାବୁ ପ୍ରମୁଖ ସହକର୍ମୀମାନେ ଆସି ଧରିଲେ ଯେ, ମୁଁ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ହେବାପାଇଁ ସମ୍ମତ ହେବି । ସେତେବେଳେ ମୁଁ ନିଜେ କର୍ମମନ୍ଦିର ପ୍ରଭୃତି ସ୍ଥାନୀୟ କାର୍ଯ୍ୟରେ ଏତେ ଜଡ଼ିତ ଥାଏ ଯେ ମୋତେ ଏଥିରେ ସମ୍ମତ ହେବାପାଇଁ ଦ୍ୱିଧାବୋଧ ହେଲା । ଶେଷରେ ସମୁଦାୟ ବିଷୟ ବିଚାର କରି ମୁଁ ରାଜି ହେବାକୁ ବାଧ୍ୟ ହେଲି । ପ୍ରାଦେଶିକ କଂଗ୍ରେସ କମିଟି ବୈଠକରେ ଏକ ଦଳରେ ପଣ୍ଡିତ ନୀଳକଣ୍ଠଙ୍କ ନାମ ଓ ଅନ୍ୟଦଳରେ ମୋର ନାମ ସଭାପତି ପଦ ପାଇଁ ପ୍ରସ୍ତାବିତ ହେଲା । ଗୋଟିଏ ମାତ୍ର ଅଧିକ ଭୋଟରେ ମୁଁ ନିର୍ବାଚିତ ହୋଇଗଲି । ମାତ୍ର ନୀଳକଣ୍ଠ ବାବୁ ଓ ତାଙ୍କର ସମର୍ଥକମାନେ ଏଥିରେ ଏତେ ବିଚଳିତ ହୋଇ ପଡ଼ିଲେ ଯେ, ସେମାନେ ନାନା ପ୍ରକାର ବିଶୃଙ୍ଖଳା ସୃଷ୍ଟି କରିବାର ଚେଷ୍ଟା କଲେ । ଏହି ସମୟରେ ଆମ ଜିଲ୍ଲାର ଯେଉଁ କର୍ମୀମାନେ ମୋ ପ୍ରତି ଅସନ୍ତୁଷ୍ଟ ଥିଲେ ଏବଂ ଯେଉଁମାନେ ଗାନ୍ଧୀ ସେବାସଂଘ ଓ ହରିଜନ ସେବାସଂଘର କାମ କରୁଥିଲେ, ସେମାନେ ପଣ୍ଡିତ ନୀଳକଣ୍ଠଙ୍କ ସାହାଯ୍ୟରେ ଆମ ଜିଲ୍ଲାରେ ଦୁଇ ଗୁଣ୍ଡା ସଙ୍ଘ କରି ମୋତେ ନିନ୍ଦିତ କରିବାର ଉଦ୍ୟମ କରିଥିଲେ ।

ମାତ୍ର ସେଥିରେ ସେମାନେ ସଫଳ ହୋଇ ନ ଥିଲେ । ଦୁଃଖର ବିଷୟ ଅନେକ ଆଦୌ ଭାବି ପାରୁ ନଥାନ୍ତି ଯେ, ଦେଶରେ ବହୁ ସଂଖ୍ୟକ ଲୋକ ଅଛନ୍ତି ଯେଉଁମାନେ ପଦ ଓ ଅଧିକାର ପାଇଁ ଆଦୌ ଲାଳାୟିତ ନୁହନ୍ତି ଓ ଯେଉଁମାନେ ଦେଶରେ ଗୋଟିଏ ବଡ଼ ରକମର ବିପ୍ଳବ ଘଟିଲେ ଏବଂ ସେଥିରେ ନିଜେ କିଛି ଅଂଶ ଗ୍ରହଣ କରିପାରିଲେ ନିଜକୁ କୃତାର୍ଥ ମନେ କରିବେ । ଅପରନ୍ତୁ ସେମାନେ ବରାବର ଭାବୁଥାନ୍ତି ଯେ ସମସ୍ତେ ପଦ ଅଧିକାର ପାଇଁ ବ୍ୟାକୁଳ ଏବଂ ଆଉ ସବୁ କଥା କେବଳ ଭିତର ଉଦ୍ଦେଶ୍ୟ ସିଦ୍ଧି ପାଇଁ କୌଶଳ । ମୁଁ ସଭାପତି ନିର୍ବାଚିତ ହେବା ମାତ୍ରକେ ଓଡ଼ିଶାର ଲାଟ ମୋତେ ତାଙ୍କୁ ଦେଖା କରିବା ପାଇଁ ଅନୁରୋଧ କଲେ । ସେତେବେଳକୁ କଂଗ୍ରେସ ମନ୍ତ୍ରୀପଦ ଗ୍ରହଣ କରିବ କି ନାହିଁ ଠିକ୍ ହୋଇ ନ ଥାଏ । ଲାଟସାହେବ କଂଗ୍ରେସର ସ୍ଥିତି ଜାଣିବା ପାଇଁ ଚାହିଁଥିଲେ ଓ ମୁଁ ତାଙ୍କ ସହିତ ଆଲୋଚନା କରି ସମସ୍ତ ବିଷୟ ବୁଝାଇ ଦେଇଥିଲି । ଏ ଲାଟ୍‌ସାହେବ ଯେତେବେଳେ କମିଶନର ଥିଲେ, ସେତେବେଳଠାରୁ ମୋର ତାଙ୍କ ସହିତ ଆଳାପ ଥିଲା—ତା'ର ସୁବିଧା ନେଇ ସେ ମୋତେ କଂଗ୍ରେସ ନିର୍ଦ୍ଦେଶକୁ ଅନେଇ ନ ବସି ମନ୍ତ୍ରୀତ୍ୱ ଗ୍ରହଣର ପ୍ରଲୋଭନ ମଧ୍ୟ ଦେଖାଇଥିଲେ । ମାତ୍ର ସେ ଜାଣିପାରିଲେ ଯେ କଂଗ୍ରେସ ଶୃଙ୍ଖଳା ସେପରି ନରମ ନୁହେଁ । ଏଣେ ଓଡ଼ିଶାରୁ ପଣ୍ଡିତ ଜବାହରଲାଲଙ୍କ ପାଖକୁ ଚିଠି ଯାଇଥାଏ ଯେ, ମୁଁ ମନ୍ତ୍ରୀ ହେବାପାଇଁ ବ୍ୟାକୁଳ ହୋଇ ପଣ୍ଡିତ ନୀଳକଣ୍ଠଙ୍କୁ ଅନ୍ୟାୟ ଭାବରେ ସଭାପତି ନିର୍ବାଚନରେ ପରାସ୍ତ କଲି । ଜବାହରଲାଲ ସେତେବେଳେ ମନ୍ତ୍ରୀତ୍ୱ ଗ୍ରହଣର ବିରୋଧୀ ଥିଲେ । ଖବର କାଗଜରେ ଯେତେବେଳେ ପଢ଼ିଲେ ଯେ, ଲାଟଙ୍କ ସହିତ ମୋର ସାକ୍ଷାତ ହୋଇଛି, ସେ ମୋ ନିକଟକୁ ଟେଲିଗ୍ରାମ ପଠାଇଥିଲେ କୈଫିୟତ୍ ଦେବାପାଇଁ । ତାଙ୍କର ସନ୍ଦେହ ହୋଇଥିଲା ବାସ୍ତବିକ ମନ୍ତ୍ରୀତ୍ୱ ପାଇଁ ମୁଁ ଲାଟ ସାହେବଙ୍କୁ ଦେଖାକରିଛି ଓ ପ୍ରାଦେଶିକ କଂଗ୍ରେସ କମିଟିରେ ଗୋଳମାଳ ସୃଷ୍ଟି କରିଛି । ମୁଁ ଖୁବ୍ କଡ଼ାରେ ଲେଖି କୈଫିୟତ୍ ଦେଇଥିଲି, ଯାହା ଫଳରେ ପଣ୍ଡିତ ଜବାହରଲାଲଙ୍କୁ ମୋତେ କ୍ଷମା ମାଗିବାକୁ ହୋଇଥିଲା ।

ପ୍ରାଦେଶିକ କଂଗ୍ରେସ କମିଟିର ସମ୍ପାଦକ ଶ୍ରୀ ନବକୃଷ୍ଣ ଚୌଧୁରୀ ହେଲେ । ଆମ୍ଭେମାନେ ସମସ୍ତେ ଚିନ୍ତା କରି କଂଗ୍ରେସ ଅନୁଷ୍ଠାନକୁ ଜବରଦସ୍ତ କରିବା ପାଇଁ ଏକ କର୍ମ-ଯୋଜନା ପ୍ରସ୍ତୁତ କଲୁଁ । ପ୍ରଥମେ ପ୍ରାଦେଶିକ କଂଗ୍ରେସ କମିଟି ଅଫିସ ପାଇଁ ଗୋଟିଏ ଘର ଭଡ଼ା ନିଆ ହେଲା—ବିଧିମତେ ଅଫିସ ଖୋଲିଲା । ତା'ପରେ ସତ୍ୟାଗ୍ରହ ପରଠାରୁ ଇତସ୍ତତଃ ହୋଇଯାଇଥିବା କର୍ମୀମାନଙ୍କୁ ସାହସ, ଉତ୍ସାହ ଓ ସାହାଯ୍ୟ ଦେଇ ସଙ୍ଗଠିତ କରିବାର ଉଦ୍ୟମ କଲୁ । ଏଥିପାଇଁ ଗୋଟିଏ ଅର୍ଥ ପାଣ୍ଠି କରିଥିଲୁ । ଏହାଦ୍ୱାରା କିଛି ଟଙ୍କା ଆଦାୟ ହୋଇଥିଲା ଓ

ସେଥିରୁ ମୁଁ ଏବଂ କଟକର କେତେ ଜଣ କର୍ମୀ ମାସିକ କିଛି କିଛି ଅର୍ଥ ସାହାଯ୍ୟ ପାଉଥିଲେ । ଓଡ଼ିଶାର କଂଗ୍ରେସ କର୍ମୀଙ୍କର ଏପରି ଦୁରବସ୍ଥା ଥିଲା ଯେ, ମାସିକ ପ୍ରତ୍ୟେକଙ୍କୁ ଚାରି ପାଞ୍ଚ ଟଙ୍କା ଦେଇଥିଲେ ଅନେକ ପୂରା ସମୟ ଦେଇ କାମ କରି ପାରିଥାନ୍ତେ—ମାତ୍ର ସେତିକ ସୁଦ୍ଧା ବନ୍ଦୋବସ୍ତ ହୋଇ ପାରୁ ନ ଥିଲା । ଏ ଅଭାବ ଦୂର କରିବାପାଇଁ ମୁଁ ଉଦ୍ୟମ କରିଥିଲି, ଏହାଛଡ଼ା ଚାରିଆଡ଼େ ସଭା ସମିତି କରାଇବାର ବନ୍ଦୋବସ୍ତ କରିଥିଲି । ଏହି ସମୟରେ ବ୍ୟବସ୍ଥାସଭାର ଦଳପତି ନିର୍ବାଚନର ବେଳ ଆସିଗଲା । ବ୍ୟବସ୍ଥାସଭାର ଦଳପତି ପାଇଁ କଂଗ୍ରେସ ସାମ୍ୟବାଦୀ ଦଳ ଶ୍ରୀ ନିତ୍ୟାନନ୍ଦ କାନୁନଗୋଙ୍କୁ ବାଛିଲେ । ଆଚାର୍ଯ୍ୟ ହରିହର ଦାସ ପ୍ରମୁଖ ବ୍ୟକ୍ତିମାନେ ଶ୍ରୀ ବିଶ୍ୱନାଥ ଦାସଙ୍କୁ ପସନ୍ଦ କରୁଥାନ୍ତି । ଶେଷରେ ନିର୍ବାଚନରେ ଶ୍ରୀ ବିଶ୍ୱନାଥ ଦାସ ଦଳପତି ରୂପେ ନିର୍ବାଚିତ ହେଲେ । ବିଶ୍ୱନାଥ ବାବୁ ମୂଳରୁ କଂଗ୍ରେସରେ ଥିଲେ । ତାଙ୍କର ମାନ୍ଦ୍ରାଜ ବ୍ୟବସ୍ଥାସଭାରୁ ଅନେକ ବର୍ଷର ଅଭିଜ୍ଞତା ଥିଲା । ସେ ୧୯୩୦ ସତ୍ୟାଗ୍ରହରେ ବର୍ଷକ ପାଇଁ ଜେଲ୍ ଯାଇଥିଲେ; ତଥାପି ସେ କଂଗ୍ରେସ ମହଲର ଅନ୍ତ ଭିତରର ଲୋକ ନ ଥିଲେ । ତେଣୁ ସେ ଦଳପତି ହେବାରୁ କଂଗ୍ରେସ ମହଲରେ ସେତେ ଉତ୍ସାହ ଦେଖାଗଲା ନାହିଁ । ମାତ୍ର ଅନ୍ୟ ଉପାୟ ଆଉ ନାହିଁ । ତାଙ୍କୁ ପୁରା ସମର୍ଥନ କରିବୁ ବୋଲି ମୁଁ ପ୍ରତିଶ୍ରୁତି ଦେଲି; ମାତ୍ର ଏଣେ କେତେକ ମୋଠାରୁ ଆଶା କରୁଥାନ୍ତି ଯେ ମୁଁ ବିଶ୍ୱନାଥ ବାବୁଙ୍କୁ ସମର୍ଥନ ନ କରି ଏପରି ଆନ୍ଦୋଳନ ଲଗାଏ, ଯାହା ଫଳରେ ପଣ୍ଡିତ ନୀଳକଣ୍ଠ କେନ୍ଦ୍ର ବ୍ୟବସ୍ଥାସଭାରୁ ଇସ୍ତଫା ଦେଇ ଆସି ପ୍ରାଦେଶିକ ବ୍ୟବସ୍ଥା ସଭାର ସଭ୍ୟ ହୋଇ ପ୍ରଧାନମନ୍ତ୍ରୀ ହୁଅନ୍ତୁ । ସେତେବେଳକୁ କଂଗ୍ରେସ ମନ୍ତ୍ରୀତ୍ୱ ଗ୍ରହଣ କରିବାର ସୂଚନା ମିଳିଯାଇଥିଲା । ମାତ୍ର ଏହା କରିବା ସମୀଚୀନ ଓ କଂଗ୍ରେସର ହିତବର୍ଦ୍ଧକ ବୋଲି ମନେ କଲି ନାହିଁ । ଗୋଦାବରୀଶ ବାବୁ ଯେ କି ମୂଳରୁ କଂଗ୍ରେସ ସହିତ ନିଷ୍ଠାପର ଭାବରେ ସଂପୃକ୍ତ ହୋଇ ନାହାନ୍ତି ଓ ଯେ କୋଅପରେଟିଭ୍ ବ୍ୟାଙ୍କ ଟଙ୍କା ଆତ୍ମସାତ କରିବା ଅପରାଧରେ ୧୯୨୩ ମସିହାରେ ଦଣ୍ଡିତ ହୋଇ ସୁଦ୍ଧା ସାଧାରଣ ଜୀବନରେ ଅନେକଙ୍କ ଦ୍ୱାରା ପ୍ରଶଂସିତ ହେଉଥାନ୍ତି, ସେ ଏଥର ଯେ କେବଳ କଂଗ୍ରେସ ମନୋନୀତ ପ୍ରାର୍ଥୀ ରୂପେ ନିର୍ବାଚିତ ହେଲେ ତାହା ନୁହେଁ, ସେ ମନ୍ତ୍ରୀ ବା ବ୍ୟବସ୍ଥାସଭାର ସଭାପତି ହେବାପାଇଁ ମଧ୍ୟ ଅଭିଳାଷୀ ଥିଲେ । ମାତ୍ର ଦଳରେ ତାଙ୍କ ପକ୍ଷରେ ବେଶୀ ମତ ନ ହେବାରୁ ସେ ସଭାପତି ପାଇଁ ମନୋନୀତ ନ ହୋଇ ମୁକୁନ୍ଦ ପ୍ରସାଦ ଦାସ ହେଲେ । ଏ ସମ୍ପର୍କରେ ମୁଁ ନିଜକୁ ନିଜେ ଏତେ ଅଲଗା ରଖିଥିଲି ଯେ, ଉଭୟ ମୋଠାରୁ ସାହାଯ୍ୟ ଆଶା କରି ନିରାଶ ହେଲେ ଓ ମୋ ଉପରେ ଅସନ୍ତୁଷ୍ଟ ହେଲେ । ମୋଟ କଥା ଏହିପରି ଛିଡ଼ା ହେଲା ଯେ, ଯେଉଁମାନେ ୧୯୩୦ ମସିହାରୁ ଜେଲ୍ ଭିତରୁ

ଗଛକୁ ବଢ଼ିବାର ଓ ଫଳି ଧରିବାର ଦେଖି ପାଚିବା ପର୍ଯ୍ୟନ୍ତ ଅପେକ୍ଷା କରି ଅଣ୍ଟାଭିଡ଼ି ପାଚିଲା ଫଳ ତୋଳିବା ପାଇଁ ଯାଉଥିଲେ, ସେତେବେଳେ ଦେଖିଲେ ଯେ ଆଉ ସବୁ କିଏ କୁଆଡ଼ୁ ଆସି ସବୁ ଫଳ ନେଇ ଗ୍ଲଲିଗଲେ ଓ ସେମାନଙ୍କ ଭାଗରେ କିଛି ପଡ଼ିଲା ନାହିଁ । ଏହା ହିଁ ସେମାନଙ୍କ ପକ୍ଷରେ ବିଷମ ନୈରାଶ୍ୟର କାରଣ ହେଲା ଓ ତଜ୍ଜନିତ ସମସ୍ତ କ୍ରୋଧ ମୋର ମୁଣ୍ଡରେ ଅଜାଡ଼ି ହେଲା; କାରଣ ସେମାନେ ଭାବିଲେ ଯେ ମୋର ସମର୍ଥନ ବିନା ବିଶ୍ୱନାଥ ବାବୁ ଏକପାଦ ସୁଦ୍ଧା ଅଗ୍ରସର ହୋଇ ପାରି ନ ଥାନ୍ତେ—ଯେଉଁ ଭାବନା ଭ୍ରମାତ୍ମକ ଥିଲା । ମୁଁ, କର୍ତ୍ତବ୍ୟ ହିସାବରେ ଯାହା ଦଳରେ ସ୍ଥିର ହେଲା, ତାକୁ ହିଁ ସମର୍ଥନ କରିବା ଉଚିତ ମନେ କଲି । ଭବିଷ୍ୟତ ଘଟଣାବଳୀରୁ ସ୍ପଷ୍ଟ ପ୍ରମାଣିତ ହେଲା ଯେ, ବିଶ୍ୱନାଥ ଦାସଙ୍କୁ ଦଳପତି ନିର୍ବାଚନ କରିବା ଠିକ୍ ହୋଇଥିଲା ଓ ତାହା ନ ହୋଇଥିଲେ ଓଡ଼ିଶାରେ କଂଗ୍ରେସ ଗ୍ଲରଖାର ହୋଇଯାଇଥାନ୍ତା ।

ବର୍ତ୍ତମାନ କଂଗ୍ରେସ ମନ୍ତ୍ରିତ୍ୱ ଗ୍ରହଣ କରିବାର ପ୍ରସ୍ତାବ ବାକି ଥାଏ । ଦିଲ୍ଲୀରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକରେ କଂଗ୍ରେସ ମନ୍ତ୍ରିତ୍ୱ ଗ୍ରହଣ କରିବାର ସ୍ଥିର କଲା । ଏ ବୈଠକ ସାଙ୍ଗରେ କଂଗ୍ରେସର ପ୍ରଧାନ ପ୍ରଧାନ ବ୍ୟକ୍ତିମାନଙ୍କର ଏକ ସମ୍ମିଳନୀ ମଧ୍ୟ ହୋଇଥିଲା । ସେଥିରେ ଯୋଗ ଦେବାପାଇଁ ଓଡ଼ିଶାରୁ ଅନେକ ଯାଇଥିଲେ । ସେଇଠି ଜଣାଗଲା, ଓଡ଼ିଶା ବ୍ୟବସ୍ଥାପକସଭାର ନଅ ଜଣ ସଭ୍ୟ କଂଗ୍ରେସ କାର୍ଯ୍ୟ ନିର୍ବାହକ ସମିତିକୁ ଦରଖାସ୍ତ କରିଛନ୍ତି ଯେ, ପଣ୍ଡିତ ନୀଳକଣ୍ଠଙ୍କୁ ପ୍ରଦେଶର ଦଳପତି ଦେବାପାଇଁ କେନ୍ଦ୍ର ବ୍ୟବସ୍ଥାପକସଭାରୁ ଇସ୍ତଫା ଦେବାକୁ ଅନୁମତି ଦିଆଯାଉ । ଏହିପରି ଦରଖାସ୍ତ ନରିମେନ୍‌ଙ୍କ ସମ୍ବନ୍ଧରେ ବମ୍ବେରୁ ମଧ୍ୟ କେତେଜଣ ବ୍ୟବସ୍ଥାପକସଭାର ସଦସ୍ୟ କରିଥାନ୍ତି । କାର୍ଯ୍ୟ ନିର୍ବାହକ ସମିତି ଏ ସମ୍ପର୍କରେ ବିଶ୍ୱନାଥ ଦାସ ଓ ନୀଳକଣ୍ଠ ଦାସଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶୁଣିଲେ । ମୁଁ କେବଳ ନୀରବ ଦର୍ଶକ ହୋଇ ବସିଥିଲି ମାତ୍ର । ମାତ୍ର ମୋ ଠାରୁ ଆଶା କରାଯାଉଥାଏ ଯେ, ମୁଁ କହିବି ନୀଳକଣ୍ଠ ବାବୁ ଦଳପତି ନ ହେଲେ ଓଡ଼ିଶାରେ କାର୍ଯ୍ୟ ଚଳିବ ନାହିଁ । ଏହା ମୁଁ କହିଲି ନାହିଁ ବା କହିବାର କାରଣ ମଧ୍ୟ ନ ଥିଲା । ସବୁ କଥା ବିଗ୍ଲର କରି କାର୍ଯ୍ୟ ନିର୍ବାହକ ସମିତି ନିର୍ଦ୍ଦେଶ ଦେଲେ ଯେ ବିଶ୍ୱନାଥ ଦାସଙ୍କୁ ଦଳପତି ରୂପେ ନିର୍ବାଚନ କରିବା ଠିକ୍ ହୋଇଛି ଓ ପଣ୍ଡିତ ନୀଳକଣ୍ଠ କେନ୍ଦ୍ର ବ୍ୟବସ୍ଥାପକସଭାରୁ ଇସ୍ତଫା ଦେଇପାରିବେ ନାହିଁ ।

ତାପରେ ବିଶ୍ୱନାଥବାବୁ ପ୍ରଧାନମନ୍ତ୍ରୀ ହୋଇ ନିତ୍ୟାନନ୍ଦ ବାବୁ ଓ ବୋଧରାମ ବାବୁଙ୍କୁ ମନ୍ତ୍ରୀ ହିସାବରେ ନେଲେ । ବରାବର ନିଖିଳ ଭାରତ କଂଗ୍ରେସ କମିଟିକୁ ଲେଖା ଲେଖି ଗ୍ଲଲିଲା ଯେ, ଯାହା ହୋଇଛି ଠିକ୍

ହୋଇନାହିଁ । ତା ପରେ, ରାଜେନ୍ଦ୍ର ବାବୁ ଆସି, ସମସ୍ତ ବିଷୟ ବୁଝି ମତ ଦେଇଗଲେ ଯେ, ଯାହା ହୋଇଛି ତାହାଛଡ଼ା ଅନ୍ୟ କିଛି ହେବାର ଉପାୟ ନାହିଁ । ଏହା ପରେ ବିଶ୍ୱନାଥ ବାବୁ ମନ୍ତ୍ରୀଦଳ ଗଠନ କରି କାର୍ଯ୍ୟ ଚଳାଇଲେ । ମାତ୍ର ତତ୍ପୂର୍ବରୁ ପାରଳା ମହାରାଜା ଏକ ଅସ୍ଥାୟୀ ମନ୍ତ୍ରୀଦଳ ଗଠନ କରିଥିଲେ । ତା' ବିରୋଧରେ ଘୋରଆନ୍ଦୋଳନ ସବୁପ୍ରମିତ କଂଗ୍ରେସ କମିଟି ତରଫରୁ ହେଉଥାଏ । କଂଗ୍ରେସ ମନ୍ତ୍ରୀପଦ ଗ୍ରହଣ କରିବା ପରେ କଂଗ୍ରେସ ସଭାର ସ୍ୱର ବଦଳାଇବା ମୋ ପକ୍ଷରେ କାଠିନ୍ୟର ପାଠ ହୋଇଥାଏ । ସରକାରଙ୍କୁ ସବୁ କଥାରେ ଗାଳି ଦେବାର ଯେ ଏତେ ବର୍ଷର ସାଧନା, ତାକୁ ପରଯନ୍ତ କରି ବର୍ତ୍ତମାନ ଭାବିବାକୁ ହେବ ଯେ, ସରକାର ଆମର ଓ ତଦନୁସାରେ ସୂଚନା ଦେବାକୁ ହେବ, ଏହା ସହଜସାଧ୍ୟ ବ୍ୟାପାର ନ ଥିଲା; ଏଣୁ କଂଗ୍ରେସ କମିଟିକୁ ଠିକ୍ ବାଟରେ ଚଳାଇବା ପାଇଁ ମୋତେ କଠିନ ପରିଶ୍ରମ କରିବାକୁ ପଡ଼ିଥିଲା । ମାତ୍ର କଂଗ୍ରେସ ଭିତରେ ଦଳେ ଲୋକ ଥାଆନ୍ତି, ଯେଉଁମାନେ ବ୍ୟର୍ଥ ମନୋରଥ ହୋଇ କଂଗ୍ରେସକୁ ମନ୍ତ୍ରୀଦଳ ବିରୋଧରେ ଲଢ଼ାଇ ଦେବାକୁ ସର୍ବଦା ତତ୍ପର । ପ୍ରଜାତନ୍ତ୍ର ଶାସନ ପାଇଁ ଜନତା ଭିତରେ ଓ ଯେଉଁପରି ଶାସନର ଆନୁଷଙ୍ଗିକ ବ୍ୟାପାର ଦଳ ଭିତରେ—ବହୁ ମତକୁ ମାନି ନେଇ ଚଳିବାର ଯେ ମନୋବୃତ୍ତି, ତା'ର ଏକାନ୍ତ ଅଭାବ ସେ ସମୟରେ ସବୁଆଡ଼େ ଦେଖାଗଲା । ସେତେବେଳେ ଭାରତର ରାଜନୀତିଠାରୁ ଓଡ଼ିଶାର ରାଜନୀତି ପୃଥକ ଭାବରେ ଗତି କରୁଥାଏ । ଭାରତରେ ରାଜନୈତିକ ଅବସ୍ଥା ଥାଏ ଯେ, କଂଗ୍ରେସ ମନ୍ତ୍ରୀତ୍ୱର ସୁବିଧା ନେଇ ସାମ୍ୟବାଦୀ ବା କଂଗ୍ରେସର ବାମାଙ୍ଗ ଏପରି ଅବସ୍ଥା ସୃଷ୍ଟି କରିବାରେ ଲାଗିଥାଆନ୍ତି, ଯାହା କଂଗ୍ରେସ ମନ୍ତ୍ରୀମାନେ ସମ୍ଭାଳିବା ଦୁଷ୍କର ବ୍ୟାପାର ହୋଇ ଉଠୁଥାଏ । କଂଗ୍ରେସ ମନ୍ତ୍ରୀତ୍ୱ ବାହ୍ୟତଃ ଗାନ୍ଧିଜୀଙ୍କ ପରୋକ୍ଷ ନିର୍ଦ୍ଦେଶାନୁସାରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ବାବୁ ରାଜେନ୍ଦ୍ର ପ୍ରସାଦ ଓ ମୌଲନା ଅବୁଲ୍ କାଲାମ ଆଜାଦଙ୍କ ପ୍ରତ୍ୟକ୍ଷ ଅଧ୍ୟକ୍ଷତାରେ ଚାଲିଥାଏ । ଏଣୁ ଗାନ୍ଧି ମତବାଦୀ ବନାମ ସାମ୍ୟବାଦୀ ଏପରି ଅବସ୍ଥା ଭାରତରେ ଛିଡ଼ା ହୋଇଥାଏ । ମାତ୍ର ଓଡ଼ିଶାରେ ସାମ୍ୟବାଦୀମାନେ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ମନ୍ତ୍ରୀ ଦଳକୁ ପୂର୍ଣ୍ଣ ସମର୍ଥନ କରୁ ଥାଆନ୍ତି । ଏଠାରେ ମନ୍ତ୍ରୀଦଳ ବିରୋଧରେ ଭଗ୍ନମନୋରଥ ଦଳ ଲାଗିଥାଆନ୍ତି । ସାମ୍ୟବାଦୀମାନେ ଭଗ୍ନମନୋରଥ ଦଳ ସହିତ ମଧ୍ୟ ଭୀଷଣ ସଂଘର୍ଷରେ ଆସୁଥାଆନ୍ତି । ତେଣୁ ଏଠାରେ ଗାନ୍ଧି ମତବାଦ ବିରୋଧରେ ସାମ୍ୟବାଦୀ ଛିଡ଼ା ହେବା ପ୍ରଶ୍ନ ଆସୁ ନ ଥାଏ । ଏଣୁ ମୁଁ ନିଜେ ଗାନ୍ଧୀ ପ୍ରଦର୍ଶିତ ମାର୍ଗରେ ଚାଲିବା ପାଇଁ ଚେଷ୍ଟା କରୁଥିଲେ ମଧ୍ୟ ସାମ୍ୟବାଦୀମାନଙ୍କ ସହିତ ମିଳିମିଶି କାମ କରିବାରେ କିଛି ବାଧା ଦେଖୁ ନଥାଏ । ତା' ଛଡ଼ା ସେତେବେଳେ କଂଗ୍ରେସ କାର୍ଯ୍ୟ କରିବା ପାଇଁ ମୁଖ୍ୟତଃ ଏହି ସାମ୍ୟବାଦୀମାନେ ଥାଆନ୍ତି; କାରଣ



ଡେଲଙ୍ଗରେ ଗାନ୍ଧିଜୀଙ୍କ ସହ ମହତାବ୍



ସୀମାନ୍ତ ଗାନ୍ଧୀ ଖାଁ ଅବ୍‌ଦୁଲ ଗଫର ଖାଁଙ୍କ ସହ ମହତାବ

ଗାନ୍ଧିବାଦୀମାନେ କଂଗ୍ରେସରୁ ଅଲଗା ହୋଇ ରହିଥାନ୍ତି । ନବକୃଷ୍ଣ ଚୌଧୁରୀଙ୍କ ସାହଚର୍ଯ୍ୟରେ ପ୍ରାଦେଶିକ କଂଗ୍ରେସ କମିଟିକୁ ସୁସଙ୍ଗଠିତ କରିବାରେ ମୁଁ ସମର୍ଥ ହେଲି । ଗ୍ରାମଅଞ୍ଚଳ କର୍ମୀମାନଙ୍କ ସଂଖ୍ୟା ବୃଦ୍ଧିର ଫଳରେ ନୂତନ ଆଶାର ସଞ୍ଚାର ହେଲା । ଏଣେ କଂଗ୍ରେସ ମନ୍ତ୍ରୀତ୍ୱ କଂଗ୍ରେସ କମିଟି ସହିତ ପୂରା ସହଯୋଗରେ ଚାଲିଥିବାରୁ ସେ ମଧ୍ୟ ଉତ୍ସାହର କାରଣ ହୋଇଥାଏ । ଏହି ସମୟରେ ମୁଁ ନିଜେ ତିନି ଚାରି ମାସ କାଳ ପୀଡ଼ିତ ଅବସ୍ଥାରେ ଶଯ୍ୟାଗତ ହୋଇ ରହିଲି । ଏପରି ଅବସ୍ଥାରେ ମଧ୍ୟ ମୁଁ ପୂରା ସମୟ ଦେଇ କଂଗ୍ରେସ କାର୍ଯ୍ୟ କରୁଥାଏ । ଏହି ଅବସ୍ଥାରେ କଟକର ଯେଉଁ ଘର ଓ ହତା ୧୯୨୧ ମସିହାରୁ ସ୍ୱରାଜ୍ୟାଶ୍ରମ ହୋଇଆସିଛି ଓ ଯାହାକୁ ଦଖଲ କରିବା ପାଇଁ ସତ୍ୟାଗ୍ରହୀମାନେ ନିଜର ରକ୍ତ ଦାନ କରିଛନ୍ତି, ତାକୁ କିଣି ନେବାର ଚେଷ୍ଟା କଲି । ୧୧,୦୦୦ ଟଙ୍କା ସେଥିପାଇଁ ଦରକାର ଥିଲା । ସେଥିରୁ ୭୦୦୦ ଟଙ୍କା ଚାନ୍ଦା ଉଠାଇ ଆହି ପାରୁ ନ ଥାଏ । ନିତ୍ୟାନନ୍ଦ କାନୁନ୍‌ଗୋ ୨୦୦୦ ଟଙ୍କା ଦାନ କଲେ ଓ ବାକିତକ ଶ୍ରୀ ଭଗୀରଥି ମହାପାତ୍ର ଓ ମୁଁ ନିଜ ଦାୟିତ୍ୱରେ ଧାର କରି ସେ ଘର କିଣିଲୁ ଏବଂ ସେଥିରେ ମୋ ନିଜର ରହିବା ପାଇଁ ଗୋଟିଏ ଅତିଥିଶାଳା ୨୫୦୦ ଟଙ୍କା ବ୍ୟୟରେ ତିଆରି କରି ସମୁଦାୟକୁ ସାତଜଣ ପଞ୍ଚାୟତ ମାରଫତରେ ରେଜିଷ୍ଟ୍ରି ଦଲିଲ୍ ଅନୁଯାୟୀ ଦିଆ ହୋଇଥାଏ । ଏ ଆଶ୍ରମ ନିଜର ହେବାରେ ମୁଁ ଅତି ସନ୍ତୋଷ ଲାଭ କରିଥିଲି । କଂଗ୍ରେସ ମହଲରେ ମଧ୍ୟ ଉତ୍ସାହ ଜାତ ହୋଇଥିଲା ।

ଏହି ୧୯୩୭ ମସିହାରେ, କଟକ ଓ ପୁରୀରେ ବନ୍ୟାଦ୍ୱାରା ବହୁତ କ୍ଷତି ଘଟିଥିଲା । ପ୍ରାଦେଶିକ କଂଗ୍ରେସ କମିଟି ତରଫରୁ ବନ୍ୟା ସାହାଯ୍ୟର ବ୍ୟବସ୍ଥା କରା-ହୋଇଥିଲା । ମୋର ଧାରଣା, ଏହା ପ୍ରଥମ କଂଗ୍ରେସ କମିଟି ହିସାବରେ ବନ୍ୟା ସାହାଯ୍ୟର ବ୍ୟବସ୍ଥା କରିବା ।

ଏହି ସମୟରେ କଂଗ୍ରେସ ସାମ୍ୟବାଦୀ ଦଳ ଗ୍ରାମଅଞ୍ଚଳେ କୃଷକ ଆନ୍ଦୋଳନ ଆରମ୍ଭ କରି କୃଷକମାନଙ୍କ ଭିତରେ ଏକ ନୂଆ ଜୀବନ ଆଣି ଦେଇଥାନ୍ତି । ଅନ୍ୟ ପ୍ରଦେଶରେ କୃଷକ ଆନ୍ଦୋଳନ ଯେପରି କଂଗ୍ରେସ ଶାସନକୁ ବିବ୍ରତ କରୁଥାଏ, ଏଠି ସେପରି ନ ହୋଇ ବରଂ କଂଗ୍ରେସ ଶାସନର ସେ ଆନ୍ଦୋଳନ ସମର୍ଥକ ହେଉଥାଏ । ତେଣୁ କୃଷକସଂଘମାନ କଂଗ୍ରେସର ବିରୋଧୀ ବୋଲି ଅନ୍ୟ ପ୍ରଦେଶରେ ଯେ ପ୍ରବୃତ୍ତି ଚାଲିଥାଏ, ତାହା ଓଡ଼ିଶା ପକ୍ଷରେ ପ୍ରଯୁଜ୍ୟ ହେଉ ନ ଥିଲା । ଓଡ଼ିଶାରେ କୃଷକସଂଘକୁ ମୋର ଶକ୍ତିମତେ ମୁଁ ସମର୍ଥନ କରିଛି, ଯେହେତୁ ମୁଁ ଆଖିରେ ଦେଖୁ-ଥାଏ ଯେ ତଦ୍ଦ୍ୱାରା କଂଗ୍ରେସର ଶକ୍ତି ବଢୁଥାଏ । ପଣ୍ଡିତ ନୀଳକଣ୍ଠ କୃଷକସଂଘର ଭୟଙ୍କର ବିରୋଧୀ ହୋଇଥାନ୍ତି; କାରଣ ତଦ୍ଦ୍ୱାରା କଂଗ୍ରେସ ଶାସନକୁ ସାହାଯ୍ୟ

ମିଳୁଥିଏ ଓ ସେ-କଂଗ୍ରେସ ଶାସନକୁ ବିବ୍ରତ କରିବା ଉଦ୍ୟମରେ ଥାଆନ୍ତି । ମାତ୍ର ଅତି ଆଶ୍ଚର୍ଯ୍ୟର କଥା ଯେ, ଶେଷରେ ଯେଉଁମାନେ ଗାନ୍ଧିବାଦୀ ବୋଲି ନିଜକୁ ମନେ କରନ୍ତି, ସେମାନେ ସ୍ଥାନୀୟ ଅବସ୍ଥାର ସମ୍ପୂର୍ଣ୍ଣ ଜ୍ଞାନ ନ ହୋଇ ଓଡ଼ିଶା କଂଗ୍ରେସ କମିଟି ସାମ୍ୟବାଦୀଙ୍କ ଦ୍ୱାରା ଅଧିକୃତ ହୋଇଯାଇଛି ଓ ମୁଁ ସେମାନଙ୍କ ଇଙ୍ଗିତରେ ପରିଚାଳିତ ହେଉଛି, ଏହି ମତ ପୋଷଣ କରି କାର୍ଯ୍ୟ କଲେ ।

ଏଇଠି ମୋର ସେତେବେଳକାର ଅବସ୍ଥା ସମ୍ବନ୍ଧରେ କିଛି କହେ । କଂଗ୍ରେସ ଶାସନକୁ ପୂର୍ଣ୍ଣ ସମର୍ଥନ ଦେଇ ତଦନୁସାରେ କଂଗ୍ରେସ କମିଟି ଓ କର୍ମୀମାନଙ୍କୁ ଚଳାଇବା ଏକ ବିଷମ ବ୍ୟାପାର ହୋଇଥାଏ । ତା' ଛଡ଼ା ଓଡ଼ିଶାରେ ଏକ ପାର୍ଟି ସୃଷ୍ଟି କରି କର୍ମୀମାନଙ୍କୁ ନିୟମିତ ଭାବେ ସାହାଯ୍ୟ କରି କଂଗ୍ରେସ କାମ ପ୍ରତି ସ୍ଥାୟୀ ଆସ୍ଥା ଜମାଇବା ମୋର ଦ୍ୱିତୀୟ କାମ ହୋଇଥାଏ । ଏହା ମୋର ପୂର୍ଣ୍ଣ ସମୟ ନେଉଥାଏ, ମାତ୍ର ମୋ ମନ ଭିତରେ କର୍ମମନ୍ଦିର ମଧ୍ୟ କିଛି ସ୍ଥାନ ଦଖଲ କରି ବସିଥାଏ । ପ୍ରଥମେ ଯେତେବେଳେ ମୁଁ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ନିର୍ବାଚିତ ହେଲି, ସେତେବେଳେ ବାଧ୍ୟ ହୋଇ କର୍ମ-ମନ୍ଦିର ପରିଚାଳନାକୁ ଗୋପବାବୁଙ୍କୁ ଅର୍ଥାତ୍ ଗାନ୍ଧି-ସେବାଶ୍ରମକୁ ବଢ଼ାଇ ଦେଲି; ମାତ୍ର ମୋର ଦୁର୍ଭାଗ୍ୟ ଯେ ସେହି ପରିଚାଳନାଧୀନ ହୋଇ କର୍ମ-ମନ୍ଦିର କାମ ଯେ କେବଳ ବନ୍ଦ ହେବାପାଇଁ ବସିଲା ତାହା ନୁହେଁ, ସେଠି ଆମ ଗାଁରେ ଯେଉଁମାନେ ଉତ୍ସାହର ସହିତ ଏ ଅନୁଷ୍ଠାନ ପାଇଁ କାମ କରୁଥିଲେ, ସେମାନଙ୍କ ସହିତ ପରିଚାଳନାର ଦୁଃଖଜନକ ସଂଘର୍ଷ ହେଲା । ଶେଷରେ ପୁଣି କର୍ମ-ମନ୍ଦିରକୁ ମୋ ନିଜ ପରିଚାଳନାକୁ ଆଣି ଚରଖାସଂଘ ପରିଚାଳନାରେ ଛାଡ଼ିଲି । ସେତେବେଳେ ଅନ୍ନଦା ବାବୁ ଓଡ଼ିଶା ଚରଖାସଂଘ ତତ୍ତ୍ୱାବଧାନରେ ଥିଲେ । ସେ ମୋତେ ସାହାଯ୍ୟ କରି ନ ଥିଲେ 'ପ୍ରଜାତନ୍ତ୍ର' ବନ୍ଦ ହେବାପରେ ଯେଉଁ ଗଭୀର ଆଘାତ ମୋ ହୃଦୟ ପାଇଥିଲା, ସେହିପରି ଏଥର ମଧ୍ୟ ଆଉ ଏକ ଆଘାତ ପାଇଥାଆନ୍ତା । ଚରଖାସଂଘ କାମରେ ଉପେନ୍ଦ୍ରନାଥ ପଣ୍ଡା ଯୋଗ ଦେଇଥିଲେ । ଚରଖା ସଂଘ ଅଧୀନରେ ଉପେନ୍ଦ୍ର ଦ୍ୱାରା କର୍ମ-ମନ୍ଦିର 'ପରିଚାଳିତ ହେବାପରେ କେବଳ ଯେ କାମ ବଢ଼ିଲା ତା' ନୁହେଁ, ଅନୁଷ୍ଠାନ ପ୍ରତି ସ୍ଥାନୀୟ ଲୋକଙ୍କ ଉତ୍ସାହ ମଧ୍ୟ ବଢ଼ିଲା, ମାତ୍ର ଏହି ଯେ ମଝିରେ ବିଭ୍ରାଟ ଘଟିଲା, ଏଥିରେ ମୋତେ କମ୍ ବେଗ ପାଇବାକୁ ହୋଇନାହିଁ । କର୍ମ-ମନ୍ଦିର କେବଳ ଖଦୀକେନ୍ଦ୍ରଟିଏ ନୁହେଁ । ଏଥିରେ 'ନୂତନ ଧର୍ମ'ରେ ଯେଉଁ କଳ୍ପନା ଉପନ୍ୟାସ ଆକାରରେ ରଖିଛି, ତାକୁ କାର୍ଯ୍ୟରେ ପରିଣତ କରିବାର ଉଦ୍ୟମ ହେଉଛି—ତେଣୁ ଏହାର ସମୋନ୍ନତି ସାଧନ ପାଇଁ ମୁଁ ଯେଉଁଠି ଯାହା କରୁଥାଏ ପଛକେ, ମୋ ମନ କର୍ମ-ମନ୍ଦିରକୁ ଭୁଲି ପାରେନାହିଁ ।

ସ୍ୱଶଆଡ଼େ ନାନାପ୍ରକାର ଅସୁବିଧା ଭିତରେ ମୋର ଶକ୍ତି ଅନୁସାରେ ଦୃଢ଼ତାର ସହିତ କଂଗ୍ରେସ ଅନୁଷ୍ଠାନକୁ ଚଳାଇଲି । ଆଉମାନବର୍ଷ କଂଗ୍ରେସ ଅନୁଷ୍ଠାନକୁ ଅଧିକାର କରିବା ପାଇଁ ଉଦ୍ୟମ ହେଲା—ଏଥର ସ୍ୱଶଆଡ଼େ ଅନେକ ସଭ୍ୟ ହୋଇଥିଲେ । ଏଥର ଗୋପବାବୁ ମଧ୍ୟ ପ୍ରାଦେଶିକ କଂଗ୍ରେସ କମିଟିର ସଭ୍ୟ ହୋଇଛନ୍ତି । ପ୍ରଥମ ବୈଠକରେ କର୍ମକର୍ତ୍ତା ନିର୍ବାଚନ ପୂର୍ବରୁ ମୁଁ ସେ ସମସ୍ତଙ୍କ ସଭାପତି ପଣ୍ଡିତ ଜବାହରଲାଲ ନେହେରୁଙ୍କ ସଙ୍ଗେ ପରାମର୍ଶ ତଦନୁସାରେ କାମ କରୁଥାଏଁ, ମାତ୍ର ଏଥର ଏକ ନୂଆ କଥା ଉଠିଲା ଯେ, ପଦଲାଭ ପାଇଁ ନୀଳକଣ୍ଠ ବାବୁ ଓ ମୁଁ ପରସ୍ପର ବିବାଦ କରୁଛୁ; ଏଣୁ ନିରପେକ୍ଷ ଲୋକ ଗୋପବାବୁ ସଭାପତି ହେଲେ ଭଲ ହେବ । ଏଥିରେ କାହାରି ଆପତ୍ତି ନ ଥିଲା—ମୁଁ ମଧ୍ୟ ଏଥିରେ ପୂର୍ଣ୍ଣ ସମ୍ମତ ଥିଲି, ମାତ୍ର ପ୍ରଥମ ବୈଠକରେ ଗୋପବାବୁ ହଠାତ୍ ସଭାପତି ହେବାପାଇଁ ମନା କରିଦେଲେ । ତେଣୁ ମୁଁ ପୁଣି ନିର୍ବାଚିତ ହୋଇଗଲି । ପଦ ପାଇଁ ପରସ୍ପର ବିବାଦ, ଏ ମନ୍ତବ୍ୟ ମୋତେ ଆଘାତ ଦେଉଥାଏ, ମାତ୍ର ଜାଣି ଶୁଣି କଂଗ୍ରେସ ଅନୁଷ୍ଠାନକୁ ଜଙ୍ଗଲରେ ଫୋପାଡ଼ି ଦେବାରେ ମୁଁ ଭାଗୀ ହେବନାହିଁ । ଏହା ମୋର ଦୃଢ଼ ମତ ଥାଏ । ଏହିବର୍ଷ ହରିପୁରା କଂଗ୍ରେସରେ ସୁଭାଷବାବୁ ସଭାପତି ହୋଇଥିଲେ । ଓଡ଼ିଶାରୁ ଆମେ ଯେଉଁମାନେ ଯାଇଥିଲୁ, ସେମାନଙ୍କ ମଧ୍ୟରୁ ମୁଁ ଓ ଭାଗୀରଥି ମହାପାତ୍ର ତାଙ୍କ ସହିତ ଦେଖା କରିଥିଲୁ । ଏହି ତାଙ୍କର ମୋର ପ୍ରଥମ ସାକ୍ଷାତ । ସେଠାରେ ତାଙ୍କୁ ଓଡ଼ିଶାରୁ ଜଣେ କାର୍ଯ୍ୟ-ନିର୍ବାହକ ସମିତିରେ ନେବାପାଇଁ ଅନୁରୋଧ କରିଥିଲୁ । ସେ ଆମ ମତବାଦ ବିଷୟରେ ଆଲୋଚନା କରିଥିଲେ । ତାଙ୍କୁ ଆମେ ପରିଷ୍କାର କହିଥିଲୁ ଯେ, ସେ ଗାନ୍ଧିଜୀଙ୍କ ସହିତ ଏକମତ ଥିବା ପର୍ଯ୍ୟନ୍ତ ଆମେ ତାଙ୍କୁ ହିଁ ମାନି ଚାଲିବୁ, ମାତ୍ର ଗାନ୍ଧିଜୀ ଓ ସେ ବିଭିନ୍ନ ମତାବଲମ୍ବୀ ହେଲେ ଆମେ ଗାନ୍ଧିଜୀଙ୍କ କଥା ଅନୁସାରେ ଚାଲିବୁ । ସେ ମଧ୍ୟ ଆମକୁ ସ୍ପଷ୍ଟ କରି କହିଥିଲେ ଯେ, ସେ ଗାନ୍ଧିଜୀଙ୍କ ସହିତ ଅମତ ହେବେ ନାହିଁ, ମାତ୍ର ତା' ସଙ୍ଗେ ସଙ୍ଗେ କହିଲେ ସର୍ଦ୍ଦାର ବଲ୍ଲଭଭାଇ ରାଜି ନ ହେଲେ, ସେ ଏକାକୀ କାର୍ଯ୍ୟନିର୍ବାହକ ସମିତି ମନୋନୟନର ଦାୟିତ୍ୱ ନେବେ ନାହିଁ । ସର୍ଦ୍ଦାର ବଲ୍ଲଭଭାଇଙ୍କ ସହିତ ବିଶ୍ୱନାଥବାବୁ ପ୍ରଭୃତି ଦେଖା କରିଥିଲେ । ଅନ୍ୟମାନଙ୍କ ସହିତ ମଧ୍ୟ ବିଶ୍ୱନାଥବାବୁ ଓ ଭାଗୀରଥି ବାବୁ ପ୍ରଭୃତି ଦେଖା କରିଥିଲେ । ତା'ପରେ ମୁଁ କଂଗ୍ରେସ କାର୍ଯ୍ୟନିର୍ବାହକ ସମିତିକୁ ମନୋନୀତ ହେଲି । କାର୍ଯ୍ୟନିର୍ବାହକ ସମିତି ସେତେବେଳେ ଭାରତର ରାଜନୀତି କ୍ଷେତ୍ରରେ ଏକ ପ୍ରତିଷ୍ଠିତ ଅନୁଷ୍ଠାନ । ତା'ର ସଦସ୍ୟ ହେବାପାଇଁ ବହୁ ପ୍ରଦେଶର ଜଣାଶୁଣା ଲୋକ ଚେଷ୍ଟା କରି ମଧ୍ୟ ହୋଇପାରୁ ନ ଥା'ନ୍ତି । ଏପରି ସ୍ଥଳେ ଅପେକ୍ଷାକୃତ ଅଳ୍ପ ଉଦ୍ୟମରେ ମୁଁ ସେଠିକି ମନୋନୀତ ହୋଇ ମନେ ମନେ ଗର୍ବ ଅନୁଭବ କରିଥିଲି,

ମାତ୍ର ସଙ୍ଗେ ସଙ୍ଗେ ମୁଁ ସେ ପଦର ଉପଯୁକ୍ତ ହେବାପାଇଁ ପ୍ରାଣପଣେ ଚେଷ୍ଟା କରିବି ବୋଲି ମନସ୍ଥ କରିଥିଲି । କାର୍ଯ୍ୟନିର୍ବାହକ। ସମିତିର ସଦସ୍ୟ ହେବା ଫଳରେ କେବଳ ଯେ ଭାରତୀୟ ରାଜନୀତିକ ଚିନ୍ତାପ୍ରବାହ ସହିତ ନିଜକୁ ମିଶାଇ ପାରିଲି ତାହା ନୁହେଁ, ଏହି ଅବସରରେ ମହାତ୍ମାଗାନ୍ଧିଙ୍କ ସହିତ ଘନିଷ୍ଠ ସମ୍ପର୍କରେ ଆସିବାର ସୁବିଧା ପାଇ ନିଜକୁ କୃତାର୍ଥ ମନେ କରିଥିଲି ।

୧୯୩୮ ମସିହା ଆରମ୍ଭରେ ଡେଲାଙ୍ଗରେ ଗାନ୍ଧି ସେବାସଂଘର ଏକ ଅଧିବେଶନ ହୋଇଥିଲା । ସେଥିପାଇଁ ଗୋପବାବୁ ଓ ରମାଦେବୀଙ୍କୁ କଠିନ ପରିଶ୍ରମ କରିବାକୁ ପଡ଼ିଲା । ଏହି ଡେଲାଙ୍ଗରେ ସର୍ଦ୍ଦାର ପଟେଲ ଓ ରାଜେନ୍ଦ୍ରବାବୁ-ପ୍ରଭୃତି କଂଗ୍ରେସ ମନ୍ତ୍ରିମଣ୍ଡଳ ବିରୋଧରେ ପଠାଯାଇଥିବା ଅଭିଯୋଗମାନ ବିଚାର କରିଥିଲେ । ସମସ୍ତ ଅଭିଯୋଗ ଭିତ୍ତିହୀନ ପ୍ରମାଣିତ ହେବାପରେ ସର୍ଦ୍ଦାର ପଟେଲ ଅଭିଯୋଗକାରୀମାନଙ୍କୁ ତିରସ୍କାର କରିଥିଲେ; ମାତ୍ର ମୁଁ ଦେଖିଲି ନୀଳକଣ୍ଠ ବାବୁ ଗୋଦାବରୀଶବାବୁ ପ୍ରଭୃତି ଭାବୁଛନ୍ତି ଯେ, ମୁଁ କଂଗ୍ରେସ କମିଟିର ଚାଳକ ହେବା ଫଳରେ ମନ୍ତ୍ରିମଣ୍ଡଳ ଚାଲୁଛି । ଆଉ ମଧ୍ୟ ଅନ୍ୟ ଦିଗରେ ଗୋପବାବୁ ପ୍ରଭୃତି ଭାବୁଛନ୍ତି ଯେ ମୁଁ ନୀଳକଣ୍ଠ ବାବୁଙ୍କ ସଙ୍ଗେ ବିବାଦ ଲଗାଇଛି—ଏପରି କ୍ଷେତ୍ରରେ ମୁଁ କଂଗ୍ରେସ କମିଟିରୁ ଅପସରିଯିବା ଉଚିତ, ମାତ୍ର ଗୋପବାବୁଙ୍କ ହାତରେ ତାକୁ ଛାଡ଼ିବାକୁ ହେବ । ଏଣୁ ମୋର କୌଣସି ବନ୍ଧୁମାନଙ୍କ ସହିତ ପରାମର୍ଶ ନ କରି ମୁଁ ସ୍ୱତଃ ଅପ୍ରତ୍ୟାଶିତ ଭାବରେ ପ୍ରକାଶ କଲି ଯେ, ଗୋପବାବୁ ପ୍ରାଦେଶିକ କଂଗ୍ରେସ କମିଟିର ଭାର ନେଲେ, ମୁଁ ତାହା ଛାଡ଼ିଦେବି । ଏଥିରେ ସମସ୍ତେ ପ୍ରୀତ ହେଲେ । ମାତ୍ର ମୋର ବନ୍ଧୁମାନେ ଅତିଶୟ ବିରକ୍ତ ହେଲେ । ସେମାନେ ମୋତେ ବିଶ୍ୱାସଘାତକତାର ଅପବାଦ ମଧ୍ୟ ଦେଲେ । କର୍ମୀମାନେ ମଧ୍ୟ ବଡ଼ ଅସନ୍ତୋଷ ପ୍ରକାଶ କଲେ, ମାତ୍ର ସମସ୍ତଙ୍କୁ ବୁଝାଇ କୌଣସି ପ୍ରକାରେ ଶାନ୍ତ କରାଇଲି । ଏହାପରେ ଗୋପବାବୁ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ହେଲେ । ଗୋପବାବୁଙ୍କ ସହିତ ବିଶ୍ୱନାଥବାବୁଙ୍କର ଅନେକ ବିଷୟରେ ମତଭେଦ ହୋଇ ,ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ପର୍ଯ୍ୟନ୍ତ କଥା ଯାଉଥାଏ; ମାତ୍ର ସବୁଥିରେ ବିଶ୍ୱନାଥ ଦାସ ନିଜ ମତ ରକ୍ଷା କରି ପାରୁଥା'ନ୍ତି । ଧୀରେ ଧୀରେ ଗୋପବାବୁ ଓ ବିଶ୍ୱନାଥବାବୁଙ୍କ ମତଭେଦ ଉତ୍କଟ ଧରଣର ହୋଇଥିଲା—ମାତ୍ର ବିଶ୍ୱନାଥ ବାବୁ ଉପରେ ପାର୍ଲିଆମେଣ୍ଟାରୀ କମିଟିର ସମର୍ଥନ ପାଉଥିବାରୁ ଉଧରି ଯାଉଥିଲେ ।

ଦୁଃଖର ବିଷୟ ଏହି ଯେ, କର୍ମୀମାନଙ୍କ ପାଇଁ ପାଣ୍ଠି ସଂଗ୍ରହର ବ୍ୟବସ୍ଥା ମୋର ପ୍ରାଦେଶିକ କଂଗ୍ରେସ କମିଟି ଛାଡ଼ିବା ପରେ ପରେ କୁଆଡ଼େ ଲୋପ ପାଇ-

ଗଲା । ଅଉ ମଧ୍ୟ କଂଗ୍ରେସ ଅନୁଷ୍ଠାନ ଏପରି ପରିସ୍ଥିତି ହେଲା, ଯେଉଁଥିରେ ମୁଁ କିଛି ନିର୍ଦ୍ଦିଷ୍ଟ କାମ କରିବାର ସୁବିଧା ପାଇଲି ନାହିଁ । ତେଣୁ ମୁଁ ନିଜକୁ ନିଜ ଦୂରେଇ ରଖି ମୋଦ୍ୱାରା ଯେତିକ ହାହା ସମ୍ଭବ; ତାହା ହିଁ କରିବି ବୋଲି ସ୍ଥିର କଲି ।

ମୋ ଉପରେ ତିନୋଟି କାମ ଆପେ ଆପେ ଆସି ପଡ଼ିଲା—ପ୍ରଥମ ହେଉଛି କଂଗ୍ରେସ ମନ୍ତ୍ରୀମଣ୍ଡଳକୁ ସମର୍ଥନ—ଏହା ଭିତରେ ବ୍ୟବସ୍ଥାପକ କଂଗ୍ରେସଦଳକୁ ସଂଗଠିତ କରି ରଖିବା ଓ ବାହାରେ ଯେତେ ରକମର ପ୍ରଶ୍ନ ଉଠୁଛି, ତାକୁ ସମାଧାନ କରିବାର ବ୍ୟବସ୍ଥା କରିବା । ଏ କାମ ଅତି କଠିନ ଥାଏ; କାରଣ ସ୍ୱାୟତ୍ତଶାସନରେ ପ୍ରତ୍ୟେକର ଦାୟିତ୍ୱ ବଢ଼ି ଯାଇଥାଏ । ଉପରକୁ ଦରଖାସ୍ତ କରିବା, ଖବର କାଗଜରେ ଆପତ୍ତି ଅଭିଯୋଗ କରି ଚୁପ୍ ହୋଇ ବସିଯିବା—ଏ ସବୁ ଆନ୍ଦୋଳନ-ମୂଳକ କାମ ଛଡ଼ା ନିଜେ ଲାଗିପଡ଼ି ସରକାରଙ୍କଠାରୁ ନିଜର କାମ କରାଇ ନେବାର ତତ୍ପରତା ସ୍ୱାୟତ୍ତ ଶାସନରେ ଦରକାର । ମାତ୍ର ଯେପରି ଦେଖାଯାଉଥାଏ, କଂଗ୍ରେସ ମନ୍ତ୍ରୀ ଯେତେବେଳେ ଅଛନ୍ତି ସେତେବେଳେ ଯେ କୌଣସି ଆପତ୍ତି କେବଳ ତାଙ୍କୁ ଚିଠି ଲେଖି ହେଉ, ମୁହଁରେ କହି ହେଉ ବା ଖବରକାଗଜ ଜରିଆରେ ହେଉ କୌଣସି ପ୍ରକାରେ ଜଣାଇ ଦେଲେ ତେଣେ କାମ ହୋଇଯିବା ଉଚିତ; ଯଦି ନ ହେଲା, ତେବେ ହେଲା ମନ୍ତ୍ରୀଙ୍କ ଉପରେ ଗାଳି ବୃଷ୍ଟି । ଏ ଭୟଙ୍କର ମନୋଭାବ ସେତେବେଳେ ବଡ଼ ବଡ଼ ଲୋକଙ୍କଠି ଦେଖାଯାଇଛି । ଆଦେଶ ଦେବାପାଇଁ ଲୋକ ବହୁତ ବାହାରିଲେ ଓ ସାହାଯ୍ୟ କରିବାପାଇଁ ଖୁବ୍ କମ୍ ଲୋକ ରହିଲେ । ଏହି ହେତୁ କଂଗ୍ରେସ ମନ୍ତ୍ରୀତ୍ୱ ସମୟରେ ସାଧାରଣଙ୍କ ଆପତ୍ତି ଅଭିଯୋଗ ବିଷୟରେ ଯେତେ ଚର୍ଚ୍ଚା ହେଉଥିଲା, କଂଗ୍ରେସ ମନ୍ତ୍ରୀତ୍ୱ ଗଲା ପରେ ସେ ସବୁ ବିଷୟରେ କଥାବାର୍ତ୍ତା ସୁଦ୍ଧା ହେଲା ନାହିଁ । ମୋର ଯେଉଁଠି କଥା ରହୁଥିଲା, ଆମ ଜିଲ୍ଲାରେ, କୌଣସି ଆପତ୍ତି ଅଭିଯୋଗ ମନ୍ତ୍ରୀଙ୍କ ପର୍ଯ୍ୟନ୍ତ ଯିବାକୁ ମୁଁ ଦେଇ ନାହିଁ । ଅଥଚ କଂଗ୍ରେସ-ମନ୍ତ୍ରୀତ୍ୱର ସୁବିଧା ସେଠା ଲୋକେ ବୋଧହୁଏ ସବୁଠାରୁ ବେଶି ଉଠାଇଛନ୍ତି ।

ବାଲେଶ୍ୱର ପୂର୍ବେ ଏକ ଐତିହାସିକ ବନ୍ଦର ଥିଲା । କଲିକତାରୁ ଜାହାଜ ଇତ୍ୟାଦି ଏଠାକୁ ଯିବା ଆସିବା କରୁଥିଲା, ମାତ୍ର ରେଲ୍ ଲାଇନ୍ ଖୋଲିବା ଦିନଠାରୁ ରେଲ ସହିତ ପ୍ରତିଦ୍ୱନ୍ଦ୍ୱିତା କରି ନ ପାରି ବନ୍ଦର ବନ୍ଦ ହୋଇଗଲା । ପୁନର୍ବାର କଲିକତାର ଏକ କମ୍ପାନୀ ସହିତ ଚୁକ୍ତି କରି ଏଣେ ବାଲେଶ୍ୱରର ସମସ୍ତ ବ୍ୟବସାୟୀମାନଙ୍କ ଧରି ମଝିରେ ଓଡ଼ିଶା ସରକାରଙ୍କ

ମଧ୍ୟସ୍ଥତାରେ ବାଲେଶ୍ୱର ବନ୍ଦର ପୁଣି ଖୋଲିଲା । ଏ କାମ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ଜରିଆରେ ହୋଇ ଶେଷରେ ମନ୍ତ୍ରୀ ଜାଣିଲେ । ଅନାବୃଷ୍ଟିରେ କେତେକ ଅଞ୍ଚଳର ଫସଲ ନଷ୍ଟ ହୋଇଯାଇଥିବାରୁ ସରକାରଙ୍କ ତରଫରୁ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ରିପୋର୍ଟ ଅନୁସାରେ ସାହାଯ୍ୟ ଦିଆ ହୋଇଥିଲା । ବାଲେଶ୍ୱର ଜିଲ୍ଲା ଅଫିମ ବ୍ୟବହାର ପାଇଁ ସବୁଠାରୁ ବେଶି ନିନ୍ଦିତ । ଅଫିମ ନିବାରଣ କାମ ଖୁବ୍ ଜୋର୍-ସୋରରେ ସ୍ଥାନୀୟ ସରକାରୀ କର୍ମଚାରୀ ତଥା କଂଗ୍ରେସକର୍ମୀଙ୍କ ମିଳିତ ଉଦ୍ୟମରେ ଚାଲିଲା । ଚାରିଆଡ଼େ ଲୋକମତ ସୃଷ୍ଟି କରି, ସ୍ଥାନୀୟ ସରକାରୀ କର୍ମଚାରୀମାନଙ୍କୁ ଲୋକମତ ପ୍ରତି ସହାନୁଭୂତି ରଖି କାମ କରିବାକୁ ବାଧ୍ୟ କରିଥିଲୁ । କୌଣସି ସରକାର ଲୋକମତକୁ ଉପେକ୍ଷା କରିବ ନାହିଁ, ଏହା ସରକାରୀ କର୍ମଚାରୀମାନେ ଜାଣିଗଲେ ତେଣିକି ସେମାନେ ଲୋକସେବକ ହୋଇ କାମ କରିବେ । କଂଗ୍ରେସ ଶାସନବେଳେ ସେହି-ଅବସ୍ଥା ସୃଷ୍ଟି କରିବାପାଇଁ ମୁଁ ଚେଷ୍ଟା କରିଥିଲି ।

କଂଗ୍ରେସ ମନ୍ତ୍ରୀଙ୍କୁ ବିବ୍ରତ କରିବା ଉଦ୍ଦେଶ୍ୟରେ ଏକ ଛାତ୍ର-ଧର୍ମଘଟ ଆରମ୍ଭ କରାଗଲା । ସେତେବେଳେ ମୁଁ ସବୁ ସ୍କୁଲକୁ ଯାଇ ଖବର କାଗଜରେ ଲେଖି ଏ ଛାତ୍ର ଧର୍ମଘଟ ବିରୁଦ୍ଧରେ ପ୍ରଚାର କରିଥିଲି । ସେତେବେଳେ ଛାତ୍ରନେତାମାନେ ମୋ ଉପରେ ବିରକ୍ତ ହେଉଥିଲେ, ମାତ୍ର ବର୍ତ୍ତମାନ ଦୂରରୁ ଥାଇ ମୁଁ ଦେଖୁଛି ଯେ ମୁଁ ଯାହା କରିଥିଲି ଠିକ କରିଥିଲି ।

କଂଗ୍ରେସ ସରକାର ବିଶ୍ୱକବି ରବୀନ୍ଦ୍ରନାଥଙ୍କୁ ନିଜର ଅତିଥି ରୂପେ ଆମନ୍ତ୍ରଣ କରି ପୁରୀରେ ଅଭ୍ୟର୍ଥନା କରିଥିଲେ । ସେ ସରକାରୀ ଅତିଥି ହିସାବରେ ମାସାଧିକ କାଳ ରହିଲେ । ତାଙ୍କ ସହିତ ସାକ୍ଷାତ୍ କରିବା ପାଇଁ କଂଗ୍ରେସ ସରକାର ଛାତ୍ରମାନଙ୍କ ପାଇଁ ଏକ ସ୍ପେଶାଲ ଟ୍ରେନ୍‌ର ବନ୍ଦୋବସ୍ତ କରିଥିଲେ, ମାତ୍ର ଧର୍ମଘଟକାରୀମାନେ ଚେଷ୍ଟା କରି କୌଣସି ଛାତ୍ରକୁ ବିଶ୍ୱକବିଙ୍କ ନିକଟକୁ ଯିବାକୁ ଦେଲେନାହିଁ । ମୁଁ ସେତେବେଳେ ଅନେକଙ୍କୁ କହିଥିଲି ଯେ, "ଏଥିପାଇଁ ତୁମେ ଭବିଷ୍ୟତରେ ଅନୁତାପ କରିବ—ମାତ୍ର ଗଭୀର ଅନୁତାପ କରି ସୁଦ୍ଧା ବିଶ୍ୱକବିଙ୍କ ସହିତ ବାକ୍ୟାଳାପ କରିବାର ସୁଯୋଗ ପାଇବ ନାହିଁ"—ବର୍ତ୍ତମାନ ଅନେକେ ମୋ କଥାର ସତ୍ୟତା ଉପଲବ୍ଧି କରିଥିବେ ।

ରବୀନ୍ଦ୍ରନାଥ ଇଜିପ୍ଟରେ ଥରେ ସରକାରୀ ଅତିଥି ହୋଇଥିଲେ—ତା'ପରେ ଓଡ଼ିଶାରେ ସରକାରୀ ଅତିଥି ହେଲେ—ଆଉ କେଉଁଠି ହୋଇ ନାହାନ୍ତି । ସେଥିପାଇଁ ସେ ନିଜେ ମଧ୍ୟ ଆନନ୍ଦ ଅନୁଭବ କରୁଥିଲେ, ତେଣୁ ସେ ଛାତ୍ରମାନଙ୍କ ଆଚରଣ ଦେଖି କହିଥିଲେ, ଗୋଟିଏ ଫଳ କଷି ଧରୁଛି, ତାକୁ ପାଚିବାକୁ ଦିଅ ।

କରି ଦେଇ ତାକୁ ଛଡ଼ାଇ ଘେଞ୍ଚାଇବାକୁ ବସିଛ, ଏଥିରେ ଲାଭ କଅଣ ? ଯେତକ ଶାସନ-ସ୍ୱାତନ୍ତ୍ର୍ୟ ମିଳିଛି ତା'ର ଅତିଶକ୍ତ ସୁବିଧା ଉଠାଇବାର ଚେଷ୍ଟା କରି ତାକୁ ବ୍ୟର୍ଥ କରିବାର ପ୍ରୟାସକୁ ସେ ସମାଲୋଚନା କରି ଦୁଃଖ ପ୍ରକାଶ କରିଥିଲେ । କେବଳ ଏ ଗ୍ରୁପ୍‌ଧର୍ମଘଟ୍ଟ ନୁହେଁ, କେଉଁଠି ପୋଲ ଦରକାର, କେଉଁଠି ସଡ଼କ ମରାମତିରେ କଣ୍ଟ୍ରାକ୍ଟର ମଜୁରିଦାରକୁ ପଇସା ଦେଲନାହିଁ, ଇତ୍ୟାଦି ପ୍ରତ୍ୟେକ ବିଷୟ ମନ୍ତ୍ରୀଙ୍କୁ ଜଣାଇ ଦେଇ ତେଣେ କାମ୍ ହୋଇଯିବାର ଆଶା ଓ ନ ହେଲେ ଗାଳିବୃଷ୍ଟି-ଏହା ହିଁ ସାଧାରଣ ମନୋଭାବ ଦେଖାଗଲା । ଏ ଦରଖାସ୍ତ କରିବାର ମନୋବୃତ୍ତି ବିରୋଧରେ ମୁଁ ଯଥାଶକ୍ତି ଲଢ଼ାଇ କରିଛି ଓ ଆମ ଜିଲ୍ଲାରେ ତଥା ଅନ୍ୟତ୍ର କେତେକ ସ୍ଥାନରେ ମୁଁ ସଫଳକାମ ହୋଇଛି ।

ଏହାଛଡ଼ା ବହୁ ରାଜନୀତିକ ସମସ୍ୟାରେ କଂଗ୍ରେସ ମନ୍ତ୍ରୀମାନଙ୍କ ସହିତ ଆଲୋଚନା କରି ପଥ ନିର୍ଣ୍ଣୟ କରିବା ଏକ କଠିନ ବ୍ୟାପାର ଥାଏ । ଉଦାହରଣ-ସ୍ୱରୂପ ଜଣେ କମିଶନର ଯେ ମନ୍ତ୍ରୀଙ୍କ ଅଧୀନରେ କାମ କରୁଥିଲେ ଓ ଯେ ମନ୍ତ୍ରୀଙ୍କ ନୀତିକୁ ପସନ୍ଦ କରୁ ନ ଥିଲେ, ତାଙ୍କୁ ଅସ୍ଥାୟୀ ଭାବରେ ଲଟ କରିବା ପ୍ରସ୍ତାବରେ କଂଗ୍ରେସ ମନ୍ତ୍ରୀମାନେ ବିରକ୍ତ ହେଲେ । ଏ ବିଷୟ ଠିକ୍‌ଠାକ୍ କରି-ନେଇ ଏହାକୁ ଭାରତୀୟ ସମସ୍ୟା କରି ଛଡ଼ା କରାଇ ଶେଷରେ ମହାତ୍ମା ଗାନ୍ଧିଙ୍କୁ ସେଥିରେ ପ୍ରବେଶ କରାଇ ସେ ପ୍ରସ୍ତାବ ରଦ୍ଦ କରିବା—ଏହା ଲେଖି-ଦେବାକୁ ସହଜ ବୋଧ ହେଉଛି; ମାତ୍ର ସେତେବେଳେ ବିଶ୍ୱନାଥବାବୁ ଓ ଅନ୍ୟ ମନ୍ତ୍ରୀମାନଙ୍କୁ ଏବଂ ମୋତେ ବହୁ ମସ୍ତିଷ୍କ ଖରଚ କରିବାକୁ ପଡ଼ିଚି ଓ ବହୁ ଉଦ୍‌ବେଗ ଭିତରେ ଗତି କରିବାକୁ ପଡ଼ିଛି । ସେହିପରି ଗଡ଼ଜାତ ଆନ୍ଦୋଳନ ସମ୍ପର୍କରେ ଓଡ଼ିଶା ସରକାରଙ୍କ ସହିତ ରାଜନୀତିକ ବିଭାଗର ସଂଘର୍ଷ ଏଡ଼େ ଗୁରୁତର ଆକାର ଧାରଣ କରିଥାଏ ଯେ, ସେଥିରେ ରାଜଅଡ଼କୁ ଦୃଷ୍ଟି ଦେଇ ମନ୍ତ୍ରୀମାନଙ୍କ ପକ୍ଷରେ ଶାସନ ଚଳାଇବା ଦୁରୂହ ବ୍ୟାପାର ହୋଇ ଛିଡ଼ା ହୋଇଥାଏ । ଗଡ଼ଜାତର ଲୋକେ ପଳାଇ ଆସି ଓଡ଼ିଶା ମୋଗଲବନ୍ଦୀରେ ଆଶ୍ରୟ ନେଇଥାଆନ୍ତି । ଏମାନଙ୍କ ନେତାମାନଙ୍କ ନାମରେ ଓ୍ୱାରେଣ୍ଟ ବାହାର କରି ଏମାନଙ୍କୁ ଓଡ଼ିଶା ସରକାରଙ୍କ ଦ୍ୱାରା ଧରାଇ ପୁଣି ସେହି ଗଡ଼ଜାତକୁ ପଠାଇ-ଦେବାର ଉଦ୍ୟମ ରାଜନୀତିକ ବିଭାଗ କରୁଥାଏ, ମାତ୍ର ପ୍ରଜାତନ୍ତ୍ରମୂଳକ ଓଡ଼ିଶା ସରକାର ତାହା ବା କରିବେ କିପରି ? ନ କଲେ ଶାସନଗତ ଅସୁବିଧା ଅନେକ ଉଠୁଛି । ଏସବୁ ସମ୍ଭାଳି ଚଳିବାକୁ ମନ୍ତ୍ରୀମାନେ ଯେପରି ବେଗ ପାଉଥାଆନ୍ତି, ମୁଁ ମଧ୍ୟ ସେପରି ବେଗ ପାଉଥାଏଁ । ଶାସନଭାରଠାରୁ ବଡ଼ କାମ ହେଉଛି ସେ ଭାରରେ ଥିବା ବ୍ୟକ୍ତିଙ୍କୁ ସମର୍ଥନ, ଏହା ମୁଁ ସେତେବେଳେ ଅଙ୍ଗେ ନିଭେଇଛି ।

ଦ୍ୱିତୀୟ କାମ ଯାହା ମୋ ଉପରେ ଆସି ପଡ଼ିଲା, ସେ ହେଉଛି ନିଖିଳ ଭାରତ ଗ୍ରାମୋଦ୍ୟୋଗ ସଂଘ ତରଫରୁ ହେଉଥିବା ଓଡ଼ିଶାରେ ଖଜୁରୀଗୁଡ଼, ତାଳଗୁଡ଼, ଓଡ଼ିଶାରେ ମଧୁମକ୍ଷିକା ପାଳନ । ଏ କାମର ଭାରରେ ପ୍ରଥମ ବର୍ଷ ଗୋପବନ୍ଧୁ ଚୌଧୁରୀ ଥିଲେ, ମାତ୍ର ସେ ଛାଡ଼ିଦେଲେ । ଆଉ ଜଣେ କେହି ଭାର ନ ନେଲେ ଏ କାମ ବନ୍ଦ ହୋଇଯିବ; ଏଣୁ ଏ କାମ ମୋ ଉପରେ ପଡ଼ିଲା । ଏ କାମକୁ ଗୋଟିଏ ଧାରାରେ ପକାଇ ମୁଁ ଚଳାଇଥିଲି ଓ ଏ କାମପାଇଁ ସୁଦକ୍ଷ ସହକାରୀ ରୂପେ ମୁଁ ଶ୍ରୀ ଅନିଲକୁମାର ଘୋଷଙ୍କୁ ପାଇଥିଲି ।

ତୃତୀୟ କାମ ଯାହା ମୋ ଉପରେ ଅପ୍ରତ୍ୟାଶିତ ଭାବିରେ ପଡ଼ିଲା, ତାହା ହେଉଛି ସବୁଠାରୁ ବଡ଼ ଓ ଯାହା ଉପରେ ମୋର ଜୀବନର ପ୍ରତିଷ୍ଠା ନିର୍ଭର କରୁଥିଲା ସେ ହେଉଛି ଗଡ଼ଜାତ କାମ । ଓଡ଼ିଶାରେ ଗଡ଼ଜାତ ପ୍ରଜାସମ୍ମିଳନୀ କେତେଥର ହୋଇଯାଇଛି—ମୁଁ କେବେ ଏଥିରେ ଯୋଗ ଦେଇନାହିଁ । କେବଳ 'ପ୍ରଜାତନ୍ତ୍ର' କାମ ବୁଝୁଥିବାବେଳେ କେତେକ ଗଡ଼ଜାତର ସମ୍ବାଦ ପାଉଥାଏଁ । ଅନ୍ୟଥା ଗଡ଼ଜାତ ସମ୍ବନ୍ଧରେ ସାଧାରଣତଃ ମୋର କିଛି ଜ୍ଞାନ ନ ଥିଲା ଓ ମୋର ସେଥିରେ ସ୍ପୃହା ମଧ୍ୟ ନ ଥିଲା । ଓଡ଼ିଶା ଗଡ଼ଜାତ ପ୍ରଜାସମ୍ମିଳନୀର ଶେଷ ଅଧି-ବେଶନରେ ସବୁ ଗଡ଼ଜାତ ଲୋକଙ୍କ ଅଭିଯୋଗ ତଦନ୍ତ କରିବାପାଇଁ ଏକ କମିଟି ନିଯୁକ୍ତ କରିଥିଲେ । ଏ ଅଧିବେଶନର ସଭାପତି ଡାକ୍ତର ପଟ୍ଟାଭି ସୀତାରାମାୟା ହୋଇଥିଲେ । କମିଟିରେ କିଏ କିଏ ଥିଲେ, ତାହା ମଧ୍ୟ ମୋର ମନେ ନାହିଁ । ମାତ୍ର ଅନେକ ଦିନ ପର୍ଯ୍ୟନ୍ତ ଏ ତଦନ୍ତ କମିଟି କାମ କଲା ନାହିଁ । କମିଟିର ଜଣେକ ସଭ୍ୟ ରାଜି ନ ହେବାରୁ ତାଙ୍କ ସ୍ଥାନ ଶୂନ୍ୟ ହେଲା । ଏହି ଅବସ୍ଥାରେ ବମ୍ବେରେ କାର୍ଯ୍ୟନିର୍ବାହକ ସମିତି ବୈଠକରେ ଯୋଗଦେବା ପାଇଁ ମୁଁ ଯାଇଥାଏଁ । ସେଠିକି ସେହି ଉଦ୍ଦେଶ୍ୟରେ ଡାକ୍ତର ପଟ୍ଟାଭି ମଧ୍ୟ ଆସି ଥାଆନ୍ତି, ଦିନେ ହଠାତ୍ ଟେଲିଫୋନ୍‌ରେ ଡାକ୍ତର ପଟ୍ଟାଭି ପଚାରିଲେ, ମୁଁ ସେ ଶୂନ୍ୟସ୍ଥାନରେ ତଦନ୍ତ କମିଟିର ସଭ୍ୟ ହେବାପାଇଁ ରାଜି କି ନାଁ । ମୁଁ ସେ ବିଷୟ କିଛି ଜାଣି ନ ଥିଲି—ମାତ୍ର କେହି ନ ମିଳୁଥିବା ସ୍ଥଳେ ମୁଁ ସଭ୍ୟ ରୂପେ ନିଆ ହେଲେ ମୋର କିଛି ଆପତ୍ତି ନାହିଁ ବୋଲି ତାଙ୍କୁ ଜଣାଇଲି । ତଦନୁସାରେ ସେ ସମ୍ମିଳନୀରେ ସଭାପତି ରୂପେ ମୋତେ ତଦନ୍ତ କମିଟିର ସଭ୍ୟ ରୂପେ ମନୋନୟନ କଲେ । ସେଇଠି ପ୍ରଥମଥର ନିଖିଳଭାରତ ଗଡ଼ଜାତ ପ୍ରଜା-ସମ୍ମିଳନୀର ସମ୍ପାଦକ ବଳବନ୍ତରାୟ ମେହେଟା ଓ ଅନ୍ୟମାନଙ୍କ ସହିତ ଆଳାପ ହେଲା ଓ ମୁଁ ସେମାନଙ୍କ କାର୍ଯ୍ୟରେ କିଛି କିଛି ସୂଚନା ପାଇଲି । କ୍ରମଶଃ ଏ କାମରେ ମନ ଦେଉ ଦେଉ ଏହା ମୋତେ ଅତି କୌତୂହଳଜନକ ଓ ଦରକାରୀ ବୋଲି

ମନେ ହେଲା—ତା’ ପରେ ଧୀରେ ଧୀରେ ଏ କାମରେ ପୂରାମାତ୍ରାରେ ଜଡ଼ିତ ହୋଇଗଲି ।

ତଦନ୍ତ କମିଟିରେ ଶ୍ରୀ ବଳଦେବପ୍ରସାଦ ମହେନ୍ତି, ଶ୍ରୀ ଲାଲମୋହନ ପଟ୍ଟନାୟକ ଓ ମୁଁ ଥିଲୁ । ଏହି କମିଟିର ଅଧ୍ୟକ୍ଷ ମୋତେ କରା ହେଲା । ଶ୍ରୀ ସାରଙ୍ଗଧର ଦାସ, ସେ ନିଜେ ଜଣେ ଗଡ଼ଜାତର ଅତ୍ୟାଚାରିତ ଲୋକ ଓ ଯାହାଙ୍କର ଜାପାନ ଓ ଆମେରିକାରେ ଶିକ୍ଷା ପାଇବାର ତଥା କାର୍ଯ୍ୟ କରିବାର ଅଭିଜ୍ଞତା ଅଛି । ସେ ଓଡ଼ିଶା ଗଡ଼ଜାତ ପ୍ରଜାସମ୍ମିଳନୀର ସମ୍ପାଦକ ଥିଲେ ଓ ସେ ମଧ୍ୟ ଆମ ତଦନ୍ତ କମିଟିର ସମ୍ପାଦକ ରୂପେ କାର୍ଯ୍ୟ କଲେ । ତାଙ୍କର ପରିଶ୍ରମ ଓ ନିଷ୍ଠା ଫଳରେ ଆମ ତଦନ୍ତ କମିଟି ସମସ୍ତ ଓଡ଼ିଶା ଗଡ଼ଜାତରୁ ପ୍ରାୟ ପ୍ରତ୍ୟେକ ବିଷୟରେ ତଥ୍ୟ ସଂଗ୍ରହ କରି ପାରିଥିଲା । ପ୍ରଥମେ ଏକ ପ୍ରଶ୍ନାବଳୀ ଛାପାଇ କରି ତାକୁ ସବୁ ଗଡ଼ଜାତର ପ୍ରଜା ତଥା ରାଜାମାନଙ୍କ ପାଖକୁ ପଠାଇଥିଲୁ । ରାଜାମାନଙ୍କଠାରୁ ମୁଁ ତଦନ୍ତ କମିଟିର ଅଧ୍ୟକ୍ଷ ହିସାବରେ ଆମ ତଦନ୍ତରେ ସାହାଯ୍ୟ କରିବାପାଇଁ ଦୁଇଥର ପତ୍ର ଲେଖିଥିଲି, ମାତ୍ର କେବଳ ପାଟଣା ଷ୍ଟେଟ୍ ଛଡ଼ା ଅନ୍ୟତ୍ର କୁଆଡ଼ୁ କିଛି ଉତ୍ତର ସୁଦ୍ଧା ଆସିଲା ନାହିଁ । ଆମ କମିଟି ସାକ୍ଷ୍ୟ ଗ୍ରହଣ କରିବା ପାଇଁ ବିଭିନ୍ନ ସ୍ଥାନରେ ଗସ୍ତ କରିଥିଲା । ପ୍ରାୟ ପ୍ରତି ଗଡ଼ଜାତରୁ ଶହ ଶହ ଏପରିକି ହଜାର ହଜାର ଲୋକ ଆପତ୍ତି ଅଭିଯୋଗ ନେଇ କମିଟି ଆଗରେ ପହଞ୍ଚୁଥିଲେ । ଯେଉଁମାନେ ଆସୁଥିଲେ, ସେମାନଙ୍କୁ ସାହସ ବାନ୍ଧିବା ପାଇଁ, ଅତ୍ୟାଚାର ଆଗରେ ମୁଣ୍ଡ ନ ନୁଆଁଇବା ପାଇଁ ଆମେ ବୁଝାଉଥିଲୁ । ନାନା ବିଷୟରେ ମୌଖିକ ଓ କାଗଜପତ୍ରର ପ୍ରମାଣ ସଂଗ୍ରହ କରି ଆମ କମିଟି ରିପୋର୍ଟ ଲେଖିବା ପାଇଁ ବ୍ୟବସ୍ଥା କରୁଥିଲେ । ଏହି ସମୟରେ ପ୍ରାୟ ସବୁ ଗଡ଼ଜାତରେ ହୁ’ କରି ନିଆଁ ଲାଗିଯିବା ଭଳି ପ୍ରବଳ ଆନ୍ଦୋଳନ ଆରମ୍ଭ ହୋଇଗଲା । ପ୍ରଥମେ ଆରମ୍ଭ ହେଲା ନୀଳଗିରିରେ । ସେଠାକାର ପ୍ରଜାମାନଙ୍କର ନେତା ଶ୍ରୀ କୈଳାସ ଚନ୍ଦ୍ର ମହାନ୍ତି—ସେ କେବଳ ଗଡ଼ଜାତର ନୁହନ୍ତି, ମୋଗଲବନ୍ଦୀର ମଧ୍ୟ ଜଣେ ମାନ୍ୟଗଣ୍ୟ ଲୋକ । ସେ ନିଜେ ଓକିଲ ଓ ତା’ଛଡ଼ା ପରିଚାଳକ ହିସାବରେ ତାଙ୍କର ଖୁବ୍ ଦକ୍ଷତା ଥିଲା । କୈଳାସ ବାବୁ ମୋତେ କହିଲେ, “ନୀଳଗିରିରେ ଯେପରି ସ୍ୱେଚ୍ଛାଚାର ଶାସନ ଚାଲିଛି, ତା’ର ପ୍ରତିକାରପାଇଁ ଆନ୍ଦୋଳନ କଲେ, ଆପଣ କିପରି ଭାବରେ ସାହାଯ୍ୟ କରି ପାରିବେ । “ମୁଁ ତାଙ୍କୁ କହିଥିଲି, “ଆପଣ ଜେଲ ଗଲେ ମୁଁ ଆପଣଙ୍କ ସହିତ ଜେଲ ଯିବି, ଏହି ପ୍ରକାର ସାହାଯ୍ୟ ଆଉ କିଏଣ” । ଏହା ପରେ ପରେ ପ୍ରଥମେ ସଭା କରିବାରୁ ରାଜନଗରଙ୍କରୁ ଧରପଗଡ଼ ଆରମ୍ଭ ହେଲା । ତା’ପରେ ଆନ୍ଦୋଳନକୁ ସଂଯତ କରି ବିଧିବଦ୍ଧ ଭାବରେ ଚଳା ହେଲା; ନୀଳଗିରି ସୀମାନ୍ତ ବାଲେଶ୍ୱର ଜିଲାର ଏକ ଗ୍ରାମରେ ଆଶ୍ରମ କରି

ସ୍ୱେଚ୍ଛାସେବକ ସଗ୍ରହ କରାହୋଇ ଶିକ୍ଷା ଦିଆଗଲା । ଶ୍ରୀ ଗୌରଚନ୍ଦ୍ର ଦାସ ଏ ଶିକ୍ଷା ଓ ସତ୍ୟାଗ୍ରହ ପରିଚାଳନାର ଭାର ନେଲେ । ସେ ନିଜେ ସମସ୍ତ ଶକ୍ତି ଦେଇ ଏ କାର୍ଯ୍ୟ କୃତିତ୍ୱର ସହିତ କରିଥିଲେ । ପ୍ରଥମରେ ମୁଁ ଭାବିଲି ଯେ, ଏ ଆନ୍ଦୋଳନ ପୁରାପୁରି ଆମ ଦାୟିତ୍ୱରେ ଚାଲିବ, ଯେହେତୁ ଏହା କୌଣସି ଭାରତୀୟ ଆନ୍ଦୋଳନ ବା ପ୍ରାଦେଶିକ ଆନ୍ଦୋଳନର ଅଙ୍ଗ ନୁହେଁ । ଏଣୁ ଖୁବ୍ ସାବଧାନତା ସହକାରେ ପୁରା ଦାୟିତ୍ୱ ନିଜ ଉପରେ ନେଇ ଏହାକୁ ଚଳାଇବାକୁ ହେବ । ତଦନୁସାରେ ପ୍ରତି ପଦକ୍ଷେପରେ ସବୁ ଆଡ଼କୁ ଅନାଇ ଗତି କରିବାକୁ ହେଲା । ଲୋକଙ୍କ ଭିତରେ ଅଦ୍ଭୁତ ଉତ୍ସାହ, ହଜାର ହଜାର ଲୋକ ସଭାକୁ ଆସୁଛନ୍ତି । ନୀଳଗିରିରେ ସଭା ଓ ଶୋଭାଯାତ୍ରା କରିବା ମନା ହୋଇଗଲା । ଏହାର ବିରୋଧ କରିବାରୁ କେତେ-ଜଣଙ୍କୁ ଧରି ଜେଲ ଦିଆ ହୋଇଗଲାଣି ଓ ଜରିମାନା ହୋଇଗଲାଣି, ଆଉ କେତେଜଣଙ୍କୁ ମାଡ଼ ଦିଆ ହୋଇଥାଏ । ଇତିମଧ୍ୟରେ ଜରିମାନା ଆଦାୟ ପାଇଁ ରାଜତରଫରୁ ଉଦ୍ୟମ ହେଲା, ମାତ୍ର ଏପରି ବନ୍ଦୋବସ୍ତ କରାହେଲା ଯେ, ଯେଉଁ ଗାଁରେ ଘର କୋରକ-ହେବ, ସେ ଗାଁକୁ ହଜାର ହଜାର ଲୋକ ନିଜ ଘରୁ ହାଣ୍ଡି ଚାଉଳ ନେଇ ଏପରି ଭାବରେ ଘେରି ରହିଲେ, ଯେଉଁଥିରେ ଷ୍ଟେଟ୍ ପୋଲିସ୍ ପଶି ପାରିଲେ ନାହିଁ । ଷ୍ଟେଟ୍ ତରଫରୁ ଓଡ଼ିଶା ସରକାରଙ୍କୁ ଅଧିକ ପୋଲିସ ସାହାଯ୍ୟ ମଗାହେଲା, ମାତ୍ର ସେତେବେଳକାର କଂଗ୍ରେସ ସରକାର ପୋଲିସ ସାହାଯ୍ୟ ଦେବାକୁ ମନା କଲେ, ତେଣୁ ପଲିଟିକାଲ ଏଜେଣ୍ଟ୍ ମୟୂରଭଞ୍ଜରୁ ପୋଲିସ୍ ସାହାଯ୍ୟ ନେଲେ । ତଥାପି ଗାଁ ଭିତରକୁ ଘର କୋରକ ପାଇଁ ଷ୍ଟେଟ୍ ପୋଲିସ ପଶି ପାରିଲେ ନାହିଁ । ପଲିଟିକାଲ ଏଜେଣ୍ଟ୍ ନିଜେ ଗଲେ ଓ ତାଙ୍କୁ ଗାଁ ଭିତରକୁ ଛାଡ଼ି ଦିଆଗଲା । ସେଇଠି ସେ ବିଶାଳ ଜନତାର ସଂଯମ ଦେଖି ପ୍ରଭାବିତ ହୋଇ-ଥିଲେ ଓ ସେ ଜନତାର ପରିଚାଳକ ବନମାଳୀ ଦାସଙ୍କୁ ଡାକି ପଚାରିଲେ, 'ତୁମେ କଅଣ ଚାହଁ' ? ବନମାଳୀ ଦାବୀ କଲେ ଯେ, "ଜରିମାନା ଆଦାୟ ବନ୍ଦ ହେଉ; ଯେହେତୁ ଏ ଆଦେଶ ବିରୋଧରେ ଆମର ଆପତ୍ତି ଅଛି; ଏଠି ଜମା ହୋଇଥିବା ପୋଲିସ ଏଠାରୁ ଅପସରି ଯାଆନ୍ତୁ ।" ପଲିଟିକାଲ ଏଜେଣ୍ଟ କହିଲେ, "ତୁମର ଲୋକ ହଟିଯାନ୍ତୁ, ଏ ପୋଲିସ ହଟିଯିବେ"—ବହୁ ଆଲୋଚନା ପରେ ଠିକ୍ ହେଲା ଯେ ଏକ ସଙ୍ଗରେ ଉଭୟେ ହଟିବେ । ଯେପରି ସଂଯତ ଭାବରେ ସେ ଜନତା ଅପସରିଗଲା, ସେଥିରେ ପଲିଟିକାଲ ଏଜେଣ୍ଟଙ୍କ ମନରେ ଭଲ ଧାରଣା ଜନ୍ମିଥିଲା । ଏହା ସଙ୍ଗେ ସଙ୍ଗେ ନୀଳଗିରିରେ ଆଇନ୍ ଅମାନ୍ୟ ପାଇଁ ପ୍ରତିଦିନ ସ୍ୱେଚ୍ଛାସେବକ ଯାଉଥାଆନ୍ତି । ଥରେ ଜନତା ଉପରେ ଏପରି ମାଡ଼ ହେଲା ଯେ, ବହୁ ଲୋକ ଆହତ ହୋଇଗଲେ ଓ ତା'ଠାରୁ ବେଶି ଲୋକ ଭୟରେ ପଳାଇଗଲେ । ତା'ପର ଦିନ କୈଳାସ ବାବୁ ନିଜେ ଏକ ଜନତାର ନେତା ହୋଇ

ଆଇନ୍ ଅମାନ୍ୟ କରିବାକୁ ବାହାରିଲେ ଓ ମୁଁ ଦେଇଥିବା ପ୍ରତି-ଶ୍ରୁତି ମୋର ମନେ ପକାଇଦେଲେ । ସେଦିନ ଆଠ ଦଶ ହଜାର ଲୋକ ଏକଜ ହୋଇଥାଆନ୍ତି । ମୁଁ ବାଲେଶ୍ୱରରୁ ମଟରରେ ଯାଉଁଥାଏ । ତେଣୁ ବାଲେଶ୍ୱର କଲେକ୍ଟର ସୋଲମନ୍ ସାହେବ ଆସୁଥାଆନ୍ତି । ବାଟରେ ଦେଖାହେଲା; ସେ ମତାମତ ଜିଦ୍ କଲେ ଯେ ଏ ବିଷୟର ମୀମାଂସା ହେଉ, ନଚେତ୍ ଅନେକ ଲୋକ ଗୁଳିଗୋଳାରେ ମରିବେ । ମୁଁ ତାଙ୍କଠାରୁ ପ୍ରତିଶ୍ରୁତି ନେଲି ଯେ ଯଦି ମୀମାଂସା ନ ହୁଏ, ତେବେ ସେ ସାହାଯ୍ୟ କରିବେ । ସେ ରାଜି ହେଲେ । ମୁଁ ଦ୍ରୁତଗତିରେ ଯାଇ ନୀଳଗିରିକୁ ଯାଉଥିବା ସାତ ଆଠହଜାର ଲୋକଙ୍କ ଆଗରେ ମଟର ରଖି ସେମାନଙ୍କୁ ଅଟକାଇଲି । ସେଇଠି ସଭା ହେଲା—ସେ ସଭାରେ ମୁଁ ବୁଝାଇ କହିଲି ଯେ, ସତ୍ୟାଗ୍ରହର ଆକାର ଯେପରି ଧରୁଛି, ସେଥିରେ ଆମକୁ ଏପରି ଭାବରେ ଗଢ଼ କରିବାକୁ ହେବ, କେହି ଯେପରି ପଛରେ ଆମର ଦୋଷ ନ ଧରିବେ । ପ୍ରଥମେ ରାଜାଙ୍କୁ ପଚାରିବାକୁ ହେବ । ଯଦି ରାଜା ପ୍ରଜାଙ୍କ ଆପତ୍ତି ଶୁଣି ସେ ସବୁ ଦୂର କରିବା ପାଇଁ ରାଜି ହୋଇଯାଆନ୍ତି, ତେବେ ଭଲ; ନଚେତ୍ ଶେଷପର୍ଯ୍ୟନ୍ତ ଲଢ଼ିବାକୁ ହେବ । ଲୋକେ ମୋ କଥା ଶୁଣିଲେ, ବହୁତ କଷ୍ଟରେ କୈଳାସବାବୁ ଓ କର୍ମୀମାନଙ୍କୁ ବୁଝାଇଲି, ସେମାନେ ରାଜି ହେଲେ—ସେଦିନ ସତ୍ୟାଗ୍ରହ ବନ୍ଦ ରହିଲା । ସେହିଦିନ ମୁଁ ରାଜାଙ୍କଠାରୁ ଚିଠି ଲେଖିଥିଲି ଯେ, ମୋ ଦାୟିତ୍ୱରେ ମୁଁ ସତ୍ୟାଗ୍ରହ ସ୍ଥଗିତ ରଖିଛି ଓ ମୋର ଆଶା ସେ ପ୍ରଜାଙ୍କ ଆପତ୍ତି ଶୁଣି ତା'ର ସମାଧାନ କରିବେ । ଏ ଚିଠିର ନକଲ ସୋଲମନ୍ ସାହେବଙ୍କ ନିକଟକୁ ପଠାଇଦେଲି । ତା' ପରଦିନ ପଲିଟିକାଲ ଏଜେଣ୍ଟ ବେଜେଲଗେଟ୍ ସାହେବ ନୀଳଗିରି ଆସିବାର କଥା ଓ ସେ ବାଲେଶ୍ୱର ଷ୍ଟେସନରେ ଓହ୍ଲାଇବେ । ମୁଁ ତାଙ୍କ ପାଖକୁ ଏକ ପତ୍ର ଲେଖିଲି ଓ ତାହା ସେ ଷ୍ଟେସନରେ ଓହ୍ଲାଇଲା ମାତ୍ରକେ ଯେପରି ପାଇବେ ତା'ର ବନ୍ଦୋବସ୍ତ କଲି । ଇତି-ମଧ୍ୟରେ ସୋଲମନ୍ ସାହେବ ସେଦିନ ବେଜେଲଗେଟ୍ ସାହେବଙ୍କୁ ତାଙ୍କ ଘରକୁ ନିମନ୍ତ୍ରଣ କରିଥିଲେ । ତାଙ୍କ ସହିତ ମୋତେ ମଧ୍ୟ ନିମନ୍ତ୍ରଣ ହୋଇଥିଲା । ସେଇଠି ପଲିଟିକାଲ ଏଜେଣ୍ଟ ଓ ମୋ ଭିତରେ ସମୁଦାୟ ବିଷୟ କଥାବାର୍ତ୍ତା ହେଲା । ତା'ପରେ ରାଜା ଓ ପ୍ରଜା ଉଭୟ ପକ୍ଷର ସମସ୍ୟାମାନଙ୍କର ଆଲୋଚନା ଚାଲିଲା । ପ୍ରଜାଙ୍କ ତରଫରୁ କୈଳାସବାବୁ, ରାଜାଙ୍କ ତରଫରୁ ଦେଓ୍ୱାନ ଓ ମୁଁ ମଧ୍ୟସ୍ଥ ହୋଇ ତିନିଜଣ ସମସ୍ତ ବିଷୟ ଆଲୋଚନା କଲୁ । ମଝିରେ ମଝିରେ ସବୁ ଭାଙ୍ଗିଭୁଙ୍ଗି ଯାଇ ପୁଣି ସତ୍ୟାଗ୍ରହ ଆରମ୍ଭ ହୋଇଯିବାର ସୂଚନା ଦେଖାଯାଏ । ଏଣେ ଗୌର ଜନ-ସାଧାରଣଙ୍କ ଭିତରେ ଏପରି ଶୃଙ୍ଖଳା ରକ୍ଷା କରିଥାଏ ଯେ, ତା' ନ ହୋଇଥିଲେ ତେଣେ ମିଳାମିଶା ବୋଧହୁଏ ହୋଇପାରି ନ ଥା'ନ୍ତା । ଯେ ମିଳାମିଶାରେ ମୋତେ କେତେ ପରିଶ୍ରମ ଓ ମୁଣ୍ଡ ଖର୍ଚ୍ଚ କରିବାକୁ ପଡ଼ୁଛି, ତାହା ଏଠି ଲେଖି ହେବନାହିଁ ।

ରାଜ ରାଜା ହଜାରରୁ ଋଦ୍ର ଉଭୟ କପର ସୁଜ ହେବେ ଏପରି ସମାଧାନ ଖୋଜି-ବାକୁ ଚେଷ୍ଟା । ଶେଷରେ ମିଳାମିଶା ହୋଇଗଲା । ଏ ମିଳାମିଶା ସର୍ତ୍ତ ସବୁ ରାଜାଙ୍କ ସହିତ, ତେଣେ ଜେଲ୍‌ରେ ଥିବା ବନ୍ଦୀମାନଙ୍କ ସହିତ ଆଲୋଚନା କରି ସମସ୍ତଙ୍କ ସମ୍ମତ କରାଇଥିଲି । ବାକି ରହିଲା ବନ୍ଦୀ ଖଲାସ ହେବେ ଓ ଲୋକଙ୍କ ତରଫରୁ ଯେ ବାସନ୍ଦ ଚାଲିଛି, ତାହା ବନ୍ଦ ହେବ । ହାଟବଜାର ବନ୍ଦ ଓ ରାଜା ଘରକୁ ବାସନ୍ଦ, ଲୋକଙ୍କର ଆନ୍ଦୋଳନ ଏହି ଆକାରରେ ଥାଏ । ପଲିଟିକାଲ ଏଜେଣ୍ଟ ମୋତେ କହିଲେ ଯେ, "ତୁମେ ବାସନ୍ଦ ଉଠାଇଦିଅ, ମୁଁ ବନ୍ଦୀଙ୍କୁ ଖଲାସ କରି-ଦେବି ।" ତାଙ୍କ କଥାରେ ବିଶ୍ୱାସ କରି ବାସନ୍ଦ ଉଠାଇବାର କଥା ହେଲା— ରାତାରାତି ସବୁଆଡ଼େ ବୁଲି ବାସନ୍ଦ ଉଠାଇବାକୁ ହେଲା । ତା' ପରଦିନ ହାଟ ହେଲା । ସେହିଦିନ ବନ୍ଦୀମାନେ ମଧ୍ୟ ଖଲାସ ହେଲେ ।

ଏହି ଆନ୍ଦୋଳନର ପ୍ରତ୍ୟକ୍ଷ ପରିଚାଳନା ଓ ପୁଣି ତା'ର ସମାପ୍ତି ପର୍ଯ୍ୟନ୍ତ ପ୍ରତ୍ୟେକ ବିଷୟକୁ ତନ୍ନ ତନ୍ନ କରି ଆଲୋଚନା କରିବା ଫଳରେ ମୋର ଅଭିଜ୍ଞତା ଯଥେଷ୍ଟ ବୃଦ୍ଧି ପାଇଥିଲା ଓ ନାନା କ୍ଷେତ୍ରରେ ଭାରତୀୟ ଆନ୍ଦୋଳନ ପରିଚାଳନାରେ ଗାନ୍ଧିଜୀ କଅଣ କରୁଛନ୍ତି, ତାହା ମଧ୍ୟ ମୁଁ ବୁଝିପାରିଲି । ମୋର ଅଭିଜ୍ଞତା ବିଷୟ ମୁଁ ଗାନ୍ଧିଜୀଙ୍କୁ କହିଥିଲି । ସେ ମୋ ସହିତ ଏକମତ ହୋଇଥିଲେ । ମୋର ସୌଭାଗ୍ୟ ଆଉ ଗୋଟିଏ ଗଡ଼ଜାତ ଆନ୍ଦୋଳନ ସିଧା ଗାନ୍ଧିଜୀଙ୍କ ନେତୃତ୍ୱ ଅଧୀନରେ ମୋତେ ଚଳାଇବାକୁ ପଡ଼ିଥିଲା ।

ନୀଳଗିରି ପରେ ଢେଙ୍କାନାଳରେ ଆନ୍ଦୋଳନ ଆରମ୍ଭ ହୋଇଗଲା । ଏଠାରେ ଅକଥନୀୟ ଅତ୍ୟାଚାର ହେଉଥିବାର ଶୁଣାଯାଉଥିଲା ଏବଂ ଆମେ ମଧ୍ୟ ସେ ସବୁର ପ୍ରମାଣ ପାଇଥିଲୁ । ଏଠାରେ ପ୍ରଥମେ ସଭା ହେଲା ମାତ୍ରକେ କେତେଜଣଙ୍କୁ ଧରି ଜେଲ୍ ଦିଆ ହୋଇଗଲା; ତା' ପରେ ପ୍ରାୟ ସାତ ଆଠ ହଜାର ଲୋକ ଏକତ୍ର ହୋଇ ବନ୍ଦୀମାନଙ୍କୁ ଖଲାସ କରିନେବାକୁ ବସିଲେ । ଭୟଭୀତ ହୋଇ ବନ୍ଦୀମାନଙ୍କୁ ଷ୍ଟେଟ ଛାଡ଼ିଦେଲା । ଏହି ଜନତା ଓ ଷ୍ଟେଟ ପୋଲିସ ସଂଘର୍ଷରେ ଅନେକ ଲୋକ ଓ କେତେକ କର୍ମଚାରୀ ଆହତ ହେଲେ । ବିଶାଳ ଜନତାକୁ ମୁଷ୍ଟିମେୟ ପୋଲିସ୍ ଦ୍ୱାରା ଜବତ୍ କରିବାକୁ ଚେଷ୍ଟା କରିବା ନିର୍ବୋଧତା । ଏହା ପରେ ଢେଙ୍କାନାଳ ରାଜା ମୋତେ ସେଠାକୁ ଯିବା ପାଇଁ ତାର କଲେ । ମୋର ମଧ୍ୟ ସେଠାକୁ ଯିବାର ଥିଲା—ଏ ତାରର ସୁବିଧା ନେଇ ଓ ନୀଳଗିରିର ଅଭିଜ୍ଞତାକୁ ଆହୁରି ସଫଳତାର ସହିତ କାମରେ ଲଗାଇବା ପାଇଁ ମୁଁ ଉତ୍ସାହିତ ହୋଇଗଲି । କଟକର ଶ୍ରୀ ସତ୍ୟନାରାୟଣ ସେନ୍‌ଗୁପ୍ତାଙ୍କୁ ସାଙ୍ଗରେ ନେଇ ଯାଇଥିଲି । ତାଙ୍କର ଢେଙ୍କାନାଳ ଦରବାରରେ ପ୍ରତିପତ୍ତି ଥିବାର ମୁଁ ଜାଣିଥିଲି । ପ୍ରଥମେ ରାଜାଙ୍କୁ

ପ୍ରବର୍ତ୍ତାଇଲି—ପ୍ରଜାଙ୍କ ଅଭିଯୋଗ ବିଷୟ ସେମାନଙ୍କ ନେତାଙ୍କ ସହ ଆଲୋଚନା କରି ମିଳାମିଶା କରନ୍ତୁ। ମୁଁ ଥିବା ସମୟରେ ପଲିଟିକାଲ୍ ଏଜେଣ୍ଟ ବ୍ରେକେଲ୍-ଗେଟ୍ ସାହେବ ମଧ୍ୟ ଆସିଲେ। ତାଙ୍କ ସହିତ ଦେଖା କଲି। ମୁଁ ଭାବିଥିଲି ଯେ, ଏଠାରେ ସହଜରେ କଥା ତୁଟିଯିବ। ଯେଉଁଦିନ ପୋଲିସ୍ ଓ ଜନତା ଭିତରେ ସଂଘର୍ଷ ହେଲା, ସେହିଦିନର ଘଟଣା ତଦନ୍ତ କରିବା ପାଇଁ ଗୋଟିଏ କମିଟି ନିଯୁକ୍ତ କରିବାକୁ ରାଜା ରାଜି ହେଲେ। ମୋର ଉପସ୍ଥିତିରେ ପ୍ରଜା ପକ୍ଷରୁ ନେତା ତିନି ଚାରିଜଣ, ରାଜାଙ୍କ ପକ୍ଷରୁ ଦେୱାନ ଓ ଆଉ ଜଣେ ଦୁଇଜଣ କର୍ମଚାରୀ ଏକାଠି ବସି ପ୍ରଜାଙ୍କ ଦାବୀ ବିଷୟ ଆଲୋଚନା କଲେ, ମାତ୍ର ମୁଁ ଲକ୍ଷ୍ୟ କରୁଥାଏ ଯେ, କୈଳାସ ବାବୁଙ୍କ ପରି ଏଠାରେ ପ୍ରଜାପ୍ରତିନିଧି ନାହାନ୍ତି—ଯାହା ହେଉ କୌଣସି ପ୍ରକାରେ ଏହା ଚାଲିଥାଏ। ଇତିମଧ୍ୟରେ ରାଜାଙ୍କ ତରଫରୁ ଅଭିଯୋଗ ହେଲା ଯେ ମିଳାମିଶା କଥାବାର୍ତ୍ତା ଏଠାରେ ହେଉଥିବାବେଳେ କେତେକ ଲୋକ ରାଜ-କର୍ମଚାରୀ ଓ ରାଜପକ୍ଷ ଲୋକଙ୍କ ଉପରେ ଅତ୍ୟାଚାର କରୁଛନ୍ତି। ଲୋକଙ୍କ ତରଫରୁ ସବୁ ଜିମ୍ମାଦାରି ନେବାପାଇଁ ସେପରି କୌଣସି ସ୍ଥାନୀୟ ନେତା ନ ଥିବା ମୋ ପକ୍ଷରେ ବଡ଼ ଅସୁବିଧାଜନକ ହେଲା। ନୀଳଗିରିରେ ଲୋକମାନଙ୍କ ଉପରେ ଯେପରି ସେଠା ନେତାଙ୍କର ପୂରା ଅଖ୍ତିଆର ଥିଲା ଓ ସେଠାରେ ଯେପରି ସଙ୍ଗଠନ ଥିଲା, ଏଠାରେ ସେପରି ନ ଥିବାରୁ ମିଥ୍ୟା ଅଭିଯୋଗକୁ ମଧ୍ୟ ମିଥ୍ୟା ବୋଲି ପ୍ରମାଣ କରି ହେଲାନାହିଁ। ନୀଳଗିରିରେ ଲୋକଙ୍କ ତରଫରୁ ରାଜପକ୍ଷ ଲୋକଙ୍କ ଉପରେ ଅତ୍ୟାଚାର ହେଉଛି ବୋଲି ଅଭିଯୋଗ ଆସୁଥିଲା, ମାତ୍ର ତତ୍‌କ୍ଷଣାତ୍ ତାହା ମିଥ୍ୟା ବୋଲି ପ୍ରମାଣିତ ହୋଇଯାଉଥିଲା—ଏଠାରେ ସଙ୍ଗଠନ ସେପରି ନ ଥିଲା, ଆଉ ମଧ୍ୟ ସୁଦକ୍ଷ ନେତା କେହି ନ ଥିଲେ। ତଥାପି ଏ ଅସୁବିଧା ମଧ୍ୟରେ ମୁଁ ସାହସ-ସହକାରେ ଗତି କରୁଥାଏଁ।

ଇତି ମଧ୍ୟରେ କଂଗ୍ରେସ କାର୍ଯ୍ୟନିର୍ବାହକ ସମିତିରେ ଯୋଗଦେବା ପାଇଁ ମୋର ଦିଲ୍ଲୀ ଯିବାର ହେଲା—ମୁଁ କଟକ ଆସିଲି। ଆସି ଶୁଣେ ଯେ ଓଡ଼ିଶା ଗଡ଼-ଜାତ ସମ୍ମିଳନୀର ସମ୍ପାଦକ ଏକ ସାଧାରଣ ସଭାରେ ମୋର ନିନ୍ଦାବାଦ କରିଛନ୍ତି। ମୁଁ ତାହାଙ୍କ ଯାଇ ମିଳାମିଶାର ଉଦ୍ୟମ କଲି। ମିଳାମିଶା ଯେଉଁ ପ୍ରକାଣ୍ଡ ଅସୁବିଧା ଭିତରେ ଚାଲୁଥିଲା, ସେଥିରେ ପ୍ରଜାସମ୍ମିଳନୀର ସମ୍ପାଦକ ମୋର ନିନ୍ଦାବାଦ କରିବା ଫଳରେ ମୁଁ ଭାବିଲି ଯେ, ମୋ ଦ୍ୱାରା ବେଶି କିଛି କାମ ହୋଇ ପାରିବ ନାହିଁ; ତେଣୁ ମୁଁ ଅପସରି ଗଲି। ଏଠାରେ ଏହି ଶିକ୍ଷା ହେଲା ଯେ ସ୍ଥାନୀୟ ନେତା ଖୁବ୍ ସୁଦକ୍ଷ ନ ଥିଲେ କୌଣସି ଆନ୍ଦୋଳନ ଯଶସ୍ୱୀ ହେବାର ସମ୍ଭାବନା ନାହିଁ, କେବଳ ଲୋକଙ୍କ ଉତ୍ସାହ ଥିଲେ ହେବ ନାହିଁ, ପରିଚାଳକ ମଧ୍ୟ ଦରକାର। ତା' ପରେ ଏହି

ଢେଙ୍କାନାଳ ବିଷୟ ନେଇ ମୋର ଅନେକ ସହକର୍ମୀଙ୍କ ସହିତ ମତଭେଦ ହେଲା । ମୋର ଦିଲ୍ଲୀ ଯିବା ପରେ ଇଂରେଜ ସୈନ୍ୟ ଆସିଲେ । ସେମାନଙ୍କ ଉପସ୍ଥିତିରେ ଢେଙ୍କାନାଳରେ ଅକଥନୀୟ ଅତ୍ୟାଚାର ଚାଲିଲା । ସେ ଅତ୍ୟାଚାର ଯେ ଜାଣିଛି, ସେ ନାଜିମାନ ଓ ଇଂରେଜଙ୍କ ଚରିତ୍ର ଶାସନମାନରେ କୌଣସି ପ୍ରଭେଦ ଦେଖିବ ନାହିଁ । ଇତିମଧ୍ୟରେ ତାଳଚେରରେ ଆନ୍ଦୋଳନ ଆରମ୍ଭ ହେଲା । ସେଠାରେ ଗୁଳି ହୋଇ ଅନେକ ଲୋକ ମରିଗଲେ । ମୁଁ ଦିଲ୍ଲୀରେ ଥାଏଁ, ଏହି ସମୟରେ ତାଳଚେରର ଲୋକ ଗାନ୍ଧିଜୀଙ୍କ ପାଖକୁ ତାର କଲେ । ଗାନ୍ଧିଜୀ ମୋତେ ସେ ତାର ଦେଖାଇ ସେ କାମ ହାତକୁ ନେବାକୁ କହିଲେ । ଢେଙ୍କାନାଳ ବ୍ୟାପାରକୁ ଛାଡ଼ିଦେବା ଭୁଲ୍ ହୋଇଛି ବୋଲି ଗାନ୍ଧିଜୀ କହିଲେ । ତାଳଚେର ଆନ୍ଦୋଳନରେ ସେ ନିଜେ ସମସ୍ତ ପରାମର୍ଶ ଦେବେ ବୋଲି ରାଜି ହେଲେ । ଦିଲ୍ଲୀରୁ ଫେରି ମୁଁ ତାଳଚେରର ନେତା ଓ କର୍ମୀମାନଙ୍କ ସହିତ ଆଲୋଚନା କରି ଜାଣିଲି ଯେ, ଏଠାରେ ଲୋକଙ୍କୁ ଅନ୍ଧାରରେ ରଖିବା ଭଳି ନେତା ଅଛନ୍ତି । ତା' ପରେ ମୁଁ ତାଳଚେର ରାଜାଙ୍କ ସହିତ ଦେଖା କଲି । ଏଠାରେ ଚତୁରତା ବଳରେ ମୋତେ ପରାସ୍ତ କରିବା ପାଇଁ ଉଦ୍ୟମ ହେଲା, ମାତ୍ର ତାହା ସଫଳ ହେଲାନାହିଁ । ତାଳଚେରରେ ଜେଲ୍ ଭିତରେ ରାଜବନ୍ଦୀମାନଙ୍କ ପ୍ରତି ଭୟଙ୍କର ଅତ୍ୟାଚାର ହେଲା—ଗାନ୍ଧିଜୀ ପରାମର୍ଶ ଦେଲେ ଯେ, ସେ ରାଜ୍ୟ ଛାଡ଼ି ଦେଇ ଚାଲି ଆସିବା ଉଚିତ । ପ୍ରାୟ ତିରିଶ ହଜାର ସ୍ତ୍ରୀ, ପୁରୁଷ ଓ ବାଳକ ଘରଦ୍ୱାର ଛାଡ଼ି ପଳାଇ ଆସି ନିକଟବର୍ତ୍ତୀ ମୋଗଲବନ୍ଦୀ ଇଲାକା ଅନୁଗୁଳରେ ରହିଲେ । ଏମାନଙ୍କ ଚଳିବାର ବନ୍ଦୋବସ୍ତ, ଏମାନଙ୍କ ଆନ୍ଦୋଳନକୁ ଶେଷ ସୀମାରେ ପହଞ୍ଚାଇବାର ଚିନ୍ତା ମୋତେ ଅଳ୍ପ ସମୟ ପାଇଁ ବିବ୍ରତ କରି ଦେଇଥିଲା, ମାତ୍ର ମୁଁ ସାହସ ସହକାରେ ଅଗ୍ରସର ହେଲି । ଭାଗ୍ୟକୁ ଠକର ବାପା ଏ ବିଷୟରେ ଦୃଢ଼ହାନ୍ୱିତ ହେଲେ ଓ ସେ ମାରଓ୍ୱାଡ଼ି ରିଲିଫ୍ ସୋସାଇଟିକୁ ଏଠାରେ ରିଲିଫ୍ କାର୍ଯ୍ୟ କରିବା ପାଇଁ ବନ୍ଦୋବସ୍ତ କଲେ । ସେମାନେ ପ୍ରାୟ ପନ୍ଦର ହଜାର ଟଙ୍କା ଏଠାରେ ଖରଚ କଲେ ।

ହଜାର ହଜାର ଲୋକ ସ୍ତ୍ରୀ, ପିଲା ଧରି ମେଳରେ ପଡ଼ି ରହିବା କି କରୁଣ ଦୃଶ୍ୟ, ପାଠକେ ଅନୁମାନ କରି ପାରୁଥିବେ । ମୁଁ ଏମାନଙ୍କ ସାଙ୍ଗରେ କିଛିଦିନ ଥିଲି ; ମୋ ଆଖି ଆଗରେ ଗୋଟିଏ ସାନପିଲା ନିଉମୋନିଆରେ ମରିଯାଇଥାଏ । ତା'ର ମାଆ ଓ ଭଉଣୀ କାନ୍ଦି ଗଡ଼ି ଯାଉଥାନ୍ତି; ଅଥଚ ସେମାନେ ନିଜ ଘରକୁ ଫେରି ଯା'ଉ ନଥାନ୍ତି; ଏ ଦୃଶ୍ୟ ଦେଖି ମୁଁ ଅଭିଭୂତ ହୋଇଗଲି । ରାଜା ତେଣେ ପ୍ରଚାର ଚଳାଇଥାନ୍ତି ଯେ ତାଙ୍କ ରାଜ୍ୟ ଠିକ୍ ଅଛି, କେହି କୁଆଡ଼େ ରାଜ୍ୟ ଛାଡ଼ି ଯାଇ ନାହାନ୍ତି, ମାତ୍ର ଏ ପ୍ରଚାର ଅତି ମିଥ୍ୟା ଓ ଏଥିପାଇଁ ରାଜଦରବାର କଲିକତାରୁ

ଷ୍ଟେଟ୍‌ସ୍‌ମ୍ୟାନ୍ କାଗଜରୁ ମଧ୍ୟ ଉରସ୍କାର ଶୁଣିଲେ, ମାତ୍ର ଆନ୍ଦୋଳନର ଶେଷ କେଉଁଠି ? ରାଜା ଜିଦ୍ ଧରି ବସିଛନ୍ତି ଯେ ସେ କିଛି କରିବେ ନାହିଁ, ପଲିଟିକାଲ ଡିପାର୍ଟମେଣ୍ଟ ମଧ୍ୟ ଜିଦ୍‌ଧରି ବସିଛନ୍ତି ଯେ ସେ ରାଜାଙ୍କୁ ଏ ବିଷୟରେ କିଛି କହିବେ ନାହିଁ । ଏଣେ ଓଡ଼ିଶା ସରକାର ଏତେ ଗୁଡ଼ିଏ ନିରାଶ୍ରୟ ପଳାତକଙ୍କୁ ନେଇ ଅତି ବ୍ୟସ୍ତ । କେତେ ଦିନ ବା ହଜାର ହଜାର ପଳାତକ କି ଆଶାରେ ଘରଦ୍ୱାର ଛାଡ଼ି ପଡ଼ି ରହିବେ ? ଏକ ବିଷମ ପରିସ୍ଥିତି ଉପସ୍ଥିତ ହୋଇଥାଏ । ଏହି ସମୟରେ ମୁଁ ଗାନ୍ଧିଜୀଙ୍କ ସହିତ ଅହିଂସାତ୍ମକ ଆନ୍ଦୋଳନ ପରିଚାଳନା-କୌଶଳ ସମ୍ବନ୍ଧରେ ଅନେକ କଥା ଶୁଣିଥିଲି । ସେ ନିଜେ ଆଧ୍ୟାତ୍ମିକତାର ଦ୍ୱାରା ପ୍ରଣୋଦିତ ହୋଇ ଅହିଂସାର ବ୍ୟବହାର କରୁଥିଲେ ମଧ୍ୟ ଏହାର ବିଚାର ଅତି ବ୍ୟାବହାରିକ ଦୃଷ୍ଟିରୁ କରାଯାଇପାରିବ, ଏ କଥା ସେତେବେଳେ ଭଲକରି ଗାନ୍ଧିଜୀ ମୋତେ ବାରମ୍ବାର କହୁଥାଆନ୍ତି । "କାର୍ଯ୍ୟରେ ଯାହା ଦେଖୁଛ ତଦନୁସାରେ ଗତି କର" । ମୁଁ ସେହି ସମୟରେ ଉପଲବ୍ଧି କଲି ଯେ ହିଂସାଯୁକ୍ତ ଯେପରି ବହୁ ଗଣନା ଓ ଗବେଷଣା ସହିତ ଚାଲେ, ଅହିଂସା ଯୁଦ୍ଧ ମଧ୍ୟ ସେହିପରି, ଏପରିକି ତା'ଠାରୁ ବେଶି । ପ୍ରତ୍ୟେକ କାର୍ଯ୍ୟ ଲୁଆଡ଼େ କାହାଠି କିପରି କାର୍ଯ୍ୟ କରିବ ସବୁ ବିଚାର କରି, ଏଣେ ଜନତାର ନାଡ଼ି ଉପରେ ଅଙ୍ଗୁଳି ରଖି ଅହିଂସା ଆନ୍ଦୋଳନ ପରିଚାଳିତ ହେବ । ସେ ସମୟରେ ବାସ୍ତବିକ ମୋର ଯେ ଶିକ୍ଷା ହେଲା, ତାହା ଦଶବର୍ଷ ବସି ବହି ପଢ଼ିଥିଲେ ବା ଆଶ୍ରମରେ ଶିକ୍ଷା ପାଇଥିଲେ ହୋଇ ନ ଥାନ୍ତା ।

ଗାନ୍ଧିଜୀଙ୍କ ନିର୍ଦ୍ଦେଶାନୁସାରେ ମୋର ବିଚାର ପ୍ରୟୋଗ କରି ଏପରି ଏକ ପରିସ୍ଥିତି ସୃଷ୍ଟି କଲି, ଯେଉଁଥିରେ ସହକାରୀ ପଲିଟିକାଲ୍ ଏଜେଣ୍ଟ୍, ଓଡ଼ିଶା ସରକାରଙ୍କ ତରଫରୁ କମିଶନର ସାହେବ ଓ ମୁଁ ବସି ତାଳଚେର ସମସ୍ୟା ଆଲୋଚନା କରି ପଲିଟିକାଲ୍ ଏଜେଣ୍ଟ୍ ଓ ମୋ ଭିତରେ ଏକମତ ହୋଇ ସମସ୍ୟା ସମାଧାନ ସମ୍ପର୍କରେ କେତେ ନିଷ୍ପତ୍ତି କଲୁ । ଲୋକଙ୍କ ତରଫରୁ ମୁଁ ଜବାବ୍ ଦେଲି ଯେ, ଆମ ଚୁକ୍ତି ଅନୁସାରେ ସର୍ତ୍ତ ପୂର୍ଣ୍ଣ ହେଲେ, ମୁଁ ପଳାତକମାନଙ୍କୁ ଫେରାଇବି । ପଲିଟିକାଲ ଏଜେଣ୍ଟ ଜବାବ୍ ଦେଲେ ଯେ ସେ ରାଜାଙ୍କୁ କହି ସେ ସର୍ତ୍ତ ସବୁ ପୂରଣ କରାଇବେ । ଯେଉଁ ସର୍ତ୍ତରେ ମୁଁ ସମ୍ମତ ହୋଇ ଆସିଲି, ସେ ସର୍ତ୍ତସବୁରେ ତାଳଚେରର କର୍ମୀ ଓ ନେତାମାନଙ୍କୁ ବହୁତ ବୁଝାଇ ସୁଝାଇ ରାଜି କରାଇଲି । ପଳାତକମାନେ ଶୀଘ୍ର ଫେରିଯିବେ ଓ ତାଳଚେର ସମସ୍ୟାର ଶୀଘ୍ର ସମାଧାନ ହୋଇଯିବ, ଏଥିରେ ମୋତେ ଆଶ୍ୱସ୍ତି ଅନୁଭବ କରିବାକୁ ଦେଲି ମିଳିଲା ନାହିଁ । ଢେଙ୍କାନାଳରେ ବାସ୍ତବିକ ଅମାନୁଷିକ ଅତ୍ୟାଚାର ଚାଲିଥାଏ । ଏଣେ ଖବର ମିଳିଲା ଯେ ତାଳଚେର ସମସ୍ୟା ସମାଧାନ ହେବାରେ ବହୁତ ବାଧା ଉପସ୍ଥିତ ହେଲାଣି । ଏହାକୁ ସମ୍ପୂର୍ଣ୍ଣ କରିବାପାଇଁ

ତେଣେ ରଣପୁରରେ ବେଜେଲ୍‌ଗେଟ୍ ସାହେବ ନିହତ ହେବାରେ ଏକ ବିଷମ ସମସ୍ୟା ସୃଷ୍ଟି ହେଲା । ଏ ସବୁ ଖାଙ୍ଗେ ସାଙ୍ଗେ ଏପରି ଭାବରେ ଘଟୁଥାଏ ଯେ, ସେ ସମୟରେ ନିଜର ମସ୍ତିଷ୍କକୁ ଠିକ୍ ରଖି କାମ କରିବା ଅତୀବ କଷ୍ଟକର, ମାତ୍ର ସେଥିରେ ଏତେ ଆନନ୍ଦବୋଧ ହେଉଥାଏ ଯେ, ସେ ସମୟରେ ମୁଁ ଅନୁଭବ କରୁଥାଏଁ, ଯେପରି ଅନ୍ତର୍ନିହିତ ଶକ୍ତି ବିକଶିତ ହେବାର ଏକ ଅବକାଶ ମିଳିଛି । ସେତେବେଳେ ଯେଉଁ ଉଦ୍‌ବେଗ ଓ ଯେଉଁ ବିପଦ ସେଥିରେ କେବଳ ଗାନ୍ଧିଜୀଙ୍କ ପ୍ରତ୍ୟକ୍ଷ ପ୍ରେରଣା ମୋର ବଳ ହୋଇଥାଏ ଓ ମୋର ଏତିକି ଆନନ୍ଦ ଯେ ମୁଁ ସେ ପ୍ରେରଣା ଅନୁସାରେ ନିଜକୁ ପରିଚାଳିତ କରିପାରୁଥାଏ ।

ଏହି ସମୟରେ ମିସ୍ ଆଗାଥା ହ୍ୟାରିସନଙ୍କୁ ଓଡ଼ିଶା ଆଣିଥିଲି । ତାଙ୍କର ଓଡ଼ିଶା ଗଡ଼ଜାତ ସମ୍ବନ୍ଧରେ ପ୍ରତ୍ୟକ୍ଷ ଧାରଣା ଜନ୍ମାଇଥିବାରୁ ମୁଁ ନାନା ଉପାୟରେ ସାହାଯ୍ୟ ଓ ସମର୍ଥନ ପାଇପାରିଥିଲି । ଏହି ଆନ୍ଦୋଳନ ଭିତରେ ରବୀନ୍ଦ୍ରନାଥ ଓଡ଼ିଶାରେ ଥିଲେ । ତାଙ୍କ ସହିତ କବୁଦନ ମଧ୍ୟ ଆଣ୍ଡ୍ରୁଜ୍ ସାହେବ ଥିଲେ । ଆଣ୍ଡ୍ରୁଜ୍ ସାହେବଙ୍କଠାରୁ ମଧ୍ୟ ମୁଁ ପ୍ରଭୂତ ସାହାଯ୍ୟ ପାଇଥିଲି । ତାଲଚେର ପଳାତକମାନଙ୍କ-ପାଇଁ ମଧ୍ୟ ଅନୁଗୁଳରେ ସାଲ୍‌ଭେସନ୍ ଆର୍ମିର ହଜ୍ ସାହେବ ମିସ୍ ଆଗାଥା ହ୍ୟାରି-ସନଙ୍କ ପ୍ରରୋଚନାରେ ଯଥାସାଧ୍ୟ ଚେଷ୍ଟା କରିଥିଲେ । ଇତିମଧ୍ୟରେ କଂଗ୍ରେସ ଭିତରେ ଗୋଳମାଳ ଓ କଂଗ୍ରେସ ଶାସନକୁ ଭିତର ଓ ବାହାର ଆକ୍ରମଣରୁ ରକ୍ଷା କରିବାପାଇଁ ଅନେକ କାର୍ଯ୍ୟ କରିବାକୁ ପଡ଼ୁଥାଏ । ଏକ ସମୟରେ ସବୁ ଘଟଣା ଘଟୁଥାଏ, ମାତ୍ର ଗୋଟିକ ପରେ ଗୋଟିଏ ଉଲ୍ଲେଖ କରିବା ସୁବିଧାଜନକ । ପ୍ରଥମ ତାଲଚେର ବିଷୟ । ସହକାରୀ ପଲିଟିକାଲ୍ ଏଜେଣ୍ଟ ଓ ମୋ ଭିତରେ ଯେଉଁ ଚୁକ୍ତିନାମା ହୋଇଥିଲା, ତାହା ମହାତ୍ମା-ହେନ୍ରି ଚୁକ୍ତି ବୋଲି କଥିତ ଓ ତାକୁ କାର୍ଯ୍ୟରେ ପରିଣତ କରିବାପାଇଁ ବହୁତ ବେଗ ପାଇବାକୁ ହୋଇଥିଲା । ଏ ସମ୍ପର୍କରେ ମୁଁ ତତ୍‌କାଳୀନ ଓଡ଼ିଶାର ଲାଟ୍ ସାର ଜନ୍ ଅଷ୍ଟିନ୍ ହବ୍‌ବାକଙ୍କ ସହିତ ଦେଖା କରି ତାଙ୍କର ସାହାଯ୍ୟ ପାଇବାକୁ ବାରମ୍ବାର ଚେଷ୍ଟା କରୁଥିଲି । ଗାନ୍ଧିଜୀ ମଧ୍ୟ ଏ ସମ୍ପର୍କରେ ହରିଜନରେ ଲେଖିଥିଲେ, ଆଉମଧ୍ୟ ସେ ବଡ଼ଲାଟଙ୍କୁ ଏ ବିଷୟ ଜଣାଇଥିଲେ । ଏ ଚୁକ୍ତିରୁ ଖସିଯିବାପାଇଁ ରାଜା ଓ ପଲିଟିକାଲ ଡିପାର୍ଟମେଣ୍ଟ ସମସ୍ତ ଚତୁରତା ପ୍ରୟୋଗ କରିଥିଲେ, ମାତ୍ର ମୁଁ ଅତି ସାବଧାନତା ସହକାରେ ପ୍ରତ୍ୟେକ କାର୍ଯ୍ୟ କରିଥିବାରୁ ସେମାନେ ସେଥିରେ ବ୍ୟର୍ଥ ହୋଇଥିଲେ । ଶେଷରେ କଲିକତାରେ ଥିବା ରେସିଡେଣ୍ଟ କଲ ବାର୍ଟାନ, ମିସ୍ ହ୍ୟାରିସନ୍ ଓ ମୁଁ ଆଲୋଚନା କରି ସେ ଚୁକ୍ତିନାମାନୁସାରେ କିପରି କାର୍ଯ୍ୟ ହେବ, ତା'ର ବ୍ୟବସ୍ଥା ହେଲା । କଲ୍-ବାର୍ଟାନ୍ ମୋତେ ସିଧା ତାଲଚେର ପଠାଇଲେ ଓ ସେତେବେଳେ ନୂଆ ପଲିଟିକାଲ

ଏଜେଣ୍ଟ ମେଜର୍ ସାର୍ଲଙ୍କୁ ମଧ୍ୟ ସେଠାକୁ ପଠାଇଲେ । ସେତେବେଳେ ନିଖିଳ ଭାରତ କଂଗ୍ରେସ କମିଟି ବୈଠକ ସମ୍ପର୍କରେ ମହାତ୍ମା ଗାନ୍ଧୀ କଲିକତାରେ ଥାଆନ୍ତି । ମୁଁ ତାଙ୍କ ସହିତ ଆଲୋଚନା କରି ତାଳଚେର ଗଲି । ସକାଳଓଲି ରାଜା ଖୁବ୍ ସମ୍ମାନ ଦେଖାଇଲେ । ମେଜର ସାର୍ଲ ଓ ମୁଁ ଏକ ସଙ୍ଗରେ ରହିଲୁ । ସନ୍ଧ୍ୟାବେଳେ ତାଳଚେର ରାଜାଙ୍କ ଘୋଷଣା ପ୍ରକାଶ ପାଇବ । ପ୍ରଜାଙ୍କ ନେତାମାନେ ଉପସ୍ଥିତ । ସେମାନଙ୍କୁ ଅଭୟ ଦାନ କରି ଅନୁଗୁଳରୁ ଅଣାଯାଇଛି । ସନ୍ଧ୍ୟା ହେଲା—ଘୋଷଣା ମଧ୍ୟ ହେଲା—ମାତ୍ର ମହତାବ୍-ହେନ୍‌ସି ଚୁକ୍ତି ଅନୁସାରେ ଘୋଷଣା ହେଲନାହିଁ । ମୁଁ ବଡ଼ ବିବ୍ରତ ହୋଇ ପଡ଼ିଲି । କେବଳ ସେତିକି ନୁହେଁ, ଅନୁଗୁଳରୁ ଆସିଥିବା ପ୍ରଜା-ନେତାମାନେ, ମୁଁ ଓ ଓଡ଼ିଶା ସରକାରଙ୍କ ପକ୍ଷରୁ ଥିବା କଲେକ୍ଟର ଏମାନଙ୍କୁ ଆଉ କେହି ପଚାରିଲେ ନାହିଁ । ରାଜା ନିଜେ ଓ ତାଙ୍କ ଲୋକେ ଯେ ଯୁଆଡ଼େ ଚାଲିଗଲେ । ଶେଷରେ ସେତେବେଳେ ଓଡ଼ିଶାରେ ଯେଉଁ ସୈନ୍ୟ ରହିଥିଲେ, ତାଙ୍କ ସାଙ୍ଗରେ ଆସିଥିବା ଗୁପ୍ତଚର ବିଭାଗର କ୍ୟାପଟେନ୍ ଗ୍ରିମ୍‌ସ୍ ଆମକୁ ନେଇ ଅନୁଗୁଳରେ ଛାଡ଼ିଲେ । ମୋ ସହିତ କର୍ଣ୍ଣେଲ୍ ବାର୍ଟନ୍‌ଙ୍କର ଯେଉଁ କଥାବାର୍ତ୍ତା ହୋଇଥିଲା, ତା'ର ସାକ୍ଷୀ ଏକମାତ୍ର ମିସ୍ ହରିସନ୍ । ସେ ଭାରତ ଛାଡ଼ିଦେଲେଣି । କେବଳ ସେହିଥର ମୁଁ ବିଶ୍ୱାସ କରି ଆମ କଥାବାର୍ତ୍ତାକୁ ଲେଖାରେ ରଖି ନାହିଁ—ଯେପରି ସବୁ ବିଷୟରେ ମୁଁ ସାଧାରଣତଃ କରୁଥାଏ ।

କିନ୍ତୁ ଗାନ୍ଧିଜୀ ଏହାକୁ ପସନ୍ଦ କରି ନ ଥିଲେ । ତାଙ୍କର ଆଶଙ୍କା ଯଥାର୍ଥ ବୋଲି ପ୍ରତିପାଦିତ ହେଲା । ଏପରି ଏକ ପରିସ୍ଥିତି ଉପୁଜିଲା, ଯେଉଁଥିରେ ମୋର ସାଧାରଣ ଜୀବନ ନଷ୍ଟ ହେବା ଉପରେ ଆସି ପହଞ୍ଚିଗଲା । ଏକ ଦିଗରେ ପଲିଟିକେଲ୍ ଡିପାର୍ଟମେଣ୍ଟ କହୁ ଥାଆନ୍ତି ଯେ କର୍ଣ୍ଣେଲ୍ ବାର୍ଟନ୍‌ଙ୍କ ସହିତ କଥା ଅନୁସାରେ ରାଜାଙ୍କର ଘୋଷଣା ହୋଇଛି । ମୁଁ କହୁଥାଏଁ ଯେ ତାହା ହୋଇନାହିଁ । କାରଣ ଘୋଷଣାରେ ବେଠିପ୍ରଥା ଚାଲୁରହିବ ବୋଲି ଥାଏ ଓ ମୋ ସମ୍ମତିରେ ଏହା ହୋଇଛି ବୋଲି ପ୍ରମାଣିତ ହେଲେ ପ୍ରଜାମାନଙ୍କୁ ମୁଁ ମୁହଁ ଦେଖାଇବି କିପରି ? ଭାରତର ଲୋକେ ମୋତେ କଅଣ କହିବେ ? ଗାନ୍ଧିଜୀ ମଧ୍ୟ କିଛି ଉପାୟ ପାଇଲେ ନାହିଁ । ଦୁଇ ପକ୍ଷରୁ କେଉଁ ପକ୍ଷର କଥା ଠିକ୍, ତାହା ସେ ପ୍ରମାଣ କରିବେ କିପରି ? ଶେଷରେ ମୁଁ ମିଲିଟେରି ଇଣ୍ଟେଲିଜେନ୍‌ସ ବ୍ରେଞ୍ଚର ମୁଖ୍ୟ ମେଜର ଷ୍ଟିଫେନ୍‌ସନ୍‌ଙ୍କୁ ଦେଖାକରି ତାଙ୍କର ସାହାଯ୍ୟ ଲୋଡ଼ିଲି । ସେତେବେଳେ ମେଜର ଷ୍ଟିଫେନ୍‌ସନ୍, ମେଜର ଗ୍ରିଗର ଓ କେପ୍‌ଟେନ୍ ଗ୍ରିମସ୍ ସୈନ୍ୟବିଭାଗୀୟ ଗୁପ୍ତଚର ଶାଖା ପକ୍ଷରୁ ଓଡ଼ିଶାରେ ଥାଆନ୍ତି । ସେମାନଙ୍କ ସହିତ ମୋର ବେଶ୍ ଆଳାପ ପରିଚୟ ହୋଇଯାଇଥିଲା । ସେତେବେଳକୁ ଏମାନେ ଜାଣି

ସାଗଲେଣି ଯେ ବାସ୍ତବିକ ଗଡ଼ଜାତରେ ରାଜାଙ୍କୁ ପ୍ରଜାଙ୍କ ହାତରୁ ରକ୍ଷା କରିବା-ପାଇଁ ସୈନ୍ୟବାହିନୀର ଆବଶ୍ୟକତା ନାହିଁ; ବରଂ ରାଜାଙ୍କ ହାତରୁ ପ୍ରଜାଙ୍କୁ ରକ୍ଷା କରିବା ପାଇଁ ସୈନ୍ୟ ଦରକାର । ମୁଁ ଯେ ଅଭ୍ୟାସରେ ପଢ଼ିଥିଲି, ତାହା ଶୁଣି ମେଜର ଷ୍ଟିଫେନ୍‌ସନ୍ ହସିଉଠି କହିଲେ, "ଆମେ କେବଳ କଂଗ୍ରେସ୍ ଲୋକଙ୍କ ପଛରେ ଗୁପ୍ତଚର ନୋହୁଁ; ଆମେ ଗଭର୍ଣ୍ଣରମାନଙ୍କ ପାଇଁ ମଧ୍ୟ ଗୁପ୍ତଚର ।" ଏହା କହି କର୍ଣ୍ଣେଲ୍ ବାର୍ଟନଙ୍କଠାରୁ ଓଡ଼ିଶା ଗଭର୍ଣ୍ଣର ସାର ଜୋନ୍ ହବାକଙ୍କଠାରୁ ଏକ ଚିଠିର ଫଟୋଷ୍ଟାଟ୍ ନକଲ ଦେଖାଇଲେ । ଯେଉଁଦିନ କଲିକତାରେ କର୍ଣ୍ଣେଲ୍ ବାର୍ଟନଙ୍କ ସହିତ ଆଲୋଚନା ହୋଇଥିଲା, ତା'ର ଏକ ବିବରଣୀ ସେ ଓଡ଼ିଶା ଲାଟଙ୍କୁ ଡାକରେ ପଠାଇଥିଲେ । ଡାକଘରୁ ସେ ଚିଠିର ନକଲ ନିଆ ହୋଇଥିଲା । ସେଥିରୁ ପ୍ରମାଣିତ ହେଉଥିଲା ଯେ ମୁଁ ଯାହା କହୁଛି, ତାହା ଠିକ୍ ଓ ପଲିଟିକେଲ୍ ଏଜେଣ୍ଟ ମେଜର ସାର୍ଲି ଯାହା କହୁଛନ୍ତି, ତାହା ଭୁଲ୍ । ମୁଁ ସେ ଚିଠିର ନକଲ ମାଗିଲି । ମେଜର ଷ୍ଟିଫେନ୍‌ସନ୍ ମନାକଲେ । ଭାଇସ୍‌ରୟ ଚାହିଁଲେ, ସେ, ସେ ଚିଠି ପଠାଇଦେବେ ବୋଲି କହିଲେ । ମୁଁ ଓ୍ୱାର୍ଧା ଯାଇ ଗାନ୍ଧିଜୀଙ୍କୁ ସବୁ କହିଲି । ଗାନ୍ଧିଜୀ ଭାଇସ୍‌ରୟ ଲର୍ଡ଼ ଲିନ୍‌ଲିଥ୍‌ଗୋଙ୍କ-ଠାରୁ ଲେଖିଲେ; ଦୁଇପକ୍ଷ ଭିନ୍ନ ଭିନ୍ନ କଥା କହୁଥିବାରୁ ଭାଇସ୍‌ରୟ ତାଙ୍କର ଲୋକ ମିଲିଟେରି ଇଣ୍ଟେଲିଜେନ୍‌ସ ଠାରୁ ରିପୋର୍ଟ ମଗାନ୍ତୁ । ତଦନୁସାରେ ରିପୋର୍ଟ ଗଲା । ମେଜର ସାର୍ଲି ଚବିଶଘଣ୍ଟା ଭିତରେ ବଦଳି ହେଲେ ଓ ମୁଁ ଯେପରି କହିଥିଲି, ତଦନୁସାରେ ରାଜା ଆଉ ଏକ ଘୋଷଣା କଲେ । ତା' ପରେ ସାର୍ ଜୋନ୍ ହବାକଙ୍କ କଥା ଅନୁସାରେ ପଳାତକମାନେ ନିଜ ନିଜ ଘରକୁ ଫେରିଲେ । ଏହି ଘଟଣାରେ ଏକ ବିରାଟ ଆନ୍ଦୋଳନର ପରିଚାଳନା କିପରି କରିବାକୁ ହୁଏ, ତାହା ଗାନ୍ଧିଜୀଙ୍କ-ଠାରୁ ପ୍ରତ୍ୟକ୍ଷ ଭାବରେ ଶିଖିଲି । ପୁଙ୍ଖାନୁପୁଙ୍ଖ ରୂପେ ସବୁ କଥାକୁ ଦୃଷ୍ଟି ନ ଦେଲେ ଓ ସମ୍ପୃକ୍ତ ବ୍ୟକ୍ତିବିଶେଷଙ୍କ ସହ ସମ୍ପର୍କ ନ ରଖିଲେ, ଏକ ନ୍ୟାଯ୍ୟ ଆନ୍ଦୋଳନ ଯେ ବ୍ୟର୍ଥ ହୋଇଯାଇପାରେ ଏହା ମୋତେ ସ୍ପଷ୍ଟଭାବରେ ଜଣାଗଲା ।

ଏ ମଧ୍ୟରେ ନୀଳଗିରିରେ ଯେଉଁ ମିଳାମିଶା ହୋଇଥିଲା, ତାକୁ ଓଲଟାଇ ଦେବାପାଇଁ ରାଜପକ୍ଷରୁ ଉଦ୍ୟମ ହୋଇଥିଲା, ମାତ୍ର ତାହା ହୋଇପାରିଲା ନାହିଁ ।

ବର୍ତ୍ତମାନ ରଣପୁର ଘଟଣା । ରଣପୁର ଏକ ଅତି କ୍ଷୁଦ୍ର ଗଡ଼ଜାତ । ଏଠିକା ପ୍ରଜାମଣ୍ଡଳ ମୋର ପରାମର୍ଶ ଅନୁସାରେ କାମ କରି ଆସୁଥିଲେ । ପ୍ରଥମେ ରାଜାଙ୍କଠାରେ ନିୟମିତ ରୂପେ ଆପତ୍ତି କରିବା ଇତ୍ୟାଦି ଚାଲିଥାଏ । ଏହି ସମୟରେ ହଠାତ୍ କେତେଜଣ ପ୍ରଜାମଣ୍ଡଳକର୍ମୀ ଗିରଫଦାର ହୋଇଗଲେ । ରାଜା କେତେକ ଅତି ସାମାନ୍ୟ ଦାବୀ ମଞ୍ଜୁର କରିଥାନ୍ତି, ପୁଣି ଦରଖାସ୍ତ ଦିଆହୋଇଥାଏ; ଗିରଫଦାର

ହୋଇଥିବା ଲୋକଙ୍କୁ ଛଡ଼ାଇ 'ଅଣିବାର ପ୍ରୟାସ ସବୁ' ଗଡ଼ଜାତରେ ସାଧାରଣ, ଏଠାରେ ମଧ୍ୟ ତାହାହିଁ ଘଟିଲା । ଗୋଟିଏ ଦିନ ଠିକ୍ କରି ସବୁ ଗାଁରୁ ଲୋକ ଡକା-ଡକି ହୋଇ ରଣପୁର ଯାଇ ଜବରଦସ୍ତି ବନ୍ଦୀଙ୍କୁ ଖଲାସ୍ କରିବେ—ଏହା ହିଁ ଥିଲା କଳ୍ପନା । ମୁଁ ଏହିଠାରେ କହି ରଖେ, ଏସବୁ ଜନତାର ଗଣଆନ୍ଦୋଳନ । ଏଥିରେ କେହି ଜଣେ ସୁଦ୍ଧା ଶିକ୍ଷିତ ଲୋକ ସମ୍ପୃକ୍ତ ନ ଥିଲେ । ବନମାଳୀ ଗ୍ରାମ୍ ଜଣେ ମଧ୍ୟବିତ୍ତ ଶ୍ରେଣୀର ଗୃହସ୍ଥ, ମାତ୍ର, ସେ ଶିକ୍ଷିତ ନୁହନ୍ତି—ସେ ବନ୍ଦୀଙ୍କୁ ଛଡ଼ାଇବାର ଏ ବନ୍ଦୋବସ୍ତ ଦେଖି ମୋ ପାଖକୁ କଟକ ଆସିଲେ ଓ କହିଲେ ଯେ, ତାଙ୍କ କଥା କେହି ମାନୁ ନାହାନ୍ତି, ଏଣୁ ମୋତେ ଯିବାକୁ ହେବ । ସେ ଯେଉଁଦିନ ମୋତେ କହିଲେ, ତା' ପରଦିନ ରଣପୁରରେ ହଜାର ହଜାର ଲୋକ ଏକତ୍ର ହେବେ । ମୁଁ ଏଣେ ଏତେ କାର୍ଯ୍ୟବ୍ୟସ୍ତ ଥାଏ ଯେ, ବନମାଳୀଙ୍କ ଠାରୁ ସମୁଦାୟ କଥା ଶୁଣିବାକୁ ରାତି ବାରଟାରେ ସମୟ ମିଳିଲା; ମୁଁ ବଡ଼ ଚିନ୍ତିତ ହୋଇ ପଡ଼ିଲି । ମୁଁ ଭାବିଲି, ନିଶ୍ଚୟ ସେଠାରେ ଗୁଳି ହେବ ଓ ଅନେକ ଲୋକ ମରିବେ ଓ ତା'ର ପରିଣାମ ହେବ ଲୋକଙ୍କ ଭିତରେ ଅବସାଦ, ମାତ୍ର ମୁଁ ବା ସେଠିକି ଯାଉଛି କିପରି ? କଟକ-ଠାରୁ ପ୍ରାୟ ଏକଶହ ମାଇଲ୍—ସେଠାକୁ ରେଲ୍ ନାହିଁ, ମାତ୍ର ବନମାଳୀ ଅତି ବ୍ୟସ୍ତ ହୋଇ ମୋତେ ଯିବାପାଇଁ ଜିଦ୍ କଲେ । ମୁଁ ପରଦିନ ସକାଳୁ ଏକ ଭଡ଼ା ମଟରର ବନ୍ଦୋବସ୍ତ କଲି । ମଟର ମିଳୁ ମିଳୁ ଦିନ ବାର ବାଜିଲା । ବାରଟାବେଳେ ବାହାରି କିଛି ଦୂର ଯାଇଛୁ, ବାଟରେ ମୋଟର ଖରାପ ହୋଇଗଲା । ତାକୁ ସଜାଡ଼ୁ ସଜାଡ଼ୁ ଚାରି ବାଜିଲା । ବାଟରେ ଖୋର୍ଦ୍ଧାଠାରେ ମୁଁ ସେଠା ପୋଷ୍ଟଅଫିସରେ ପଚାରିଲି ଯେ ପଲିଟିକାଲ ଏଜେଣ୍ଟ କେଉଁଠି ଅଛନ୍ତି ? କାରଣ ସେହି ବାଟେ ସେମାନଙ୍କର ତାର ଯିବା ଆସିବା କରୁଥିବାର ଅନୁମାନ କଲି । ପୋଷ୍ଟମାଷ୍ଟର କିଛି କହି ପାରିଲେ ନାହିଁ । ତା'ପରେ ଥାନାରେ ପଚାରିଲି—ସେମାନେ ମଧ୍ୟ କିଛି କହି ପାରିଲେ ନାହିଁ । ଏଣେ ପ୍ରାୟ ସନ୍ଧ୍ୟା ହେଲାଣି—ମୁଁ ଭାବିଲି, ପଲିଟିକାଲ୍ ଏଜେଣ୍ଟ ଯଦି ରଣପୁରରେ ନ ଥିବେ, ତେବେ ମୁଁ ନୟାଗଡ଼ ଯିବି, ସେଠି ସେ ଥିବାର ସମ୍ଭାବନା । ପ୍ରଥମେ ଲୋକେ ଯଦି ଜମା ହୋଇଥିବେ, ତାଙ୍କୁ ଫେରାଇବି, ତା'ପରେ ପଲିଟିକାଲ୍ ଏଜେଣ୍ଟଙ୍କ ସହିତ ଦେଖାକରି ରଣପୁର ସମସ୍ୟାର ସମାଧାନ କରିବି, ମାତ୍ର ବର୍ତ୍ତମାନ ବିଳମ୍ବ ଦେଖି ମୋର ଯିବାକୁ ଇଚ୍ଛା ହେଉ ନ ଥାଏ । ବନମାଳୀ ମୋତେ ନ ଛାଡ଼ନ୍ତି । ସେ ଭୀତତ୍ରସ୍ତ ହୋଇ ଅତି ନିର୍ବନ୍ଧ ଭାବରେ ମୋତେ ଅନୁରୋଧ କରୁଥାନ୍ତି । ସେ ଆଶଙ୍କା କରୁଥାନ୍ତି, କଅଣ ବୋଲି କ'ଣ ଘଟିଯିବ, ତେଣୁ ମୋତେ ଯିବାକୁ ହେବ । ମୁଁ ଗଲି, ରଣପୁରଠାରୁ ସାତମାଇଲ ଆଗରୁ ରଣପୁର ରାଜାଙ୍କର ଗୋଟିଏ କୋଠା ଅଛି, ସେଠୁ ରଣପୁରକୁ ଟେଲିଫୋନ୍ ଅଛି । ରଣପୁରକୁ କେହି ମୋଟରରେ ଗଲେ ଏହି କୋଠାରୁ

ଆଗରୁସ୍ ଟେଲିଫୋନ୍ ଖବର ରାଜାଙ୍କଠାକୁ ଯାଏ । ମୁଁ ଯାଇ ଏହି କୋଠାରେ ପଚାରିଲି—ପଲିଟିକାଲ୍ ଏଜେଣ୍ଟ କଅଣ ରଣପୁରରେ ଅଛନ୍ତି ? ସେଠି ଥିବା ଜଣେ ଲୋକ ଅତି ମ୍ରିୟମାଣ ଓ ଶଙ୍କିତଚିତ୍ତ ଭାବରେ ବସିଥାଏ, ମୁଁ ବୁଝିପାରୁ ନ ଥାଏ ! ମୁଁ ଜୋରରେ ପଚାରିଲି—ସେ ଧୀରେ ଧୀରେ ଉତ୍ତର ଦେଲା, "ମୁଁ କହିପାରିବି ନାହିଁ ।" ତା'ପରେ ମୁଁ କହିଲି, "ଟେଲିଫୋନ୍‌ରେ ପଚାରି ରାଜାଙ୍କୁ, ହରେକୃଷ୍ଣ ମହତାବ ତାଙ୍କ ସହିତ ଦେଖାକରି ପାରିବେ କି ?" ସେ ମୋତେ ତରି ଟେଲି-ଫୋନ୍‌ରେ ପଚାରିଲା । ତେଣୁ ଉତ୍ତର ଶୁଣି ସେ ମୋତେ କହିଲା, "ରାଜା କହୁଛନ୍ତି ପଲିଟିକାଲ୍ ଏଜେଣ୍ଟ ତ ମଲେଣି । ଯଦି ଆସି ମୋ ଜୀବନ ରକ୍ଷା କରିବେ ତ କରନ୍ତୁ ।" ମୁଁ ଏ ପଲିଟିକାଲ ଏଜେଣ୍ଟ ମଲେଣି କଥାଟା ଭଲି ଶୁଣି ପାରିଲି ନାହିଁ ବା ନିରର୍ଥକ ମନେ କଲି; କିନ୍ତୁ ରାଜାଙ୍କ ଜୀବନ ବିପଦାପନ୍ନ ଏହା ଜାଣି ରଣପୁର ବାହାରିଲି । ମୋ ସାଙ୍ଗରେ ବନମାଳୀ ଓ ଆଉ ଦୁଇଜଣ ଥାଆନ୍ତି । ରଣପୁର ଯିବା ରାସ୍ତାରେ ମଟର ନେଇ କିଛିଦୂର ଗଲା ପରେ ଦେଖୁଁ ଯେ, ବଡ଼ ବଡ଼ ଗଛ ସବୁ ରାସ୍ତା ଉପରେ ଏପରି ଭାବରେ ପଡ଼ିଛି, ତାକୁ ଅତିକ୍ରମ କରି ରଣପୁର ଯିବା କଠିନ । ମୁଁ କିଛି ବୁଝି ପାରିଲି ନାହିଁ । ପ୍ରାୟ ଦୁଇମାଇଲ ଦୂରରେ ଥିବା ଗାଁକୁ ଦୌଡ଼ିଯାଇ ଲୋକଙ୍କୁ ପଚାରି ବୁଝିଲି ଯେ ରାସ୍ତାରେ ଗଛ ପକାଇ ଲୋକେ ରଣପୁର ଯାଇଛନ୍ତି; ଯେପରିକି ମଟର ପ୍ରଭୃତିରେ ଯାଇ କେହି ରାଜାଙ୍କୁ ସାହାଯ୍ୟ କରି ନ ପାରେ । ମୋର ପରିଚୟ ପାଇବାରୁ ମୋତେ ଏ ଖବର ଲୋକେ ଜଣାଇଲେ । ମୁଁ ଆଖପାଖ ଗାଁରୁ ଲୋକ ଡାକି ରାସ୍ତା ସଫା କରାଇଲି । ଏଇଥିରେ ପ୍ରାୟ ରାତି ନଅଟା ବାଜିଲା—ମୁଁ ଖୁବ୍ ଜୋର୍‌ରେ ମଟରରେ ଯାଉଛି, ରାଜାଙ୍କ ପ୍ରାସାଦଠାରୁ ଅଳ୍ପ ଦୂରରୁ ଅନେକ ବନ୍ଧୁକଧାରୀ ପୋଲିସ୍ ଏଣେ ତେଣେ ଗୁଳି ଫାଏର କରୁଛନ୍ତି । ସେମାନେ ମୋ ମଟର ଅଟକାଇଲେ ଓ ମୁଁ ଓହ୍ଲାଇ ପଡ଼ିଲି । ସେମାନେ ମୋ ନାଁ ପଚାରିଲେ, ମୁଁ କହିଲି । ତା'ପରେ ସେ ପୋଲିସ୍ ଦଳର ଇନ୍‌ସପେକ୍ଟର ମୋତେ ଡାକି ନେଇ ବସିବା ଅବସ୍ଥାରେ ଥିବା ମୃତ ବେଜେଲଗେଟଙ୍କୁ ମୋତେ ଦେଖାଇ ଦେଲେ । ମୁଁ ଅବାକ୍ ହୋଇଗଲି । ଏ କଅଣ ମୃତ ? ଏହିପରି ପଚାରୁ ପଚାରୁ ବେଜେଲଗେଟଙ୍କ ଦେହରେ ହାତମାରି ଦେଖିଲି—ବରଫ ପରି ଶୀତଳ ଦେହ, ମୁହଁ ରକ୍ତାକ୍ତ—ସଦ୍ୟମୃତ ଥିବାରୁ ଜୀବିତ ବୋଲି ସନ୍ଦେହ ହୋଇଯାଉଥାଏ । ମୁଁ ହଠାତ୍ ଏ ଦୃଶ୍ୟ ଦେଖି ବିବ୍ରତ ହୋଇଗଲି—ଅନ୍ତତଃ ରଣପୁରରୁ କିପରି ଫେରିବି ଏହି ଚିନ୍ତାରେ ଅସ୍ଥିର ହୋଇପଡ଼ିଲି । ଏଣେ ପୋଲିସ୍‌ଦଳ ମୋତେ ଘେରିପକାଇ ଧମକାଇବାରେ ଲାଗିଥାଆନ୍ତି । ମୁଁ ସେମାନଙ୍କୁ କହିଲି ଯେ, ମୁଁ ରାଜାଙ୍କ ସହିତ ଦେଖା କରିବାକୁ ଚାହେଁ । ସେମାନେ ନାନାପ୍ରକାର ତର୍କ କରୁଥାଆନ୍ତି—ଇତି ମଧ୍ୟରେ ମୋର ନଜର

ପଡ଼ିଲି ଯେ ରାସ୍ତା ଉପରେ ଦୁଇଜଣ ଲୋକ ମରି ପଡ଼ିଛନ୍ତି ? ମୁଁ ଜାଣିଲି ଯେ ସେମାନେ ବେଜେଲଗେଟ୍‌ଙ୍କ ଶରୀରରକ୍ଷୀ—ମରିଛନ୍ତି । ଟିକିଏ ଦୂରରେ ଜଣେ ପୋଲିସ୍‌ବେଶଧାରୀ ଲୋକ ପଡ଼ିଛି । ମୁଁ ପାଖକୁ ଯାଇ ଦେଖିଲି ଯେ ସେ ଖୁବ୍ ଧୀରେ ଧୀରେ ଉଁ ଉଁ ଶବ୍ଦ କରୁଛି, ତାକୁ ମୃତ ବୋଲି ସେଠାରେ ଛାଡ଼ିଦେଇଥାଆନ୍ତି । ମୁଁ ପୋଲିସ୍‌ଦଳକୁ କହିଲି ଯେ, ଏ ବଞ୍ଚିଲା ମଣିଷକୁ ଡାକ୍ତରଖାନାକୁ କାହିଁକି ନେଉ ନାହାନ୍ତି ? ସେମାନେ ଉତ୍ତର ଦେଲେ, ନେବେ କିପରି ? ମୁଁ ମୋଟରରେ ତାକୁ ଉଠାଇ ରଣପୁର ଡାକ୍ତରଖାନାକୁ ପଠାଇଦେଲି । ଇତି ମଧ୍ୟରେ ମୁଁ ଖୁବ୍ ରାଗ ଦେଖାଇ କର୍ତ୍ତୃତ୍ୱବ୍ୟଞ୍ଜକ ସ୍ୱରରେ କହିଲି, "ତୁମେ ତିରିଶ ଚାଳିଶ୍ ଜଣ ବନ୍ଧୁକଧାରୀ ପୋଲିସ୍ ଥାଉଁ ଥାଉଁ ସାହେବ ମଲା କିପରି ?" ମୋର ରାଗ ଓ ଏ ପ୍ରଶ୍ନ ଶୁଣି ପୋଲିସ୍ ଟିକିଏ ନରମି ଗଲେ । ଇତି ମଧ୍ୟରେ ଦେୱାନ୍ ଆସିଲେ ଓ ସେ ମୋତେ ସମୁଦାୟ କଥା ଶୁଣାଇଲେ —ଲୋକେ ଦଳ ବାନ୍ଧି ଆସୁଥିଲେ; ଏ ସାହେବ ନୟାଗଡ଼ରେ ଥିଲେ; ରାଜାଙ୍କ ଖବର ପାଇ ତିରିଶ ଚାଳିଶ ଜଣ ବନ୍ଧୁକଧାରୀ ପୋଲିସ୍ ସେଠାରୁ ମଟରରେ ନେଇଆସି ଜନତାର ସଂଘର୍ଷରେ ଆସି ଦୁଇଜଣ ମାରିଛନ୍ତି ଓ ଓ ନିଜେ ମରିଛନ୍ତି । ଲୋକେ ଠେଙ୍ଗା ଓ ବାଉଁଶରେ ସାହେବଙ୍କ ମୁଣ୍ଡ ଛେଚି ଦେଇଥାନ୍ତି । ପରିଣାମରେ ଲୋକଙ୍କ ଉପରେ ଯେ ପ୍ରତିହିଂସାମୂଳକ ଅତ୍ୟାଚାର ହେବ, ତା' ଭାବି ମୋ ଦେହ ଶିହରି ଉଠିଲା—ଦେୱାନ୍ ମଧ୍ୟ ସେକଥା ବୁଝି ପାରିଥିଲେ । ମୁଁ ତାଙ୍କୁ ସବୁକଥା ଭୁଲି ଲୋକଙ୍କୁ ଅତ୍ୟାଚାରରୁ ଯେତେଦୂର ସମ୍ଭବ ରକ୍ଷା କରିବା ପାଇଁ ଅନୁରୋଧ କଲି । ଆମେ ଦୁହେଁ କଥାବାର୍ତ୍ତା ହେଉଛୁ, ଏହି ସମୟରେ ଦୂରରେ ଲୋକକୋଳାହଳ ଶୁଣାଗଲା । ଦେୱାନ ଭାବିଲେ ଯେ ପୁଣି ଦଳେ ଲୋକ ଆସୁଛନ୍ତି । ତେଣୁ ମୁଁ ହଠାତ୍ ସେ ଶବ୍ଦ ଆଡ଼କୁ ମଟର ନେଇ ବାହାରିଲି । ମୁଁ ଯାଇ ଦେଖିବା ବେଳକୁ ଦଳେ ଲୋକ ବିଜୟ ଉଲ୍ଲାସରେ 'ଜୟ ମହାତ୍ମା ଗାନ୍ଧିଙ୍କ ଜୟ' କହି ଚାଲିଛନ୍ତି । ସେମାନେ ବନ୍ଦୀଙ୍କୁ ଖଲାସ କରି ଆଣିଛନ୍ତି, ଏହା ତାଙ୍କ ପକ୍ଷରେ ଏକ ବିଜୟ । ମୁଁ ସେଇଠି ଜାଣିଲି ଯେ ପଲିଟିକାଲ ଏଜେଣ୍ଟଙ୍କୁ ମାଡ଼ ହେବାପରେ ରାଜବନ୍ଦୀମାନଙ୍କୁ ଭୟରେ ଛାଡ଼ି ଦେଇଛନ୍ତି । ମୁଁ ଲୋକଙ୍କୁ ଆଗରୁ ଅଟକାଇଲି । ମୋତେ ରାଜପକ୍ଷର ଲୋକ ଭାବି ସେମାନେ ନାନା କଥା କହିବାରେ ଲାଗିଲେ । ପୁଣି ମୋର ପରିଚୟ ପାଇ ସମସ୍ତେ ଛିଡ଼ା ହେଲେ — ମୁଁ ତାଙ୍କୁ ପ୍ରଥମେ ଖବର ଦେଲି ଯେ ସାହେବ ମରିଯାଇଛି—ଜନତା ଭିତରେ କେତେ ଲୋକ ସାହେବଙ୍କୁ ମାରିଛନ୍ତି, ମାତ୍ର ମାରିବା କଥା କେହି ଜାଣି ନ ଥିଲେ । ମୋଠାରୁ ଖବର ଶୁଣି ଜଣେ ଜନତା ଭିତରୁ କହି ଉଠିଲା, ନିଜେ କମ୍ପାନୀ ମରି ଯାଇଛି ନା ! ସାହେବଙ୍କୁ କମ୍ପାନୀ ବୋଲି କହିବାରୁ ଜଣାଯିବ କେତେ ଅନ୍ଧାରରେ ସେ ଲୋକେ ଥିଲେ ! ଏ ଲୋକଙ୍କ ପ୍ରତି ମୋର ଦୟା ହେଲା, ମୁଁ ତାଙ୍କୁ ପ୍ରତିହିଂସା-

ମୂଳକ ଅତ୍ୟାଚାରର କଥା କହିଲି । ସେମାନେ ଭୟଭୀତ ହେଲେ ଓ ମୋର ପରାମର୍ଶ ମାଗିଲେ । ମୋତେ ସେତେବେଳେ ହଠାତ୍ ବୁଦ୍ଧି ଦେଖାଗଲା ଓ ମୁଁ କହିଲି ରାତି ପାହିଲା ବେଳକୁ ସ୍ତ୍ରୀ, ବାଳକ, ଧନ-ସମ୍ପତ୍ତି ସବୁ ରାଜ୍ୟର-ବାହାର କରିଦେବା ଉଚିତ । ଏଥିରେ ସେମାନେ ସମସ୍ତେ ରାଜି ହେଲେ । ମୁଁ ସେହି ରାତିରେ ଆହୁରି ଅନେକ ସ୍ଥାନକୁ ଯାଇ ଲୋକଙ୍କୁ ସତର୍କ କରି ଦେଇ ଆସିଲି । ସେହି ରାତିରେ ବନମାଳୀ ରାମଙ୍କ ପୁଅ ରାମଚନ୍ଦ୍ର ରାମଙ୍କୁ ଖୋର୍ଦ୍ଧା ହାଇସ୍କୁଲ ହଷ୍ଟେଲରେ ଉଠାଇ ଈଶ୍ୱରୀବାଣୀ ଶୁଣାଇ ଆସିଲି । ସେତେବେଳେ ସେ ଏକାଦଶ ଶ୍ରେଣୀରେ ପଢ଼ୁଥିଲେ । ରାତିଭିତରେ ମୁଁ ପୁଣି ଫେରି କଟକରେ ପହଞ୍ଚିଲି ବେଳକୁ ଭୋର ଘଡ଼ି ଚାରିଟା । କଟକରେ ପହଞ୍ଚିଲାବେଳକୁ ମୁଁ ଏତେ ଅବସନ୍ନ ମନେ କଲି ଯେ ଏପରି ଅନୁଭୂତି ମୋର ପୂର୍ବେ କେବେ ହୋଇ ନ ଥିଲା । ପ୍ରଥମ କଥା—ଭୀଷଣ ଅତ୍ୟାଚାରରୁ ଲୋକଙ୍କୁ ରକ୍ଷା କରିବା ପାଇଁ ବ୍ୟାକୁଳତା, ଦ୍ୱିତୀୟ କଥା-ଏକ ଔପନ୍ୟାସିକ ଘଟଣା ପରି ମୁଁ ଯାଇ ସେଠି ପହଞ୍ଚିବା ଓ ଏଥିରୁ ପଛରେ କି କଥା ବାହାରିବ ସେ ଆଶଙ୍କା ।

ମୁଁ ବିଶ୍ୱନାଥ ବାବୁ ପ୍ରଭୃତିଙ୍କୁ ସମସ୍ତ ଘଟଣା ଜଣାଇଲି । ଏପରି ସ୍ଥଳେ ଓଡ଼ିଶା ସରକାରଙ୍କ କର୍ତ୍ତବ୍ୟ କଅଣ ତାହା ଆଲୋଚିତ ହେଲା । ବେଜେଲଗେଟ୍ ହତ୍ୟା ଖବର ପ୍ରଥମେ ମୁଁ ଆସି କଟକରେ ଦେଲି । ମୋଠାରୁ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ବାବୁ ଶୁଣି ଲାଟ୍ ସାହେବଙ୍କୁ ଦିନ ବାରଟା ସମୟରେ ଜଣାଇଲେ । ତା' ପରେ ଅନ୍ୟମାନେ ଜାଣିଲେ । ଏ ଅବସ୍ଥାରେ ମୃତଦେହ ସେହି ରଣପୁରରେ ଦୁଇଦିନ କାଳ ପଡ଼ି ରହିଲା । ରାଜା ଓ ତାଙ୍କର କର୍ମଚାରୀମାନେ ଏତେ ଭୀତତ୍ରସ୍ତ ହୋଇ ପଡ଼ିଥାନ୍ତି ଯେ, ସେମାନେ କୌଣସି ଆଡ଼କୁ ଖବର ଦେବା କଥା ତାଙ୍କ ମନକୁ ଉଠି ନାହିଁ । ଏ ଖବର ପାଇବା ମାତ୍ରକେ ଇଂରେଜ ସରକାରଙ୍କ ପକ୍ଷରୁ ତୋପ, କମାଣ ଓ ସୈନ୍ୟ ଯାଇ ରଣପୁରରେ ପହଞ୍ଚିଗଲେ । ଏଣେ ଓଡ଼ିଶା ସରକାର ସିଦ୍ଧାନ୍ତ କଲେ ଯେ, ଏପରି କ୍ଷେତ୍ରରେ ପୋଲିସ୍ ସାହାଯ୍ୟ ଦେବା ଉଚିତ । ଏ ସବୁ ଯାଇ ପହଞ୍ଚି ଦେଖନ୍ତି ଯେ ଇଲାକାସାରା ଜନଶୂନ୍ୟ । କେବଳ ଗୋରୁ ଗାଈ ଜନଶୂନ୍ୟ ଗ୍ରାମରେ ଭୟଭୀତ ହୋଇ ଏଣେ ତେଣେ ଦୌଡ଼ୁଛନ୍ତି । ପ୍ରତିହିଂସା ସାଧନର ଉପାୟ କିଛି ନ ପାଇ କର୍ତ୍ତୃପକ୍ଷ ନିଜକୁ ନିଜେ ଅତି ଅସ୍ଥିର ମନେ କଲେ । ପ୍ରତିହିଂସା ତ ଦୂରର କଥା, ବର୍ତ୍ତମାନ ଇଲାକା ଭିତରକୁ ଲୋକ କିପରି ଫେରିବେ ଏହା ଏକ ସମସ୍ୟା ହୋଇ ଛିଡ଼ାହେଲା । ରେସିଡେଣ୍ଟଙ୍କ ସହିତ ଏ ବିଷୟରେ ମୋର ଆଲୋଚନା ହେଲା—ଲୋକେ ଫେରି ଆସନ୍ତୁ, ଏଥିପାଇଁ ସେ ଅତି ବ୍ୟଗ୍ର ହେଲେ । ବେଜେଲଗେଟ୍ ହତ୍ୟାରେ ଯେ ପ୍ରକୃତ ଦୋଷୀ, ସେ ଦଣ୍ଡିତ ହେଉ

ପଠାଉଥିଲେ; କିନ୍ତୁ ପ୍ରତିହିଂସାମୂଳକ ସାଧାରଣ ଅତ୍ୟାଚାର କିଛି ହେବ ନାହିଁ ଓ ଦୋଷୀ ବୋଲି ଅଭିଯୁକ୍ତ ଲୋକଙ୍କର ବିଚାର ଯଥାବିଧି ହେବ ଓ ତା'ର ଶେଷ ନିଷ୍ପତ୍ତି ହାଇକୋର୍ଟ ପର୍ଯ୍ୟନ୍ତ ଯିବ, ଏପରି ବ୍ୟବସ୍ଥା ର ଜବାନ୍ ରେସିଡେଣ୍ଟ ମୋତେ ଦେଲେ, ମୁଁ ଲୋକଙ୍କୁ ଫେରାଇ ଆଣିବାର ଭାର ନେବ ବୋଲି ତାଙ୍କୁ କହିଥିଲି । ସେ ସେପରି ଲିଖିତ ଜବାବ ଦେଲେ ଓ ମୁଁ ଲୋକଙ୍କୁ ପରାମର୍ଶ ଦେଇ ଫେରାଇଲି । ସେତେବେଳେ ଲୋକେ ମୋ ପ୍ରତି ଯେଉଁ ବିଶ୍ୱାସ ଦେଖାଇଛନ୍ତି, ତାହା ଫଳରେ ମୁଁ ସାହସ ସହକାରେ ବହୁ କାର୍ଯ୍ୟ ସଫଳତାର ସହିତ କରିପାରିଛି । ସେହି ହତ୍ୟାକାଣ୍ଡର ତଦନ୍ତ ଓଡ଼ିଶା ସରକାରଙ୍କ ପୋଲିସ ହାତରେ କରିହେଲା । ଓଡ଼ିଶା ସରକାରଙ୍କ ପ୍ରେରିତ ମାଜିଷ୍ଟ୍ରେଟ୍ ଓ ବାହାରରୁ ଆସିଥିବା ସେସନ୍ସ ଜଜ୍ ପୁଣି ଶେଷରେ ପାଟଣା ହାଇକୋର୍ଟର ଜଣେ ବିଚାରପତିଙ୍କଠାରେ ବିଚାରର ଶେଷ ହେଲା ।

ଏ ଘଟଣାର ତଦନ୍ତ କରିହେଲା ବେଳେ ମୋତେ ସେ ଘଟଣାରେ ଜଡ଼ିତ କରିବା ପାଇଁ ଭୀଷଣ ଉଦ୍ୟମ ହୋଇଥିଲା । ଯେଉଁ ମୁମୂର୍ଷୁ ଲୋକକୁ ରଣପୁର ରାସ୍ତା ଉପରୁ ସେଦିନ ରାତିରେ ମୋ ମଟରରେ ଡାକ୍ତରଖାନା ପଠାଇଥିଲି, ସେ ଟିକିଏ ସୁସ୍ଥ ହୋଇ ସାକ୍ଷ୍ୟ ଦେଇଛନ୍ତି ଯେ ମୁଁ ସିଟି ବଜାଇବାରୁ ଲୋକେ ମାଡ଼ ଦେଲେ— ଯାହା ଫଳରେ ସାହେବ ମଲେ । ଓଡ଼ିଶା ସରକାରଙ୍କ ପୋଲିସ ଯେ ତଦନ୍ତ କରୁଥିଲେ, ସେ ମଧ୍ୟ ପ୍ରମାଣ ପାଉଥା'ନ୍ତି ଯେ ମୁଁ ହତ୍ୟା କରାଇଛି । ଏଣେ ଓଡ଼ିଶାରେ ମୋର ରାଜନୀତିକ ବିରୋଧୀମାନେ ପ୍ରକାଶ୍ୟ ଭାବରେ ଖବରକାଗଜରେ ଲେଖୁଥା'ନ୍ତି ଯେ ମୁଁ ସେ ହତ୍ୟା କରାଇଛି । ଏପରିକି ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ରଣପୁର ହତ୍ୟା ପାଇଁ ମୋତେ ଦାୟୀ କରି ଏକ ପ୍ରସ୍ତାବ ଗ୍ରହଣ କରିଥା'ନ୍ତି । ସେତେବେଳେ ପଣ୍ଡିତ ନୀଳକଣ୍ଠ ପ୍ରାଦେଶିକ କଂଗ୍ରେସ ସଭାପତି ଥିଲେ । ମୁଁ ଲୋକଙ୍କୁ ରାଜ୍ୟ ଛାଡ଼ି ଯିବାପାଇଁ ଗିରାଗିରି ବୁଲି କହିଲି ଓ ତାହା ଫଳରେ ଜଣେ ଏତେବଡ଼ ଗୋରା ଲୋକର ହତ୍ୟାରେ କୌଣସି ପ୍ରକାର ପ୍ରତିହିଂସାମୂଳକ ବ୍ୟବସ୍ଥା ହୋଇପାରିଲା ନାହିଁ, ଏହା ହେଲା ମୋ ପ୍ରତି କ୍ରୋଧର କାରଣ । ଅବସ୍ଥା ଏପରି ଛିଡ଼ା ହେଲା ଯେ ମୁଁ ହତ୍ୟା ଅପରାଧରେ ଜଡ଼ିତ ହୋଇ ବିଚାରକୁ ଯିବା ପାଇଁ ପ୍ରସ୍ତୁତ ହୋଇଗଲି, ମାତ୍ର ମୋତେ ସେ ସମୟରେ ବାସ୍ତବିକ ସାହାଯ୍ୟ କରିଥିଲେ ମିସ୍ ଆଗାଥା ହ୍ୟାରିସନ୍' । ମିଲିଟାରି ଇଣ୍ଟେଲିଜେନ୍ସ ବିଭାଗର ମେଜର ଷ୍ଟିଫେନ୍ସନ୍ ନିଜେ ତଦନ୍ତ କରି ଜାଣିଲେ ଯେ ଘଟଣା ପୋଲିସର ମିଥ୍ୟା ଓ ମୋର ସେଦିନ ସେପରି ଭାବରେ ପହଞ୍ଚିବା ଏକ ଆକସ୍ମିକ ବ୍ୟାପାର । ତା'ପରେ ମିସ୍ ହ୍ୟାରିସନ୍ ଓଡ଼ିଶାର ଲାଟଙ୍କୁ ବୁଝାଇବାରେ ମୁଁ ସେ ହତ୍ୟା ଅପରାଧରୁ ଅବ୍ୟାହତି ପାଇଲି । ମୁଁ ସେତେବେଳେ ଏତେ ବିବ୍ରତ ଥାଏ ଓ ତାକୁ ପୁଣି ଏତେ ଦବାଇ ରଖିଥାଏ ଯେ,

ମୋର କୌଣସି କାର୍ଯ୍ୟରେ ମୁଁ ମୋର ଭିତରର ବକ୍ରିତ ଭାବ ପ୍ରକାଶ ପାଇବାକୁ ଦେଇନାହିଁ ।

ରଣପୁର ହତ୍ୟାକାଣ୍ଡକୁ ସମସ୍ତେ ନିନ୍ଦା କଲେ । କଂଗ୍ରେସ କାର୍ଯ୍ୟନିର୍ବାହକ ସମିତି ମଧ୍ୟ ନିନ୍ଦା କଲି, ମାତ୍ର ଏକା ଗାନ୍ଧିଜୀ କହିଥିଲେ ଯେ, ସେ ହତ୍ୟା କାହିଁକି ଘଟିଲା ଓ ସେଥିପାଇଁ ନିଜେ ବେଜେଲ୍‌ଗେଟ୍ କେତେ ପରିମାଣରେ ଦାୟୀ, ତାହା ତଦନ୍ତ ହେବା ଆବଶ୍ୟକ ।

ଅଭିଯୁକ୍ତ ବ୍ୟକ୍ତିମାନଙ୍କ ବିଚାର ହୋଇ ଦୁଇଜଣଙ୍କୁ ଫାଶୀ ଓ ଅବଶିଷ୍ଟ କେତେକଙ୍କୁ ଯାବଜ୍ଜୀବନ କାରାଦଣ୍ଡ ହୋଇଥିଲା । ମାତ୍ର ହାଇକୋର୍ଟର ବିଚାରପତି ରାୟରେ ଲେଖିଥିଲେ ଯେ, ସେଦିନର ଘଟଣା, ଯାହାର ପରିଣତି ବେଜେଲ୍‌-ଗେଟ୍‌ଙ୍କ ହତ୍ୟା, ସେଥିପାଇଁ ବେଜେଲ୍‌ଗେଟ୍ ନିଜେ ମଧ୍ୟ ଦାୟୀ । ତାଙ୍କର ବ୍ୟବହାର ଲୋକଙ୍କୁ 'ଉତ୍ତକ୍ଷିପ୍ତ କରାଇଲା । ଏପରି ମନ୍ତବ୍ୟ ପ୍ରକାଶ କରି ସେ କର୍ତ୍ତୃପକ୍ଷଙ୍କୁ ଅଭିଯୁକ୍ତ ଲୋକଙ୍କ ପ୍ରତି ଅନୁଗ୍ରହ କରିବା ପାଇଁ ସୂଚନା ଦେଇଥିଲେ; ସେହି ସୂଚନା ଅନୁସାରେ ମୁଁ ରେସିଡେଣ୍ଟଙ୍କ ଦ୍ୱାରସ୍ଥ ହେଲି; ମାତ୍ର ସେ ଅନୁଗ୍ରହ ମିଳିଲା ନାହିଁ । ଦୁଇଜଣ ଫାଶୀ ପାଇଲେ । ଅନ୍ୟମାନେ ଜେଲ୍ ଗଲେ । ଏ ଦୁଇଜଣ ଶହୀଦଙ୍କ ନାମ ଶ୍ରୀ ରଘୁନାଥ ମହାନ୍ତି ଓ ଶ୍ରୀ ଦିବାକର ପରିଡ଼ା ।

ଇତିମଧ୍ୟରେ ରଣପୁର-ଶାସନର ଆମୂଳଚୂଳ ପରିବର୍ତ୍ତନ ହୋଇଗଲା— ରାଜାଙ୍କୁ ଗାଦିଚ୍ୟୁତ କରି ରାଜନୈତିକ ବିଭାଗ ସେଠାରେ ଶାସନଭାର ହାତକୁ ନେଇ ଚଳାଇଲେ ।

ଏ ସବୁ ଚାଲିଥିବା ଭିତରେ ଖବର ମିଳିଲା ଯେ, ଗାଙ୍ଗପୁରରେ ବ୍ରିଟିଶ ସୈନ୍ୟଙ୍କ ଗୁଳିରେ ଶହଶହ ଲୋକ ମରିଯାଇଛନ୍ତି । ବାସ୍ତବିକ ଏ ହତ୍ୟାକାଣ୍ଡ ଭୁଲ୍‌ରେ ହୋଇଗଲା ବୋଲି ବିଶ୍ୱସ୍ତ ସୂତ୍ରରୁ ମୁଁ ଜାଣିଛି । ସେଠାର ପ୍ରଜାନେତା ନିର୍ମଳ ମୁଣ୍ଡାଙ୍କୁ ଗିରଫ୍ତାର କରିବା ପାଇଁ ସୈନ୍ୟ ନେଇ ସହକାରୀ ପଲିଟିକାଲ୍ ଏଜେଣ୍ଟ ଯାଇଥିଲେ । ସେ ଏକ ସଭା ଡାକିଲେ । ସ୍ତ୍ରୀ, ବାଳକ, ପୁରୁଷ, ସମସ୍ତେ ଆସିଲେ । ଏ ସଭାରେ ସହକାରୀ ପଲିଟିକାଲ୍ ଏଜେଣ୍ଟ ଲେଫ୍‌ଟେନାଣ୍ଟ ମେଜର ଲୋକମାନଙ୍କୁ ବୁଝାଉଥିବା ଅବସ୍ଥାରେ ତାଙ୍କର କିଛି ଦୂରରେ ଥିବା ସୈନ୍ୟମାନେ ମେଜର ସାହେବଙ୍କ ହାତହଲକୁ ଭୁଲ ବୁଝି ଗୁଳିବର୍ଷଣ କଲେ । ଫଳରେ ପ୍ରାୟ ଦୁଇଶହ ସ୍ତ୍ରୀ, ବାଳକ ଓ ପୁରୁଷ ନିହତ ହେଲେ । ଏ ଲୋମହର୍ଷଣକାରୀ

ବ୍ୟାପାରର ତଦନ୍ତ ପାଇଁ ଜବାହରଲାଲ ନେହରୁଙ୍କୁ ପ୍ରମୁଖ ସମସ୍ତେ ଦାବୀ କଲେ, ମାତ୍ର କେହି ଶୁଣିଲେ ନାହିଁ । ମୁଁ ନିଜେ ଏତେ ବ୍ୟସ୍ତ ଥାଏ ଯେ, କେହି ସହକର୍ମୀ ନ ମିଳିବାରୁ ଏ ବିଷୟରେ ମଧ୍ୟ ମୁଁ କୌଣସି ପ୍ରତିକାର କରିପାରିଲି ନାହିଁ ।

ରଣପୁରରେ ଜଣେ ଗୋରାଲୋକ ହତ୍ୟାରେ ତିନି ଜଣଙ୍କୁ ଫାଶୀ ଓ ଅନେକଙ୍କୁ କାରାଦଣ୍ଡ, ମାତ୍ର ଗାଙ୍ଗପୁରରେ ପ୍ରାୟ ତିନିଶହ ଲୋକଙ୍କ ହତ୍ୟାରେ କେହି ଜଣେ ମୁଖା ପଦେ ଗାଳି ବି ଶୁଣିଲା ନାହିଁ ।

ଏହିରୂପ ସ୍ଥଳଥିବା ଅବସ୍ଥାରେ ବଡ଼ଲାଟଙ୍କ ଓଡ଼ିଶାବାଟେ ମାନ୍ଦ୍ରାଜ ଯିବାର ହେଲା । ତାଙ୍କ ଆସିବା ବେଳକୁ ଗଡ଼ଜାତ ତଦନ୍ତ କମିଟି ରିପୋର୍ଟ ଛପା ହେବା ଦରକାର । ଏଣୁ ଲଗିପଡ଼ି ଆମ କମିଟିର ସମସ୍ତ ସଭ୍ୟ ପ୍ରାୟ ଏକ ମାସ ଗୋଟିଏ ଘରେ ଆବଦ୍ଧ ରହି ରିପୋର୍ଟ ଲେଖିବାରେ ଲାଗିଲୁ । ଆମକୁ ସାହାଯ୍ୟ କରିବାପାଇଁ ପଣ୍ଡିତ ଜବାହରଲାଲ ନେହେରୁ ଏଲାହାବାଦର ଜଣେ ବାରିଷ୍ଟର ଏସ୍ ଧାବନଙ୍କୁ ପଠାଇଥିଲେ । ଏ ପରେ ହାଇକୋର୍ଟ ଜଜ୍ ପଶ୍ଚିମବଙ୍ଗର ଗଭର୍ଣ୍ଣର ହେଲେ । ଦିନ ରାତି ପରିଶ୍ରମ କରି ଆଲୋଚନା କରି ରିପୋର୍ଟ ପ୍ରସ୍ତୁତ କଲୁ । ଓଡ଼ିଶା ମିଶନ୍ ପ୍ରେସରେ ତାହା ମୁଦ୍ରିତ ହୋଇ ପ୍ରକାଶିତ ହେଲା । ଯେଉଁଦିନ ବଡ଼ଲାଟ ଓଡ଼ିଶାରେ ପହଞ୍ଚିଲେ, ସେହିଦିନ ଓଡ଼ିଶା ଲାଟଙ୍କ ଜରିଆରେ ଉକ୍ତ ତଦନ୍ତ କମିଟିର ରିପୋର୍ଟ ଖଣ୍ଡିଏ ତାଙ୍କୁ ମୁଁ ଉପହାର ଦେଇଥିଲି ।

ଏ ତଦନ୍ତ ରିପୋର୍ଟ ଉପରେ ବିଲାତର ଅନେକ କାଗଜ ମନ୍ତବ୍ୟ ପ୍ରକାଶ କରି ଏହା ସମର୍ଥନ କରିଥିଲେ । ଭାରତର ପ୍ରାୟ ସବୁ ଖବରକାଗଜ ଏହାକୁ ସମର୍ଥନ କରିଥିଲେ । ଆମର ଦାବୀ ଥିଲା ଯେ ଓଡ଼ିଶା-ଗଡ଼ଜାତର ସନନ୍ଦ ସବୁ ରଦ୍ଦ କରି ଦେଇ ସେ ସବୁକୁ ଓଡ଼ିଶାରେ ସାମିଲ୍ କରି ଦିଆଯାଉ । କଲିକତାର ଷ୍ଟେଟ୍ସ-ମ୍ୟାନ୍ ଆମକୁ ପୂର୍ଣ୍ଣ ସମର୍ଥନ କରିଥିଲେ । ଏ ତଦନ୍ତ କମିଟି ରିପୋର୍ଟରେ ଓଡ଼ିଶା-ଗଡ଼ଜାତରେ କି ଅକଥନୀୟ ଅତ୍ୟାଚାର ଓ କି ଅସଭ୍ୟତା ଚାଲିଛି, ତା'ର ବର୍ଣ୍ଣନା ଅଛି । ବ୍ରିଟିଶ୍ ସୈନ୍ୟଙ୍କ ବଳରେ ଓଡ଼ିଶା-ଗଡ଼ଜାତରେ ଯାହା ଚାଲିଛି, ତାହା ଜାଣିଲେ ପ୍ରକୃତରେ ନାଜି ଶାସନର ସୁଧାର କଳ୍ପନା କରି ହେବ । ଏ ରିପୋର୍ଟ ସମ୍ବନ୍ଧରେ ବଡ଼ଲାଟ ନିମ୍ନଲିଖିତ ମନ୍ତବ୍ୟ ପ୍ରକାଶ କରିଥିଲେ, "ତମସାଚ୍ଛନ୍ନ ଓଡ଼ିଶାର ୨୬ ଗୋଟି ଗଡ଼ଜାତ ଭିତରେ ଏ ରିପୋର୍ଟ ଆଲୋକରେଖା ପକାଇଛି—ଏଣିକି ଧୀରେ ଧୀରେ ଆମେ ଅଗ୍ରସର ହେବୁଁ ।"

ମୋ ନିଜର ବିଶ୍ୱାସ ଯେ ଇଉରୋପୀୟ ଯୁଦ୍ଧ ଲାଗି ନ ଯାଇଥିଲେ, ୧୯୪୦ ମସିହା ବେଳକୁ ଓଡ଼ିଶା-ଗଡ଼ଜାତ ଇତିହାସର ବିଷୟ ହୋଇ ରହିଯାଇ

ଆନ୍ଧ୍ର ଓ ଓଡ଼ିଶାପ୍ରଦେଶ ଭିତରେ ଯେ ସବୁ ଜମିଦାରି ହୋଇ ରହିଯାଇଥାନ୍ତା, ମାତ୍ର ଯୁଦ୍ଧ ସେ ପ୍ରକ୍ରିୟାକୁ ଅଟକାଇଲା ।

ବର୍ତ୍ତମାନ ମୁଁ ୧୯୩୯ ମସିହା ସେପ୍‌ଟେମ୍ବର ମାସ ପର୍ଯ୍ୟନ୍ତ ଆସିଗଲି । ଏହା ଭିତରେ ଗଡ଼ଜାତ ଆନ୍ଦୋଳନ ସଂକ୍ରାନ୍ତ ପ୍ରଧାନ ପ୍ରଧାନ ଘଟଣା ଉଲ୍ଲେଖ କରିଗଲି । ମାତ୍ର ଏହା ସଙ୍ଗେ ସଙ୍ଗେ ଭାରତୀୟ କଂଗ୍ରେସ ଏବଂ ଓଡ଼ିଶା କଂଗ୍ରେସରେ ଯେ ସବୁ ଘଟଣା ଘଟିଲା ଓ ମୋ ଉପରେ ତା'ର ପ୍ରତିକ୍ରିୟା ଉଲ୍ଲେଖଯୋଗ୍ୟ । ୧୯୩୮ ମସିହାରେ ମୁଁ କଂଗ୍ରେସ କାର୍ଯ୍ୟନିର୍ବାହକ ସମିତିର ସଭ୍ୟ ହୋଇ ନିଖିଳ ଭାରତ ରାଜନୀତିରେ ଯୋଗ ଦେଲି । ତଦ୍ଦ୍ୱାରା ଓଡ଼ିଶାରେ କାମ କରିବାର ମଧ୍ୟ ସୁବିଧା ହେଲା— ଆଉ ମଧ୍ୟ ମନର ସଙ୍କୋଚ ବହୁ ପରିମାଣରେ କମିଗଲା । ମଧ୍ୟପ୍ରଦେଶର କଂଗ୍ରେସ ନିର୍ବାଚନ ବିବାଦ ତଦନ୍ତ କରିବାପାଇଁ ମୋତେ ନିଖିଳଭାରତ କାର୍ଯ୍ୟ-ନିର୍ବାହକ ସମିତି ପଠାଇଥିଲେ । ସେଠାରେ ଦୁଇ ତରଫରୁ ଓକିଲ ନିଯୁକ୍ତ ଓ ମୋର ଏପରି ନିଷ୍ପତ୍ତି କରିବା ଯାହା ଉଭୟ ପକ୍ଷଙ୍କୁ ସନ୍ତୋଷ ଦେଇଥିଲା, ଏହା ସାମାନ୍ୟ କଥା—ମାତ୍ର ଏଥିରେ ପ୍ରାଦେଶିକତାର ସଙ୍କୋଚ ଭାଙ୍ଗି ଯାଇଥାଏ । ସିଂହଭୂମ୍‌ରେ ଓଡ଼ିଆ ବିହାରୀ ବିବାଦ ରହିଥିଲେ ମଧ୍ୟ ମୁଁ ସମସ୍ତଙ୍କଦ୍ୱାରା ସମର୍ଥିତ ହୋଇ ଜିଲ୍ଲାସାରା ଗସ୍ତ କରି ଆସିଲି ଓ ତା' ଫଳରେ ସେଠାରେ ଓଡ଼ିଆମାନଙ୍କ ଭିତରେ କଂଗ୍ରେସ ପ୍ରତି ଉତ୍ସାହ ଜନ୍ମିଥିଲା ଓ ମୋ କୌଶଳ ଅନୁଯାୟୀ କାର୍ଯ୍ୟ ଚାଲିଥିଲେ ସେଠି ଓଡ଼ିଆମାନେ ସଂଖ୍ୟାରେ ଯେପରି ପ୍ରଧାନ, ରାଜନୀତିକ କ୍ଷେତ୍ରରେ ମଧ୍ୟ ପ୍ରଧାନ ହୋଇଯାଇଥାନ୍ତେ, ମାତ୍ର କଂଗ୍ରେସ ବିରୋଧରେ 'ଓଡ଼ିଆ' ଆନ୍ଦୋଳନ ସେଠି ଛିଡ଼ା ହୋଇ ପାରୁ ନ ଥାଏ ।

ଏହିଠାରେ ଓଡ଼ିଆ ଆନ୍ଦୋଳନ ସମ୍ବନ୍ଧରେ ଦୁଇଟି କଥା ଲେଖିବା ଦରକାର । ମୁଁ ଦେଖିଲି ସିଂହଭୂମ୍‌ରେ ଓଡ଼ିଆ ଆନ୍ଦୋଳନ ସେତେ ନାହିଁ, ତା'ଠାରୁ ବହୁତ ବେଶି କଟକରେ ଏବଂ ଓଡ଼ିଶାରେ । କଟକର ଆନ୍ଦୋଳନ କିପରି ସିଂହଭୂମ୍‌ର ଅବସ୍ଥା ଉପରେ ପ୍ରଭାବ ପକାଇବ, ଏହା ବୁଝିବା କଠିନ । ସିଂହଭୂମ୍‌ର ଅଧିକାଂଶ 'ହୋ' ନାମକ ଆଦିମ ଅଧିବାସୀ ଜାତି । ଏକ ସମୟରେ ସେମାନେ ଅଶିକ୍ଷିତ ଥିଲେ, ମାତ୍ର ବର୍ତ୍ତମାନ ସେମାନଙ୍କ ଭିତରେ ଅନେକ ଶିକ୍ଷିତ ଲୋକ ବାହାରିଲେଣି । ଏଣୁ ସେମାନଙ୍କ ମତର ମୂଲ୍ୟ ସବୁଠାରୁ ବେଶି । ଦୁଃଖର ବିଷୟ, ସିଂହଭୂମ୍‌ର ଓଡ଼ିଆ ନେତାମାନଙ୍କ ସହିତ 'ହୋ' ନେତାମାନଙ୍କର ବିବାଦ । ଏପରିସ୍ଥଳେ ସିଂହଭୂମ୍ କିପରି ଓଡ଼ିଶା ସାଙ୍ଗରେ ମିଶିବ, ତାହା ବୁଝିବା କଠିନ । ପଣ୍ଡିତ ଗୋପବନ୍ଧୁଙ୍କ ଆନ୍ଦୋଳନ ଫଳରେ ସିଂହଭୂମ୍‌ର ଓଡ଼ିଆମାନେ ସେଠାର

ସ୍ଥାୟୀ ଅଧିବାସୀ ବୋଲି ବିହାର ସରକାରଙ୍କ ଦ୍ୱାରା ପରିଗଣିତ ହୋଇ ଆସୁଛନ୍ତି । ଅର୍ଥାତ୍ ଚାକିରିବାକିରି ଇତ୍ୟାଦିରେ ସିଂହଭୂମ୍‌ବାସୀ ବିହାରୀର ଯେତିକି ଅଧିକାର, ସେଠା ଓଡ଼ିଆର ମଧ୍ୟ ସେତିକି ଅଧିକାର । ଏ ସୁବିଧାକୁ ସେଠା ଓଡ଼ିଆମାନେ କାନକୁ ନ ଆଣି ସେମାନେ ବରବର ଓଡ଼ିଶାରେ ଚାକିରିବାକିରି ଓ ଅନ୍ୟ ସରକାରୀ ସୁବିଧା ଉଠାଇବାପାଇଁ ଲାଗିଛନ୍ତି— ଫଳରେ ସେତିକି ସୁବିଧାରୁ ଓଡ଼ିଶାର ଅନ୍ୟ ଅଞ୍ଚଳମାନ ବଞ୍ଚିତ ହେଉଛନ୍ତି । ଓଡ଼ିଶା ପରି ଦରିଦ୍ର ପ୍ରଦେଶର ପ୍ରସାର ଆବଶ୍ୟକ— ଅର୍ଥାତ୍ ଓଡ଼ିଶା ଲୋକେ ଅନ୍ୟତ୍ର ଯାଇ ଉପାର୍ଜନ କରିବା ଆବଶ୍ୟକ । ସିଂହଭୂମ୍ ଓଡ଼ିଆମାନେ ଅନ୍ୟତ୍ର ଉପାର୍ଜନ ଛାଡ଼ି ଓଡ଼ିଶା ଭିତରକୁ ଜାକି ହୋଇ ଆସୁଛନ୍ତି । ଏତଦ୍ଦ୍ୱାରା ଓଡ଼ିଶାର ସମୂହ କ୍ଷତି ବୋଲି ମୋର ମନେହୁଏ । ସିଂହଭୂମ୍ ଓ ମେଦିନୀପୁର ପ୍ରଭୃତି ଅଞ୍ଚଳମାନଙ୍କରେ ସେହି ସ୍ଥାନୀୟ ଲୋକେ ଓଡ଼ିଆଙ୍କ ଓଡ଼ିଶାପ୍ରୀତି ଉପରେ ଓଡ଼ିଆ ଆନ୍ଦୋଳନକୁ ପର୍ଯ୍ୟବସିତ ନ କରି ସେହିମାନଙ୍କ ନାମରେ ଓଡ଼ିଶାରେ ସଭା କରିବାଦ୍ୱାରା ଲାଭ କିଛି ନାହିଁ, ବରଂ କ୍ଷତି ବୋଲି ମୋର ବିଶ୍ୱାସ ।

ଏ ବର୍ଷ ଓଡ଼ିଶା କଂଗ୍ରେସ ଅନୁଷ୍ଠାନଠାରୁ ଦୂରେଇ ଦୂରେଇ ରହି ସବୁ କାମ କରୁଥିବା କଥା ଆଗରୁ ଉଲ୍ଲେଖ କରିଛି । ଧୀରେ ଧୀରେ ତାହା ଉଚିତ ଥିଲି ବୋଲି ମୋତେ ଜଣାଗଲା । ପଣ୍ଡିତ ନୀଳକଣ୍ଠ-ଦଳ ଓ ଆମ୍ଭେମାନେ ପରସ୍ପର ବିବାଦ କରି ଓ ନିଜର ଦଳ ପୁଷ୍ଟି ପାଇଁ ଅନ୍ୟାୟ ଆଚରଣ କରୁଥିବାର ଅଭିଯୋଗ ହେଉଥିବାରୁ କଂଗ୍ରେସ ସଭ୍ୟ ସଂଗ୍ରହ ଓ କମିଟିର ଅଫିସ୍ ଇତ୍ୟାଦି ତଦାରଖ କରିବାକୁ କେବଳ ସେହିମାନେ ନିଯୁକ୍ତ ହେଲେ, ଯେଉଁମାନେ ଗାନ୍ଧୀ ସେବାସଂଘ ସହିତ ସଂପୃକ୍ତ । ଏମାନଙ୍କ ଭିତରୁ ଅନେକ କଂଗ୍ରେସ ରାଜନୀତିଠାରୁ ଯେତେଦୂର ସମ୍ଭବ ଦୂରରେ ରହନ୍ତି । ଏହା କଂଗ୍ରେସ-କର୍ମୀମାନଙ୍କ ମନରେ ଆଘାତ ଦେଇଥିଲା, ମାତ୍ର ଏ ସବୁ ବରଦାସ୍ତ କରିଯିବାପାଇଁ ମୁଁ ସମସ୍ତଙ୍କୁ କହିଛି । ଏ ସମ୍ବନ୍ଧରେ କେହି କିଛି ଆପତ୍ତି କରିନାହାନ୍ତି । ତା'ପରେ ଅଙ୍ଗୁଲରେ ଏକ ପ୍ରଜାସମ୍ମିଳନୀରେ ମୋତେ ସଭାପତି କରି ସେଠା ଲୋକେ ନିମନ୍ତ୍ରଣ କଲେ, ମାତ୍ର ସେଠାର କର୍ମୀ ଗାନ୍ଧୀ ସେବାସଂଘ ସହିତ ସମ୍ପୃକ୍ତ ଥିବାରୁ ତାଙ୍କୁ ଲେଖା ହେଲା ଯେ ସେ କିପରି ମୋ ସଭାପତିତ୍ୱରେ ହେଉଥିବା ସମ୍ମିଳନୀ ସମ୍ପର୍କରେ କାମ କରୁଛନ୍ତି— ଯେହେତୁ ମୁଁ ସାମ୍ୟବାଦୀ ସମ୍ମିଳନୀ ମାନଙ୍କରେ ସଭାପତି ହୁଏ । ଏ ଖବର ପାଇ ଓ ସେ ଚିଠି ଦେଖି ମୁଁ ସେ ସମ୍ମିଳନୀକୁ ଗଲି ନାହିଁ । ଏହି ଆଳି ସମସ୍ୟା, ଯେଉଁଥିପାଇଁ ସମ୍ମିଳନୀ ହୋଇଥିଲା, କେହି ହାତକୁ ନେଲେ ନାହିଁ । ପୁଣି ପ୍ରାୟ ବର୍ଷକ ପରେ ମୁଁ ସେଠାକୁ ଯାଇ ପ୍ରଜା ରାଜା ସଂଘର୍ଷର ସମାଧାନ କରିଥିଲି । ଏ ସବୁ ଘଟଣା ମୋତେ ବଡ଼ ବାଧୁଥାଏ, ମାତ୍ର

ମୁଁ ଭାବୁଥାଏଁ ଯେ, ସାଧାରଣ ଜୀବନରେ କେହୁ କାହାକୁ ଫୁଲମାଳ ଦେଇ ଅଭିନନ୍ଦନ କରିବାକୁ ଚାହାନ୍ତି । ସମସ୍ତେ ନିଜ ନିଜର ଶକ୍ତି ବିବେଚନା କରି ଓ ଅନ୍ୟ ସହିତ ସଂଘର୍ଷରେ ନ ଆସି ଯେତିକି ସମ୍ଭବ, ଲୋକଙ୍କ ସେବା ଉଦ୍ଦେଶ୍ୟରେ କାମ କରିଯିବା ଉଚିତ ।

୧୯୩୮ ମସିହା ଶେଷରେ ସୁବାଷ ବାବୁଙ୍କ ପୁନର୍ବାର ସଭାପତି ପଦ ପାଇଁ ପ୍ରାର୍ଥୀ ହେବା ପରେ କଂଗ୍ରେସ ମହଲରେ ବଡ଼ ଟଣାଟଣି ଲାଗିଲା । ଏ ଟଣାଟଣି ଭିତରେ ମୁଁ ଏପରି ଭାବରେ ପଡ଼ିଥିଲି ଯେ, ଅନେକ ଦିନ ପର୍ଯ୍ୟନ୍ତ ମୁଁ କର୍ତ୍ତବ୍ୟ ନିର୍ଣ୍ଣୟ କରି ପାରି ନ ଥିଲି । ସୁଭାଷ ବାବୁ ଆଶା କରୁଥାନ୍ତି ଯେ ମୁଁ ତାଙ୍କୁ ସମର୍ଥନ କରେ ଓ ଅନ୍ୟମାନେ ଆଶା କରୁଥାନ୍ତି ଯେ ମୁଁ ସେମାନଙ୍କୁ ସମର୍ଥନ କରେଁ, ମାତ୍ର ମୋର ସିଦ୍ଧାନ୍ତ ଥାଏ ଯେ, ଗାନ୍ଧିଜୀ ଯାହା କରିବେ ମୁଁ ତାହା କରିବି । ମୁଁ ଗାନ୍ଧିଜୀଙ୍କ ମତ ଜାଣିବା ପରେ ଦୃଢ଼ ହୋଇ ସୁଭାଷ ବାବୁଙ୍କ ବିରୋଧରେ ଛିଡ଼ା ହେଲି, ମାତ୍ର ତାଙ୍କ ପ୍ରତି ମୋର ସମ୍ମାନ ମୁଁ ବରାବର ବଜାୟ ରଖିଥାଏ । ଏପରିକି ସେ ଯେତେବେଳେ କଟକ ଆସିଲେ—ତାଙ୍କୁ ସାମାଜିକତା ହିସାବରେ ସମ୍ମାନ ଦେଖାଇଲି—ମାତ୍ର ରାଜନୀତି କ୍ଷେତ୍ରରେ ଯୋଗ ଦେଇନାହିଁ । ୧୯୩୯ ମସିହାରେ ସୁଭାଷବାବୁ ପୁନର୍ନିର୍ବାଚିତ ହୋଇ ପୁଣି ଇସ୍ତଫା ଦେଲେ; ତା'ପରେ ରାଜେନ୍ଦ୍ର ବାବୁ ସଭାପତି ହେଲେ । ଏଣେ ଓଡ଼ିଶାରେ ପ୍ରାଦେଶିକ କଂଗ୍ରେସ କମିଟିରେ ପଣ୍ଡିତ ନୀଳକଣ୍ଠ ସଭାପତି ନିର୍ବାଚିତ ହେଲେ ।'ସେ ସାଧ୍ୟମତେ ଚେଷ୍ଟା କଲେ, ଆମକୁ କଂଗ୍ରେସ କ୍ଷେତ୍ରଠାରୁ ଦୂରରେ ରଖିବା ପାଇଁ ଏବଂ କଂଗ୍ରେସ ଶାସନକୁ ଅପଦସ୍ଥ କରିବାପାଇଁ । କେବଳ ସେତିକି ନୁହେଁ, ଗଡ଼ଜାତ ରାଜା ଓ ବଡ଼ ବଡ଼ ଜମିଦାରମାନଙ୍କ ସହିତ ସଂଯୋଗ ସ୍ଥାପିତ ହେଲା । କଂଗ୍ରେସ ମନ୍ତ୍ରିମଣ୍ଡଳ, ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନ୍, ମାନ୍ଦ୍ରାଜ ଜମିଜମା-ଆଇନ୍, ଦେବୋତ୍ତର-ଆଇନ୍ ପ୍ରଭୃତି ଯାହା ସାଧାରଣ ଲୋକଙ୍କ ଲାଭପାଇଁ କରିବାକୁ ଯାଉଥିଲେ, ସେଥିରେ ବଡ଼ ବଡ଼ ଧନୀ ଜମିଦାର ପାରୁପର୍ଯ୍ୟନ୍ତ ବାଧା ଦେଇଥିଲେ । ତାଙ୍କ ସହିତ ସେ ସମୟରେ କଂଗ୍ରେସ କର୍ମକର୍ତ୍ତାମାନେ ମଧ୍ୟ ଯୋଗଦେଲେ । ଓଡ଼ିଶା ପ୍ରଜାସ୍ୱତ୍ୱ-ଆଇନ୍ ଓ ଦେବୋତ୍ତର-ଆଇନ୍ କୌଣସି ପ୍ରକାର ପାଶ୍ ହୋଇଥିଲେ ମଧ୍ୟ ବଡ଼ଲାଟଙ୍କ ଦ୍ୱାରା ନାମଞ୍ଜୁର ହୋଇଗଲା । ମାନ୍ଦ୍ରାଜ ଜମିଜମା-ଆଇନ୍ ସମ୍ପର୍କରେ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ପଣ୍ଡିତ ନୀଳକଣ୍ଠ କିପରି ବଡ଼ ଜମିଦାର ମାନଙ୍କୁ ସହଯୋଗ ଦେଇଛନ୍ତି ତାହା ଥରେ ମୁଁ ପ୍ରାଦେଶିକ କଂଗ୍ରେସ କମିଟି ଆଗରେ ଉପସ୍ଥାପିତ କରିଥିଲି ଓ ପ୍ରାଦେଶିକ କଂଗ୍ରେସ କମିଟି ସେ ଆଇନ୍‌କୁ ସମର୍ଥନ କରି ପ୍ରସ୍ତାବ ଗ୍ରହଣ କରି-

ଥିଲେ । ଗଡ଼ଜାତରେ ଜନସାଧାରଣ ଅତ୍ୟାଚାରର ବିରୋଧରେ ଜୀବନପଣ କରି ଲାଗିଛନ୍ତି, ଏଣେ ପ୍ରାଦେଶିକ କଂଗ୍ରେସର କର୍ମକର୍ତ୍ତାମାନେ ରାଜାମାନଙ୍କ ସହିତ ମିଶି ପ୍ରଜାମାନଙ୍କୁ ଆନ୍ଦୋଳନରୁ ନିବର୍ତ୍ତାଇବା ପାଇଁ ଚେଷ୍ଟା କରୁଥାନ୍ତି ।

ଏହିପରି କଂଗ୍ରେସ କମିଟି କାର୍ଯ୍ୟରେ ବିରକ୍ତ ହୋଇ ସୁଦ୍ଧା ଆମେମାନେ ନୀରବ ହୋଇଥାଉଁ, ମାତ୍ର ବିଶ୍ୱଯୁଦ୍ଧ ଆରମ୍ଭ ହେବା ପରେ କଂଗ୍ରେସ କାର୍ଯ୍ୟନିର୍ବାହକ ସମିତିର ନିର୍ଦ୍ଦେଶ ଅନୁସାରେ କଂଗ୍ରେସ ମନ୍ତ୍ରୀମାନେ ଯେଉଁଦିନ ଇସ୍ତଫା ଦେଲେ, ସେହିଦିନ କଂଗ୍ରେସଦଳର କେତେଜଣ ବିରୁଦ୍ଧ ଦଳ ସହିତ ମନ୍ତ୍ରିମଣ୍ଡଳ ଗଠନ କରିବାର ଉଦ୍ୟମ କଲେ, ମାତ୍ର ସେତେବେଳେ ତାହା ସଫଳ ହୋଇ ପାରି ନ ଥିଲା, ମାତ୍ର ଯେଉଁ କଂଗ୍ରେସ ଲୋକ ଧରା ପଡ଼ିଲେ, ସେମାନଙ୍କ ହାତରେ କଂଗ୍ରେସ ଅନୁଷ୍ଠାନ ଅତି ବିପଜ୍ଜନକ ବ୍ୟାପାର । ଏହାପରେ ଯୁଦ୍ଧ ପରିସ୍ଥିତିରେ କଂଗ୍ରେସ ଅନୁଷ୍ଠାନକୁ ସୁଦୃଢ଼ କରିବାପାଇଁ ନବକୃଷ୍ଣ ଚୌଧୁରୀଙ୍କର ଏକ ସାଧାରଣ ପ୍ରସ୍ତାବ ନୀଳକଣ୍ଠ ବାବୁ ଗ୍ରହଣ ନ କରିବା ଫଳରେ କଂଗ୍ରେସ କମିଟି ଭିତରେ ସଂଘର୍ଷ ହେଲା । ଥରେ ଦୁଇଥର ସଭାପତିଙ୍କ ଉପରେ ଅନାସ୍ଥା ପ୍ରସ୍ତାବ କାର୍ଯ୍ୟତଃ ଗୃହୀତ ହେଲା । ସେ ଇସ୍ତଫା ଦେଲେ । ଇତି ମଧ୍ୟରେ ପୁନର୍ନିର୍ବାଚନ ଆସିଗଲା । ୧୯୪୦ ମସିହାରେ ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ହେଲେ । ବର୍ତ୍ତମାନ କଂଗ୍ରେସ ଅନୁଷ୍ଠାନକୁ ଜନସାଧାରଣଙ୍କ ସମସ୍ୟା ସମାଧାନରେ ନିୟୋଜିତ କରିବାର ଉଦ୍ୟମ ହେଲା ।

ଏହି ସମସ୍ତ ମଧ୍ୟରେ ନିଖିଳ ଭାରତ ରାଜନୀତି କ୍ଷେତ୍ରରେ ସୁଭାଷ ବାବୁଙ୍କ ସଭାପତି ରୂପେ ପୁନଃ ନିର୍ବାଚନରେ ଯେଉଁ ଝଞ୍ଜା ସୃଷ୍ଟି ହୋଇଥିଲା, ତାହା ତାଙ୍କ ଇସ୍ତଫା ହେବା ପରେ କଟିଗଲା, ମାତ୍ର ଇସ୍ତଫା ଦେବା ପୂର୍ବରୁ କଲିକତା ନିଖିଳ ଭାରତ କଂଗ୍ରେସ କମିଟିରେ ଖୁବ୍ ଟଣାଟଣି ହୋଇଥିଲା । ସୁଭାଷବାବୁ ନୂତନ ନିର୍ବାଚିତ ସଭାପତି ହିସାବରେ ନିଜର କାର୍ଯ୍ୟନିର୍ବାହକ ସମିତି ଗଠନ କରି କଂଗ୍ରେସ କାର୍ଯ୍ୟ ଚଳାଇବାର କଥା, ମାତ୍ର ତାଙ୍କୁ ସମର୍ଥନ କରିବା ଭଳି ନିଖିଳ ଭାରତ କଂଗ୍ରେସ କମିଟିର ସଭ୍ୟ ସଂଖ୍ୟା ନ ଥାଏ । ତା' ଛଡ଼ା ତାଙ୍କ କାର୍ଯ୍ୟନିର୍ବାହକ ସମିତିର ସର୍ଦ୍ଦାର ପଟେଲ, ରାଜେନ୍ଦ୍ରବାବୁ ପ୍ରଭୃତି ଲବ୍ଧପ୍ରତିଷ୍ଠ ବ୍ୟକ୍ତି ରହିବେ ନାହିଁ, ସେଥିରେ କାମ ବା ଚାଲିବ କିପରି ? ଏହି ବିଷୟରେ ବହୁ ଆଲୋଚନା ପରେ ସୁଭାଷବାବୁ ଚାହିଁଲେ ଯେ, ତାଙ୍କ ମନୋନୀତ ଦୁଇଜଣ ସଭ୍ୟ କାର୍ଯ୍ୟନିର୍ବାହକ ସମିତିରେ ରଖା ହୁଅନ୍ତୁ । ଗାନ୍ଧିଜୀ ପଚାରିଥିଲେ, କାହା ପରିବର୍ତ୍ତରେ ସେ ଦୁଇଜଣ ନିଆ ହେବେ ? ସୁଭାଷବାବୁ ଦୁଇ ଜଣଙ୍କ ଭିତରୁ

ଜଣେ, ମୋର ନାମ ଉଲ୍ଲେଖ କରିଥିଲେ, ମାତ୍ର ଗାନ୍ଧିଜୀ କହିଥିଲେ, ସେ ଯେପରି ଓଡ଼ିଶା ଗଡ଼ଜାତ' ଆନ୍ଦୋଳନ ପରିଚାଳନା କରୁଛି, ସେଥିରେ ତା'ର ପ୍ରତିଷ୍ଠା ବୃଦ୍ଧି ହେଲେ କ୍ଷୁଣ୍ଣ କରିବା ଉଚିତ ନୁହେଁ ।'' ଏହା କହି ସେ ଓଡ଼ିଶା ଗଡ଼ଜାତ ଆନ୍ଦୋଳନ ବିଷୟ ସୁଭାଷବାବୁଙ୍କୁ କହିଲେ । ସୁଭାଷବାବୁ ଗାନ୍ଧିଜୀଙ୍କ ସହିତ ଏକମତ ହେଲେ । ଏ ବିଷୟ ଶୁଣି ମୁଁ ଲେଖି ପଠାଇଥିଲି ଯେ, ମୋ ଯୋଗେ ଯଦି ସମାଧାନ ହୋଇ ନ ପାରୁଛି, ତେବେ ମୁଁ ଅପସରି ଯାଉଛି । ମୋର ଏ ଲେଖାକୁ ଗାନ୍ଧିଜୀ ମୋତେ ଫେରାଇ ଦେଇଥିଲେ । ୧୯୩୯ ମସିହା ପାଇଁ ମଧ୍ୟ ମୁଁ କାର୍ଯ୍ୟ-ନିର୍ବାହକ ସମିତିର ସଦସ୍ୟ ରହିଲି । ଏହି ସମୟରେ ମୁଁ ତାଳଚେର ବ୍ୟାପାରରେ ଅତି ବ୍ୟସ୍ତ ଥାଏ । ସୁଭାଷବାବୁଙ୍କ ସମ୍ବନ୍ଧରେ ମୋର ବ୍ୟକ୍ତିଗତ ଜ୍ଞାନ ଥିବାରୁ ମୁଁ ଏତିକି କହିପାରେ ଯେ, ତାଙ୍କ ସହିତ ସର୍ଦ୍ଦାର ବଲ୍ଲଭଭାଇ ପ୍ରଭୃତିଙ୍କର ବ୍ୟକ୍ତିଗତ ସଂଘର୍ଷ ଆଦୌ କିଛି ନ ଥିଲା, ଯେପରି ବାହାରର ଅନେକ ଲୋକ କହନ୍ତି ବା ପ୍ରଚାର କରନ୍ତି । ସୁଭାଷବାବୁ ଜଣେ ଖୋଲଣା ବିପ୍ଳବୀ, ତଥା ଗାନ୍ଧିଜୀ ମଧ୍ୟ, ମାତ୍ର ସୁଭାଷ ବାବୁଙ୍କ କର୍ମ୍ମ-କୌଶଳ ଓ ଗାନ୍ଧିଜୀଙ୍କ କର୍ମ୍ମ-କୌଶଳ ଭିତରେ ଆକାଶ-ପାତାଳ ପ୍ରଭେଦ । ଥରେ ସଭାପତି ପଦ ପାଇଁ ପୁନଃ ପ୍ରାର୍ଥୀ ହେବା ପୂର୍ବରୁ କଲିକତାରେ ମୁଁ ସୁଭାଷ ବାବୁଙ୍କ ଘରେ ଥାଏ । ସେ ତାଙ୍କ କର୍ମ୍ମ-କୌଶଳ ମୋ ସହିତ ଆଲୋଚନା କରିଥିଲେ । ତାଙ୍କର ଦୃଢ଼ ମତ ଥିଲା ଯେ କଂଗ୍ରେସ ଇଂଲଣ୍ଡ ବିରୋଧୀ ଶକ୍ତିମାନଙ୍କ ସମ୍ପର୍କରେ ଆସି ସେମାନଙ୍କ ସହଯୋଗରେ ଇଂରେଜ ସାମ୍ରାଜ୍ୟର ମୂଳଚ୍ଛେଦ ସାଧନ କରିବାକୁ ହେବ । ଅନ୍ୟଥା ଭାରତର ସ୍ୱାଧୀନତା ଅସମ୍ଭବ । ମାତ୍ର ଗାନ୍ଧିଜୀଙ୍କ କର୍ମ୍ମ-କୌଶଳ ପୃଥକ୍ । ମୁଁ ଉଭୟ କର୍ମ୍ମ କୌଶଳ ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରିଛି । କାର୍ଯ୍ୟନିର୍ବାହକ ସମିତିରେ ମୁଁ ସମସ୍ତ ଆଲୋଚ୍ୟ ବିଷୟକୁ ବ୍ୟାବହାରିକ ଦୃଷ୍ଟିରୁ ବିଚାର କରି ନିଜର ମତ ଦେଇଥାଏ । ଅବଶ୍ୟ ଏ ମତ ବହୁ ପରିମାଣରେ ନେତାମାନଙ୍କ ମତଦ୍ୱାରା ପ୍ରଭାବିତ ହୁଏ, ମାତ୍ର ବ୍ୟାବହାରିକ ଦୃଷ୍ଟିରୁ ପ୍ରତ୍ୟେକ ବିଷୟ ବିଚାର କରିବା ଉଚିତ ଓ ସେହି ଦୃଷ୍ଟିରୁ ଯାହା କର୍ତ୍ତବ୍ୟ, ତାହା ହିଁ ଗାନ୍ଧିବାଦ ବୋଲି ମୋର ଧାରଣା । ସେହି ଦୃଷ୍ଟିରୁ ସୁଭାଷ ବାବୁଙ୍କ କର୍ମ୍ମ-କୌଶଳ ଓ ଗାନ୍ଧିଙ୍କ କର୍ମକୌଶଳ ବିଚାର କରି ମୁଁ ମନରେ ସ୍ଥିର କଲି ଯେ ଗାନ୍ଧିଜୀଙ୍କ କର୍ମ୍ମ-କୌଶଳ ବ୍ୟାବହାରିକ ଦୃଷ୍ଟିରୁ ଅତି ଠିକ୍, ତଦନୁସାରେ ମୁଁ ଗତି କରି ଆସୁଛି ।

## ଗତ ମହାଯୁଦ୍ଧ ଓ ତା' ପରେ

ଗାନ୍ଧିଜୀ ଦେଶକୁ ଅସହଯୋଗ ପନ୍ଥାରେ ତିଆରି କରାଇ ସ୍ୱାଧୀନତାର ଅନ୍ତିମ ସଂଗ୍ରାମ ପାଇଁ ତିଆରି କରିବାକୁ ବ୍ୟାକୁଳ ଥାଆନ୍ତି । କଂଗ୍ରେସ ମନ୍ତ୍ରୀପଦ ଛାଡ଼ିବା ପରେ କଂଗ୍ରେସରେ ଅସହଯୋଗ କାର୍ଯ୍ୟକ୍ରମ ଆରମ୍ଭ ହେଲା । ତା'ପରେ ଧୀରେ ଧୀରେ ସ୍ୱାଧୀନତାର ଅନ୍ତିମ ସଂଗ୍ରାମ ପାଇଁ ପ୍ରସ୍ତୁତିର ବ୍ୟବସ୍ଥା ସେ କରୁଥାନ୍ତି, ମାତ୍ର ଅତି ଦୁଃଖର ବିଷୟ ଯେ, ତାଙ୍କର କର୍ମ-ପ୍ରଣାଳୀ ଖୁବ୍ କମ୍ ଲୋକ ଧରି ପାରୁଥାନ୍ତି । ମୋ ନିଜ ଅଭିଜ୍ଞତାରେ ଯାହା ଆସିଲା, ତାହା ହିଁ ବର୍ଣ୍ଣନା କଲେ ସେ ସମୟର ଦେଶର ଅବସ୍ଥା ବୁଝିବାରେ ଯଥେଷ୍ଟ ସାହାଯ୍ୟ କରିବ । କଂଗ୍ରେସ ମନ୍ତ୍ରିପଦ ଇସ୍ତଫା ଦେବାପରେ ଗାନ୍ଧିଜୀ ୧୯୨୧ ମସିହାରେ ବର୍ଦ୍ଦୋଲି ସତ୍ୟାଗ୍ରହ ପୂର୍ବରୁ ସ୍ୱେଚ୍ଛାସେବକ ସଂଗ୍ରହ ପାଇଁ ଯେଉଁ ପ୍ରତିଜ୍ଞାପତ୍ର ସ୍ଥିର କରିଥିଲେ, ତାହା ପ୍ରତି ଦୃଷ୍ଟି ଆକର୍ଷଣ କରିବାପାଇଁ ସେ କଂଗ୍ରେସ କାର୍ଯ୍ୟନିର୍ବାହକ ସମିତିକୁ ପ୍ରବର୍ତ୍ତାଇ ଏକ ପ୍ରସ୍ତାବ ପାଶ୍ କରାଇଲେ । ମୁଁ ଏଥିରୁ ବୁଝିଲି ଯେ, ଗାନ୍ଧିଜୀ ଚାହାନ୍ତି ତଦନୁସାରେ ସ୍ୱେଚ୍ଛାସେବକ ସଂଗୃହୀତ ହୁଅନ୍ତୁ ଓ କଂଗ୍ରେସ ସେହି ଭିତ୍ତି ଉପରେ ଗଠିତ ହେଉ । ତଦନୁସାରେ ମୁଁ ଆମ ଜିଲ୍ଲାରେ କାମ ଆରମ୍ଭ କଲି । ଶ୍ରୀ ଗୌରଚନ୍ଦ୍ର ଦାସ, ନୀଳାମ୍ବର ଏମାନେ ଖୁବ୍ ଉତ୍ସାହରେ ଲାଗିଲେ, ମାତ୍ର ଓଡ଼ିଶାର ଗାନ୍ଧିସେବାସଂଘ କର୍ମୀଙ୍କ ଅଡ଼ୁ ଆପତ୍ତି ଉଠିଲା ଯେ, ସେ ପ୍ରତିଜ୍ଞାପତ୍ର ଅନୁସାରେ ସ୍ୱେଚ୍ଛାସେବକ ସଂଗ୍ରହ ଗାନ୍ଧିନୀତି ବିରୁଦ୍ଧ; କାରଣ ସେ ପ୍ରତିଜ୍ଞାପତ୍ରରେ ଗୋଟିଏ ସର୍ତ୍ତ ଥିଲା, "ମୁଁ କଥାରେ ଓ କାର୍ଯ୍ୟରେ ଅହିଂସା ଆଚରଣ କରିବି ଓ ମନରେ ଅହିଂସା ପାଳନ କରିବା ପାଇଁ ଚେଷ୍ଟା କରିବି ।" ଗାନ୍ଧୀ ସେବାସଂଘ କର୍ମୀମାନେ କହିଲେ ଯେ, "ମୁଁ କଥାରେ, କାର୍ଯ୍ୟରେ, ମନରେ ଅହିଂସା ଆଚରଣ କରିବି" ଏପରି ହେବା ଉଚିତ । 'ଚେଷ୍ଟା କରିବାର' ଫାଙ୍କ ରହିବା ଉଚିତ ନୁହେଁ । ଏ ବିଷୟ ଗାନ୍ଧିଜୀଙ୍କ ପାଖକୁ ମୁଁ ଲେଖିଲି । ସେ ଉତ୍ତର ଦେଲେ ଯେ ସମାଜରେ ମନୁଷ୍ୟ କେବଳ କଥା ଓ କାର୍ଯ୍ୟ ସମ୍ବନ୍ଧରେ ସ୍ଥିର ଜବାବ ଦେଇପାରେ, ମନ ସମ୍ବନ୍ଧରେ ସର୍ବଦା ଚେଷ୍ଟାରେ ହିଁ ରହିବ ଓ ସେ ଚେଷ୍ଟାର ପ୍ରମାଣ ହେବ କଥା ଓ କାର୍ଯ୍ୟରେ ଅହିଂସା । ବାସ୍ତବିକ ପୂର୍ଣ୍ଣଭାବରେ ଅହିଂସା ଆଚରଣର ଦାବି ଗାନ୍ଧିଜୀ ନିଜେ ପୁଣି

କରନ୍ତି ନାହିଁ, ମାତ୍ର ଅହିଂସାର କର୍ମ-କୌଶଳ କେତେଦୂର ଚଳେ କର୍ମୀ ବୁଝିଛନ୍ତି ଉପଯୁକ୍ତ ଘଟଣାରୁ ଜଣାପଡ଼ିବ । ଯାହାହେଉ ଏଣେ ଗାନ୍ଧିଜୀଙ୍କଠାରୁ ପ୍ରତିଜ୍ଞାପତ୍ରର ଶେଷ ସିଦ୍ଧାନ୍ତ ଆସିଯିବା ପରେ ସେ ଦଗରେ କାର୍ଯ୍ୟ କରିବାପାଇଁ ସମସ୍ତେ ଲାଗିଗଲେ ? ନା ତା' ମଧ୍ୟ ହେଲ ନାହିଁ । ଜଣେ ଦୁଇଜଣ ଆମେ ଏପାଖ ସେପାଖ ହୋଇ ସେ ଦଗରେ କିଛି କରି ପାରିଲୁ ନାହିଁ । ଗାନ୍ଧିଜୀ ଏହି ସମୟରେ ଇଚ୍ଛା କରୁଥାନ୍ତି ଯେ, କଂଗ୍ରେସ ଭିତରେ ଯେଉଁମାନେ ସ୍ୱାର୍ଥନ୍ୱାଦୀ ଅଛନ୍ତି, ସେମାନେ ହଟି ଯାଆନ୍ତୁ ଓ ଯେଉଁମାନେ ଅହିଂସାର କୌଶଳରେ ବିଶ୍ୱାସ କରନ୍ତି ନାହିଁ, ସେମାନେ ମଧ୍ୟ ହଟି ଯାଆନ୍ତୁ । ସେମାନଙ୍କୁ ହଟାଇବାର ଏକମାତ୍ର ପନ୍ଥା, ଯାହା ଉପରେ ସେ ଜୋର ଦେଇଥିଲେ, ସେ ହେଉଛି କଂଗ୍ରେସକୁ ତାଙ୍କ ପ୍ରଦର୍ଶିତ ଗଠନମୂଳକ କାମ ଉପରେ ପ୍ରତିଷ୍ଠିତ କରିବା, ଅର୍ଥାତ୍ ପ୍ରତ୍ୟେକ କଂଗ୍ରେସକର୍ମୀ କିଛି ନା କିଛି ଗଠନମୂଳକ କାମର କେନ୍ଦ୍ର ହେବା; ଏହା କରାଇବା ପାଇଁ ମୁଁ ଚେଷ୍ଟା କରିଥିଲି ।

ଆମ ଜିଲ୍ଲାରେ ବର୍ତ୍ତମାନ ମୋର ୧୯୨୧ ମସିହା ସହକର୍ମୀ ନୀଳାମ୍ବର, ସୁରେନ୍ଦ୍ର ଓ ୧୯୩୦ ମସିହାର ସହକର୍ମୀ ଗୌର ଓ ରବି ଏମାନେ ସମସ୍ତେ ଏକତ୍ର ହୋଇଯିବାରୁ ଏକ ମନରେ କାମ କରିବାର ସୁବିଧା ଘଟିଥାଏ । ଜିଲ୍ଲାସାରା ବୁଲି, ବିଭିନ୍ନ ସ୍ଥାନରେ କେନ୍ଦ୍ର ସ୍ଥାପନ କରି, କଂଗ୍ରେସ ବାର୍ତ୍ତାର ସଗଠନ ଓ ବିସ୍ତାର-ପାଇଁ ଏମାନେ ଯଥାସାଧ୍ୟ ଚେଷ୍ଟା କରିଛନ୍ତି । ମୋର ମନେହୁଏ, ଏହିପରି ଚେଷ୍ଟା ଯେ କୌଣସି ସ୍ଥାନରେ କ୍ରମାଗତ ପାଞ୍ଚବର୍ଷ ହେଲେ, ସେ ସ୍ଥାନ ନୂଆପ୍ରକାରର ହୋଇଯିବ । ଯାହାହେଉ ଏମାନେ ପ୍ରବଳ ଉଦ୍ୟମରେ ଗତ କେତେ ବର୍ଷର ଶିଥିଳତାକୁ ଭାଙ୍ଗିବାରେ ଲାଗିଛନ୍ତି । ଏମାନଙ୍କ ସାଙ୍ଗରେ ମୁଁ ସେହି ୧୯୨୧ ମସିହାର ଉତ୍ସାହ ଅନୁଭବ କରୁଛି । ଅଭିଜ୍ଞତା ଫଳରେ ମୁଁ ପୁଣି ସ୍ୱାଙ୍କୁ ନୂତନ ପରିବାର କହିବାକୁ ସାହସ କରୁନାହିଁ । ଯାହାହେଉ, ପୂର୍ଣ୍ଣ ଉଦ୍ୟମ ଚାଲିଲି, କିନ୍ତୁ ଏଥିରେ ବାଧା ହେଉଥାଏ—ପ୍ରଥମେ ଯେଉଁମାନେ ଗାନ୍ଧିନୀତିରେ ବିଶ୍ୱାସ କରିଛନ୍ତି ବୋଲି ମନେ କରୁଥିଲେ, ସେମାନେ ଭାବୁଥିଲେ କଂଗ୍ରେସ ଦ୍ୱାରା କିଛି ହୋଇ-ପାରିବ ନାହିଁ । ତଥାପି ଏ ଦଗରେ ଆମ ଜିଲ୍ଲାରେ ଓ ଅନ୍ୟ କେତେକ ଜିଲ୍ଲାରେ କିଛି କାମ ହୋଇଥିଲି । ମୁଁ ଏ ସବୁ କାହାକୁ ଦୋଷ ଦେବାପାଇଁ ଲେଖୁନାହିଁ । ବର୍ତ୍ତମାନ ଜୀବନମରଣ ସମସ୍ୟା ଭିତରେ ଯେତେବେଳେ ପଛକୁ ଅନାଉଛି, ସେତେବେଳେ ଦେଖୁଛି, କେଉଁଠି ଦୋଷ ରହିଲି । ଗାନ୍ଧିଜୀଙ୍କ ଅହିଂସା ଭାରତର ସ୍ୱାଧୀନତା-ପ୍ରାପ୍ତିର ଯଶସ୍ୱୀ ନ ହେଲେ, ସେ ଅହିଂସା ରାଜନୀତି ବା ଅନ୍ୟ ବ୍ୟାବହାରିକ କାର୍ଯ୍ୟରେ ଆସିପାରିବ ନାହିଁ । ଏଣୁ ସେ ଅହିଂସା ରାଜନୀତିମୂଳକ । ତା'ର

ପରିଚାଳନା ଗାନ୍ଧିଜୀ କଂଗ୍ରେସ ଜରିଆରେ କରି ଆସୁଛନ୍ତି । ଅନେକ ସମୟରେ କଂଗ୍ରେସକୁ ସେ ନିଜ ମନୋମତ ଗଢ଼ି ପାରୁ ନଥାନ୍ତି । ସେଥିପାଇଁ ତାଙ୍କର ଦୁଃଖ ହୋଇଛି, ମାତ୍ର ସେ ନିରାଶ ହୋଇ କଂଗ୍ରେସ ଛାଡ଼ି ନାହାନ୍ତି, ବରଂ କଂଗ୍ରେସର ବ୍ୟତିକ୍ରମ ଅନୁସାରେ ନିଜକୁ ସାହାଯ୍ୟ କରିବା ଅବସ୍ଥାରେ ରଖି କଂଗ୍ରେସ ଜରିଆରେ ରାଜନୀତିକ ଅହିଂସା ଚଳାଇଛନ୍ତି । ଶରୀର ଓ ଆତ୍ମା ଭିତରେ ଯେପରି ପ୍ରଭେଦ, ଗୋଟିଏ ଖାଦ ଓ ଅନ୍ୟଟି ଖାଣ୍ଟି, ମାତ୍ର ଗୋଟିକ ବିନା ଅନ୍ୟଟି ଚଳି ପାରିବ ନାହିଁ; ସେହିପରି ଗାନ୍ଧିଜୀ ଓ କଂଗ୍ରେସ ଭିତରେ ସମ୍ବନ୍ଧ, ମାତ୍ର ଯେଉଁମାନେ ଗାନ୍ଧି-ନୀତିରେ ବିଶ୍ୱାସ ନ କରି କଂଗ୍ରେସ ଭିତରେ ପଶି ନିଜର କୌଶଳ ଅନୁସାରେ କାମ କରିବାକୁ ଗ୍ୱହିଁଲେ, ସେମାନେ କଂଗ୍ରେସକୁ ଯେପରି ସୁଦୃଢ଼ କରାଇଦେଲେ ନାହିଁ, ସେହିପରି ଯେଉଁମାନେ ଗାନ୍ଧିନୀତିରେ ବିଶ୍ୱାସ କରି ମନେକଲେ ଯେ କଂଗ୍ରେସକୁ ବାଦ୍‌ଦେଇ ମଧ୍ୟ ଗାନ୍ଧିଙ୍କ ରାଜନୀତିକ ଅହିଂସା ଚ୍ୱଲିପାରିବ ଓ ରାଜନୀତିକ ଅହିଂସା ସଫଳ ନ ହେଲେ ମଧ୍ୟ ଅହିଂସା ନୀତି ବ୍ୟବହାରିକ ଜୀବନରେ ପ୍ରସ୍ଥାପିତ ହେବ, ସେମାନେ ମଧ୍ୟ କଂଗ୍ରେସକୁ ସୁଦୃଢ଼ ହେବାରେ ସାହାଯ୍ୟ କଲେ ନାହିଁ ।

ମାତ୍ର ଗାନ୍ଧିଜୀ କେତେଥର ବ୍ୟକ୍ତ କରିଛନ୍ତି ଯେ, ତାଙ୍କ ଜୀବନର ଶେଷ ଉଦ୍ୟମ ନିକଟ ହୋଇଆସିଲା । ପୃଥିବୀରେ ଏକ ଅଭୂତପୂର୍ବ ଧ୍ୱଂସଲୀଳା ଚ୍ୱଲିଛି, ଏଣେ ଭାରତର ଦାବୀ ଗ୍ରହଣ କରିବାକୁ ଇଂଲଣ୍ଡ ସମ୍ପୂର୍ଣ୍ଣ ଅନିଚ୍ଛୁକ, ତେଣେ ମଧ୍ୟ ନିଜର ବୟସ ଆଗେଇ ଯାଉଛି—ଏପରି ସ୍ଥଳେ ଯଦି ସେ ପ୍ରମାଣ ନ କରିପାରନ୍ତି ଯେ, ଏ ସମସ୍ତ ପ୍ରଶ୍ନର ସମାଧାନ କରିବାପାଇଁ ଅହିଂସା ମଧ୍ୟ ଗୋଟିଏ ଉପାୟ, ତେବେ ତାଙ୍କର ଜୀବନ ବ୍ୟର୍ଥ ହୋଇଯିବ । ଏ କଥା ଯେତେବେଳେ ସେ କହନ୍ତି, ସେତେବେଳେ ତାଙ୍କ ଆଖିରୁ ଏକ ପ୍ରକାର ଜ୍ୟୋତି ବାହାରୁଥିଲା ପରି ଜଣାପଡ଼େ । ସେ ନିଜ ଉପରେ ନିର୍ଭର କରି କଂଗ୍ରେସକୁ ସାଙ୍ଗରେ ଟାଣି ଘୋଷାରି ଚ୍ୱଲିଲେ । ୧୯୪୦ ମସିହା ରାମଗଡ଼ କଂଗ୍ରେସରେ ମହାତ୍ମା ଗାନ୍ଧୀ କଂଗ୍ରେସକୁ ନିଜ କର୍ମ-କୌଶଳ ଅନୁଯାୟୀ କରିବାପାଇଁ ବହୁତ ଆଲୋଚନା କରିଥିଲେ, ମାତ୍ର ସେତେ ଫଳ ଫଳି ନ ଥିଲା । ଏ ବର୍ଷ ମୁଁ କାର୍ଯ୍ୟନିର୍ବାହକ ସମିତିର ସଦସ୍ୟ ହୋଇନାହିଁ, ମାତ୍ର କାର୍ଯ୍ୟନିର୍ବାହକ ସମିତିର ପ୍ରତ୍ୟେକ ବୈଠକକୁ ମୁଁ ସଭାପତିଙ୍କଦ୍ୱାରା ବିଶେଷ-ଭାବରେ ନିମନ୍ତ୍ରିତ ହୋଇଯାଉଥିଲି ।

ଏହି ବର୍ଷ ଓଡ଼ିଶାରେ ଏକ ନୂତନ ଉତ୍ସବର ଅନୁଷ୍ଠାନ ହୋଇଥିଲା—ସେ ହେଉଛି 'ଆଗ୍ୟର୍ଯ୍ୟ-ଜୟନ୍ତୀ' । ଆଗ୍ୟର୍ଯ୍ୟ ହରିହର ଦାଶଙ୍କ ଷାଠିଏ ବର୍ଷ ପୂରିବା

ଉପଲକ୍ଷେ ତାଙ୍କୁ ସାଧାରଣଙ୍କ ତରଫରୁ ପାଞ୍ଚ ହଜାର ଟଙ୍କାର ଏକ ଥଳି ଉପହାର ଦେବାକୁ ତାଙ୍କର ବନ୍ଧୁ ଓ ପ୍ରଶଂସକମାନେ ସ୍ଥିର କଲେ । ଏ କାମର ଭାର ମୋ ଉପରେ ପଡ଼ିଥିଲା । ପ୍ରାୟ ଚାରିହଜାର ପାଞ୍ଚଶହ ପର୍ଯ୍ୟନ୍ତ ଟଙ୍କା ସଂଗୃହୀତ ହୋଇଥିଲା । ଏଥିରେ ସବୁ ଶ୍ରେଣୀର ଲୋକ ଅର୍ଥ ଦାନ କରିଥିଲେ, ମାତ୍ର ଆଚାର୍ଯ୍ୟ ହରିହର ଦାଶଙ୍କ ପୁରାତନ ଛାତ୍ରମାନଙ୍କ ମଧ୍ୟରୁ ଖୁବ୍ କମ୍ ଏଥିପାଇଁ ଦାନ କରିଥିଲେ । ଆଚାର୍ଯ୍ୟ ହରିହର ବାସ୍ତବିକ ଆଦର୍ଶ ମନୁଷ୍ୟ ଓ ତାଙ୍କର ଏ ପ୍ରକାର ଆରାଧନା ସମୟୋପଯୋଗୀ ହୋଇଥିଲା ।

ଏ ବର୍ଷ ବାଲେଶ୍ୱରରେ ପ୍ରବଳ ବନ୍ୟା ହୋଇଥିବାରୁ ବିପୁଳ କ୍ଷତି ଘଟିଥିଲା । ଏ ଥର ବାଲେଶ୍ୱରର କଲେକ୍ଟର ମୋ ସହିତ ଦେଖା କରି ଏକ ସଙ୍ଗରେ ମିଶି ବନ୍ୟା ସାହାଯ୍ୟର ବ୍ୟବସ୍ଥା କରିବାପାଇଁ ମୋତେ ଅନୁରୋଧ କରିଥିଲେ । ଏଥିରେ ମୁଁ ରାଜି ହୋଇଥିଲି । ଗୋଟିଏ କମିଟିରେ ସମସ୍ତେ ରହି କାମ କରିଥିଲେ । ତା ଛଡ଼ା ମାରୱାଡ଼ି ରିଲିଫ୍ ସୋସାଇଟି, ବିରଳା ସନ୍ସ୍ ରିଲିଫ୍ ପାର୍ଟି ଏମାନେ ମଧ୍ୟ ଆସିଥିଲେ । ଓଡ଼ିଶା ବନ୍ୟା ସାହାଯ୍ୟ ସମିତି ମଧ୍ୟ କେନ୍ଦ୍ର ଖୋଲିଥିଲା । ଏମାନଙ୍କର ବ୍ୟବସ୍ଥା ମୋତେ କରିବାକୁ ହୋଇଥିଲା । ଏଥର ବାଲେଶ୍ୱରର କଲେକ୍ଟର ଓ ଭଦ୍ରକର ସବ୍‌ଡିଭିଜନ ଅଫିସର ଯେପରି କାମ କରି-ଥିଲେ, ସବୁଥର ସରକାରୀ କର୍ମଚାରୀମାନେ ସେହିପରି କଲେ ବନ୍ୟା ସାହାଯ୍ୟରେ ସରକାରୀ ଓ ବେସରକାରୀ ପ୍ରଭେଦ ରହନ୍ତା ନାହିଁ । ଏଥର ବନ୍ୟା ସାହାଯ୍ୟକାମରେ ମୁଁ ଲକ୍ଷ୍ୟ କରିଛି ଯେ ସେବା କାର୍ଯ୍ୟ କରିବାକୁ ସ୍ୱେଚ୍ଛାସେବକ ବହୁତ କମ୍ ବାହାରିଲେ । ଲକ୍ଷ୍ମୀନାରାୟଣ ସାହୁ ଓ ମୁଁ ଏଠିକି ସେଠିକି ଯାଇ ଯେତିକି ପାରୁ-ଥାଉଁ ତାହା କରୁଥାଉଁ । ମାତ୍ର ୧୯୨୮ ମସିହାରେ ଯେପରି ସ୍ୱେଚ୍ଛାସେବକ ବାହାରି ବନ୍ୟା ସାହାଯ୍ୟ କରିଥିଲେ ଏଥର ସେପରି ଆମେ ଦେଖିଲୁ ନାହିଁ । ଏପରି କି କଂଗ୍ରେସ ଲୋକଙ୍କ ଭିତରେ ମଧ୍ୟ ବନ୍ୟାସାହାଯ୍ୟ କାର୍ଯ୍ୟରେ ଉତ୍ସାହ ଦେଖାଯାଉ ନ ଥାଏ, ଏହା ଶୁଭ ଚିହ୍ନ ନୁହେଁ ।

ଏଣେ ବନ୍ୟାରେ ଲୋକ ଅତିଷ୍ଠ ହୋଇ ସେବାପାଇଁ ଚିତ୍କାର କରୁଛନ୍ତି, ତେଣେ କଂଗ୍ରେସର କେତେକ ବ୍ୟବସ୍ଥାପକସଭାର ସଭ୍ୟ ବିରୁଦ୍ଧ ଦଳରେ ଯୋଗ ଦେଇ ମନ୍ତ୍ରିମଣ୍ଡଳ ଗଠନ ଉଦ୍ୟମରେ ଲାଗିଛନ୍ତି, ଏପରିକି ଗୋଦାବରୀଶ ମିଶ୍ର ଓ ଖଲ୍ଲି-କୋଟ ରାଜା ଏକ ସଙ୍ଗରେ ଲାଟଙ୍କ ସହିତ ଏ ସମ୍ପର୍କରେ ସାକ୍ଷାତ କରି ସାରି-ଲେଣି । ମୁଁ ବନ୍ୟାସାହାଯ୍ୟ କାମ ଛାଡ଼ି ସେ ବିଷୟରେ ଲାଗିବାକୁ ଯିବ ନାହିଁ ବୋଲି ସ୍ଥିର କଲି । କେବଳ ସମ୍ବାଦପତ୍ର ଜରିଆରେ ସେ ନୀତି ଉଦ୍ୟମର ପ୍ରତିବାଦ

କରି ଲେଖା ପ୍ରକାଶ କରୁଥିଲି । ଶେଷରେ ମନ୍ତ୍ରିମଣ୍ଡଳ ଗଠନ ଉଦ୍ୟମ ଆପାତତଃ ସଫଳ ହେଲା ନାହିଁ । ମାତ୍ର ଯେଉଁମାନେ ଏ ଉଦ୍ୟମ କରୁଥିଲେ, ସେମାନଙ୍କୁ କଂଗ୍ରେସ କାର୍ଯ୍ୟନିର୍ବାହକ ସମିତି କଂଗ୍ରେସରୁ ବାହାର କରିଦେଲେ ।

ଏହି ସମୟରେ ଓଡ଼ିଶା କମ୍ୟୁନିଷ୍ଟମାନଙ୍କ ବିରୁଦ୍ଧରେ ବ୍ୟାପକ ଭାବରେ ଏକ ଷଡ଼ଯନ୍ତ୍ର ମୋକଦ୍ଦମା ଚାଲିଲା । କମ୍ୟୁନିଷ୍ଟମାନେ ଆଗରୁ କଂଗ୍ରେସ ସାମ୍ୟବାଦୀ ଦଳ ସହିତ ମିଳିମିଶି ଥିଲେ, ମାତ୍ର କ୍ରମେ ସେମାନଙ୍କୁ ସେଥିରୁ ଅଲଗା କରିଦିଆ ହୋଇଥିଲା । ତା'ପରେ କମ୍ୟୁନିଷ୍ଟମାନଙ୍କ ସହିତ କଂଗ୍ରେସର ସେପରି ସମ୍ପର୍କ ନ ଥିଲା, ବରଂ କଂଗ୍ରେସକୁ ଅପଦସ୍ଥ କରିବାପାଇଁ ସେମାନେ ସବୁପ୍ରକାର ଚେଷ୍ଟା କରୁଥିଲେ; ମାତ୍ର ଏ ମୋକଦ୍ଦମା ହେବା ପରେ ସେମାନଙ୍କ ଆତ୍ମପକ୍ଷ ସମର୍ଥନ ପାଇଁ ମୁଁ ବନ୍ଦୋବସ୍ତ କରିଥିଲି ଏବଂ ମୋର ଧାରଣା ସେ ସମୟରେ ମୁଁ ସେ ବନ୍ଦୋବସ୍ତ ନ କରିଥିଲେ ବୋଧହୁଏ ତା ଅନ୍ୟଦ୍ୱାରା ହୋଇପାରି ନ ଥାନ୍ତା ।

ଏହି ବର୍ଷ ଗାନ୍ଧିଜୀ କଂଗ୍ରେସକୁ ନିଜ କାର୍ଯ୍ୟକ୍ରମାନୁଯାୟୀ କରିବା ପାଇଁ ସମସ୍ତ ଚେଷ୍ଟା କରିଛନ୍ତି । କଂଗ୍ରେସ କମିଟିମାନ ସତ୍ୟାଗ୍ରହ କମିଟିରେ ପରିଣତ ହେଲା । କଂଗ୍ରେସ କମିଟିମାନ ଗଠନମୂଳକ କାମ କରିବା ଉପରେ ଜୋର ଦିଆ ହେଲା, ମାତ୍ର ସେ ଦିଗରେ କାମ ଉଦ୍ଦେଶ୍ୟାନୁରୂପ ଅଗ୍ରସର ହେଉ ନ ଥାଏ, ଏଥିରେ ସନ୍ଦେହ ନାହିଁ । ତଥାପି ଉପସ୍ଥିତ ପରିସ୍ଥିତିରେ ଅହିଂସାକୁ ଆଗରେ ରଖିବାକୁ ହେବ, ଅନ୍ୟଥା ଅହିଂସାର ସ୍ଥାନ ଜଗତରେ ଲୋପ ପାଇଯିବ । ଏଣୁ ଏ ବର୍ଷର ଶେଷଆଡ଼କୁ ବ୍ୟକ୍ତିଗତ ସତ୍ୟାଗ୍ରହର ପରିକଳ୍ପନା ଗାନ୍ଧିଜୀ କାର୍ଯ୍ୟନିର୍ବାହକ ସମିତି ଆଗରେ ଉପସ୍ଥାପିତ କଲେ । ଉତ୍ସାହ ସହକାରେ ଏହା ଗୃହୀତ ହୋଇଥିଲା । ଏ କୌଶଳ ହେଉଛି ଯେ ଗାନ୍ଧିଜୀ ସତ୍ୟାଗ୍ରହୀ ମନୋନୟନ କରିବେ ଓ ତାଙ୍କର ନିର୍ଦ୍ଦେଶମତେ ନିମ୍ନଲିଖିତ ଧ୍ୱନି କରିବେ 'ଯୁଦ୍ଧରେ ସାହାଯ୍ୟ କରିବା ପାପ ଓ ବର୍ତ୍ତମାନ ଯୁଦ୍ଧରେ ସାହାଯ୍ୟ କରିବା ଅନ୍ୟାୟ' । ଏହି ଧ୍ୱନିରେ କଂଗ୍ରେସ ଭିତରେ ଥିବା ଦୁଇ ମତ ରକ୍ଷିତ ହୋଇଥିଲା । ଗୋଟିଏ ହେଉଛି ପୂର୍ଣ୍ଣ ଅହିଂସାବାଦ ଅର୍ଥାତ୍ କୌଣସି ପ୍ରକାର ଯୁଦ୍ଧରେ ସାହାଯ୍ୟ ନ କରିବା । ଆଉ ଗୋଟିଏ ହେଉଛି ଭାରତର ସ୍ୱାଧୀନତା ପାଇଁ ସାମ୍ରାଜ୍ୟବାଦୀ ଯୁଦ୍ଧରେ ସାହାଯ୍ୟ ନ କରିବା । ପ୍ରଥମଟି ହେଉଛି ଗାନ୍ଧିଜୀଙ୍କ ନୀତି ଓ ଦ୍ୱିତୀୟଟି ରାଜନୀତି କ୍ଷେତ୍ରରେ ଅହିଂସା ପ୍ରୟୋଗରେ ଗାନ୍ଧିଜୀଙ୍କ ଦ୍ୱାରା ସୀମା ନିରୂପଣ । ଦେଶ ହିସାବରେ ଓ ଦେଶର ରାଜନୀତିକ ମତ ପ୍ରତିଫଳିତ ହେଉଥିବା କଂଗ୍ରେସରେ ଏକ ପ୍ରବଳ ମତ ପ୍ରକାଶିତ ହେଉଥାଏ, ଯାହା ଭାରତର ସ୍ୱାଧୀନତା ସର୍ତ୍ତରେ ଯୁଦ୍ଧରେ ସାହାଯ୍ୟ କରିବା ପକ୍ଷରେ ଥାଏ । ଏଥିପାଇଁ ଇଂରେଜ ସରକାରଙ୍କ ଆଡ଼କୁ କଂଗ୍ରେସ ବହୁବାର

ସନ୍ତୁଷ୍ଟ ନୟନରେ ଅନାଇଲଣି । ମାତ୍ର ସେ ରୁଦ୍ଧଦ୍ୱାରରେ ଆଘାତ କରି ଅପମାନ ଛଡ଼ା ଅନ୍ୟ କୌଣସି ଉତ୍ତର ପାଇନାହିଁ । ତଥାପି ପଥ ଉନ୍ମୁକ୍ତ ରଖିବା ପାଇଁ ଅନେକଙ୍କ ମତ । ଏ ମତକୁ ଉପେକ୍ଷା କରିବା ଦ୍ୱାରା ଅହିଂସା ପ୍ରୟୋଗ ବ୍ୟର୍ଥ ହୁଅନ୍ତା । ଏହିଠାରେ ଦେଖାଯିବ ଯେ, ଗାନ୍ଧିଜୀ ଭୋଟଦ୍ୱାରା କୌଣସି ବିଷୟ ହାସଲ କରି ନେବାକୁ ଚାହାନ୍ତି ନାହିଁ । ତାହା ଅହିଂସା ପ୍ରୟୋଗ ପକ୍ଷରେ ଅସୁବିଧାଜନକ । ଅହିଂସାର ପରିଚାଳକ ହିସାବରେ ଜନମତକୁ ଅନୁମାନରେ କଳ୍ପନା କରି ତଦନୁ-ସାରେ ଅହିଂସାର ସୀମା ନିରୂପଣ କରି ସେ କାର୍ଯ୍ୟକ୍ରମ ସ୍ଥିର କରନ୍ତି । ଏହି କୌଶଳ ଅନୁଯାୟୀ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ ହେଲା । ମାନ୍ୟଗଣ୍ୟ ପ୍ରତିନିଧି ସ୍ଥାନୀୟ ବ୍ୟକ୍ତିମାନେ ଉପରୋକ୍ତ ଧ୍ୱନି କରି ସତ୍ୟାଗ୍ରହ ଆରମ୍ଭ କଲେ । ଏ ସତ୍ୟା-ଗ୍ରହର ବିଶେଷତ୍ୱ ଏହି ଯେ, ଏତଦ୍ୱାରା ଅହିଂସା ବଳବତ୍ତର ଭାବରେ ଜଗତ ଆଗରେ ଉପସ୍ଥିତ ହେଲା, ଭାରତର ସ୍ୱାଧୀନତା ଦାବୀ ସମ୍ମାନଜନକ ଭାବରେ ଉପସ୍ଥିତ ହେଲା, ଅଥଚ ଏହାଦ୍ୱାରା ପ୍ରତିପକ୍ଷ ବିପଦରେ ପଡ଼ିଥିବାବେଳେ ତା ପ୍ରତି କୌଣସି ଆଞ୍ଚ୍ ଲାଗିଲା ନାହିଁ । ମାତ୍ର ତା ମନ ଭିତରେ ଅଡ଼ୁଆ ଲାଗିଥିବ, କାରଣ ଏ ସତ୍ୟାଗ୍ରହର ନୈତିକ ପ୍ରଭାବ ତା'ର ବିଚାର ଶକ୍ତି ବା ବିବେକକୁ ଧକ୍କା ମାରିଥିବ । ମାତ୍ର ବିକ୍ଷିପ୍ତ ବିବେକକୁ ଶାନ୍ତ କରାଇବା ସହଜ ଓ ସେଥିପାଇଁ ଅନେକ ଯୁକ୍ତି ମିଳେ । ଇଂଲଣ୍ଡ ମଧ୍ୟ ସେହିପରି ନାନା ଯୁକ୍ତିଛଳରେ ନିଜ ବିବେକକୁ ଶାନ୍ତ କରିଥିଲା । ସେ ପଛ କଥା । ବର୍ତ୍ତମାନ ସତ୍ୟାଗ୍ରହ ଚାଲିଲା । ଗାନ୍ଧିଜୀଙ୍କଦ୍ୱାରା ଆଦିଷ୍ଟ ହୋଇ ଓଡ଼ିଶାର ପ୍ରଥମ ସତ୍ୟାଗ୍ରହୀ ତାଲିକା ତାଙ୍କଠାକୁ ପଠାଇ ମଞ୍ଜୁର କରାଇଲି । ତାଙ୍କର ନିର୍ଦ୍ଦେଶମାନ ସବୁ ଜିଲ୍ଲାକୁ ନିଜେ ଯାଇ କର୍ମୀମାନଙ୍କୁ ବୁଝାଇ ଆସିଲି । ପ୍ରଥମ ତାଲିକାରେ ଅନେକ ଜଣାଶୁଣା କଂଗ୍ରେସ ଲୋକ ନାମ ଦେଲେ ନାହିଁ; କାରଣ ସେମାନେ ସତ୍ୟାଗ୍ରହ ପାଇଁ ପ୍ରସ୍ତୁତ ନ ଥିଲେ । ନାମ ନ ଦେବାପାଇଁ ମୁଁ ସେମାନଙ୍କୁ ଉତ୍ସାହିତ କଲି । ଏପରିକି କେତେକଜଣଙ୍କୁ ମୋ ଦାୟିତ୍ୱରେ ମୁଁ ସତ୍ୟାଗ୍ରହରୁ ଅବ୍ୟାହତି ଦେଲି । ସମସ୍ତେ ସତ୍ୟାଗ୍ରହ କରିବାକୁ ବାଧ୍ୟ, ଏହା ନୁହେଁ, ମାତ୍ର ସମସ୍ତେ କିଛି ନା କିଛି, କାର୍ଯ୍ୟ କରିବା ଆବଶ୍ୟକ । କେତେପ୍ରକାର ଗଠନମୂଳକ କାମ ଅଛି, କଂଗ୍ରେସକୁ ସମର୍ଥନ କରିବା ବଡ଼ କାମ । ଏ ଶ୍ରେଣୀର ଲୋକେ ସତ୍ୟାଗ୍ରହ କରି ନ ପାରିଲେ ବୋଲି ଯେ ନିନ୍ଦନୀୟ ହେବେ ତାହା ନୁହେଁ । ୧୯୩୩ ମସିହା ବ୍ୟକ୍ତିଗତ ସତ୍ୟାଗ୍ରହ ବେଳକୁ ମୋର ଯେଉଁ ଧାରଣା ଥିଲା, ଏଥର ମଧ୍ୟ ଠିକ୍ ସେଇଆ, ମାତ୍ର ବର୍ତ୍ତମାନ ଗାନ୍ଧିଜୀଙ୍କ ଠାରୁ ପୂର୍ଣ୍ଣ ପରାମର୍ଶ ଆଣି କାମ କରୁଥିବାରୁ ମୋ ମନରେ ଦ୍ୱିଧା ନ ଥିଲା । କୌଣସି ବିଷୟରେ ଆତ୍ମ-ଅଭିମାନ ଏପରି ଏକ ବାୟୁମଣ୍ଡଳ ସୃଷ୍ଟି କରେ, ଯଦ୍ଦ୍ୱାରା କାର୍ଯ୍ୟ ଆଗେଇ ପାରେନାହିଁ । ସତ୍ୟାଗ୍ରହ ଯେଉଁମାନେ କରିବେ, ସେମାନେ ଭାବିବା ଉଚିତ ନୁହେଁ ଯେ, ଅନ୍ୟ ସମସ୍ତେ ସତ୍ୟାଗ୍ରହ କରିବା ଉଚିତ

ତାହାଛଡ଼ା ସତ୍ୟାଗ୍ରହ ଓ ସୁଖ ସମସ୍ତ ଦେଇ ଗଠନମୂଳକ କାମ କରିବା ଏକ ଶ୍ରେଣୀର କାମ । ଅବଶ୍ୟ ଗଠନମୂଳକ କାମକୁ ଆଦରଣ କରି ସତ୍ୟାଗ୍ରହ ନ କରିବା ନିନ୍ଦନୀୟ, ଏହା ବୋଲିବା ନିଷ୍ପ୍ରୟୋଜନ । ଯାହାହେଉ ମୁଁ ପ୍ରଥମ ତାଲିକା ମନ୍ତ୍ରୀର କଥାଇ ନେଇ ସମସ୍ତଙ୍କୁ ଜଣାଇ ଦେଇ ୧୯୪୦ ଡିସେମ୍ବର ୧ ତାରିଖ ଦିନ ବେମୁଣ୍ଡାରେ ଏକ ସଭାରେ ପ୍ରଥମେ କିଛି ବକ୍ତୃତା ଦେଇ ତା'ପରେ ନିର୍ଦ୍ଦିଷ୍ଟ ଧ୍ୱନି କରିଥିଲି । ସେଦିନ ମୁଁ ଧରା ନ ହୋଇ ତା' ପରଦିନ ଧରା ହେଲି । ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ କୋର୍ଟରେ ବିଚାର ହୋଇ ମୋତେ ଏକବର୍ଷ ଜେଲଦଣ୍ଡ ଦିଆଗଲା । ବନ୍ୟା ସମ୍ପର୍କରେ ଏକ ସଙ୍ଗରେ କାମ କରୁଥିବାରୁ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ସହିତ ମୋର ଖୁବ୍ ଆଳାପ ହୋଇଯାଇଥିଲା । ଏପରିକି ଆମ ଭିତରେ ବନ୍ଧୁତା ପ୍ରତିଷ୍ଠିତ ହୋଇ ପାରିଥିଲା । ତେଣୁ ଅଭିଯୁକ୍ତ ଓ ବିଚାରକ ମଧ୍ୟରେ କୌଣସି ପ୍ରକାର ଚିତ୍ତ ବିକ୍ଷେପର କାରଣ ନ ଥିଲା । ଆଉ ମଧ୍ୟ ଅହିଂସାର ଉଚ୍ଚ ଆଦର୍ଶ ଘେନି ଏଥର ସତ୍ୟାଗ୍ରହ କରିଥିବାରୁ ମୋତେ କାରାବରଣ ଅତି ପବିତ୍ର ବୋଧ ହେଉଥିଲା—ଯାହା ପୂର୍ବେ କେବେ ଅନୁଭବ କରି ନ ଥିଲି । ମୁଁ ଭାବିଲି, ଜଗତରେ ଶାନ୍ତି ପ୍ରଚାର ପାଇଁ ଖ୍ରୀଷ୍ଟ ଓ ବୁଦ୍ଧ କେତେ ଉଦ୍ୟମ କରିଥିଲେ; ବର୍ତ୍ତମାନ ଗାନ୍ଧିଜୀ ବିରାଟ ଧ୍ୱଂସ ମଝିରେ ଛିଡ଼ା ହୋଇ ସାହସ ସହକାରେ କହୁଛନ୍ତି—ଅହିଂସାର ପଥ ହିଁ ନ୍ୟାଯ୍ୟ ପଥ; ଏହାର ପରିଣାମ ଯାହାହେଉ ପଛକେ ଉନ୍ମତ୍ତ ଜଗତକୁ ତ ଏକଥା ଜଣେ ହେଲେ ଶୁଣାଉଛି । ସେହି ଜଣକ କଥାରେ ସେତୁବନ୍ଧ ନିର୍ମାଣରେ ଗୁଣ୍ଡୁଚି ମୂଷାର କାମ ମୋଦ୍ୱାରା ହେଲେ, ମୋ ପକ୍ଷରେ ଗୌରବର ବିଷୟ ।

ବର୍ଷକ ବ୍ରହ୍ମପୁର ଜେଲରେ କଟାଇବାକୁ ହେଲା । 'କ' ଶ୍ରେଣୀର ବନ୍ଦୀ ହୋଇ ଜଗନ୍ନାଥ ବାବୁ, ବୋଧରାମ ବାବୁ, ପ୍ରହ୍ଲାଦ ରାୟ ଲାଠ ଓ ମୁଁ ଥାଉ । ଏହାଛଡ଼ା 'ଖ' ଶ୍ରେଣୀଭୁକ୍ତ ହୋଇ ନବକୃଷ୍ଣ ଚୌଧୁରୀ ପ୍ରଭୃତି ଅନ୍ୟ ବନ୍ଧୁମାନେ ମଧ୍ୟ ସେଇଠି ଥାଆନ୍ତି । କେତେକ ମଧ୍ୟ 'ଗ' ଶ୍ରେଣୀରେ ଥାଆନ୍ତି । ଏଥର ଜେଲରେ ମନେହେଲା ଯେ, ଖାଲି ଆମେ ଅଟକ ହୋଇଅଛୁଁ, ନଚେତ୍ ଅନ୍ୟ କୌଣସି ଅସୁବିଧା ନ ଥିଲା । କ ଶ୍ରେଣୀର ବନ୍ଦୀ ହିସାବରେ ଆମେ ନିଜ ପଇସାରୁ ଖାଇବା ଜିନିଷ କିଣି ପାରୁଥିଲୁ । ଆମେ ମଧ୍ୟ ଖ ଶ୍ରେଣୀ ଓ ଗ ଶ୍ରେଣୀର ବନ୍ଦୀମାନଙ୍କୁ ସାହାଯ୍ୟ କରୁଥିଲୁ । ଏଥର ବେସରକାରୀ ଭାବରେ ବହୁ ସୁବିଧା ରାଜବନ୍ଦୀମାନେ ପାଇଥିଲେ । ତାସ୍ ଖେଳ, ସତରଞ୍ଚ ଖେଳ, ନାଚ, ଗାନ ଏ ସବୁ ଏପରି ଭାବରେ ଚାଲିଥିଲା ଯେ ମୁଁ ୧୯୨୨ ମସିହା ଭାଗଲପୁର ଜେଲକୁ ମନେକରି, ଏପରି କି ପାଟଣା କେମ୍ପ ଜେଲକୁ ମନେକରି ସ୍ୱର୍ଗରେ ଅଛି ବୋଲି ମନେ କରୁଥିଲି । ଜେଲରେ ଜଗନ୍ନାଥ ଦାସଙ୍କ ସହିତ ଶ୍ରୀମଦ୍ ଭାଗବତ, ଶ୍ରୀ ଚୈତନ୍ୟଚରିତାମୃତ

ପଢ଼ିବାର ସୁବିଧା ପାଉଥିଲି । ମୁଁ ନିଜେ ଏଥର ନିଜର ସ୍ୱାସ୍ଥ୍ୟକୁ ସଜାଡ଼ିବା ପାଇଁ ଖାଦ୍ୟ ନିୟନ୍ତ୍ରଣ କରି ଓ ଆସନ ସାଧନା କରି ପ୍ରାୟ ପନ୍ଦର ପାଉଣ୍ଡ ଓଜନରେ କମି ଯାଇଥିଲି । ତଦ୍ଦ୍ୱାରା ଏପରି ଦୈହିକ ସ୍ଫୁର୍ତ୍ତି ଓ ମାନସିକ ଉତ୍ସାହ ଅନୁଭବ କଲି ଯେ ମୋର ମନେହେଲା ମୁଁ ଯେପରି ଦଶ ବର୍ଷ ବୟସରେ କମି ଯାଇଛି । ସାମୟିକ କବିତା ମଧ୍ୟ ଲେଖୁଥିଲି । ଜେଲରେ ଆବଦ୍ଧ ହୋଇ ରହିଲେ ଘରପା ଏଡ଼ଯାଇଥିବା ଅନେକ ଚିନ୍ତା ସୁବିଧା ପାଇ ମୁଣ୍ଡ ଟେକେ । ମୋ ସହିତ ଦେଖା କରିବା ପାଇଁ ଥରେ ସୁଭଦ୍ରା ଦେଖା ଆସିଥିଲେ । ତାଙ୍କ ଚେହେରାରେ ଏକପ୍ରକାର ନୈରାଶ୍ୟ ଭାବ ମୁଁ ଲକ୍ଷ୍ୟ କରିଥିଲି । ମୋ ମନରେ ବଡ଼ ଦୟା ଜାତ ହେଲା, ମୁଁ ତ ରାଜନୀତି ଓ ଦେଶ ଇତ୍ୟାଦି ନେଇ ମନକୁ ନିଯୁକ୍ତ କରାଇଛି, 'ସେ ବିଚାରୀ କଅଣ ନେଇ ରହିଥିବ ? କିପରି ବା ମୁଁ ତା' ମନରେ ସାନ୍ତ୍ୱନା ଦେଇପାରିବି ? ସେ ସିନା ହିନ୍ଦୁ ସମାଜର ସ୍ତ୍ରୀ ବୋଲି ନିଜକୁ ନିଜେ ଚାପିଦେଇ ମନମାରି ଭାଗ୍ୟକୁ ଆଦରି ରହିଯାଇଛି ? ଏସବୁ ପ୍ରଶ୍ନ ମୋ ମନରେ ବିକ୍ଷୋଭ ଜାତ କରାଇଲା, ମାତ୍ର ଉପାୟ କଅଣ ? ସେହି ଭାଗ୍ୟ ଉପରେ ଶେଷରେ ସବୁ ଛାଡ଼ି ନିଶ୍ଚିନ୍ତ ହେବାକୁ ଚେଷ୍ଟା କରିବାକୁ ବାଧ୍ୟ ।

ଜେଲଖାନାରେ ଏଥର ଖବରକାଗଜ ମିଳୁଛି, ତେଣୁ ନାନା ପ୍ରକାର ଖବର ପାଇ ତା'ର କ୍ରିୟା ପ୍ରତିକ୍ରିୟା ମନରେ ଜାଗ୍ରତ ହେଉଛି । ଯେତେବେଳେ ଖବର ମିଳିଲା ଯେ ସୁଭାଷବାବୁ ଛଦ୍ମବେଶରେ କୁଆଡ଼େ ଅନ୍ତର୍ହିତ ହୋଇ ଯାଇଛନ୍ତି, ମୋର ପୂରା ବିଶ୍ୱାସ ଜନ୍ମିଲା ଯେ ଜର୍ମାନୀ ଓ ଜାପାନ ସହିତ ସମ୍ପର୍କ ସ୍ଥାପନ କରିବା ପାଇଁ ବାହାରିଗଲେ । କାରଣ ତାଙ୍କର କର୍ମଯୋଜନା ମୋତେ ଜଣା ଥିଲା । ଯେ ଦେଶ ପାଇଁ ନିଜ ଜୀବନ ଦେଇ ଖେଳା କରିପାରେ, ସେ ପୁଣି ନିତାନ୍ତ ସ୍ୱାର୍ଥବାଦୀଙ୍କ ସହିତ ମିଶି କିପରି ଦଳ ଗଠନ କରିପାରେ ଏହା ହିଁ ମୋତେ ଆଶ୍ଚର୍ଯ୍ୟ ଲାଗୁଥାଏ ।

ଖବର ମିଳୁଥାଏ ଯେ, କାରାବରଣ କରିବା ପାଇଁ କଂଗ୍ରେସ ଅନୁଷ୍ଠାନ ତରଫରୁ ପ୍ରବଳ ପ୍ରବର୍ତ୍ତନା ଦିଆ ହେଉଛି, ଯେପରିକି ସତ୍ୟାଗ୍ରହୀଙ୍କ ସଂଖ୍ୟା ଅଳ୍ପ ହେଲେ ଆନ୍ଦୋଳନରେ ସବୁ ବ୍ୟାଘାତ ଘଟିବ । ସଂଖ୍ୟା ବଢ଼ାଇବାର ଉଦ୍ୟମରେ ଯୋଗ୍ୟତା ପ୍ରତି ଦୃଷ୍ଟି ଶିଥିଳ ହୋଇଯିବା ସ୍ୱାଭାବିକ । ଆଉ ମଧ୍ୟ ଏ ଖବର ମିଳୁଥାଏ ଯେ, ନୈତିକ ପ୍ରଭାବ ଉପରେ ବିଶ୍ୱାସ ରଖି ଧୀର ଭାବରେ କଷ୍ଟ ସହିଯିବା ପାଇଁ ପ୍ରସ୍ତୁତ ନ ହୋଇ ଅନେକ ସତ୍ୟାଗ୍ରହୀ ଜେଲରୁ ମୁକ୍ତ ହୋଇ ଗାନ୍ଧିଜୀଙ୍କ ନିର୍ଦ୍ଦେଶାନୁସାରେ ପୁନର୍ବାର କାରାବରଣ ନ କରି, ସତ୍ୟାଗ୍ରହ ପ୍ରତି ଆସ୍ଥା ହୀନ ହୋଇଯାଇଛନ୍ତି । କେତେ ମଧ୍ୟ ଏ ଆସ୍ଥାହୀନ ଅବସ୍ଥାରୁ ଅଧିକ ଆଗକୁ ଯାଇ

ସତ୍ୟାଗ୍ରହ ବିରୋଧରେ କାର୍ଯ୍ୟ କରୁଛନ୍ତି । ଏପରିକି କେତେକ ମନ୍ତ୍ରୀ ଦଳ ଗଠନରେ ମଧ୍ୟ ଯୋଗ ଦେଲେଣି । ସେ ସମୟରେ ଓଡ଼ିଶାରେ କଂଗ୍ରେସ ଭିତରେ ସ୍ୱାର୍ଥବାଦୀ-ଦଳ ତଥା ସତ୍ୟାଗ୍ରହ ପ୍ରତି ଆସ୍ଥାହୀନ ଭୂତପୂର୍ବ ସତ୍ୟାଗ୍ରହୀମାନେ ଯେଉଁ ବିଶୃଙ୍ଖଳା ଘଟାଇବାର ଉଦ୍ୟମ କରିଥିଲେ, ତାହାକୁ ସେ ସମୟକାର ପ୍ରାଦେଶିକ କଂଗ୍ରେସ କମିଟିର ଅଧ୍ୟକ୍ଷ ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ ଯେଉଁ ଦୃଢ଼ତା ଓ ଦକ୍ଷତାର ସହିତ ଦବାଇଥିଲେ, ସେଥିରେ ତାଙ୍କ ପ୍ରତି ମୋର ଭକ୍ତି ଅନେକ ଗୁଣରେ ବଢ଼ିଗଲା । ମୁଁ ଭାବୁଥାଏ ଯେ, ମୁଁ ସେ ଅବସ୍ଥାରେ ଥିଲେ ମଧ୍ୟ ଏତେ ଦୃଢ଼ ହୋଇ ପାରି ନ ଥାନ୍ତି ।

ଏହି ସମୟରେ ବଡ଼ଲାଟ ତାଙ୍କ ବ୍ୟବସ୍ଥା ପରିଷଦର ସଦସ୍ୟ ସଂଖ୍ୟା ବଢ଼ାଇ କେତେଜଣ ଭାରତୀୟଙ୍କୁ ନେଇଥାଆନ୍ତି । ସେମାନଙ୍କ ମଧ୍ୟରେ କଂଗ୍ରେସର ଗତ ସତ୍ୟାଗ୍ରହର ଜନୈକ ଅଧ୍ୟକ୍ଷ ଥାନେ ଓ ନଳିନୀରଞ୍ଜନ ସରକାର ମଧ୍ୟ ବର୍ତ୍ତମାନ ବଡ଼ଲାଟ ବ୍ୟବସ୍ଥା ପରିଷଦର ସଭ୍ୟ । ଏ ବିଷୟ ଭାରତୀୟ ରାଜନୀତି କ୍ଷେତ୍ରରେ ବିସ୍ମୟ ଜନ୍ମାଇଥାଏ; ଏଥିରେ ମିଶିଲା ଓଡ଼ିଶାର ମନ୍ତ୍ରୀମଣ୍ଡଳ ଗଠନ ।

ନଭେମ୍ବର ମାସ ବେଳକୁ ନିର୍ଧାର୍ଯ୍ୟ ଖବର ଆସିଲା ଯେ, ନୀଳକଣ୍ଠବାବୁ ଓ ଗୋଦାବରୀଶବାବୁ ପ୍ରଭୃତି ପାରଳାଖେମୁଣ୍ଡି ମହାରାଜାଙ୍କ ସହିତ ମିଶି ମନ୍ତ୍ରିମଣ୍ଡଳ ଗଠନ କରୁଛନ୍ତି । ଏ ସମ୍ବାଦରେ ଜେଲ୍ ଭିତରେ ଗୋଟାଏ ତୀବ୍ର କ୍ରୋଧର ଭାବ ପ୍ରକାଶ ପାଇଲା । ବାସ୍ତବିକ ଦେଶଦ୍ରୋହର ଚରମସୀମା ଏହିଠାରେ ଦେଖାଗଲା । ଯେଉଁ ସମୟରେ ସ୍ୱାଧୀନତା ପାଇଁ ଦେଶ ତରଫରୁ ସଶସ୍ତ୍ର ବିଦ୍ରୋହ କରି ଶହ ଶହ ହଜାର ହଜାର ଜୀବନ ଦେବା ପରିବର୍ତ୍ତେ ବିଶାଳ ଗଣଆନ୍ଦୋଳନ ଅହିଂସାତ୍ମକ ଉପାୟରେ ଚଳାଇବାର ଭରସା ନ ରଖି ଏକମାତ୍ର ଅହିଂସା ଅସହଯୋଗ ପ୍ରୟୋଗ କରି ପୃଥିବୀ ସମକ୍ଷରେ ଦେଶର ଦାବୀ ଉପସ୍ଥାପିତ ହୋଇଛି, ସେହି ସମୟରେ ସେହି ଏକମାତ୍ର ଅସହଯୋଗକୁ ନଷ୍ଟ କରୁଛନ୍ତି ଯେଉଁମାନେ, ସେମାନେ ଦେଶ ଗଳାରେ ଛୁରି ମାରି ଦେଉଛନ୍ତି ସିନା ! ସେ ପୁଣି ଜନସାଧାରଣଙ୍କ ଅସହଯୋଗ ନୁହେଁ । କାହାରିକୁ ସେଥିରେ କିଛି ତ୍ୟାଗ କରିବାକୁ ପଡ଼ୁ ନ ଥିଲା । କେବଳ କଂଗ୍ରେସ ପ୍ରତିଷ୍ଠା ଫଳରେ ଯେଉଁମାନେ ବ୍ୟବସ୍ଥାସଭାର ସଦସ୍ୟ ହୋଇଥିଲେ, ସେହିମାନେ ସେହି କଂଗ୍ରେସ ନିର୍ଦ୍ଦେଶରେ ସେ ପଦ ବ୍ୟବହାର କରିବା ପାଇଁ କୁହାହୋଇଥିଲା । ଅଥଚ ବିଶ୍ୱାସଘାତକତା କରି କଂଗ୍ରେସ ନିର୍ଦ୍ଦେଶ ଅମାନ୍ୟ କରି ସେହି କଂଗ୍ରେସର ପ୍ରତିଷ୍ଠା ଫଳରେ ଯେଉଁ ପଦ ଲାଭ କରିଥିଲେ, ତାହାକୁ ଦେଶ ବିରୋଧରେ ଖଟାଇବାକୁ ଇତିହାସ କି ଭାବରେ ଚିତ୍ର କରିବ, ଭବିଷ୍ୟତ ବଂଶଧରମାନେ ଏ ବୃତ୍ତାନ୍ତରେ କିପରି ଲଜ୍ଜିତ ହେବେ,

ତାହା ପରେ ସେମାନେ ଭାବିଲେ କ ? ଲୋଭବଶତଃ ବୁଦ୍ଧିଶୂନ୍ୟ କେତେକ ଲୋକ ଶେଷରେ ମନ୍ତ୍ରୀମଣ୍ଡଳ ଗଢ଼ିବାରେ ସମର୍ଥ ହେଲେ । ଆଜିପର୍ଯ୍ୟନ୍ତ ଜାତୀୟ ଆନ୍ଦୋଳନରେ ଓଡ଼ିଶା ଭାରତବର୍ଷରେ କୃତତ୍ୱ ଅର୍ଜ୍ଜନ କରି ଆସିଥିଲା । ବର୍ତ୍ତମାନ ଘଟଣାରେ ତା'ର ମୁହଁ ତଳକୁ ହୋଇଗଲା । ଏ ଲଜ୍ଜାରୁ ଉଦ୍ଧାର ପାଇବାପାଇଁ କେତେ ତ୍ୟାଗ ପୁଣି ଦରକାର ପଡ଼ିବ, ତାହା ଭବିଷ୍ୟତ ହିଁ ଏକମାତ୍ର ଜାଣେ ।

ଧୀରେ ଧୀରେ ବ୍ରହ୍ମପୁର ଜେଲରୁ ରାଜବନ୍ଦୀମାନେ ଖଲାସ ହେବାରେ ଲାଗିଲେଣି । ମୁଁ ଡିସେମ୍ବର ୧ ତାରିଖ ଦିନ କାରାମୁକ୍ତ ହେଲି । ଯେଉଁଦିନ କାରାମୁକ୍ତ ହେଲି, ସେହିଦିନ ପ୍ରାଦେଶିକ କଂଗ୍ରେସ କମିଟିର ସମସ୍ତ ହାଲଚାଲ ପଣ୍ଡିତ ପଢ଼ିଆରୀଙ୍କଠାରୁ ବୁଝିଲି ଓ ନିଜକୁ ପୁଣି ସତ୍ୟାଗ୍ରହ କରିବା ପାଇଁ ପ୍ରସ୍ତୁତ କଲି । ସେତେବେଳକୁ ନୂଆ ମନ୍ତ୍ରୀମଣ୍ଡଳ ଗଢ଼ା ହୋଇ ଭୂତପୂର୍ବ କଂଗ୍ରେସ ଲୋକେ ଗୁଣ୍ଡା-ମାନଙ୍କୁ ହାତ କରାଇ ସଭା କରାଇ ଦେଉଛନ୍ତି ନ ଥାନ୍ତି । ଧନ ଓ କ୍ଷମତା ଦୁନିଆରେ ସବୁ, ବାକି କଥା ଆଉ ସବୁ—ଏହା ହିଁ ସେମାନଙ୍କର ପ୍ରଚାର ଓ ବିଶ୍ୱାସ । ବିଶ୍ୱନାଥବାବୁ ଓ ମୁଁ କାରାମୁକ୍ତ ହେବା ପରେ ଆମକୁ ଅଭିବାଦନ କରିବାପାଇଁ କଟକରେ ଗୋଟିଏ ସାଧାରଣ ସଭା ଆହୂତ ହେଲା । ସେଦିନ ସେ ସଭାକୁ ଭାଙ୍ଗିବାପାଇଁ ବହୁ ଗୁଣ୍ଡା ନିଯୁକ୍ତ ହୋଇଥିଲେ; ମାତ୍ର ଚାରି ପାଞ୍ଚ ହଜାର ଲୋକଙ୍କର ଏକ ବିରାଟ ସଭାରେ ଦେଖାଗଲା ଯେ ଜଣେ ମାତ୍ର ଓକିଲ ଗୁଣ୍ଡାମି କରୁଛନ୍ତି । ଅନ୍ୟ ଯାହାଙ୍କୁ ଗୁଣ୍ଡା ଭାବି ଅର୍ଥ ଦେଇ ନିଯୁକ୍ତ କରାଯାଇଥିଲା, ସେମାନେ 'ଜୟ ମହାତ୍ମାଗାନ୍ଧିଙ୍କ ଜୟ' କରୁଛନ୍ତି ।

ଆଗରପଡ଼ା କର୍ମ-ମନ୍ଦିର ତରଫରୁ ମୋତେ ଏକ ମାନପତ୍ର, ଏକଲକ୍ଷ ଗଜ ସୂତା ଓ ଏକ ଶହ ଏକାବନ ଟଙ୍କାର ଗୋଟିଏ ଥଳି ଦିଆ ହୋଇଥିଲା । ମୁଁ ମୋର ଜେଲରେ କାଟିଥିବା ସୂତା ପ୍ରାୟ ଏକଲକ୍ଷ ଗଜକୁ ଓ ମିଳିଥିବା ଉପହାରକୁ କର୍ମ-ମନ୍ଦିରକୁ ଦେଇଥିଲି । କର୍ମମନ୍ଦିର ପାଇଁ ଏକ ପରିଚାଳନା ସମିତି ଗଠନ କଲି ଓ ଏହାର କାମ ବଢ଼ିବାର ବ୍ୟବସ୍ଥା କଲି । ଏହି ସମୟରେ ମୁଁ ଚାରିଦିନ ମାତ୍ର ଗାଁରେ ଥିଲି । ଘର ସାଙ୍ଗରେ ଯାହା ଏତିକି ସମ୍ପର୍କ । ତା'ପରେ କାର୍ଯ୍ୟନିର୍ବାହକ ସମିତିରେ ଯୋଗ ଦେବାପାଇଁ ବର୍ଦ୍ଧୋଲି ଗଲି । ଏତେବେଳକୁ ବଡ଼ଲାଟଙ୍କ ବ୍ୟବସ୍ଥାସଭା ସତ୍ୟାଗ୍ରହୀ ବନ୍ଦୀମାନଙ୍କୁ କାରାମୁକ୍ତ କରିଦେବାର ଆଦେଶ ଦେଇ ସାରିଲେଣି ଓ ପ୍ରାୟ ସମସ୍ତେ ଖଲାସ ହୋଇ ସାରିଲେଣି । ଆଉ ଏକ ଘଟଣା ଘଟି-ଥାଏ, ଜାପାନ ଭାରତ ନିକଟରେ ବ୍ରିଟିଶ ଅଧିକୃତ ବହୁ ଅଞ୍ଚଳ ଦଖଲ କରି ବର୍ମା ଆକ୍ରମଣ ଚଳାଇଥାଏ । ବର୍ମାରୁ ଲକ୍ଷ ଲକ୍ଷ ଲୋକ ପଳାଇ ଆସି ଦେଶସାରା ଏକ ଆତଙ୍କ ସୃଷ୍ଟି କରି ଥାଆନ୍ତି । ଏଣେ ମୌଲାନା ଆଜାଦ ଓ ପଣ୍ଡିତ ଜବାହରଲାଲ

ନେହରୁ କାରାମୁକ୍ତ ହୋଇ ଘୋଷଣା କରୁଥା'ନ୍ତି ଯେ ସେମାନଙ୍କୁ ସୁବିଧା ଦିଆଯିବାଲେ, ସେମାନେ ଭାରତ ରକ୍ଷାପାଇଁ ଅସ୍ତ୍ର ଧରିବାକୁ ପ୍ରସ୍ତୁତ । ଏ ସମସ୍ତ ବିଷୟ ବର୍ଦ୍ଧୋଲିରେ ଆଲୋଚିତ ହେଲା । ସମସ୍ତ ବିଷୟ ଆଲୋଚିତ ହୋଇ ସମସ୍ତେ ଏକମତ ହେଲେ ଯେ ସତ୍ୟାଗ୍ରହ ସ୍ଥଗିତ ରହୁ; ମାତ୍ର ଗୋଟିଏ ବଡ଼ ପ୍ରଶ୍ନ ଉଠିଲା, ସେ ହେଉଛି ରାଜନୀତିକ ଦୃଷ୍ଟିରୁ ଅହିଂସାର ବିସ୍ତାର । ମୌଲନା ଆଜାଦ ଓ ପଣ୍ଡିତ ଜବାହରଲାଲଙ୍କ ଘୋଷଣା ଯେ, କ୍ଷମତା ପାଇଲେ ସେମାନେ ଭାରତ ରକ୍ଷା ଲାଗି ଯୁଦ୍ଧ କରିବାପାଇଁ ପ୍ରସ୍ତୁତ, ଏହା ଗାନ୍ଧିଜୀଙ୍କୁ ଆଘାତ ଦେଇଥିଲା । କାରଣ ବିଶୁଦ୍ଧ ରାଜନୀତିକ ଦୃଷ୍ଟିରୁ ଅହିଂସା ଛଡ଼ା ଭାରତ ପକ୍ଷରେ ଅନ୍ୟ ବାଟ ନାହିଁ । ଇଚ୍ଛା କଲେ ମଧ୍ୟ ବର୍ତ୍ତମାନ ଯୁଦ୍ଧରେ ଭାଗ ନେବାପାଇଁ ଭାରତ ଅକ୍ଷମ, ମାତ୍ର କଂଗ୍ରେସ ଭିତରେ ଅନେକ ଲୋକ କନ୍ଦିଷ୍ଟ ସର୍ତ୍ତରେ ଯୁଦ୍ଧରେ ଯୋଗ ଦେବାପାଇଁ ମନୋବୃତ୍ତି ପୋଷଣ କଲେ ଗାନ୍ଧିଜୀଙ୍କ ପକ୍ଷରେ ସତ୍ୟାଗ୍ରହ ପରିଚାଳନା କରିବା ସମ୍ଭବପର ନୁହେଁ । ଏ ବିଷୟ ପୁଙ୍ଖାନୁପୁଙ୍ଖ ରୂପେ ଆଲୋଚିତ ହୋଇ ସେହି ସମସ୍ୟା ପାଇଁ ଦୁଇଟି ଭିନ୍ନ ଭିନ୍ନ ମତ ପରିସ୍ଫୁଟ ହୋଇରହିଲା, ମାତ୍ର କାର୍ଯ୍ୟରେ ସତ୍ୟାଗ୍ରହ ସ୍ଥଗିତ ରହିବାରେ ସମସ୍ତେ ଏକମତ ହେଲେ । କାର୍ଯ୍ୟନିର୍ବାହକ ସମିତିର ସିଦ୍ଧାନ୍ତକୁ ସମର୍ଥନ କରିବାପାଇଁ ନିଖିଳ-ଭାରତ କଂଗ୍ରେସ କମିଟିର ଅଧିବେଶନ ଓ୍ୱାର୍ଦ୍ଧାରେ ବସିବାର ସ୍ଥିର ହେଲା । ମୁଁ ଓଡ଼ିଶା ନ ଫେରି ସେହି ବର୍ଦ୍ଧୋଲିରେ ଗାନ୍ଧିଜୀଙ୍କ ସହିତ କିଛିଦିନ ରହିଲି । ପ୍ରତି-ଦିନ ସକାଳ ଓ ସନ୍ଧ୍ୟାରେ ତାଙ୍କ ଗହଣରେ ବୁଲିବାକୁ ଯାଉଥିଲି । ବ୍ୟାବହାରିକ ଦୃଷ୍ଟିରୁ ସେ ଅହିଂସାର ବିସ୍ତୃତି କପରି କରୁଛନ୍ତି, ତାହା ଶୁଣି ମୋ ମନରେ ତାଙ୍କର କର୍ମ-କୌଶଳ ସମ୍ବନ୍ଧରେ ପୂର୍ବ ଧାରଣା ହେବାରେ ଲାଗିଲା । ଏପରି ସ୍ଥିର କଲି ଯେ, ରଚନା ନାମରେ ଏକ ସାପ୍ତାହିକ ପତ୍ରିକା ବାହାର କରିବି ଓ ଏଥିରେ ଗାନ୍ଧୀ ମତବାଦ ପ୍ରଚାର କରିବି ।

ବର୍ଦ୍ଧୋଲିରୁ ଗାନ୍ଧିଜୀ ଓ୍ୱାର୍ଦ୍ଧା ଆସିଲେ, ରାଜେନ୍ଦ୍ର ବାବୁ ଓ ମୁଁ ବାଟରେ ଜଲଗାଁ ଷ୍ଟେସନରେ ଓହ୍ଲାଇ ସେଠାରେ ଏକ ସାଧାରଣ ସଭାରେ କଂଗ୍ରେସ କାର୍ଯ୍ୟକ୍ରମ ସମ୍ବନ୍ଧରେ ବକ୍ତୃତା ଦେଇଥିଲୁ । ତା'ପରେ ଅଜନ୍ତା ଗୁମ୍ଫା ଦେଖିବାକୁ ଯାଇଥିଲୁ । ବୌଦ୍ଧଶିଳ୍ପର ପରାକାଷ୍ଠା ସେଠାରେ ଦେଖି ମୁଁ ଏପରି ଅଭିଭୂତ ହୋଇଯାଇଥିଲି ଯେ, ମୋର ମନେ ହେଲା ଭାରତରେ ଏ ପ୍ରକାର କୀର୍ତ୍ତି ଆଜିପର୍ଯ୍ୟନ୍ତ ଦେଖି ନ ଥିବା କିପରି ବିଷୟ । କେବଳ ସେଠାକାର ଚିତ୍ରକଳା ଓ ଜୀବନ୍ତ ଜାତକ ଚିତ୍ର ଯେ ମନକୁ ଆକର୍ଷଣ କରିଥିଲା ତାହା ନୁହେଁ; ବୁଦ୍ଧଦେବଙ୍କ ଜୀବନୀ ସେ ସବୁ ଚିତ୍ରରୁ ଏପରି ପରିସ୍ଫୁଟ ହେଉଥିଲା ଯେ, ତାହା ଏ ନୀରସ ରାଜନୀତି ଓ ନଶ୍ୱର ପାର୍ଥିବ ବ୍ୟାପାରର ଅନ୍ତର ଉପରକୁ ମନକୁ ଟାଣି ନେଉ-

ଥିଲି । ଏ ପ୍ରକାର ଅଜନ୍ତା ଇତିହାସର ମୁଁ କଳ୍ପନା କରିନଥିଲି । କି ସାଧନା ସେ ରାଜପୁତ୍ର ଆମ୍ଭୃତିକର ଜଗତରେ ଭାରତବର୍ଷକୁ ଏକ ତୀର୍ଥକ୍ଷେତ୍ରରେ ପରିଣତ କରି; ଯୁଗଯୁଗ ବ୍ୟାପୀ କାଳର ଧ୍ୱଂସଗତିର ପ୍ରବଳ ପ୍ରତିରୋଧ କରି ବିଶାଳ କୀର୍ତ୍ତିମାନ ଏହା ଭାରତରେ ନୁହେଁ ଜଗତର ବହୁ ଅଞ୍ଚଳରେ ତାଙ୍କର ଗାଥା ବର୍ଣ୍ଣନା କରିବାକୁ ରଖିଗଲେ !!! ବୁଦ୍ଧତ୍ୱ ପ୍ରାପ୍ତି ପରେ ଗୌତମ ଭିକ୍ଷା ପାଇଁ ନିଜ ଗୃହକୁ ଯାଇଛନ୍ତି ଓ ତାଙ୍କର ଧର୍ମପତ୍ନୀ ନିଜର ସନ୍ତାନ ହାତରେ ନବୀନ ସନ୍ନ୍ୟାସୀଙ୍କୁ ଭିକ୍ଷା ଦିଆଉଛନ୍ତି । ବାଳକର ସରଳ ହସହସ ବଦନ ଓ ମାତାରି ଭିକ୍ଷୁକଙ୍କ ଆଡ଼କୁ ଦୃଷ୍ଟି ଦେଇ ପୂର୍ବ ପରିଚୟର ଚିହ୍ନ ଦେଖି ନୟନରେ ଆକୁଳିତ ମନୋଭାବର ବିକାଶ —ଏତେ ଜୀବନ୍ତ ସେ ଚିତ୍ର ଯେ ସେଠି ମୋର ସମୁଦାୟ ହୃଦୟ ଅଜାଡ଼ି ହୋଇ ପଡ଼ିଲାପରି ହେଲା ! କାହିଁ ସେ ଭାରତ ? ଯହିଁ ଏପରି ଶିଳ୍ପୀଙ୍କ ବହୁଳତା !!!

ଅଜନ୍ତାର ଇତିହାସ ଶୁଣିଲି ଯେ ଏହା ସମୟକ୍ରମେ ବିସ୍ମୃତି ଗର୍ଭରେ ଲୀନ ହୋଇଯାଇଥିଲା ଓ ଏ ଗୁମ୍ଫାମାନଙ୍କରେ ଖଣ୍ଡ ତସ୍କର ଲୁଚି ରହିବାପାଇଁ ପ୍ରଶସ୍ତ ସ୍ଥାନ ପାଇଥିଲେ । ସିପାହୀବିଦ୍ରୋହ ସମୟରେ ଇଂରେଜ ସୈନ୍ୟମାନେ ବିଦ୍ରୋହୀ ସୈନ୍ୟମାନଙ୍କୁ ଖୋଜ ବାହାର କରିବାକୁ ବଣ ଜଙ୍ଗଲ ପରିଭ୍ରମଣ କରୁ-କରୁ ଏ ଗୁମ୍ଫା ଓ ଏହାର ଛବି ଦେଖି ସେମାନଙ୍କର ଉପରସ୍ଥ କର୍ମଚାରୀମାନଙ୍କୁ ଜଣାଇଲେ । ତା' ପରେ ଏହା ପୁଣି ଲୋକ ଦୃଷ୍ଟିକୁ ଆସିଲା ।

ପୁଣି ଥରେ ଅଜନ୍ତା ଆସି କିଛିଦିନ ରହି ମନର ସାଧ ମେଣ୍ଟାଇବା ପାଇଁ ବାସନା ରଖି ଏଠାରୁ ଫେରିଲି, ମାତ୍ର ସେ ବାସନା ବାସନାରେ ହିଁ ରହିବ କି ନା, ତାହା ମୋତେ ଜଣାନାହିଁ । ସେଠାରୁ ଓ୍ୱାର୍ଦ୍ଧା ଆସିଲି, ସେଠାରେ ନିଖିଳ ଭାରତ କଂଗ୍ରେସ କମିଟିରେ ବର୍ଦ୍ଧୋଲି ସିଦ୍ଧାନ୍ତ ଗୃହୀତ ହେଲା । ଏହିଠାରେ ମହାତ୍ମାଗାନ୍ଧୀ ସ୍ପଷ୍ଟ ଭାବରେ କହିଥିଲେ ଯେ, ଅହିଂସାକୁ ରାଜନୀତିମାର୍ଗରେ ଲଗାଇବା ତାଙ୍କ ଜୀବନର ଉଦ୍ଦେଶ୍ୟ । ଅନ୍ୟଥା ଦାର୍ଶନିକ ଅହିଂସା ପ୍ରଚାରପାଇଁ ସେ ବ୍ରତୀ ନୁହନ୍ତି ।

ଓ୍ୱାର୍ଦ୍ଧାରେ 'ରଚନା' ବିଷୟ ମୋ ବନ୍ଧୁମାନଙ୍କ ସହ ଆଲୋଚନା କରି ସମସ୍ତଙ୍କ ସମ୍ମତି ନେଇଥିଲି । କଟକରେ ପହଞ୍ଚିବାମାତ୍ରକେ 'ରଚନା' ଏକ ସପ୍ତାହ ମଧ୍ୟରେ ପ୍ରକାଶ କଲି । ଏଥିପାଇଁ ସାହାଯ୍ୟ କେବଳ ଶ୍ରୀ ବ୍ରଜମୋହନ ବିରଳାଙ୍କ କାଗଜକଳରୁ ବର୍ଷକ ପାଇଁ କାଗଜ ପାଇଥିଲି । ଆଉ ମୋର ସାହାଯ୍ୟ ଦରକାର ପଡ଼ିନାହିଁ । ସବୁ ଜିଲ୍ଲାରେ, କଂଗ୍ରେସ ଲୋକମାନଙ୍କ ଭିତରେ ଏହାର ବିକ୍ରିର ବନ୍ଦୋବସ୍ତ କରାଇଥିଲି । ଇତିମଧ୍ୟରେ ନୂତନ ଗଠିତ ମନ୍ତ୍ରୀମାନଙ୍କ କାମ ହେଲା,

କଂଗ୍ରେସକୁ ଦବାଇବା । ସେମାନଙ୍କ ବିରୁଦ୍ଧରେ ଚାରିଆଡ଼େ ବଡ଼ ବଡ଼ ସଭା ଓ ନିନ୍ଦାବାଦ ପ୍ରଦର୍ଶନ ପାଇଁ ସେମାନେ ଯେଉଁଆଡ଼େ ଯାଉଥିଲେ, ସେମାନଙ୍କୁ କଳା ପତାକା ଦେଖାଇବା କାର୍ଯ୍ୟ ଏହିପରି ଚାଲିଥାଏ । ଦମନନୀତି ପ୍ରୟୋଗରେ ଲୋକଙ୍କ ମୁଖରୋଧ କରିବା ପାଇଁ ଭୀଷଣ ଉଦ୍ୟମ ହେଲା । ପୁରୀରେ ପ୍ରଧାନ ପ୍ରଧାନ କଂଗ୍ରେସ-ଲୋକ ଧରା ହେଲେ । କଟକରେ ମଧ୍ୟ ସେହିପରି ହେଲା । ଏଥିଭିତରେ ନବକୃଷ୍ଣ ଚୌଧୁରୀ ମଧ୍ୟ ଥିଲେ । ଆହୁରି ଅନେକ ଧରା ହେବାର ପ୍ରବଳ ଜନରବ ଶୁଣା-ହେଲା । ଯେଉଁ ସରକାରୀ କର୍ମଚାରୀମାନେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଥିବାବେଳେ ନିଜ ମତାନୁସାରେ ସୁବିଧା ଉଠାଇ ପାରି ନ ଥିଲେ, ସେମାନେ ଏ ମନ୍ତ୍ରୀମଣ୍ଡଳକୁ ସନ୍ତୋଷ ଦେବାପାଇଁ ଲାଗି ପଡ଼ିଲେ । ଏ ସମୟରେ ମୁଁ ଚାରିଆଡ଼େ ଗସ୍ତ କରୁଥିଲି । ଶ୍ରୀମତୀ ରମା ଦେବୀ ଓ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ସହ କଥାବାର୍ତ୍ତା କରିବା ପାଇଁ ବରୀ ଯାଇଥିଲି । ବର୍ତ୍ତମାନ ସମୟରେ ଏକାଠି କିପରି ଗତି କରିବା ପାଇଁ ହେବ, ସେ ବିଷୟରେ ଆଲୋଚନା କରିଥିଲି ।

ସବୁଠି ସଭା କରି ବର୍ତ୍ତମାନ ଭାରତକୁ ଯୁଦ୍ଧ ମାଡ଼ି ଆସୁଥିବା ସମୟରେ ସରକାର ତାଙ୍କ ସୈନ୍ୟସଜ୍ଜା ନେଇ ଯାହା କରନ୍ତୁ ପଛକେ, ସାଧାରଣ ଜନତା ବଡ଼ ବଡ଼ ସହରର କଳ କାରଖାନା ଉପରେ ନିର୍ଭର ନ କରି ଖଦି ଓ ଗ୍ରାମୋ-ଦ୍ୟୋଗ ସାହାଯ୍ୟରେ ସ୍ୱାବଲମ୍ବୀ ହେବାପାଇଁ ଉପଦେଶ ଦେଉଥିଲି । ମୋତେ ଜେଲ-ଦେବାପାଇଁ ମନ୍ତ୍ରୀମାନେ ଛକିଛନ୍ତି, ଏ ବିଷୟ ମଧ୍ୟ ଶୁଣିଲି, ମାତ୍ର ମୁଁ ନିର୍ଭୟରେ ଓ ସାବଧାନତା ସହକାରେ ଅଗ୍ରସର ହେଉଥାଏଁ । ଶେଷରେ ଓଡ଼ିଶାର ଧରପଗଡ଼ ବିଷୟରେ ଏକ ବିବୃତି ପ୍ରକାଶ କରିଥିଲି, ସେଉଁଥିରେ ମୁଁ ମନ୍ତ୍ରୀମଣ୍ଡଳକୁ ଦୋଷ ଦେଇଥିଲି ଯେ, ସେମାନେ କଂଗ୍ରେସକୁ ଚାପିଦେଇ ଜାପାନକୁ ସାହାଯ୍ୟ କରିବାକୁ ଯାଉଛନ୍ତି । ଏହି ବିବୃତି ପ୍ରକାଶ କରିବା ଅପରାଧରେ ମୁଁ ହଠାତ୍ ଧରା ହେଲି । ଓଡ଼ିଶା ସରକାରଙ୍କ ଏହି ପ୍ରତିହିଂସାମୂଳକ କାର୍ଯ୍ୟର ପ୍ରତିବାଦ ସାରା ଭାରତରେ ପ୍ରକାଶ ପାଇଲା । ମୌଲାନା ଆଜାଦ୍, ରାଜେନ୍ଦ୍ର ବାବୁ, ପଣ୍ଡିତ ଜବାହାରଲାଲ ଓ ମହାତ୍ମା ଗାନ୍ଧୀ ଓଡ଼ିଶା ସରକାରଙ୍କ ତୀବ୍ର ସମାଲୋଚନା କରିଥିଲେ । ମହାତ୍ମାଗାନ୍ଧୀ ତାଙ୍କ ବିବୃତିରେ ମୋତେ ପୂରା ଅହିଂସାବାଦୀ ବୋଲି ଲେଖିଥିଲେ । ସେ ମନ୍ତବ୍ୟ ପଢ଼ି ମୁଁ ମୋ ନିଜ ଭିତରକୁ ଚାହିଁଲି, ଯେ ବାସ୍ତବିକ ମୁଁ ସେଇଆ କି ନା !

ପ୍ରାୟ ଦେଢ଼ମାସ ମୁଁ ଜେଲରେ ରହିଲି । ବର୍ତ୍ତମାନ ଧରପଗଡ଼ରେ ଆମ୍ଭେମାନେ ମକଦ୍ଦମା ଲଢ଼ୁଥିଲୁ । କଟକ ଜେଲରେ ନବକୃଷ୍ଣ ଚୌଧୁରୀ, ପ୍ରାଣକୃଷ୍ଣ ପଢ଼ିହାରୀ, ସୁଧୀର ବାବୁ, ଗୌରାଙ୍ଗ ବାବୁ ଓ ମୁଁ ସମସ୍ତେ ଥିଲୁଁ । ଆଦୌ ମନ ଭଲ ଲାଗୁ ନ ଥାଏ । ଜାପାନର ଜୟଜୟକାର ଆମକୁ ବଡ଼ ବିବ୍ରତ କରି

ପକାଉଥାଏ । ଆମେ ଭାବୁଥାଉଁ ଏ ସରକାର ଶେଷରେ ଆମକୁ ଜାପାନ ହାତରେ ବଳି ଦେବ ।

ମୋକଦ୍ଦମା ରାୟ ଦେବାପାଇଁ ଧାର୍ଯ୍ୟ ତାରିଖ ପୂର୍ବରୁ ମୋତେ କଚେରିକୁ ନିଆ ହୋଇ ଶୁଣାଇ ଦିଆଗଲା ଯେ, ମୋର ଦୋଷ ସାମାନ୍ୟ—ତେଣୁ କେବଳ ଟ ୧୦୦ ଜରିମାନା । ମୁଁ ଏପରି ଆକସ୍ମିକ ଭାବରେ କାରାମୁକ୍ତ ହୋଇ ଇତସ୍ତତଃ ହୋଇଗଲି । ବାଲିଗୁଡ଼ା ଉପନିର୍ବାଚନରେ ସାହାଯ୍ୟ କରିବା ପାଇଁ ସିଧା ସେଠାକୁ ଗଲି । କନିକା ଟିକାଏତ ଏଠାରେ କଂଗ୍ରେସ ପ୍ରାର୍ଥୀଙ୍କ ବିରୁଦ୍ଧରେ ଠିଆ ହୋଇଛନ୍ତି । ସେ ନିର୍ବାଚନ ମଣ୍ଡଳୀରେ ଅଧିକାଂଶ କନ୍ଧ ଓ ଆଦିମ ଅଧିବାସୀ, ମାତ୍ର ମୁଷ୍ଟିମେୟ ଆର୍ଯ୍ୟଙ୍କର ଭୋଟ ଅଧିକାର ଅଛି । ଆଦିମ ଅଧିବାସୀଙ୍କ ପ୍ରତିନିଧି ରୂପେ ଜଣେ ଗୋରା ପାଦ୍ରି ମନୋନୀତ ହୋଇ ବ୍ୟବସ୍ଥାସଭାରେ ଅଛନ୍ତି । ସେଠି ଲୋକମାନେ ସରକାରୀ ଲୋକମାନଙ୍କୁ ଖ୍ରୀଷ୍ଟିୟାନ ବୋଲି କହନ୍ତି । ଏହା ଦେଖି ମୁଁ ବିସ୍ମିତ ହେଲି । ଯେଉଁମାନେ ଖ୍ରୀଷ୍ଟିୟାନ, ସେମାନେ ସେହିପରି ଭାବ କାମ କରନ୍ତି ଓ ଅନ୍ୟମାନେ ମଧ୍ୟ ସେହିପରି ଭାବି ସେମାନଙ୍କୁ ଘୃଣା କରନ୍ତି । ଏହାର କାରଣ ସରକାରୀ ସାହାଯ୍ୟରେ ଗୋରା ପାଦ୍ରି ଓ ତାଙ୍କର ଅନୁଚରମାନେ ସାଧାରଣଙ୍କୁ ଚପାଇ ରଖିବା ପାଇଁ ବରାବର ଚେଷ୍ଟା କରି ଆସିଛନ୍ତି । ଆଉ ମଧ୍ୟ ଦେଖିଲି ଯେ, ସେଠାରେ କନ୍ଧମାନେ ନିଜକୁ ନିଜେ ହିନ୍ଦୁ ଓ ସେ ରାଜ୍ୟର ଏକଦା ଆଧିପତ୍ୟ ବିସ୍ତାର କରୁଥିବା ଜାତି ବୋଲି ମନେ କରନ୍ତି । ସେମାନେ ଆଜି ପରାଧୀନ ଭାରତରେ ଆଦିମ ଅଧିବାସୀ ବୋଲି ଉପେକ୍ଷିତ ଓ ନିଷ୍ପେଷିତ, ମାତ୍ର ସୁଯୋଗ ପାଇଲେ ଏ ଜାତି ଉନ୍ନତ ଓ ସଭ୍ୟ ବୋଲି ପରିଗଣିତ ହେବ, ଏଥିରେ ସନ୍ଦେହ ନାହିଁ । କଂଗ୍ରେସର ପ୍ରଚାରକ ଏଠି କନ୍ଧ ପୁରୁଷ, ସ୍ତ୍ରୀ, ବାଳକ ସମସ୍ତେ । ଏତେ ଉତ୍ସାହ—ଗାନ୍ଧୀ ନାମରେ ଏତେ ତନ୍ମୟ । ଅନେକ ଗାନ୍ଧୀଙ୍କର କୌଣସି ବୃତ୍ତାନ୍ତ ଶୁଣି ନ ଥାନ୍ତି, ଏପରିକି ଗାନ୍ଧି ସ୍ତ୍ରୀ କି ପୁରୁଷ ସେମାନେ ଜାଣି ନ ଥାନ୍ତି । ଗାନ୍ଧି ଜଣେ କେହି ଯେ ବର୍ତ୍ତମାନ ଆମର ଦୁଃଖ ଓ ଦୁର୍ଦ୍ଦଶା ଦୂର କରିବାକୁ ଲାଗିଛି, ଏହା ହିଁ ଏକ ଅସ୍ପଷ୍ଟ ଧାରଣା, ଯାହା ସେ ନିରୀହ ଜନତାକୁ ପାଗଳ କରିଦେଇଛି । ନିଜେ ପ୍ରଧାନମନ୍ତ୍ରୀ ପାରଳା ମହାରାଜା, ଗୋରା ପାଦ୍ରି ଓ କଂଗ୍ରେସରୁ ବିତାଡ଼ିତ କର୍ମୀମାନେ ସେଠାରେ ଅଛି ଲକ୍ଷ ପଇସା ଖରଚ କରି ବିଭବର ବିଭୀଷିକା ଦେଖାଇ କୌଣସି ପ୍ରକାର ପ୍ରବଳ ଜନମତକୁ ବିଚଳିତ କରି ପାରିଲେନି । ଶେଷରେ କଂଗ୍ରେସ ପ୍ରାର୍ଥୀ ବହୁସଂଖ୍ୟକ ଭୋଟରେ ନିର୍ବାଚିତ ହେଲେ ।

ଯେତେବେଳେ ଯେପରି ଅବସ୍ଥା, ସେଥିରେ ଏ ଭୋଟ ବ୍ୟାପାର, ଏ ମନ୍ତ୍ରୀ-ମଣ୍ଡଳ ବ୍ୟାପାର ଅତି ନଗଣ୍ୟ ବୋଲି ଜଣାଯାଉଥିଲା । କାରଣ ଯୁଦ୍ଧ ପରିସ୍ଥିତିରେ

ସାଧାରଣ ଲୋକେ ଅସ୍ଥିର । ସାଧାରଣ ଲୋକଙ୍କ ମନୋଭାବ ଯେ ଜାପାନ ଆସୁ, ଇଂରେଜ ଯାଉ । ବର୍ମାରେ ଇଂରେଜମାନେ ଜାପାନ ଦ୍ୱାରା ପରାସ୍ତ ହୋଇ ସେଠି ଶତ୍ରୁକୁ ଅସୁବିଧାରେ ପକାଇବା ପାଇଁ ଯେଉଁ ଧ୍ୱଂସଲୀଳା ଘଟାଇଥିଲେ, ତାହା ଅଙ୍ଗେ ଲଗାଇଥିବା ହଜାର ହଜାର ଲୋକ ଆସି ଅତିରଞ୍ଜିତ ଭାବରେ ପ୍ରଚାର କରୁଛନ୍ତି । ଏଣେ ଜିନଷପତ୍ରର ଦର ବଢ଼ିଯାଇଛି, ରଜା ରଜା ଯୁଦ୍ଧ ଲାଗିଛନ୍ତି; ସେଥିରେ ଆମେ କାହିଁକି ମଝିରେ ଚାପି ପଡ଼ୁଛୁ । ଏହାହିଁ ସର୍ବତ୍ର ସମସ୍ତେ କୁହାକୁହି ହେଉଥାନ୍ତି । ଏହି ସମୟରେ ସାର୍ ଷ୍ଟାଫୋର୍ଡ଼ କ୍ରିପସ ଭାରତ ସହ ମିଳାମିଶା ପ୍ରସ୍ତାବ ଘେନି ଦିଲ୍ଲୀ ଆସିଲେ । ମାତ୍ର ମୁଁ ଏଣେ କାର୍ଯ୍ୟବ୍ୟସ୍ତ ଥିବାରୁ ସେଠାକୁ ଯାଇ ପାରି ନ ଥିଲି । କ୍ରିପ୍ସଙ୍କ ସହ ଆଲୋଚନା ଚାଲିଥିଲା ବେଳେ ଓଡ଼ିଶା ଉପକୂଳରେ ଜାପାନ ଇଂରେଜମାନଙ୍କର ଅନେକ ଜାହାଜ ବୁଡ଼ାଇ ଦେଲା ଓ ଧ୍ୱସ୍ତ ହୋଇଥିବା ଜାହାଜର ଲୋକେ ଭାସି ଆସି ଉପକୂଳରେ ଲାଗିଲେ । ସେ ସମୟରେ ଏପରି ଆତଙ୍କ ଓଡ଼ିଶାସାରା ହେଲା ଯେ, ତାହା ବର୍ଣ୍ଣନାତୀତ । ଏ ଆତଙ୍କ ସଙ୍ଗେ ସାଙ୍ଗେ ସମୁଦ୍ର ଉପକୂଳର ନୌକା, ସାଇକେଲ ମଟର କୋଡ଼ିଏ ମାଇଲ ଦୂରକୁ ହଟାଇ ନେବା ପାଇଁ ଆଦେଶ ହେଲା । ନ ହଟାଇଲେ ସେ ସବୁ ଜିନଷ ନଷ୍ଟ କରି ଦିଆ ହେବ ବୋଲି ଯେଉଁ ସରକାରୀ ଆଦେଶ ହେଲା, ତାହା ଏକ ବିଭ୍ରାଟ ସୃଷ୍ଟି କରିଥାଏ । ନୌକା ଛଡ଼ାଇ ନେବା ଫଳରେ ହଜାର ହଜାର ଲୋକ ଜୀବିକାଶୂନ୍ୟ ହୋଇଗଲେ । ସାଇକେଲ ବିନା ଲୋକେ ମହା ହରବରରେ ପଡ଼ିଗଲେ । ଏ ସବୁର ତୀବ୍ର ପ୍ରତିବାଦ ମୁଁ କରୁଥାଏ ଓ ମୁଁ ଦେଖାଉଥାଏ କିପରି ଏ ପ୍ରକାର ଆଦେଶ ସବୁ ସାଧାରଣ ଜନତାକୁ ଯୁଦ୍ଧ ଉଦ୍ୟମ ବିରୋଧୀ କରୁଛି, ଫଳରେ ଯୁଦ୍ଧ ଉଦ୍ୟମକୁ ପଣ୍ଡ କରୁଛି । ସେ ସମୟରେ ଏପରି ଅନେକ ଆଦେଶ ସାମରିକ କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶରେ ଦିଆହୋଇଥିଲା, ଯେଉଁଥିରୁ ସ୍ପଷ୍ଟ ଜଣାପଡ଼ୁଥିଲା ଯେ ଉପରେ ଯେଉଁ କର୍ମଚାରୀମାନେ ଅଛନ୍ତି, ସେମାନଙ୍କର ଏ ଦେଶ ସମ୍ବନ୍ଧରେ କୌଣସି ଜ୍ଞାନ ନାହିଁ । ଏହିଠାରେ ଓଡ଼ିଶାରେ ହେଉଥିବା ଯୁଦ୍ଧ ଉଦ୍ୟମର କେତେକ ବିବରଣୀ ଦେଉଛି, ସେଥିରୁ ପାଠକେ ଜାଣି ପାରିବେ, କିପରି ତାହା ଯୁଦ୍ଧ ଉଦ୍ୟମ ନୁହେଁ ଓ କିପରି ସେ ସବୁ ଲୋକ ବିରକ୍ତି ଜନ୍ମାଉଥାଏ । ଜାପାନ କାଲେ ବୋମା ପକାଇବ, ଏଥିପାଇଁ ଓଡ଼ିଶା ଉପକୂଳସାରା ଆଲୁଅ କଟକଣା ହୋଇଗଲା । ଗାଁରେ ଲଣ୍ଠନ ସୁଦ୍ଧା ଜାଳିବା ପାଇଁ ମନା ହୋଇଗଲା । ଅଥଚ କୌଣସିଆଡ଼େ ଆଣ୍ଟି-ଏୟାରକ୍ରାଫ୍ଟ ଗନ୍ (ଉଡ଼ାଜାହାଜ ପ୍ରତିଷେଧକ ଅସ୍ତ୍ର) ନ ଥାଏ, ରାତିବେଳେ ନ ଆସି ଦିନ ଦ୍ୱିପହରେ ଜାପାନ ଗାଁ ଗାଁ ବୁଲି ବୋମା ପକାଇଲେ ସୁଦ୍ଧା ତାକୁ ବାଧା ଦେବାପାଇଁ କିଛି ବନ୍ଦୋବସ୍ତ ନ ଥିବା ସ୍ଥଳେ ଆଲୁଅ କଟକଣାଟା ଏତେ କଡ଼ା ଭାବରେ ଜାରି ହେଲା ଯେ ଲୋକେ ଅତିଷ୍ଠ ହୋଇପଡ଼ିଲେ । ସହରରେ, କେବଳ କଟକରେ ନୁହେଁ,

କଲିକତାରେ ମଧ୍ୟ ଅଲୁଅ କଣ୍ଟକଣା ହୋଇ ବିଜୁଳିବତୀର ଯେତିକି ଆଲୁଅ ରାସ୍ତା ଉପରେ ପଡ଼ିବା ପାଇଁ ଅନୁମତି ଦିଆହୋଇଥାଏ, ଗାଁରେ ବ୍ୟବହୃତ ଆଲୁଅ ତା' ଠାରୁ ଅନ୍ତତଃ ଦଶ ଭାଗରୁ ଏକ ଭାଗ । ଏପରି ସ୍ଥଳେ ଗାଁରେ ଆଲୁଅ ବନ୍ଦ କରିବାର ଉଦ୍ଦେଶ୍ୟ କଅଣ ତାହା ବୁଝି ପଡ଼ୁ ନ ଥାଏ । ଜାପାନ୍ ସମୁଦ୍ରବାଟେ ଆସି ଖାଲେ ଦେଶୀ ନୌକାରେ ଭିତରକୁ ପଶି ଆସିବ, ଏଥିପାଇଁ ନୌକାସବୁ ଛଡ଼ାଇ ନିଆଗଲା । କେତେକ ସ୍ଥଳରେ ତାହା ପୋଡ଼ି ଦିଆଗଲା । ପ୍ରଥମ କଥା ଯେତେବେଳେ ନଈରେ ପାଣି ନ ଥାଏ । କେନାଲ ସରକାରଙ୍କ ହାତରେ, ଯେତେବେଳେ ମନ କରିବେ ପାଣି ବନ୍ଦ କରିଦେଇ ଶୁଖାଇ ଦେଇ ପାରିବେ । ସେତେବେଳେ କେନାଲ ସବୁ ଶୁଖାଇ ଦିଆଯାଇଥିଲା । ଏପରି ସ୍ଥଳେ ନୌକାସବୁ ଛଡ଼ାଇ ନେବାର ହେତୁ କିଛି ନ ଥିଲା । ତା'ପରେ ଯେଉଁ ନୌକା ଓଡ଼ିଶାରେ ବ୍ୟବହୃତ ହୁଏ, ତାହା ଅତି ଶ୍ରେଷ୍ଠ ଓ ମନ୍ଥରଗତିଶୀଳ । ଅଧିକସଂଖ୍ୟକ ନୌକାରେ ଜଣେ ଦୁଇଜଣ ଛଡ଼ା ବେଶି ଯିବା ଆସିବା କରି ପାରିବେ ନାହିଁ । ସବୁଠାରୁ ଯେ ବଡ଼ ଓ ଯାହାର ସଂଖ୍ୟା ଖୁବ୍ କମ୍, ସେଥିରେ ଅନ୍ତତଃ କୋଡ଼ିଏ ଜଣ ଯିବା ଆସିବା କରି ପାରିବେ । ଏ ନୌକା ସବୁ କାତ ମାରି ବା ଆହୁଲା ମାରି ଚଲା ହୁଏ । କୌଣସି ଶତ୍ରୁ ଏତେ ନିର୍ବୋଧ ନୁହେଁ ଯେ ସେ ଏତେ ଶ୍ରେଷ୍ଠ ଶ୍ରେଷ୍ଠ ନୌକାରେ ଅତି ମନ୍ଥର ଗତିରେ ମାଇଲକୁ ଦୁଇଘଣ୍ଟା ହିସାବରେ ଉଜାଣି ନଈରେ ଆସିବାକୁ ଚେଷ୍ଟା କରିବ । ଅଥଚ ସ୍ଥଳପଥରେ ରାସ୍ତାରେ ରେପେଇ କରି ଖାଇପିଇ ନିଶ୍ଚିନ୍ତରେ ଅଭିଯାନ କରି ଆସିଲେ ମଧ୍ୟ ଶତ୍ରୁକୁ ବାଧା ଦେବାପାଇଁ କିଛି ନ ଥାଏ । ଜଣେ ହେଲେ ଇଂରେଜ ସୈନ୍ୟ ଉପକୂଳସାରା କେଉଁଠି ନ ଥାନ୍ତି । ଏ ଅବସ୍ଥାରେ ନୌକା ଛଡ଼ାଇ ନେଇ ଯୁଦ୍ଧ ଉଦ୍ୟମ କରା ହେଉଛି ବୋଲି ସନ୍ତୋଷ ଲାଭ କରିବା କି ନିର୍ବୋଧତାର କାର୍ଯ୍ୟ, ତାହା ଜଣା ପଡ଼ିବ । ଓଡ଼ିଶାର ଗାଁରେ ସାଇକେଲ ସଂଖ୍ୟା ଅତି କମ୍ । ଦଶ ବାରଖଣ୍ଡ ଗାଁରେ ଖଣ୍ଡେ ସାଇକେଲ ଥିବା ଅତି ବଡ଼ କଥା । କୌଣସି ଶତ୍ରୁ ଗାଁକୁ ଗାଁ ବୁଲି ଏପରି ସାଇକେଲ ସଂଗ୍ରହ କରି ସେଥିରେ ଆସି ଭାରତ ଆକ୍ରମଣ କରିବା କଥା କଳ୍ପନା କରି ହେବନାହିଁ । ଆଉ ମଧ୍ୟ ସମୁଦ୍ର ଉପକୂଳରୁ ଭିତରକୁ ଆସିବା ପାଇଁ ସାଇକେଲ ରାସ୍ତା ହେଲା ନାହିଁ । ଗରାର ବାଲିରେ ଘଣ୍ଟାରେ ତିନି ମାଇଲ ହିସାବରେ ଧୀରେସୁସ୍ଥେ ଜାପାନୀ ସୈନ୍ୟ ସିଗାରେଟ ପିଇ ପିଇ ଆସିଲେ ବାଧା ଦେବାର କୌଣସି ବ୍ୟବସ୍ଥା ନ ଥିବା ସ୍ଥଳେ ସାଇକେଲ ଉପରେ ନଜର ପଡ଼ିବା ଅତି ଆଶ୍ଚର୍ଯ୍ୟର ବିଷୟ । ଆହୁରି ବେଶି ନିର୍ବୋଧତା ପ୍ରକାଶ ପାଇଲା ଯେତେବେଳେ ଉପକୂଳରୁ କୋଡ଼ିଏ ମାଇଲ୍ ଭିତରେ ଧାନ ଚାଉଳ ରଖାଇ ନ ଦେବାପାଇଁ ସରକାରୀ ଆଦେଶ ହେଲା । ପ୍ରଥମକଥା, ଓଡ଼ିଶା ଅତି ଦରିଦ୍ର ପ୍ରଦେଶ, ଏଠି ବର୍ଷକର ଖାଦ୍ୟ ହେଲା ଉତ୍ପନ୍ନ ହୁଏ ନାହିଁ । ଖୁବ୍ କମ୍

ଲୋକ, ପଚିଶ ପଚାଶ ଖଣ୍ଡ ଗାଁରେ ଜଣଙ୍କ ପାଖରେ ହୁଏତ ବଳକା ଧାନ ଥାଏ । ତାକୁ ପୁଣି ଅନ୍ୟମାନେ କରଜଦାମ ନେଇ ଚଳାଚଳ ହୁଅନ୍ତି । ଏପରି ସ୍ଥଳେ ଧାନ ଚାଉଳ ହଟାଇବା ପାଇଁ ସରକାରଙ୍କ ଉଦ୍ୟମ ଲୋକଙ୍କୁ ବ୍ୟସ୍ତ କରିପକାଇଲା । ଏ ଆଦେଶର ଉଦ୍ଦେଶ୍ୟ ହେଉଛି ଯେ, ଜାପାନୀ ସୈନ୍ୟମାନେ ଆସିଲେ ଖାଇବା ପାଇଁ କିଛି ପାଇବେ ନାହିଁ, ମାତ୍ର ଟିକିଏ ଚିନ୍ତା କଲେ ଦେଖାଯିବ ଯେ, ଏହା କେତେଦୂର ଭ୍ରମାତ୍ମକ । ପ୍ରଥମ କଥା, ଓଡ଼ିଶାରେ କେହି ଚାଉଳ ସଞ୍ଚୟ କରି ରଖନ୍ତି ନାହିଁ । ଯେଉଁମାନେ ସଞ୍ଚୟ କରନ୍ତି ସେମାନେ ଧାନ ରଖନ୍ତି । ଧାନକୁ ଚାଉଳ କରିବା ପାଇଁ ଅନ୍ତତଃ ତିନିଦିନ ଲାଗିବ । କୌଣସି ଶତ୍ରୁ ଅନ୍ୟଦେଶ ଆକ୍ରମଣ କରିବାପାଇଁ ଆସି ବସି ରହି ଧାନରୁ ଚାଉଳ ହେଲେ ତାକୁ ଖାଇ ରାଜ୍ୟ ଦଖଲ କରିବ, ଏହା କେବେ କରିବ ନାହିଁ । ଯଦି ସେ ଶତ୍ରୁ ଏପରି ମନେ କରିଥାଏ ଯେ ଖାଦ୍ୟ ଜିନିଷ ନ ନେଇ ଏ ଦେଶ ଲୋକେ ଯାହା ଖାଉଛନ୍ତି ତାଙ୍କଠୁଁ ସେଇଆ ଖାଇ ଆକ୍ରମଣ କରିବ, ତେବେ ଉପର୍ଯ୍ୟୁକ୍ତ ଆଦେଶର କୌଣସି ପ୍ରୟୋଜନୀୟତା ନାହିଁ । କାରଣ ଯେ କୌଣସି ଦିନ ଶତ୍ରୁ ଆସି ଲୋକଙ୍କ ଘରେ ପଶି ହାଣ୍ଡିରୁ ଭାତ ଖାଇ ଚାଲିଯିବ, ଉଦ୍‌ବୃତ୍ତ ଧାନ ଚାଉଳ ରପ୍ତାନି କଲେ ମଧ୍ୟ ଅନ୍ତତଃ କିଛି ଦିନର ଖାଇବା ପାଇଁ ସରଞ୍ଜାମ ତ' ଲୋକେ ରଖିବେ । ତାକୁ ହିଁ ଆସି ଶତ୍ରୁ ଖାଇବେ । ଶତ୍ରୁକୁ ଖାଇବାକୁ ନ ଦେବାପାଇଁ ସ୍ଥାନୀୟ ଲୋକଙ୍କୁ ଉପାସ ରଖିଲେ ଏ ବୁଭୁକ୍ଷିତ ଲୋକ ତ' ଶତ୍ରୁକୁ ସାହାଯ୍ୟ କରିବେ । ଆଉ ଏକ ସରକାରୀ ଇସ୍ତାହାର ବାହାରିଲା ଯେ ଉପକୂଳରୁ କୋଡ଼ିଏ ମାଇଲ୍ ଦୂରକୁ ଲୋକେ ହଟିଗଲେ ଭଲ । ଗାଁର ଲୋକ ଚାଷ ବାସ କରି ଘର ଦ୍ୱାର ନେଇ ବନ୍ଧୁବାନ୍ଧବ ସହ ଅଛନ୍ତି । ସେମାନେ ସହରର ମୂଲିଆ ନୁହନ୍ତି ଯେ ଏଠୁ ସେଠିକି ସେଠୁ ଏଠିକି ଚାଲିଯିବେ । ଗାଁ ଛାଡ଼ି ଅନ୍ୟତ୍ର ଗଲେ ଚଳିବେ ବା କିପରି ? ଏତେ ସହଜ ଓ ସରଳ କଥା କର୍ତ୍ତୃପକ୍ଷଙ୍କ ମନକୁ କିପରି ନ ଆସୁଥାଏ ଏହା ବଡ଼ ବିସ୍ମୟ କଥା । ଏପରି ଯେଉଁଠି ବିଚାରର ଅଭାବ, ସେଠି ପରାଜୟ ଛଡ଼ା ଅନ୍ୟ କିଛି ଲୋକେ ବା କିପରି ପ୍ରତ୍ୟାଶା କରିବେ । ମାତ୍ର ଏ ସବୁର ସମୂହୀଭୂତ ପରିଣାମ ହୋଇଥାଏ ଲୋକଙ୍କ ଭିତରେ ଅତିରିକ୍ତ ଅସ୍ଥିରତା, ଆତଙ୍କ ଓ ତନ୍ତ୍ର ସଙ୍ଗେ ସଙ୍ଗେ ଜାପାନ ଆସିଗଲେ ରକ୍ଷା ବୋଲି ଏକ ଦୀର୍ଘ ନିଶ୍ୱାସ ।

ମୁଁ ସେ ସମୟରେ ଆତଙ୍କରୁ ରକ୍ଷା କରିବା ପାଇଁ ସମସ୍ତ ଶକ୍ତି ଦେଇ ଲାଗିଥାଏ, ମାତ୍ର ସେତେବେଳେ ମୁଁ ନିଜକୁ ନିଜେ ଅତି ନିଃସହାୟ ମନେ କରୁଥାଏ । ପୁରୀ ଯିବା ବେଳକୁ ଦେଖେ ଯେ, କଟକର ଲୋକେ ପୁରୀ ପଳାଉଛନ୍ତି । ପୁରୀରେ ଦେଖେଁ ଯେ ସେଠା ଲୋକେ କଟକ ପଳାଇ ଆସୁଛନ୍ତି । ଅଧିକାଂଶ ବ୍ୟବସାୟୀ ପ୍ରାୟ ସହର ଛାଡ଼ି ପଳାଇଲେଣି । ପିଲାପିଲି ନେଇ ଲୋକମାନେ ସେଠୁ ଏଠିକି ଏଠୁ

ସେଠିକି ପଳାଇବାରେ ଲଗିଥାନ୍ତି । ଏହି ଅବସରରେ ଚୋରି ମଧ୍ୟ ଖୁବ୍ ହେଉଥାଏ । ଆଉ ଏକ ବିଚିତ୍ର କଥା ଯେ ସରକାରୀ କର୍ମଚାରୀମାନେ, ଏପରିକି ବଡ଼ ବଡ଼ ହାକିମ-ମାନେ ମଧ୍ୟ ଭୟବିହ୍ୱଳ ହୋଇ ନିଜ ନିଜର ପରିବାରକୁ ଏଭିକି ସେଠିକି ପଠାଇ ଦେଉଥାନ୍ତି । କଟକ ଜିଲ୍ଲା ମରିଚପୁର ପାଖରେ ଏକ ଜାହାଜ ବୁଡ଼ିବାରୁ ଦୁଇ ତିନି ଦିନ ପର୍ଯ୍ୟନ୍ତ ସରକାରୀ କଳ ଏତେ ଢିଲା ହୋଇଗଲା ଯେ, ଲୋକେ ଆହୁରି ଭୀତ ହୋଇଗଲେ । ଓଡ଼ିଶା ସରକାରଙ୍କ ଦପ୍ତର ସମ୍ବଲପୁର ଚାଲିଗଲା । ଶହ ଶହ କିରାଣି ତାଙ୍କର ପରିବାରବର୍ଗଙ୍କୁ ଘରେ ଛାଡ଼ିବା ଦ୍ୱାରା ସେସବୁ ଗାଁରେ ଆତଙ୍କ ଜନ୍ମାଇଲେ । ବାସ୍ତବିକ୍ ଆତଙ୍କର ମୂଳ ସେହି ସରକାରୀ ମହଲରେ ଥାଏ । ଏତକି ସୁଖର ବିଷୟ ଯେ, ସେ ସମୟରେ କଂଗ୍ରେସ ଅନୁଷ୍ଠାନମାନ ଖୁବ୍ ତତ୍ପରତାର ସହିତ କାମ କରିଛନ୍ତି ଓ କଂଗ୍ରେସ କର୍ମୀମାନେ ସବୁଆଡ଼କୁ ଯାଇ ଲୋକଙ୍କୁ ସାହସ ଓ ଦମ୍ଭ ଦେଉଥିଲେ । ସେତେବେଳେ ଜାପାନ ଓଡ଼ିଶା ଆକ୍ରମଣ କରିବା ଉପରେ, ଏହି ସମ୍ବାଦ ଇଂରେଜ ସରକାର ପାଇଥାନ୍ତି । ମୁଁ ନିଜେ ଓଡ଼ିଶା ଛାଡ଼ି ଯାଇ ପାରୁ ନ ଥାଏ, ମାତ୍ର ଜାପାନ ଆସିଲେ ଆମର କର୍ତ୍ତବ୍ୟ କଅଣ ଏ ବିଷୟ ଗାନ୍ଧିଜୀଙ୍କଠାରୁ ବୁଝିବାପାଇଁ ଚିଠି ଦେଇ ଲୋକ ପଠାଇଥିଲି । ସେତେବେଳେ ଗାନ୍ଧିଜୀ ପରାମର୍ଶ ଦେଇଥିଲେ ଯେ, ଜାପାନ କୌଣସି ଅଞ୍ଚଳ ଦଖଲ କରିଗଲେ ବିଚାର କରିବାକୁ ହେବ ଯେ ସେ ଅଞ୍ଚଳରେ ଲୋକେ ଆକ୍ରମଣକାରୀଙ୍କ ସହିତ ପୂରାପୂରି ଅସହଯୋଗ କରି ପାରିବେ କି ନାହିଁ ? ଯଦି ଦେଖାଯାଏ ଯେ ଲୋକେ ସେଥିପାଇଁ ପ୍ରସ୍ତୁତ ନୁହନ୍ତି, ତେବେ ଯେଉଁମାନେ ଅହିଂସାରେ ବିଶ୍ୱାସ କରନ୍ତି, ସେମାନେ ସେ ଅଞ୍ଚଳ ଛାଡ଼ିଦେଇ ଆସିବେ ।

ସେହି ସମୟରେ କ୍ରିପ୍ସଙ୍କ ସହିତ କଂଗ୍ରେସର କଥାବାର୍ତ୍ତା ଚାଲିଥାଏ । ପ୍ରତ୍ୟେକ ଲୋକ ଯେ ରାଜନୀତି ସମ୍ବନ୍ଧରେ କିଛି ଖବର ରଖେ ସେ କହୁଥାଏ ଯେ, ଇଂରେଜଙ୍କ ସହିତ ମିଳାମିଶା କରିବାକୁ ଯାଇ କଂଗ୍ରେସ ଭୁଲ୍ କରୁଛି—ସମସ୍ତେ ପ୍ରାର୍ଥନା କରୁଥାନ୍ତି ଯେ ମିଳାମିଶା ପ୍ରସ୍ତାବ ଉପରେ ଫାଟିଯାଉ । ସେଥିପାଇଁ କୌଣସି ପ୍ରାର୍ଥନାର ଦରକାର ନ ଥିଲା । କ୍ରିପ୍ସ ସାହେବ ଭାବିଥିଲେ ଯେ, ଭାରତୀୟମାନେ ଆଲୋଚନାପ୍ରିୟ, ତେଣୁ ଭବିଷ୍ୟତ ଶାସନ ସମ୍ବନ୍ଧରେ ଆଲୋଚନାମୂଳକ ଗୋଟିଏ ପ୍ରସ୍ତାବ ବଖାଣିଲେ ସମସ୍ତେ ସେହି ଆଲୋଚନାରେ ଲାଗିଯିବେ । ତେଣୁ ଭବିଷ୍ୟତ୍ ଶାସନପଦ୍ଧତି ସମ୍ବନ୍ଧରେ ହିନ୍ଦୁସ୍ଥାନକୁ ଭାଗ ଭାଗ କରିବାର ସୂଚନା ମଧ୍ୟ ଥିଲା । ମାତ୍ର କଂଗ୍ରେସ ଯେ ନଗଦ ମାଲ ଚାହୁଁଛି, ସେଥିପାଇଁ କ୍ରିପ୍ସ ସାହେବଙ୍କ ଚତୁରତା ଖଟିଲା ନାହିଁ । କଂଗ୍ରେସ କହୁଥାଏ ଯେ ପଛ କଥା ଯାହା ହେବ ଦେଖାଯିବ, ବର୍ତ୍ତମାନ ଶାସନ କିପରି ଲୋକଙ୍କ ହାତକୁ ଆସିବ ତା'ର ବ୍ୟବସ୍ଥା କର; କିନ୍ତୁ ବର୍ତ୍ତମାନ ଶାସନର କୌଣସି ଅଙ୍ଗ ଲୋକପ୍ରତିନିଧି ହାତକୁ

ଆସିବ ନାହିଁ ବୋଲି ସେ କହିଦେବାରୁ ମିଳାମିଶା ପ୍ରସ୍ତାବ ଲୁଆଛେ ଉଡ଼ିଗଲା, ଭଗ୍ନ-ମନୋରଥ ହୋଇ କ୍ରିପ୍ସ ସାହେବ ଫେରିଗଲେ । କ୍ରିପ୍ସ ଜଣେ ସାମ୍ୟବାଦୀ ବୋଲି ସୁପରିଚିତ । ଏ ମହାଶୟ ଇତିପୂର୍ବରୁ ଥରେ ଭାରତ ଆସିଥିଲେ, କଂଗ୍ରେସ କାର୍ଯ୍ୟ-ନିର୍ବାହକ ସମିତିର ସଭ୍ୟମାନଙ୍କୁ ସାକ୍ଷାତ କରିଥିଲେ । ଓ୍ୱାର୍ଦ୍ଧାରୁ ମୁଁ କଟକ ଫେରୁଥିବାବେଳେ ଏ ମଧ୍ୟ ସେହି ଗାଡ଼ିରେ ସଫରଗଲା ଆସୁଥିଲେ । ଏହାଙ୍କ ସହିତ ଏକ ସଙ୍ଗରେ ତିନି ଘଣ୍ଟା ଥିବାର ଅବକାଶ ମୋର ଘଟିଥିଲା । ସେ ସମୟରେ ଏହାଙ୍କ ସମ୍ବନ୍ଧରେ ମୋର ଧାରଣା ହୋଇଥିଲା ଯେ, ପ୍ରଭୂତ ଅର୍ଥଶାଳୀ ବ୍ୟକ୍ତି ଜନ-ପ୍ରିୟତାର ଆଶାୟ ନେବାପାଇଁ ଯେପରି ଦରିଦ୍ରତମ ବ୍ୟକ୍ତିର ଦାବୀକୁ ସମର୍ଥନ କରି ପ୍ରସ୍ତରର ଆଶ୍ରୟ ନିଏ, ଅଥଚ ସେ ଦାବୀ ପୂରଣ ପାଇଁ ନିଜେ କିଛି ହେଲେ ତ୍ୟାଗ କରିବାକୁ ପ୍ରସ୍ତୁତ ନ ଥାଏ, ସେହିପରି ଏ ଭଦ୍ରଲୋକ । ସେତେବେଳେ ସେ କହୁଥିଲେ ଯେ, ଜହରଲାଲ ଗାନ୍ଧିଜୀଙ୍କୁ ପ୍ରଭାବିତ ନ କରି, ଗାନ୍ଧିଜୀ ଜହରଲାଲଙ୍କୁ ପ୍ରଭାବିତ କରୁଛନ୍ତି । ସେ ଭାବୁଥିଲେ, ଜହରଲାଲଙ୍କ ବୋଧ ଦେଇଥିବା ସହଜ, ମାତ୍ର ଗାନ୍ଧୀ ବଡ଼ ଅଡ଼ୁଆ ଲୋକ । ଯାହାହେଉ ସେହି ସମୟର ଅଳ୍ପ କଥାବାର୍ତ୍ତାରେ ମୋର ତାଙ୍କ ପ୍ରତି ସେପରି ଉଚ୍ଚ ଧାରଣା ନ ଥିଲା, ମାତ୍ର ଅନେକେ ତାଙ୍କୁ ପ୍ରକୃତ ସାମ୍ରାଜ୍ୟବାଦର ବିରୋଧୀ ବୋଲି ମନେ କରୁଥିଲେ । ଦିଲ୍ଲୀରେ ଗାନ୍ଧିଜୀଙ୍କ ସହିତ କ୍ରିପ୍ସଙ୍କର ସାକ୍ଷାତ ହୋଇଥିଲା । ଗାନ୍ଧିଜୀ ହଠାତ୍ ଜାଣିପାରିଲେ ଯେ କ୍ରିପ୍ସ ଯେଉଁ ମିଳାମିଶା ପ୍ରସ୍ତାବ ଆଣିଛନ୍ତି, ସେଥିରେ ଆନ୍ତରିକତା ନାହିଁ; ତେଣୁ ସେ ତାକୁ ବର୍ଜନ କରିବା ପାଇଁ ପରାମର୍ଶ ଦେଲେ । ମାତ୍ର କଂଗ୍ରେସ କାର୍ଯ୍ୟନିର୍ବାହକ ସମିତି କ୍ରିପ୍ସଙ୍କ ସଚ୍ଚୋଟପଣିଆରେ ଏତେଶୀଘ୍ର ବିଶ୍ୱାସ ହରାଇ ନ ଥିଲେ । ସେମାନେ କଥାବାର୍ତ୍ତା ଚଳାଇଲେ । ଶେଷରେ ଦେଖାଗଲା ଯେ ବାକ୍ୟାବରଣ ଭିତରେ ହାତରୁ ପାଞ୍ଚ ଛାଡ଼ିବାର ଇଚ୍ଛା ଆଦୌ ନାହିଁ; ତେଣୁ ମିଳାମିଶା କଥା ରଦ୍ଦ ହୋଇଗଲା । ସମସ୍ତେ ନିଃଶ୍ୱାସ ମାରିଲେ ।

ଏହାପରେ ଏଲାହାବାଦରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ହେଲା । ଓଡ଼ିଶାର ଚାରିଆଡ଼େ କଂଗ୍ରେସର ବିସ୍ତାର ଓ ସଙ୍ଗଠନ ମୋତେ ଏପରି ଭାବରେ ନିଯୁକ୍ତ କରିଥାଏ ଯେ, ମୁଁ କମିଟି ବୈଠକକୁ ଯାଇପାରି ନ ଥିଲି । ବାଲେଶ୍ୱର ଜିଲ୍ଲାରେ ଚୌଷଠିଟି କେନ୍ଦ୍ର ଖୋଲା ହୋଇ ତାକୁ ଅର୍ଥ-ସାହାଯ୍ୟ ଓ କର୍ମୀ ଯୋଗାଇବାର ବ୍ୟବସ୍ଥା କରିବା, ଅନ୍ୟ ଜିଲ୍ଲାମାନଙ୍କରେ ସେହିପରି କେନ୍ଦ୍ରମାନ ଖୋଲିବାରେ ସାହାଯ୍ୟ କରିବା—ଏଇଥିରେ ମୁଁ ନିଯୁକ୍ତ ଥିଲି । ୧୯୨୧ ମସିହାରେ ଯେପରି ଆଗକୁ ପଛକୁ ନ ଚାହିଁ ଗତି ହେଉଥିଲା, ଏଥର ମଧ୍ୟ ସେହିପରି କରିଥିଲି । ନୀଳାମ୍ବର, ଗୌର, ସୁରେନ୍ଦ୍ର ଓ ରବି ଏମାନେ ବାଲେଶ୍ୱର ଜିଲ୍ଲାକୁ ଚାରିଭାଗ କରି

ସଙ୍ଗଠନ କରୁଥାଆନ୍ତି । ଏମାନଙ୍କୁ ସାହାଯ୍ୟ କରିବା ପାଇଁ ହରିନନ୍ଦବାବୁ ଓ କରୁଣାକର ଥାଆନ୍ତି । ଏମାନେ ବର୍ତ୍ତମାନ ଜିଲ୍ଲାବୋର୍ଡ଼ର ଚେୟାରମ୍ୟାନ ଓ ଭାଇସ୍ ଚେୟାରମ୍ୟାନ୍ । ଆମେ ସମସ୍ତେ କେବଳ ସହକର୍ମୀ ହିସାବରେ ନୁହେଁ ଏକ ପରିବାରର ଲୋକ ହିସାବରେ କାମ ଚଳାଇଥାଉ । କ୍ରମଶଃ ଆତଙ୍କ ବୃଦ୍ଧି ଓ ନିଃସହାୟ ଭାବରେ ପ୍ରତିରୋଧ କରିବା ପାଇଁ, ସ୍ୱାବଲମ୍ବନ ଓ ଆତ୍ମରକ୍ଷା ବ୍ୟବସ୍ଥା ଆମେ କରିବାରେ ଲାଗିଥାଉ ।

ଗ୍ରୀଷ୍ମାବକାଶ ଭିତରେ ସ୍କୁଲ, କଲେଜ ବନ୍ଦ ହେବାରୁ ଅନେକ ଯୁବକ ମୋର ନିର୍ଦ୍ଦେଶାନୁସାରେ ନିଜ ନିଜ ଅଞ୍ଚଳରେ ଲୋକଙ୍କ ଭିତରେ ଭୟ ଦୂର କରିବା, ସ୍ୱାବଲମ୍ବନଭାବ ପ୍ରଚାର କରିବା, ମିଥ୍ୟା ଜନରବର ପ୍ରତିକାର କରିବା ଇତ୍ୟାଦି ଗଠନମୂଳକ କାମ କରିଥିଲେ । ଏମାନଙ୍କ ଭିତରୁ ଅଧିକାଂଶ ଭଲ କାମ କରିଥିଲେ । ଏହା ମୋତେ ଖୁବ୍ ଆଶା ଓ ଉତ୍ସାହ ଦେଇଥିଲା ।

ସ୍ୱେଚ୍ଛାସେବକ ଦଳ ଗଠନ କରି ଧନଜୀବନ ରକ୍ଷାର ବ୍ୟବସ୍ଥା କରିବା ଆତ୍ମରକ୍ଷାର ଉପାୟ । ସବୁବେଳେ ପୋଲିସ ଉପରେ ନିର୍ଭର କଲେ ଚଳିବନାହିଁ । ସହରରେ ଓ ଗ୍ରାମରେ ଆତ୍ମରକ୍ଷାର ବ୍ୟବସ୍ଥା କରିବା ମାତ୍ରକେ ସରକାରଙ୍କ ତରଫରୁ ଆପତ୍ତି ଉଠିଲା ଯେ, ଧନଜୀବନ ରକ୍ଷାର ବ୍ୟବସ୍ଥା ସରକାରଙ୍କ କାମ, ଲୋକେ ତାହା ହାତକୁ ନେଇ ପାରିବେ ନାହିଁ । ଏ ବିଷୟରେ ମୁଁ ତତ୍କାଳୀନ ଚିଫ୍ ସେକ୍ରେଟେରୀ ଓ କମିଶନରଙ୍କ ସହିତ ଦେଖାକରି ଆଲୋଚନା କଲି, ମାତ୍ର ସରକାରଙ୍କ ମତିଗତି ବଦଳିଲା ନାହିଁ । ଏହି ଘଟଣାରୁ ମୁଁ ବୁଝିଲି ଯେ, ବାସ୍ତବିକ ଇଂରେଜ ସରକାରଙ୍କର ବୁଦ୍ଧିଭ୍ରମ ହେଲଣି । ଏମାନେ ଜନସାଧାରଣଙ୍କ ମତିଗତି ଆଦୌ ବୁଝୁନାହାନ୍ତି । ଆତ୍ମରକ୍ଷାର ଭାର ନିଜେ ନେଇ ନିଜେ ସନ୍ତୁଷ୍ଟ ନ ରହିଲେ ସାମାନ୍ୟ ଆତଙ୍କରେ ଜନସାଧାରଣ ଆକ୍ରମଣକାରୀଙ୍କ ପ୍ରତି ଆକୃଷ୍ଟ ପଡ଼ିବେ, ଏହାକୁ ମୁଁ କୌଣସି ପ୍ରକାରେ ବୁଝାଇ ପାରିଲି ନାହିଁ । ସରକାର ଭାବୁଥାନ୍ତି ଯେ, ଲୋକେ ତାଙ୍କୁ ବିଶ୍ୱାସ କରିବା ଉଚିତ୍, ମାତ୍ର ସେ ବିଶ୍ୱାସ ତ ନାହିଁ । ବାଧ କରାଇ ବିଶ୍ୱାସ ଜନ୍ମାଇବା ଅସମ୍ଭବ । ସରକାରଙ୍କ ଏ ଆତ୍ମରକ୍ଷା କାର୍ଯ୍ୟରେ ବାଧା ଲୋକଙ୍କୁ ଉତ୍ତ୍ୟକ୍ତ ଓ ଅଦ୍ଭୁତ ସନ୍ଦେହ କରିଦେଲା । 'ନିଜେ ତ ଯିବେ ସମସ୍ତଙ୍କୁ ସାରିକରି ଯିବେ' ଏହା ହିଁ ଇଂରେଜଙ୍କ ମନୋଭାବ ବୋଲି ସାଧାରଣ ଲୋକେ ବିଶ୍ୱାସ କରୁଥିଲେ । ଜାପାନ ଆସିଲେ ଦେଶର ମଙ୍ଗଳ ହେବ । ବର୍ମାରେ ଆସିବା ମାତ୍ରକେ ବହୁତ ଉପକାର କଲାଣି, ମାଲୟ ଦେଶରେ ଗଢ଼ଜାତ ରାଜାଙ୍କୁ ଜବତ୍ କରି ସେଠି ଲୋକଙ୍କୁ ଅତ୍ୟାଚାରରୁ ରକ୍ଷା କଲାଣି, ଇତ୍ୟାଦି ନାନା ପ୍ରକାର ଜନରବ ବ୍ୟାପି

ଜାପାନ ପ୍ରତି ସହାନୁଭୂତି କ୍ରମଶଃ ବଢ଼ୁଥାଏ । ଏ ମନୋଭାବ ତଥା ଇଂରେଜଙ୍କ ବିରୋଧରେ କଂଗ୍ରେସକୁ ଲଢ଼ିବାକୁ ପଡ଼ୁଥାଏ । ଏଲାହାବାଦକୁ ଗାନ୍ଧିଜୀ ଯାଇ ନ ଥିଲେ, ମାତ୍ରି କ୍ରିପ୍ସ ପ୍ରସ୍ତାବରେ ଇଂଲଣ୍ଡର ଯେ ମନୋବୃତ୍ତି ପ୍ରକାଶ ପାଇଲା ଏବଂ ଦେଶର ନୈରାଶ୍ୟପ୍ରସୂତ ସହାନୁଭୂତି ଯେ ଜାପାନ ପ୍ରତି ବଢ଼ି ଚାଲିଛି ଓ ସ୍ୱାଧୀନତାର ମନୋଭାବ କ୍ଷୟ ପାଇବାକୁ ବସିଛି, ଏହାର ପ୍ରତିକାର ପାଇଁ ସ୍ୱାଧୀନତା ଉଦ୍ଦେଶ୍ୟରେ ଏକ ତୁମୁଳ ଆନ୍ଦୋଳନ ଆବଶ୍ୟକ । ଏହି ମର୍ମରେ ଏକ ପ୍ରସ୍ତାବ ମୀରାବେନ୍‌ଙ୍କ ହାତରେ ଗାନ୍ଧିଜୀ ଏଲାହାବାଦ ପଠାଇଥିଲେ କଂଗ୍ରେସ କାର୍ଯ୍ୟନିର୍ବାହକ ସମିତିରେ ଆଲୋଚନା ପାଇଁ । ଏ ପ୍ରସ୍ତାବକୁ ପୁରାପୁରି କଂଗ୍ରେସ କାର୍ଯ୍ୟନିର୍ବାହକ ସମିତି ଗ୍ରହଣ କରି ପାରିଲେ ନାହିଁ । ତା'ର କାରଣ ହେଉଛି ଧର୍ମ ସଙ୍କଟ । ଏଣେ ଜାପାନ ଆସି ଭାରତ ଦଖଲ କରିବ ଏ କଥା କଂଗ୍ରେସ ଚାହେଁ ନାହିଁ, ତେଣେ ଇଂରେଜ ତା'ର ସାମ୍ରାଜ୍ୟକୁ ଦୃଢ଼ କରି ଯାଉଥିବ ଏ କଥା ମଧ୍ୟ କଂଗ୍ରେସ ଚାହେଁ ନାହିଁ, ଏଣେ ତୁମୁଳ ଆନ୍ଦୋଳନ ଆରମ୍ଭ କରି ଇଂରେଜକୁ ବିବ୍ରତ କଲେ ଜାପାନ ସେଥିରୁ ଲାଭ ଉଠାଇବ, ତେଣେ କିଛି ଆନ୍ଦୋଳନ ନ କଲେ ଇଂରେଜ ତାଙ୍କର ମୂଠା କ୍ରମଶଃ ଟାଣ କରିବାରେ ଲାଗିଛନ୍ତି । ଏ ଧର୍ମ ସଙ୍କଟରେ ପଡ଼ି କଂଗ୍ରେସ କର୍ତ୍ତବ୍ୟ ନିର୍ଣ୍ଣୟ କରି ପାରିଲା ନାହିଁ ।

ଗୀତାରେ ଶ୍ରୀକୃଷ୍ଣ ଯେପରି ଅର୍ଜ୍ଜୁନଙ୍କର ମୋହ ଅପନୋଦନ ପାଇଁ ଚେଷ୍ଟା କରି ସଫଳକାମ ହୋଇଥିଲେ, ସେପରି ଭାରତ ରାଜନୀତିରେ ମହାତ୍ମାଗାନ୍ଧୀ କଂଗ୍ରେସର କ୍ଳୈବ୍ୟ ଦୂର କରିବାପାଇଁ ଦୃଢ଼ଭାବରେ ପ୍ରଚାର ଚଳାଇଲେ । ସେଥିରେ ମୁଖ୍ୟ ଧ୍ୱନି ହେଲା "ଇଂରେଜ ଭାରତ ଛାଡ଼ି ଚାଲି ଯାଆନ୍ତୁ ।" ଇଂରେଜ ଭାରତରୁ ଚାଲିଗଲେ, ଭାରତବାସୀ ଜାତି-ଧର୍ମ ନିର୍ବିଶେଷରେ ନିଜର ବ୍ୟବସ୍ଥା ନିଜେ କରିବେ—ଏହା ହିଁ ପ୍ରଚାରର ମୂଳମନ୍ତ୍ର ହେଲା । ଏହାକୁ ବୁଝାଇବାକୁ ଯାଇ ଗାନ୍ଧିଜୀ ଇଂଲଣ୍ଡକୁ ଭାରତ ଶାସନ ସମ୍ପର୍କରେ ଜଗତ୍ ସମକ୍ଷରେ ଉଲଗ୍ନ କରି ଛାଡ଼ି କରି-ଦେଲେ । ବଡ଼ ବଡ଼ କଥା କହି ଇଂରେଜ ଯେ ଯୁଦ୍ଧର ମହତ୍ ଉଦ୍ଦେଶ୍ୟ ବଖାଣୁ-ଥିଲେ, ତାହା ପଦାରେ ପଡ଼ିଗଲା । ଇତି ପୂର୍ବରୁ ଆମେରିକା-ସୈନ୍ୟ ଭାରତକୁ ଅଣାଯିବାରୁ ତୀବ୍ର ପ୍ରତିବାଦ ଗାନ୍ଧିଜୀ କରିଥିଲେ । ବର୍ତ୍ତମାନ ସେ ଦେଖାଇ ଦେଲେ ଯେ ଇଂରେଜ ମୁହଁରେ ଯାହା କହନ୍ତୁ ପଛକେ କାର୍ଯ୍ୟରେ ଭାରତକୁ ଛାଡ଼ିବାକୁ ଚାହାନ୍ତି ନାହିଁ । ବର୍ତ୍ତମାନ ହିଂସା ଅହିଂସାର ପ୍ରଶ୍ନ ନାହିଁ । ଅହିଂସାର ନୈତିକ ପ୍ରଭାବରେ ଇଂରେଜଙ୍କ ମନ ପରିବର୍ତ୍ତନର ଆଲୋଚନା ଏଥର ନାହିଁ, ଅଥବା ରଚନାତ୍ମକ କାର୍ଯ୍ୟଦ୍ୱାରା ଅହିଂସାର ବାତାବରଣ ତିଆରି କରିବା କଥା ମଧ୍ୟ ନାହିଁ । ଏଥର କେବଳ ପ୍ରଚାର "ଛାଡ଼ି ଚାଲିଯାଅ ଇଂରେଜ; ଅନ୍ୟଥା ତୁମର ଶାସନ ଆମେ

ଅଚଳ କରିଦେବୁ ।’’ ଯୁଦ୍ଧର ସୁପରେ ଲୋକେ ଭୟଭୀତ ଜାପାନର ଆଗମନକୁ ପ୍ରତୀକ୍ଷା କରିବା ଠାରୁ ସ୍ୱରାଜ୍ୟ ପାଇଁ ସାହସର ସହିତ ଇଂରେଜଙ୍କ ସହିତ ଲଢ଼ିବା ବହୁଗୁଣେ ଶ୍ରେୟସ୍କର, ଏ ମନୋଭାବ ଗାନ୍ଧିଜୀଙ୍କ ପ୍ରଚାର ଦ୍ୱାରା ଧୀରେ ଧୀରେ ସୃଷ୍ଟି ହେବାରେ ଲାଗିଲା ।

ଏହି ସମୟରେ ଗାନ୍ଧିଜୀ ମୀରାବେନ୍‌ଙ୍କୁ ଓଡ଼ିଶାରେ କାମ କରିବା ପାଇଁ ପଠାଇଥିଲେ । ଓଡ଼ିଶାରେ ଜାପାନ ଆକ୍ରମଣ ଆରମ୍ଭ ହେବାର ଆଶଙ୍କା ସବୁଠାରୁ ବେଶୀ, ତେଣୁ ଏଠାରେ ସ୍ୱରାଜ୍ୟର ବାୟୁମଣ୍ଡଳ ପ୍ରସ୍ତୁତ କରିବା ଏକାନ୍ତ ବାଞ୍ଛନୀୟ । ସେଥିପାଇଁ ଗାନ୍ଧିଜୀଙ୍କ ଚିନ୍ତା ଓ ମୀରାବେନ୍‌ଙ୍କ ଆଗମନ । ମୀରାବେନ୍ କଟକ ଆଶ୍ରମସ୍ଥ ମୋର ନିବାସରେ ଅବସ୍ଥାନ କଲେ । ତାଙ୍କ ଆସିବାରେ ମୁଁ ଖୁବ୍ ଉତ୍ସାହିତ ହୋଇଥିଲି । ଆମେ ଦୁହେଁ ପ୍ରାୟ ଦେଢ଼ମାସ ଏକ ସାଙ୍ଗରେ କାମ କରିଛୁ । ପ୍ରଥମେ ମୀରାବେନ୍ ଜାଣିବାକୁ ଚାହିଁଥିଲେ ଯେ, କେଉଁମାନେ କଂଗ୍ରେସର ସିଦ୍ଧାନ୍ତ ଯାହାହେଉ ପଛକେ ଗାନ୍ଧିଜୀଙ୍କ ନିର୍ଦ୍ଦେଶ ଅନୁସାରେ ଚଳିବେ । ସବୁ ଜିଲ୍ଲାରୁ କର୍ମୀମାନଙ୍କୁ ଡକାଇ ଏ ବିଷୟ ଆଲୋଚିତ ହୋଇଥିଲା । ମୁଁ ମୀରାବେନ୍‌ଙ୍କୁ ବୁଝାଇ ଦେଇଥିଲି ଯେ, କଂଗ୍ରେସ ଓ ଗାନ୍ଧୀ ଯେ କେବେ ହେଲେ ପରସ୍ପର ବିରୋଧୀ ହେବେ, ଏହା ଅଚିନ୍ତନୀୟ । ଗତ ଚାରି ପାଞ୍ଚ ବର୍ଷର କାର୍ଯ୍ୟନିର୍ବାହକ ସମିତିର ଅଭିଜ୍ଞତା ତାଙ୍କୁ ଜଣାଇ ମୁଁ ଦୃଢ଼ଭାବରେ କହିଥିଲି, ପ୍ରତ୍ୟେକେ ନିଜ ନିଜ ସ୍ଥାନ ଠିକ୍‌ ରଖି ଶେଷରେ ଗାନ୍ଧୀ ଓ କଂଗ୍ରେସ କାର୍ଯ୍ୟତଃ ଏକ ହେବେ । ପ୍ରଶ୍ନ ହେଉଛି କଂଗ୍ରେସ ଭିତରେ କେଉଁମାନେ ଗାନ୍ଧିଜୀଙ୍କ ନିର୍ଦ୍ଦେଶାନୁସାରେ କାର୍ଯ୍ୟ କରିବେ । କାରଣ ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ବିଶ୍ୱାସ ନ ରଖି ସେହି ଆବରଣ ଭିତରେ ନିଜର କୌଶଳ ଅନୁସାରେ କାମ ଚଳାଇବା ଲୋକ ମଧ୍ୟ କଂଗ୍ରେସ ଭିତରେ ଅନେକ ଅଛନ୍ତି । କର୍ମୀମାନଙ୍କ ସହିତ ଆଲୋଚନା କରି ମୀରାବେନ୍ ଗାନ୍ଧିଜୀଙ୍କୁ ଜଣାଇଲେ ଯେ, ଓଡ଼ିଶା କଂଗ୍ରେସର ସମସ୍ତେ ତାଙ୍କ ନିର୍ଦ୍ଦେଶ ଅନୁସାରେ କାମ କରିବା ପାଇଁ ପ୍ରସ୍ତୁତ । ମୋ ସାଙ୍ଗରେ ମୀରାବେନ୍ ଓଡ଼ିଶାର ବିଭିନ୍ନ ସ୍ଥାନକୁ ଯାଇ ଲୋକଙ୍କୁ ଯୁଦ୍ଧ ପରିସ୍ଥିତିରେ ଆତଙ୍କିତ ନ ହୋଇ ସ୍ୱରାଜ୍ୟ ପାଇଁ ଚେଷ୍ଟା କରିବା ଉଚିତ ବୋଲି କହିଥିଲେ । କଟକ ସଭାରେ ସେ କହିଥିଲେ ଯେ, ଆକ୍ରମଣ ଆରମ୍ଭ ହେବା ମାତ୍ରକେ ଇଂରେଜ ସରକାର ପଛକୁ ହଟିଯିବାର ବନ୍ଦୋବସ୍ତ କରୁଛନ୍ତି ଓ ତା’ ପୂର୍ବରୁ ରାସ୍ତା ରେଲ୍ ଭାଙ୍ଗିଦେଇ ଯିବାର ମଧ୍ୟ କାର୍ଯ୍ୟକ୍ରମ ଅଛି । ଏପରି ସ୍ଥଳେ ଲୋକ ସ୍ୱାବଲମ୍ବନ ଓ ଆତ୍ମରକ୍ଷାର ବନ୍ଦୋବସ୍ତ କରିବା ଉଚିତ । ଏ ବକ୍ତୃତା ଫଳରେ ତାଙ୍କୁ ଗିରଫ କରିବାପାଇଁ ମନ୍ତ୍ରିମଣ୍ଡଳ ଆଦେଶ ଦେଇଥିବା ଓ ଲାଟ୍ ସାହେବ ସେଥିରେ ବାଧା ଦେଇଥିବାର ଖବର ଆମେ ପାଇଲୁ । ସେତେବେଳେ ଓଡ଼ିଶାରେ ଇଂରେଜଙ୍କ

ତରଫରୁ ସେଉଁ ଯୁଦ୍ଧ ଉଦ୍ୟମ ହେଉଥିଲା, ଯାହାର ସୂଚନା ଆଗରୁ ଦେଇଛୁ, ତା'ଫଳରେ ଲୋକେ ଯେ ମ୍ରିୟମାଣ ହୋଇଯାଉଥିଲେ ତା'ବିରୋଧରେ ମୀରାବେନ୍ ଓ ମୁଁ ଗ୍ରାମଆଡ଼େ ବୁଲି ପ୍ରଚାର କଲୁ । ଲୋକଙ୍କ ଭିତରେ ସାହସ ଆଣିବା ପାଇଁ ଓ ଯୁଦ୍ଧ ଉଦ୍ୟମ ନାମରେ ଦିଆ ହେଉଥିବା ନିର୍ବୋଧ ଆଦେଶ, ଯାହା ଜୀବିକା ଓ ଜୀବନରେ ଆଞ୍ଚ ଲଗାଇଛି, ତା' ବିରୁଦ୍ଧରେ ଠିଆ ହେବାପାଇଁ ଲୋକଙ୍କୁ ଉତ୍ସାହିତ କରିଥିଲୁ । ସେତେବେଳେ ଆମର ବିଶ୍ୱାସ ହୋଇଗଲା ଯେ, ଇଂରେଜ ସରକାର ଯେପରି ଗତି କରୁଛନ୍ତି, ସେଥିରେ ପ୍ରବଳ ସତ୍ୟାଗ୍ରହ ଆନ୍ଦୋଳନ ଦରକାର, ତା' ନ ହେଲେ ଲୋକେ ଜାପାନକୁ ବରଣ କରି ନେବେ ଓ ସ୍ୱାଧୀନତାର ପ୍ରଶ୍ନ ପୁଣି ଶହ ଶହ ବର୍ଷ ପାଇଁ ପଛେଇଯିବ । ଗାନ୍ଧିଜୀ ମଧ୍ୟ ସେଇଆ ଭାବୁଥିଲେ ଓ ତାହା ହିଁ ପ୍ରଚାର କରୁଥିଲେ ।

ପ୍ରଥମେ ଆତ୍ମରକ୍ଷା ପାଇଁ ସ୍ୱେଚ୍ଛାସେବକ ଦଳ ଗଠନ ବିରୋଧରେ ଯେଉଁ ସରକାରୀ ନିର୍ଦ୍ଦେଶ ତା' ବିରୁଦ୍ଧରେ କାମ କରିବୁ ଓ ସ୍ୱେଚ୍ଛାସେବକ ଦଳ ଗଠନ କରିବୁ ବୋଲି ଭାବୁଥିଲୁ, ମାତ୍ର ତାହା ସମ୍ଭବ ହେଲା ନାହିଁ ।

ତା'ପରେ ଚୌଦ୍ୱାରଠାରେ ତିଆରି ହେଉଥିବା ଏରୋଡ୍ରମ୍ ଓ ସେ ସମ୍ପର୍କରେ ଅନେକ ଗାଁ-ଲୋକଙ୍କୁ ଗାଆଁ ଛାଡ଼ି ଚାଲିଯିବା ପାଇଁ ମିଳିଥିବା ନୋଟିସ୍ ବିଷୟ ଅନୁସନ୍ଧାନ କରିବା ପାଇଁ ଆମେ ସେଠାକୁ ଗଲୁ । ସେଠାରେ ଦେଖିଲୁ ଯେ, ପ୍ରାୟ ପାଞ୍ଚ ହଜାର କୁଲି କାମ କରୁଛନ୍ତି, ଏମାନେ ଭିଜିଆନଗ୍ରାମ, ହାଇଦରାବାଦ ପ୍ରଭୃତି ସୁଦୂର ଅଞ୍ଚଳରୁ ଖାଇବା ଖର୍ଚ୍ଚ ଛଡ଼ା ଦୈନିକ ଏକଟଙ୍କା ଚାରିଅଣା ମଜୁରିରେ ଅଣା ହୋଇଛନ୍ତି । ଏହିମାନେ ରହିବା ପାଇଁ ଜାଗା ଓ ଘର ଦରକାର, ସେଥିପାଇଁ ଆଖପାଖ ଗାଁ ସବୁ ଶୂନ୍ୟ କରିବା ପାଇଁ ଆଦେଶ ଦିଆହୋଇଛି । ଆମେ ଯାଇ ଦେଖିଲୁ ଯେ ଯେଉଁସବୁ ଗାଁ ଶୂନ୍ୟ କରିବା ପାଇଁ ଆଦେଶ ଦିଆହୋଇଛି, ସେଠି ଲୋକଙ୍କୁ ଯଥେଷ୍ଟ କ୍ଷତିପୂରଣ ଦିଆହେଉ ନାହିଁ । ଆଉ ମଧ୍ୟ ବର୍ଷାଦିନ ଆସି ମୁଣ୍ଡ ଉପରେ । କ୍ଷତିପୂରଣ ଦିଆହେଲେ ମଧ୍ୟ ସେ ସମୟରେ ଯାଇ ଅନ୍ୟତ୍ର ଘର ତିଆରି କରିବା ଅସମ୍ଭବ । ଅନ୍ୟତ୍ର ଜାଗା ମିଳିବାର ବନ୍ଦୋବସ୍ତ ମଧ୍ୟ କିଛି ହୋଇ ନାହିଁ । ଜମିଦାରମାନେ ଖୁବ୍ ବେଶୀ ସଲାମି ଦାବୀ କରି ପାରନ୍ତି । ମୋଟ କଥା ଗାଁ ଛାଡ଼ିବାର ଆଦେଶ ଦିଆ ହୋଇଥିଲେ ମଧ୍ୟ ଘରବାବଦ କିଛି କିଛି ଟଙ୍କା ଦେବାର ବ୍ୟବସ୍ଥା ଛଡ଼ା ଅନ୍ୟ କିଛି କରା ହୋଇନାହିଁ । ଆମକୁ ଆଶ୍ଚର୍ଯ୍ୟ ବୋଧ ହେଲା ଯେ, କିପରି ଏକ ପ୍ରତିଷ୍ଠିତ ସରକାର ଏପରି ଦାୟିତ୍ୱଶୂନ୍ୟ-ଭାବରେ ଗତି କରୁଛି । ଆମେ ଗାଁବାଲାଙ୍କୁ ସାହସ ଓ ଉତ୍ସାହ ଦେଲୁ ଯେ,

ସେମାନେ ଦୃଢ଼ ହୃଅନ୍ତୁ ଓ ନିଜର ନ୍ୟାଯ୍ୟ ଦାବୀ ହାସଲ କରନ୍ତୁ । ଏମାନେ ସମସ୍ତେ ଆମକୁ କହୁଥାନ୍ତି ଆଉ କେତେ ଦିନର କଥା—"ଏ ତ ଯାଉଛୁ, ଜାପାନ ଆସିଲେ ଦେଖାଯିବ । ପୁଣି ଆମେ ଏଠିକି ଆସିବୁ ଯେ" ଏ ମନୋଭାବକୁ ଦୂର କରି ଜନ୍ତୁ ପରିବର୍ତ୍ତେ ସ୍ୱରାଜ୍ୟର ଚିହ୍ନ ସ୍ଥାପନ କରି ନିଜ ଦାବୀ ଉପରେ ଛିଡ଼ା କରାଇବା ସହଜ ବ୍ୟାପାର ନ ଥିଲା, ମାତ୍ର ଆମେ ସେଥିରେ ସମର୍ଥ ହୋଇଥିଲୁ । ଆମେ ସେ ଗ୍ରାମମାନଙ୍କ ଭିତରୁ ଗୋଟିଏ ଗାଁ ବାଣୀପଦାରେ ରହିଲୁ । ସେ ଗାଁବାଲା ଟିକିଏ ସାହସ ଧରିବାକୁ ଆମେ ଅଗ୍ରସର ହେଲୁ । ମୀରାବେନ୍ ସେଠାରେ ଥିବା ସାମରିକ ବିଭାଗର ଉଇଂଗ୍ କମାଣ୍ଡରଙ୍କ ସହିତ ପରିଚିତ ହେଲେ । ମୀରାବେନ୍ ନିଜେ ଭାରତୀୟ ନୌସେନା-ଅଧ୍ୟକ୍ଷଙ୍କ କନ୍ୟା ଥିବାରୁ ତାଙ୍କର ସାମରିକ ମହଲରେ ପ୍ରତିପତ୍ତି ଲାଭ କରିବା ସ୍ୱାଭାବିକ ଥିଲା । ଆମେ ମଧ୍ୟ କଲେକ୍ଟରଙ୍କ ସହିତ ଦେଖା-କଲୁ ଓ ତାଙ୍କୁ ଲୋକଙ୍କ ଅସୁବିଧା ବିଷୟ ବୁଝାଇଲୁ । ଶେଷରେ ଉଇଂଗ୍ କମାଣ୍ଡର୍ଙ୍କ ପରାମର୍ଶମତେ କଲେକ୍ଟର ଆଦେଶ ଦେଲେ ଯେ ବର୍ଷା ଶେଷ ପର୍ଯ୍ୟନ୍ତ ଲୋକେ ଗାଆଁ ଛାଡ଼ି ଯିବେ ନାହିଁ ଓ କ୍ଷତିପୂରଣ ମଧ୍ୟ ବିଧିମତେ ଦିଆଯିବ । ସେଥିପାଇଁ ମଧ୍ୟ ଜଣେ ସ୍ୱତନ୍ତ୍ର କର୍ମଚାରୀ ନିଯୁକ୍ତ କରି ସମୁଦାୟ ବିଷୟ ବୁଝିବାର ଠିକ୍ ହେଲା । ଯେଉଁ ସମୟରେ ଏ କାମରେ ଆମେ ନିଯୁକ୍ତ ଅଛୁଁ, ସେହି ସମୟରେ ନିକଟବର୍ତ୍ତୀ ଗ୍ରାମ ଚୌଦ୍ୱାରରେ ଏକ ଭୟାବହ ଘଟଣା ଘଟିଲା । ନିବାଙ୍କୁଡ଼ ଓ କୋଚିନ୍‌ରୁ ଯେଉଁ କୁଲିମାନେ ଆସିଥିଲେ, ସେମାନଙ୍କ ଭିତରୁ ଅନେକ କାରାମୁକ୍ତ ଅଭ୍ୟସ୍ତ ଚୋର ଓ ଡକାୟତ । କୁଲି ଯୋଗାଇବା ପାଇଁ ଭାରତ ସରକାରଙ୍କଠାରୁ ଯେତେବେଳେ ସେ ଗଡ଼ଜାତ ସବୁକୁ ନିର୍ଦ୍ଦେଶ ଯାଇଛି, ସେମାନେ ଜେଲ୍‌ରୁ ଅନେକ ବନ୍ଦୀଙ୍କୁ ଛାଡ଼ିଦେଇ କୁଲି କରି ପଠାଇ ଦେଇଛନ୍ତି । ଚୌଦ୍ୱାର ଗ୍ରାମ ଅପେକ୍ଷାକୃତ ଧନୀ । ସେଣୁ କୁଲିମାନେ ଦିନେ ସକାଳବେଳା ସେ ଗ୍ରାମ ଏପରି ଭାବରେ ଲୁଟ୍ କରି ନେବା ପାଇଁ ବନ୍ଦୋବସ୍ତ କଲେ ଯେ, ସେଠା ସ୍ଥାନୀୟ ଲୋକେ କିଛି କରି ପାରିଲେ ନାହିଁ । ବଡ଼ ବଡ଼ ଟେକା ପଥର ଫୋପାଡ଼ା ଚାଲିଥାଏ, ଏଠି ସେଠି ଘରେ ନିଆଁ ଲଗାଇ ଦିଆହେଉଥାଏ, ତା'ପରେ ଲୁହା ଦଣ୍ଡୀରେ ମାଡ଼ ଦିଆ ହେଉଥାଏ, ଏଣେ ଲୁଟ୍ ଚାଲିଥାଏ । ସେଠାରେ ପୋଲିସ୍ ନ ଥାନ୍ତି । ଶେଷରେ ସୈନ୍ୟମାନେ ଆସି ଏ କୁଲିମାନଙ୍କୁ ବନ୍ଧୁକ ଦେଖାଇବାରୁ ସେମାନେ ଭୟରେ ଛାଡ଼ି ପଳାଇଲେ, ମାତ୍ର ପ୍ରାୟ ପାଞ୍ଚଶହ ଘର ପୋଡ଼ିଗଲା, ବହୁତ ଲୋକଙ୍କ ଘର ଲୁଟ୍‌ପାଟ୍ ହୋଇଗଲା—ଅନେକ ଆହତ ହେଲେ । ଏତେ ବାହାରର ଅଜ୍ଞାତ-କୁଳଶୀଳ କୁଲି ସେଠି ଅଛନ୍ତି, ଅଥଚ ପୋଲିସ୍‌ର ବନ୍ଦୋବସ୍ତ ନାହିଁ । ଏଣେ ଲୋକେ ଆତ୍ମରକ୍ଷା ପାଇଁ ସ୍ୱେଚ୍ଛାସେବକ ସଂଗ୍ରହ କରିବାରେ ଆପତ୍ତି ହେଉଛି, କୌଣସି ସରକାର ସାଧାରଣ ଲୋକଙ୍କ ପ୍ରତି ଏତେ ଅବହେଳା ଦେଖାଇ

ସେମାନଙ୍କୁ ଏତେ ଅସ୍ୱାସ୍ଥ୍ୟ ଅବସ୍ଥାରେ ରଖିବ ନାହିଁ। ଏ ଘଟଣା ପରେ ପୋଲିସ୍ ଆସି ଲୁଟ୍ ହୋଇଥିବା ମାଲ୍ ଅନେକ ବାହାର କରି ବହୁ କୁଲିଙ୍କୁ ଗିରଫଦାର କରି ଚାଲାଣ କଲେ। ଏଣେ ସେ ଗାଆଁ ଗ୍ରାମ୍ୟ ଲୋକେ କୁଆଡ଼େ ପଳାଇ ଥାଆନ୍ତି। ଏ ଗାଆଁରେ ଦୁଃସ୍ଥ ଲୋକଙ୍କୁ ସାହାଯ୍ୟ ଦେବାର ବନ୍ଦୋବସ୍ତ ଆମେ କରିବାର ଲାଗିଲୁ। ଏହି ସମୟରେ ଆଉ ଏକ ପ୍ରଶ୍ନ ଆମେ ଉଠାଇଲୁ—ସେ ହେଉଛି ଯେ ଓଡ଼ିଶାରୁ ହଜାର ହଜାର କୁଲି କାମ ନ ପାଇ କଲିକତାରୁ ଫେରି ଆସୁଥିବା ସ୍ଥଳେ ନିବାଙ୍କୁଡ଼ ଓ କୋଚିନ୍‌ରୁ କାହିଁକି କୁଲି ଆସୁଛନ୍ତି। ଏ ବିଷୟରେ ସାମରିକ କର୍ତ୍ତୃପକ୍ଷ, କଲେକ୍ଟର ଓ ଆମ ଭିତରେ ଆଲୋଚନା ହେଲା। ଓଡ଼ିଆ କୁଲି ବାରଅଣା ମଜୁରିରେ ଯେତେ ସଂଖ୍ୟାରେ ଦରକାର, ତେତେ ମିଳିବେ ବୋଲି ଆମେ ଜବାବ୍ ଦେଲୁଁ। ଆମ କଥା ଅନୁସାରେ ଠିକ୍ ହେଲା ଯେ ସ୍ଥାନୀୟ କୁଲି ନିଆହେବେ—ବାହାର କୁଲିଙ୍କୁ ଫେରାଇ ଦିଆହେବ, ମାତ୍ର ଏ କୁଲି ବିଭାଗର କର୍ତ୍ତା କିଏ, ତା' କଲେକ୍ଟର ବା ସାମରିକ ବିଭାଗ କେହି ଜାଣି ନ ଥିଲେ। ହଜାର ହଜାର କୁଲି ଆସି ରହୁଛନ୍ତି, ସେମାନଙ୍କ ପାଇଁ ସ୍ୱାସ୍ଥ୍ୟରକ୍ଷାର ବନ୍ଦୋବସ୍ତ ନାହିଁ, ପିଇବାପାଇଁ ପାଣିର ବ୍ୟବସ୍ଥା ନାହିଁ। ନାଲି ଝାଡ଼ା, ଟାଇଫଏଡ୍ ଜ୍ୱର ଏ ସବୁ ଆରମ୍ଭ ହେଲାଣି। ଏକଥା ସାମରିକ କର୍ତ୍ତୃପକ୍ଷଙ୍କ ନଜରକୁ ଆମେ ଆଣିବାରୁ ସେ କଟକରୁ ମେହେନ୍ତର ଅଣାଇ ସଫା ସୁତୁରାର ବ୍ୟବସ୍ଥା କଲେ, ମାତ୍ର ଡାକ୍ତରଖାନାର ବ୍ୟବସ୍ଥା ହୋଇ ନ ଥାଏ। ଏତେ ବିଶୃଙ୍ଖଳ ଭାବରେ ଯୁଦ୍ଧ ଉଦ୍ୟମ ହେବାର କଳ୍ପନା ସୁଦ୍ଧା ମୋର ନ ଥିଲା। ଏତେ ଅପାରଗତା, ଏତେ ବିଶୃଙ୍ଖଳତା, ଏଥିରେ ଯୁଦ୍ଧରେ ଜିଣିବେ କିପରି? ଏହା ହିଁ ମୋ ମନରେ ପ୍ରଶ୍ନ ଉଠୁଥାଏ। ପାଣିପରି ପଇସା ଖର୍ଚ୍ଚ ହେଉଥାଏ, ଅଥଚ କୌଣସି ଶୃଙ୍ଖଳା ନାହିଁ—କୌଣସି ନିୟମ ନାହିଁ—ଆଶ୍ଚର୍ଯ୍ୟ!!!

ଏହି ଚୌଦ୍ୱାରକୁ ଗୋରଖପୁରରୁ ପାଞ୍ଚଶହ କୁଲି ଆସିଥିଲେ। ସେମାନେ ସମସ୍ତେ ବଡ଼ କଂଗ୍ରେସଭକ୍ତ। ଆମଠାକୁ ଆସି କଂଗ୍ରେସ-କଥା ଗାନ୍ଧିଜୀଙ୍କ କଥା ଶୁଣୁଥାନ୍ତି। ଆମକୁ ଦେଖିଲେ କାମ ଉପରେ ଥିଲେ ମଧ୍ୟ 'ଜୟ ମହାତ୍ମା ଗାନ୍ଧୀକି ଜୟ' ଧ୍ୱନି କରନ୍ତି।

ଚୌଦ୍ୱାର ଅବସ୍ଥା ଦେଖି ମୀରାବେନ୍ ଭାବିଲେ ଯେ, ସେଇଠି କିଛିଦିନ ରହିବାକୁ ହେବ। ଏଣୁ ଏକ କୁଡ଼ିଆ ତୋଳିବାର ବ୍ୟବସ୍ଥା କଲୁ, ମାତ୍ର ଓଡ଼ିଶାର ଅବସ୍ଥା ଗାନ୍ଧିଜୀଙ୍କୁ ଜଣାଇବାକୁ ଓ ତେଣେ ଓ୍ୱାର୍ଦ୍ଧାଠାରେ ବସୁଥିବା କଂଗ୍ରେସ କାର୍ଯ୍ୟନିର୍ବାହକ ସମିତି ବୈଠକରେ ଯୋଗ ଦେବାକୁ ପଡ଼ିବାରୁ ଆମେ ଦୁହେଁ

ଓ୍ୱାର୍କ୍‌ ଗଲୁ । ବାଟରେ ବାଲେଶ୍ୱରରେ ଦିନେ ରହି ସେଠାରେ ନୌକା ଛଡ଼ାଇବା ସମ୍ବନ୍ଧରେ ଅନୁସନ୍ଧାନ କରିଥିଲୁ । ତା'ପରେ ଝାରସୁଗୁଡ଼ାରେ ସେଠା ଏରୋଡ୍ରମ୍ ବିଷୟରେ ଅନୁସନ୍ଧାନ କରୁଥିଲୁ । ଅତି ଦୁଃଖର ସହିତ ଜାଣିଲୁ ଯେ, ସେଠାରେ ଲୋକଙ୍କୁ ଯଥେଷ୍ଟ କ୍ଷତିପୂରଣ ନ ଦେଇ ସେମାନଙ୍କ ଜମି ନିଆ ଯାଇଛି ଓ ଲୋକେ କପାଳକୁ ଆଦରି ଯାହା ମିଳିଲା, ତାକୁ ନେଇ ଦୀର୍ଘ ନିଃଶ୍ୱାସ ପକାଉଛନ୍ତି ।

ଏ ଅସହାୟ ଅବସ୍ଥା ଦେଖି ଦୁଃଖ ହେଲା ଏବଂ ଲୋକଙ୍କ ସ୍ୱାର୍ଥପ୍ରତି ଆଦୌ ଦୃଷ୍ଟି ନ ଦେଇ କେବଳ ସୈନ୍ୟ ସାହାଯ୍ୟରେ ସରକାର ଚାଲୁଛି ବୋଲି ପୂରା ଧାରଣା ହୋଇଗଲା । ଲୋକଙ୍କୁ ଆମେ ସାହସ ଦେଇ ଆସିଲୁ ଓ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଆଶା ଦେଇ ଆସିଲୁ ।

ଏହି ସମୟରେ ଓଡ଼ିଶା କଂଗ୍ରେସର ଅବସ୍ଥା ଏପରି ଥାଏ ଯେ, ଯେତେ କାମ ଉପରେ ପଡ଼ିଥାଏ ସେଥିପାଇଁ କର୍ମୀ ନଥାନ୍ତି । ଅବସ୍ଥା ବିବେଚନାରେ କଂଗ୍ରେସ ଅନୁଷ୍ଠାନ ଅତି ଦୁର୍ବଳ ଓ ଶ୍ଳଥ ବୋଲି ଅନୁଭୂତ ହେଉଥାଏ । ଅବସ୍ଥା ବିରୋଧରେ ମଧ୍ୟ ଲଢ଼ିବାକୁ ପଡ଼ୁଥାଏ । ଏହା ସାଙ୍ଗକୁ ମିଶିଥାଏ ଉତ୍କଟ ଅର୍ଥାଭାବ । ଗୁରିଆଡ଼େ ଲୋକ ଆତଙ୍କିତ ଓ ଅସ୍ଥିର—କଂଗ୍ରେସ ମେମ୍ବର ହେଉ ନାହାନ୍ତି, ହେବାପାଇଁ ବା କିଏ ଯାଇ ଏ ଅବସ୍ଥାରେ ସେମାନଙ୍କୁ କହିବ ! ବ୍ୟବସାୟୀମାନେ ଭୟରେ ପଳାଇଛନ୍ତି । ଚାନ୍ଦା ବା ଦେଉଛି କିଏ ? କଂଗ୍ରେସ ହାତରେ ଅର୍ଥ ନ ଥାଏ । ମୁଁ ନିଜେ ମଧ୍ୟ ମୋର ଆୟଠାରୁ ବ୍ୟୟ ବେଶୀ କରି କରି ଶେଷରେ ନିରସ୍ତ ହୋଇ-ପଡ଼ିଥାଏ । ତଥାପି ଏହା ଭିତରେ ଗତି କରିବାକୁ ପଡ଼ୁଥାଏ । ଏ ମଧ୍ୟରେ 'ରଚନା'ରେ ଦ୍ରୁପ୍ ଇଂଲଣ୍ଡ ମଧ୍ୟରେ ହୋଇଥିବା ଚୁକ୍ତିନାମାକୁ ସମାଲୋଚନା କରି ଏକ ପ୍ରବନ୍ଧ ଲେଖିଲି । ସେଥିପାଇଁ ସରକାରଙ୍କଠାରୁ ସାବଧାନ ବାଣୀ ଆସିଛି ଯେ, ଯେପରି ଲେଖା ପୁଣି ବାହାରିଲେ କାଗଜ ବନ୍ଦ କରି ଦିଆଯିବ । ମାଁଗ୍ରେନେନ୍‌ଙ୍କ ସହିତ ଯେତେଦିନ ମୁଁ କାମ କରିଛି, ସେତେଦିନ ଖୁବ୍ ଉତ୍ସାହିତ ଅନୁଭବ କରିଛି । ତାଙ୍କର କାର୍ଯ୍ୟ କରିବା ରୀତି ସହିତ ମୋର କାର୍ଯ୍ୟ କରିବା ରୀତି ପୂରା ଖାପ ଖାଉଥିଲା—ଏହା ମୋ ପକ୍ଷରେ ଅତି ଆନନ୍ଦର ବିଷୟ ଥିଲା । କେବଳ ସେତିକି ନୁହେଁ, କିଛିଦିନ ଏକ ସଙ୍ଗରେ କାମ କରିବା ଫଳରେ ଆମେ ପରସ୍ପରକୁ ଭାଇ ଭଉଣୀ ପରି ମନେକରି ଅତି ନିଜର ଲୋକ ଭଳି ହୋଇଗଲୁ । ସେ ଅନେକ ସମୟରେ ମୋତେ ଅନ୍ୟମନସ୍କ ହେଉଥିବାର ଲକ୍ଷ୍ୟ କରି ମୋ ମନ ଭିତରେ କାର୍ଯ୍ୟ କରୁଥିବା ସମସ୍ତ ବିକ୍ଷେପ ଜାଣିବା ପାଇଁ ଚେଷ୍ଟାକରି ସଫଳକାମ ହୋଇଥିଲେ । ସାଧାରଣତଃ ମୋ ମନକଥା ମୁଁ କାହାକୁ ଖୋଲି କହିବାକୁ ସଙ୍କୋଚ ବୋଧ

କରେ—ମାତ୍ର ଏଠି ସଙ୍କୋଚିତ ରହିଲା ନାହିଁ । ମୋର ପାରିବାରିକ ସ୍ଥିତି ସମ୍ବନ୍ଧରେ ସେ ଅତି କୁତୂହଳୀ ହୋଇ ମୋତେ ପଚାରି ବୁଝିଲେ । ତାଙ୍କ ନାରୀ ହୃଦୟ ସ୍ୱତଃ ସୁଭଦ୍ରା ଦେବୀଙ୍କ ପ୍ରତି ଅନୁକମ୍ପାରେ ପୂରିଗଲା । ପ୍ରତି ମାସରେ କିଛିଦିନ ସୁଭଦ୍ରାଦେବୀଙ୍କ ପାଖରେ ରହି ତାଙ୍କର ତତ୍ତ୍ୱ ନେବା ବୁଝିବା ଉଚିତ ବୋଲି ସେ ଜିଦ୍ କଲେ । ମୁଁ ନିଜକୁ ନିଜେ ଦୋଷୀ ବୋଲି ମନେ କରୁଥାଏ । ମୋ ଜୀବନର ସେହି ହେଉଛି ଅତି ଦୁର୍ବଳ ବିନ୍ଦୁ । ଯେତେବେଳେ ରାଜନୀତିର ଉଚ୍ଛ୍ୱାସ ଟିକିଏ କମିଯାଏ, ସେତେବେଳେ ଏକ ଶୂନ୍ୟଭାବ ମନକୁ ଗ୍ରାସ କରିଯାଏ । ପଛକଥା ସବୁ ଭୁଲିହୁଏ, ମାତ୍ର ପଛକୁ ଫେରିବାର ବାଟ ଆଉ ନାହିଁ । ଓ୍ୱାର୍ଦ୍ଧା ଯିବା ପୂର୍ବରୁ ଥରେ ଗାଆଁକୁ ଯାଇ କର୍ମ-ମନ୍ଦିର ବିଷୟ ବୁଝିବା ସଙ୍ଗେ ସଙ୍ଗେ ସୁଭଦ୍ରାଦେବୀଙ୍କୁ କହି ଆସିଥିଲି ‘ଏଥର ଯେଉଁ ଆନ୍ଦୋଳନ ହେବ, ସେଥିରେ ହୁଏତ ପ୍ରାଣଘେନି ଟଣାଟଣି ପଡ଼ିବ ।’ ଏଥିରେ ସେ ମୁହଁ ଶୁଖାଇ ଦେଇ ଅଶ୍ରୁ ବିସର୍ଜନ କରିଥିଲେ । ତା’ ମନର ଭାବ ଛବିପରି ମୋ ଆଗରେ ଚଳିତ ହୋଇ ଯାଉଥାଏ । ଏକ ମହାନୈରାଶ୍ୟରେ ଜୀବନ ତା’ ପକ୍ଷରେ କେତେ ଦୁର୍ବହ ହୋଇଥିବ—ମୁଁ ଅନୁମାନ କରିପାରୁଥାଏ—ମାତ୍ର ମୁଁ ନିରୁପାୟ, ମୋ ଜୀବନ ମଧ୍ୟ ନୈରାଶ୍ୟମୟ ।

ମୁଁ ଓ ମୀରାବେନ୍ ସାଙ୍ଗ ହୋଇ ଓ୍ୱାର୍ଦ୍ଧା ଗଲୁ । ଏଥର ସବୁଥର ପରି ଯମୁନାଲାଲ ବଜାଜଙ୍କ ଅତିଥି ନ ହୋଇ ସେବାଗ୍ରାମରେ ଗାନ୍ଧିଜୀଙ୍କ ସହିତ ରହିଥିଲି । ଯମୁନାଲାଲ ବଜାଜ୍ ଆଉ ନାହାନ୍ତି । ତାଙ୍କ ବିନା ଓ୍ୱାର୍ଦ୍ଧା ଶୂନ୍ୟ ଦେଖା-ଯାଉଥାଏ, ମାତ୍ର ତାଙ୍କ ପରେ କାର୍ଯ୍ୟନିର୍ବାହକ ସମିତିର ସଭ୍ୟମାନଙ୍କ ରହିବା ଖାଇବା ପାଇଁ ବ୍ୟବସ୍ଥା କରିବାକୁ ସେ ମୃତ୍ୟୁପୂର୍ବରୁ ତାଙ୍କ ପୁଅକୁ ଆଦେଶ ଦେଇ ଯାଇଥିଲେ । ତାହା ନିୟମିତ ରୂପେ ପାଳିତ ହେଉଛି । ସେବାଗ୍ରାମରେ ଗାନ୍ଧିଜୀ ଯେଉଁ କୁଡ଼ିଆରେ ରହନ୍ତି, ତାହାର ଗୋଟିଏ କୋଣରେ ମୀରାବେନ୍ ରହିଲେ । ମୁଁ ଆଉ ଗୋଟିଏ କୋଣରେ ରହିଲି । ମଝିରେ ରହିଲେ ଗାନ୍ଧିଜୀ । ଦଶଦିନ ଗାନ୍ଧିଜୀଙ୍କ ସହିତ ଏତେ ନିକଟରେ ରହିବାର ସୁବିଧା ଓ ସୁଯୋଗ ପାଇ ମୁଁ ନିଜକୁ ଧନ୍ୟ ମନେ କରୁଥାଏ । ଗାନ୍ଧିଜୀଙ୍କ ଚିନ୍ତାର ଧାରା କିପରି ଗତି କରୁଥାଏ—ବିଶାଳ ଭାରତର ଚିନ୍ତା କରି ସୁଦ୍ଧା ଆମେରିକାର ପ୍ରେସିଡେଣ୍ଟ ରୁଜ୍‌ଭେଲ୍‌ଟ୍, ଚୀନ୍‌ର ଅଧ୍ୟକ୍ଷ ଚାଙ୍ଗ୍‌କାଇସେକ୍‌ଙ୍କ ସହିତ ବନ୍ଧୁ ହିସାବରେ ଚିଠିପତ୍ର ଲେଖି ଭାରତର ଦାବୀକୁ ଧୀରେ ଧୀରେ ଦୃଢ଼ ଭାବରେ ଅବଗତ କରାଇବାରେ ଧ୍ୟାନ ଦେଇ ମଧ୍ୟ ସେ ଆଶ୍ରମର ଅତି କ୍ଷୁଦ୍ର କ୍ଷୁଦ୍ର ବିଷୟ—ସ୍ୱାମୀ ସ୍ତ୍ରୀ ଭିତରେ ମନୋମାଳିନ୍ୟ, କାହାର ଶରୀରର ଅସୁସ୍ଥତା, କାହାର ମନର ବିକାର ଏ ସବୁ ପ୍ରତି ଠିକ୍ ସେହିପରି ଚିନ୍ତା ଓ

ଧ୍ୟାନ ସେ ଦେଇପାରୁଥିଲେ । ଏତେ ବିଶାଳ ସେ ମସ୍ତିଷ୍କ ଓ ତାଙ୍କ ହୃଦୟ !! କେତେ ଦୁର୍ବଳତା ନିତାନ୍ତ ଉଲଗ୍ନ ଭାବରେ ତାଙ୍କ ଆଗେ ଧରା ପଡ଼ୁଥାଏ, ମାତ୍ର ସେ ସେଥିରେ ଦୁଃଖିତ ବା ବିରକ୍ତ ନ ହୋଇ ଦୁର୍ବଳ ଲୋକଙ୍କୁ ଏତେ ସ୍ନେହଭରେ ସୁଧାରିବା ପାଇଁ ଚେଷ୍ଟା କରନ୍ତି, ମୁଁ ଦେଖି ବିସ୍ମିତ ହୋଇଯାଉଛି । ମୋର ଥିବା ସମୟରେ ଗୋଟିଏ ବଡ଼ଟି ଘଟଣା ମୋ ଆଖି ଆଗରେ ଯାହା ଘଟିଲା, ସେଥିରେ ମୋ ହୃଦୟ ଗାନ୍ଧିଜୀଙ୍କ ପଦତଳେ ଲୋଟିଗଲା । ମୀରାବେନ୍‌ଙ୍କଠାରୁ ଓଡ଼ିଶା ବିଷୟ ଓ ମୋ ବିଷୟ ଗାନ୍ଧିଜୀ ସକାଳେ ତେଲ ମାଲିସ୍ ହେବାବେଳେ ମୋର ଅନୁପସ୍ଥିତିରେ ଶୁଣିଲେ । ମୀରାବେନ୍‌ଙ୍କଠାରୁ ମୁଁ ଶୁଣିଲି ଯେ, ଗାନ୍ଧିଜୀ ସବୁ ଶୁଣି ସନ୍ତୁଷ୍ଟ ହେଲେ । ଓଡ଼ିଶା କଥାକୁ ଆଖି ଆଗରେ ରଖି ଯୁଦ୍ଧ ଉଦ୍ୟମ ସମ୍ବନ୍ଧରେ ଗୋଟିଏ ପ୍ରସ୍ତାବ ଚଠା କରିବାକୁ ଗାନ୍ଧିଜୀ ମୋତେ କହିଲେ । ତଦନୁସାରେ ମୁଁ ଲେଖିଲି । ତାକୁ ସେ ସଂଶୋଧନ କଲେ ଓ ତାହା କାର୍ଯ୍ୟନିର୍ବାହକ ସମିତିରେ ଆଲୋଚିତ ହୋଇ ସାମାନ୍ୟ କେତେକ ପରିବର୍ତ୍ତନ ପରେ ଗୃହୀତ ହେଲା । ତା'ପରେ ଗାନ୍ଧିଜୀଙ୍କ ମୂଳ ପ୍ରସ୍ତାବ ଯେଉଁଥିରେ ଇଂରେଜ ଭାରତ ଛାଡ଼ିଯିବା ବିଷୟ ରହିଛି, ଯାହା ନ ହେଲେ ବିଶାଳ ଗଣଆନ୍ଦୋଳନର ନିର୍ଦ୍ଦେଶ ଅଛି, ଆଠଦିନକାଳ ସକାଳ ଓଳି ଉପରଓଳି ଏ ପ୍ରସ୍ତାବ ଆଲୋଚିତ ହେଲା । ପ୍ରତ୍ୟେକ ଶବ୍ଦ ଓ ସେଥିରୁ ବାହାରୁଥିବା ଅର୍ଥ ଓ ତା'ର ପ୍ରତିକ୍ରିୟା ସମ୍ବନ୍ଧରେ ଆଲୋଚନା ଚାଲିଲା । ସମିତିର ଆଲୋଚ୍ୟ ବିଷୟ ପ୍ରକାଶ୍ୟ ନୁହେଁ, ତେଣୁ ମୁଁ ତାହା କେଉଁଠି ହେଲେ ଏ ଲେଖାରେ ପ୍ରକାଶ କରୁନାହିଁ । ମାତ୍ର ଗାନ୍ଧିଜୀଙ୍କ ହୃଦୟ ଏକ ଜଳନ୍ତା ଅଙ୍ଗାର ଭଳି ଦପ୍‌ଦପ୍ କରୁଥିବାର ମୁଁ ଅନୁଭବ କରୁଥାଏ । ଇଂରେଜ ନ ଗଲେ ଏ ଦେଶର ମଙ୍ଗଳ ନାହିଁ ଓ ସେମାନଙ୍କୁ ବିଦାୟ ଦେବା ପାଇଁ ଦେଶକୁ ସମସ୍ତ ଶକ୍ତିଦେଇ ଲଢ଼ିବାକୁ ହେବ । ଏଥିରେ ଗାନ୍ଧିଜୀ ଏତେ ଦୃଢ଼ ଯେ, ଶେଷରେ ସେ ସମସ୍ତଙ୍କୁ ବୁଝାଇ ସେମାନଙ୍କ ସ୍ଥିତିରୁ ସେମାନଙ୍କୁ କିଛିଦୂର ହଟାଇ ନିଜେ ମଧ୍ୟ ନିଜ ସ୍ଥିତିରୁ କିଛି ହଟି ଭାରତରେ ଯୁଦ୍ଧ ଶେଷ ପର୍ଯ୍ୟନ୍ତ ମିଳିତ ରାଜ୍ୟମାନଙ୍କ ସୈନ୍ୟ ରହିବାରେ ରାଜି ହୋଇ ଇଂରେଜ ଏ ଦେଶରୁ ଅପସରି ନ ଗଲେ ୧୯୨୧ ମସିହାରୁ ସଞ୍ଚିତ ସମସ୍ତ ଅହିଂସାତ୍ମକ ଶକ୍ତିଦେଇ କଂଗ୍ରେସ ଆନ୍ଦୋଳନ ଚଳାଇବାର ପ୍ରସ୍ତାବ ଗୃହୀତ ହେଲା । ଏ ପ୍ରସ୍ତାବ ନିଖିଳ ଭାରତ କଂଗ୍ରେସ କମିଟି ଦ୍ୱାରା ଗୃହୀତ ହେବା ପର୍ଯ୍ୟନ୍ତ କାର୍ଯ୍ୟକାରୀ ନ ହେବାର ମଧ୍ୟ ସ୍ଥିର ହେଲା । ପନ୍ଦର ଦିନ ପରେ ବମ୍ବେଠାରେ ନିଖିଳଭାରତ କଂଗ୍ରେସ କମିଟିର ବୈଠକ ହେବାର କଥା ହେଲା ।

ଏ ଗଣ-ଆନ୍ଦୋଳନ କିପରି ଆରମ୍ଭ ହେବ, ଏହାର କାର୍ଯ୍ୟକ୍ରମ କଅଣ ବା ହେବ, ଏ ବିଷୟରେ ଗାନ୍ଧିଜୀଙ୍କୁ ସମସ୍ତେ ପଚାରିଲେ, ମାତ୍ର ସେ ବରାବର

କହୁଥାନ୍ତି ଯେ, ସେ ନିଜେ କିଛି ଭାବି ନାହାନ୍ତି । ଅବସ୍ଥା ଚକ୍ରରେ ଯାହା ତାଙ୍କୁ ଦେଖାଯିବ, ସେ ସେହିପରି ଗତି କରିବେ । ଏଥିରେ କେହି ସନ୍ତୁଷ୍ଟ ହେଲେ ନାହିଁ, ଶେଷରେ ଗାନ୍ଧିଜୀ କହିଲେ ଯେ, ଆନ୍ଦୋଳନ ହରତାଳଠାରୁ ଆରମ୍ଭ ହେବ ଓ ଏଥିରେ ପିକେଟିଂଠାରୁ ଆରମ୍ଭ କରି ଖଜଣା ଟିକସ ବନ୍ଦ କରିବା ପର୍ଯ୍ୟନ୍ତ ହେବ । ସ୍କୁଲ କଲେଜ ଛାଡ଼ିବା ଓ ସରକାରୀ ଚାକିରି ଛାଡ଼ିବା ମଧ୍ୟ ଏଥିର ଅନ୍ତର୍ଭୁକ୍ତ, ମାତ୍ର କେଉଁ ଅବସ୍ଥାରେ କିପରି ସବୁ ଚାଲୁ ହେବ, ତାହା ସେ ସ୍ଥିର କରିବେ । ପ୍ରଥମେ ହରତାଳ ଉପରେ ଦୃଷ୍ଟି ଦେବାପାଇଁ ସେ ସମସ୍ତଙ୍କୁ କହିଲେ । ଏହା ମଧ୍ୟ ସମସ୍ତଙ୍କୁ ସନ୍ତୋଷ ଦେଲା ନାହିଁ । ତେଣୁ କାର୍ଯ୍ୟ-ନିର୍ବାହକ ସମିତି ଶେଷରେ ଅନେକ ସଦସ୍ୟ ସେବାଗ୍ରାମକୁ ଆସି ଗାନ୍ଧୀଜୀଙ୍କୁ ପୁଣି ପଚାରିଲେ । ସେ ଏହି କଥାବାର୍ତ୍ତାରେ ଧାରଣା ଦେଲେ ଯେ କାର୍ଯ୍ୟରେ ହିଂସା ନ କରି ଯେତେ ପ୍ରକାର ଆନ୍ଦୋଳନ ମନକୁ ଉଠୁଛି ତା କରାଯାଇ ପାରେ, ମାତ୍ର ଯେ ଯାହା କରିବ ତା'ର ଦାୟିତ୍ୱ ସେ ନିଜେ ଯେପରି ନିଏ ଓ ତାହା ଅନ୍ୟ ଉପରେ ଯେପରି ନ ପଡ଼େ, ଏହା ଉପରେ ଖୁବ୍ ଜୋର୍ ଦେଇଥିଲେ । ଏହା ପରେ ସମସ୍ତେ ସେ ଯାହାର ପ୍ରଦେଶକୁ ଫେରିଲେ । ଗାନ୍ଧିଜୀ ମୀରାବେନ୍‌ଙ୍କୁ ଦିଲ୍ଲୀ ପଠାଇଲେ, ସେଠାରେ ସାମରିକ କର୍ତ୍ତୃପକ୍ଷ ଓ ବଡ଼ଲାଟ ମହଲରେ ଗାନ୍ଧିଜୀଙ୍କ ଚିନ୍ତାର ଧାରା ବୁଝାଇବାପାଇଁ । ମୀରାବେନ୍ ଦିଲ୍ଲୀ ଯିବା ପୂର୍ବରୁ ମୋତେ ବାରମ୍ବାର କହିଗଲେ ଯେ ବମ୍ବେ ଆସିବା ପୂର୍ବରୁ ଥରେ ମୁଁ ଯେପରି ତାଙ୍କୁ ପାଇ ସୁଭଦ୍ରା ଦେବୀଙ୍କ ସହିତ ସାକ୍ଷାତ କରି ଆସେ । ମୁଁ ଓଡ଼ିଶା ଫେରିଲି । କାର୍ଯ୍ୟନିର୍ବାହକ ସମିତିର ପ୍ରସ୍ତାବ ଓ ଆଲୋଚନାକୁ ସବୁ ଜିଲ୍ଲାର କର୍ମୀମାନଙ୍କୁ ଜଣାଇଲି । ଇତିମଧ୍ୟରେ ବ୍ୟବସ୍ଥାସଭା ପାଇଁ ଗୋଟିଏ ନିର୍ବାଚନରେ ଦିନେ ଦୁଇଦିନ ବୁଲି ପ୍ରଚାର କରିବାକୁ ପଡ଼ିଥିଲା । ତେଣେ ଚୌଦ୍ୱାରରେ ଯେ କାର୍ଯ୍ୟ ଆରମ୍ଭ କରାଯାଇଥିଲା, ତା'ର ଖବର ନେବାକୁ ହେଲା । ସୁବିଧାଟା ଭଳି ଓଡ଼ିଶାରେ ଥିବା ଗୋରା ମହଲରେ ଗାନ୍ଧିଜୀଙ୍କ ଇଂରେଜ ଅପସରିଯିବା ପ୍ରସ୍ତାବର ପ୍ରଚାର କରାଇଲି—ଖବରକାଗଜ ଜରିଆରେ ଏହାର ଆନୁ-ଷଙ୍ଗିକ ବିଷୟରେ ଆଲୋଚନା କଲି । ଇତିମଧ୍ୟରେ ଭାରତସରକାରଙ୍କ ଦପ୍ତରରୁ ଆସିଥିବା ଗୋଟିଏ ଗୋପନୀୟ ପତ୍ର ଅତି ଅପରିଚିତ ଜଣେ ବ୍ୟକ୍ତି ମୋତେ ନିରୋଳାରେ ଦେଇଗଲେ । ଏଥିରେ କଂଗ୍ରେସକୁ କିପରି ଲୋକଚକ୍ଷୁରେ ହୀନ ପ୍ରତିପନ୍ନ କରିବାକୁ ହେବ, ତା'ର ସୂଚନା ଦିଆ ହୋଇଥିଲା । ତେଣେ ଓଡ଼ିଶାର ଭୂତପୂର୍ବ ଲାଟ୍ ସାର୍ ଜନ୍ ହବାକ୍ ବିଲାତ ଯାଇ ସେଠି ଓଡ଼ିଶା ଗଡ଼ଜାତ-ରାଜା ଓ ଓଡ଼ିଶାର ବଡ଼ ବଡ଼ ଜମିଦାରମାନଙ୍କ ପକ୍ଷ ସମର୍ଥନ କରି କଂଗ୍ରେସକୁ ତିରସ୍କାର କରି ଏକ ବକ୍ତୃତା ଦେଇଛନ୍ତି । ତାହା ଟାଇମ୍‌ସ ଅଫ୍ ଇଣ୍ଡିଆରେ ପ୍ରକାଶିତ ହୋଇଛି । ତା'ର ଏକ ଉତ୍ତର ଲେଖିବା ପାଇଁ ଗାନ୍ଧିଜୀ ମୋତେ ନିର୍ଦ୍ଦେଶ ଦେଇଥିଲେ । ଗଡ଼ଜାତ

ଆନ୍ଦୋଳନରେ ସମସ୍ତ କାଗଜପତ୍ର ଓଲଟାଇ ଏକ ଉତ୍ତର ଲେଖିବାକୁ ପଡ଼ିଲା । ତାହା ଟାଇମ୍ସ ଅଫ୍ ଇଣ୍ଡିଆରେ ପ୍ରକାଶିତ ହୋଇଥିଲା ଓ ଏହା ଯଥାର୍ଥ ଉତ୍ତର ହୋଇଛି ବୋଲି ମନ୍ତବ୍ୟ ପ୍ରକାଶିତ ହୋଇଥିଲା । ଏ ସବୁ କାମରେ ରହି ମୁଁ ଆଉ ଗାଁକୁ ଯାଇ ପାରିଲି ନାହିଁ । ତେଣେ ବମ୍ବେ ବୈଠକକୁ ଯିବାକୁ ପଡ଼ିଲା । ବମ୍ବେ ନିଖିଳ ଭାରତ କଂଗ୍ରେସ କମିଟିରେ ଗାନ୍ଧିଜୀ ପ୍ରାୟ ଦେଢ଼ଘଣ୍ଟା ପର୍ଯ୍ୟନ୍ତ କହିଛନ୍ତି—ଇଂରେଜଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ତାଙ୍କର ହିତଦୃଷ୍ଟିରୁ ସେମାନେ ଏ ଦେଶରୁ ଅପସରିଯିବା ଉଚିତ ବୋଲି ସେ ହୃଦୟର ସଞ୍ଚିତ ମତ ବ୍ୟକ୍ତ କରିଥିଲେ, ତା'ପରେ ସେ ଲୋକ-ମାନଙ୍କୁ ଦେଶର ମୁକ୍ତିପାଇଁ ଆତ୍ମବଳି ଦେବାକୁ ପ୍ରସ୍ତୁତ ହେବାପାଇଁ ସୂଚନା ଦେଇ ଥିଲେ । ସରକାରୀ କର୍ମଚାରୀମାନଙ୍କ କଂଗ୍ରେସ ପ୍ରତି ସହାନୁଭୂତି ରହିି ଦରକାର ପଡ଼ିଲେ ଚାକିରି ଛାଡ଼ିଦେବା ପାଇଁ ପ୍ରସ୍ତୁତ ହେବାକୁ ସାବଧାନ କରାଇଥିଲେ । କଟକରେ ଭାରତ ସରକାରଙ୍କର ଯେଉଁ ଗୋପନୀୟ ନିର୍ଦ୍ଦେଶ ପତ୍ର ମୋ ହାତରେ ପଡ଼ିଥିଲା ମୁଁ ତାକୁ ଗାନ୍ଧିଜୀଙ୍କୁ ଦେଇ ଦେଇଥିଲି । ଗାନ୍ଧିଜୀ ସେ ପତ୍ର ଓ ତା'ଉପରେ ମନ୍ତବ୍ୟ ଲେଖି ପ୍ରକାଶ କରି ଦେଇଥିଲେ । ତାଙ୍କ ମନ୍ତବ୍ୟରେ ଗାନ୍ଧିଜୀ ଇଂରେଜ ସରକାରଙ୍କୁ ପ୍ରକାଶ୍ୟ ଭାବରେ କଂଗ୍ରେସ ବିରୁଦ୍ଧରେ ପ୍ରଚାର କରିବାକୁ ଆହ୍ୱାନ କରି ସେମାନଙ୍କ ହୀନ ଗୋପନୀୟ ଆଚରଣକୁ ନିନ୍ଦା କରିଥିଲେ । ଅଧିକ ମଧ୍ୟ ଭାରତୀୟ କର୍ମଚାରୀମାନେ ଏଭଳି ଗୋପନୀୟ କାରବାରରେ ସାହାଯ୍ୟ ନ କରନ୍ତୁ ବୋଲି ସୂଚନା ଦେଇଥିଲେ । ନିଖିଳ ଭାରତ କଂଗ୍ରେସ କମିଟିରେ ଓ୍ୱାର୍ଦ୍ଧା ପ୍ରସ୍ତାବ ଗୃହୀତ ହୋଇଗଲା । ଗାନ୍ଧିଜୀଙ୍କ ବକ୍ତୃତାରୁ ଜଣାପଡୁଥିଲା ଯେ, ସେ ଲୋକ ଓ ସରକାରୀ କର୍ମଚାରୀଙ୍କ ଉପରେ ନିର୍ଭର କରୁଛନ୍ତି । ବମ୍ବେରେ ବସୁଥିବା କାର୍ଯ୍ୟନିର୍ବାହକ ସମିତିରେ ଗାନ୍ଧିଜୀ ନିଜେ କାରାବରଣ କରିବେ ନାହିଁ ଓ ତାଙ୍କୁ ଗିରଫ କରାହେଲେ ସେ ଅନଶନ କରି ତା'ର ପ୍ରତିରୋଧ କରିବେ ବୋଲି ସୂଚନା ଦେଇଥିଲେ । ମୁଁ ତାଙ୍କୁ ପଚାରିଥିଲି ଆପଣ ଯିନା ଉପବାସ କରି ଗିରଫଦାରି ପ୍ରତିରୋଧ କରିବେ, ଯେଉଁ-ମାନେ ଉପବାସ ନ କରି ପାରିବେ ସେମାନେ କ'ଣ କରିବେ ? ଏହାର ଉତ୍ତରରେ ସେ କହିଲେ—ସେମାନେ ମନେ କଲେ ଏପରି ପ୍ରତିରୋଧ କରି ପାରନ୍ତି ଯେ ପ୍ରାଣ ବାହାରିଗଲେ ସୁଦ୍ଧା ସେମାନଙ୍କ ଇଚ୍ଛାକ୍ରମେ ସେମାନେ ଜେଲ ଯିବେ ନାହିଁ । ଏହା ଛଡ଼ା ଗାନ୍ଧିଜୀ ଅଧିକ ମଧ୍ୟ ସୂଚନା ଦେଇଥିଲେ ଯେ ସରକାରଙ୍କ ସହିତ ଯେତେଦୂର ସମ୍ଭବ ଅସହଯୋଗ କରିବାପାଇଁ ଖଜଣା ବନ୍ଦ, କଳ କାରଖାନା ଓ ରେଳବାଇ ଧର୍ମଘଟ ପ୍ରଭୃତି କରାଯାଇ ପାରେ, ଯେଉଁମାନେ ସରକାରଙ୍କ ସହିତ ସହଯୋଗ କରିବେ ସେମାନଙ୍କ ସହିତ ମଧ୍ୟ ଅସହଯୋଗ କରା-ଯାଇପାରେ । ଏ ସବୁ ଆନ୍ଦୋଳନ ଚାଲିଥିବାବେଳେ ଅନ୍ୟମାନେ ଯଦି ଅନ୍ୟ କୌଣସି ପ୍ରକାର ହିଂସାତ୍ମକ ଆନ୍ଦୋଳନ ଚଳାନ୍ତି, ତେବେ ସୁଦ୍ଧା ସତ୍ୟାଗ୍ରହ ବନ୍ଦ

ହେବନାହିଁ ବୋଲି ଗାନ୍ଧିଜୀ ଭାବୁଥିଲେ । ମୁଁ ଏହିଠାରେ କହିଦେଉଛି ଯେ, ଗାନ୍ଧିଜୀ ଚେଷ୍ଟାକରି ପୂର୍ବେ ଯୋଜନା ଅନୁସାରେ କୌଣସି ଆନ୍ଦୋଳନ କରିବା ମନୋଭାବରେ ନ ଥିଲେ । କାରଣ ଯେତେ'ତାଙ୍କୁ ପଚରାଯାଇଛି ସେ ବରାବର କହିଛନ୍ତି ଯେ, ଗତ କୋଡ଼ିଏ ବର୍ଷ ମଧ୍ୟରେ ଲୋକଙ୍କ ଅହିଂସା ଆନ୍ଦୋଳନ ସମ୍ବନ୍ଧରେ ଯାହା ଧାରଣା ଜନ୍ମିଛି, ସେହି ଅନୁସାରେ ଯେତେଦୂର ପାରିବେ କରିବେ । କଂଗ୍ରେସ ଅନୁଷ୍ଠାନ ହିସାବରେ ପ୍ରାୟ ପ୍ରତ୍ୟେକ ପ୍ରଦେଶ ଯେ, ଦୁର୍ବଳ, ଏ କଥା ଗାନ୍ଧିଜୀଙ୍କୁ କୁହାଯାଇଛି—ମାତ୍ର ସେ ତା' ଉତ୍ତରରେ କହିଛନ୍ତି—

"ମୁଁ ଯେତେବେଳେ ୧୯୨୦ ମସିହା ଅସହଯୋଗ ଆନ୍ଦୋଳନ ଆରମ୍ଭ କରିଥିଲି, ତେତେବେଳେ କୌଣସି ଅନୁଷ୍ଠାନ ଉପରେ ନିର୍ଭର କରି ମୁଁ ତାହା କରି ନ ଥିଲି । ଆଗେ ଆନ୍ଦୋଳନ ଚାଲିଲା ଓ ତା'ପରେ ଅନୁଷ୍ଠାନ ଗଢ଼ାହେଲା । ସେହିପରି ଏଥର ମଧ୍ୟ ହେବ ବୋଲି ମୋର ବିଶ୍ୱାସ ।" ମୋଟ କଥା ଦେଶରେ ଇଂରେଜ ସରକାରଙ୍କ ପ୍ରତି ଯେଉଁ ଅଶ୍ରଦ୍ଧା ବ୍ୟାପି ଯାଇଛି ତାକୁ ଚପାଇ ରଖିବାକୁ ଗାନ୍ଧିଜୀ ପସନ୍ଦ କରୁ ନ ଥିଲେ । କୋଡ଼ିଏ ବର୍ଷ ଭିତରେ ଅହିଂସା ଆନ୍ଦୋଳନ କିପରି ଚାଳିତ ହୁଏ, ସେ ସମ୍ବନ୍ଧରେ ଲୋକଙ୍କର ଧାରଣା ହୋଇଛି । ଇଂରେଜ ଶାସନ ବିରୁଦ୍ଧରେ ବିସ୍ତୃତ ଅସନ୍ତୋଷ ସୃଷ୍ଟି ହୋଇ ଲୋକଙ୍କ ଅନୁଭୂତି ଅନୁରୂପ ଆନ୍ଦୋଳନରେ ପ୍ରକାଶ ପାଉ, ତା'ର ଫଳାଫଳ ଭଗବାନଙ୍କ ହାତରେ ଛାଡ଼ି ଦିଆଯାଉ । ନିଜେ ଆନ୍ଦୋଳନର କର୍ତ୍ତା ନ ହୋଇ ସେ ଏହାର କର୍ତ୍ତୃତ୍ୱ ଲୋକଙ୍କ ଉପରେ ଛାଡ଼ି ଦେଇଥିଲେ । ଅବଶ୍ୟ ସେ ଯଥା ଧର୍ମ ନ ହୁଅନ୍ତୁ, ତେବେ ଲୋକଙ୍କଦ୍ୱାରା ପରିଚାଳିତ ଆନ୍ଦୋଳନକୁ ଅହିଂସାର ସୀମାଭିତରେ ରଖିବାକୁ ଚେଷ୍ଟା କରିବେ, ମାତ୍ର ଇଂରେଜଙ୍କ ପ୍ରତି ଲୋକଙ୍କ ଅବିଶ୍ୱାସ ଓ ଅସନ୍ତୋଷକୁ ଚାପି ରଖିବାରେ ସେ ସାହାଯ୍ୟ କରିବେ ନାହିଁ । ଏହା ହିଁ ତାଙ୍କର ଚିନ୍ତାଧାରା ଥିଲି ବୋଲି ମୋର ଧାରଣା ।

ନିଖିଳଭାରତ କଂଗ୍ରେସ କମିଟି ଓ୍ୱାର୍ଦ୍ଧା ପ୍ରସ୍ତାବକୁ ଗ୍ରହଣ କରି ଗାନ୍ଧିଜୀଙ୍କ ଉପରେ ସତ୍ୟାଗ୍ରହର ଭାର ଦେବା ପରେ ଗାନ୍ଧିଜୀ ବଡ଼ଲାଟ୍‌ଙ୍କୁ ଯେପରି ଚରମପତ୍ର ଦେଇ ଆନ୍ଦୋଳନ କରି ଆସିଛନ୍ତି, ସେହିପରି ଏଥର ମଧ୍ୟ ଦେବାର କଥା । ବଡ଼ଲାଟ୍ ଲର୍ଡ଼ ଲିନ୍‌ଲିଥଗୋଙ୍କ ସହିତ ଗାନ୍ଧିଜୀଙ୍କର ବ୍ୟକ୍ତିଗତ ବନ୍ଧୁତା ଅଛି—ଏଣୁ ଅନ୍ତତଃ ଗାନ୍ଧିଜୀଙ୍କଠାରୁ ପତ୍ର ପାଇବା ପର୍ଯ୍ୟନ୍ତ ବଡ଼ଲାଟ୍ ଅପେକ୍ଷା କରିବେ ବୋଲି କେତେକ ଅନୁମାନ କରୁଥିଲେ, ମାତ୍ର ବିଶ୍ୱସ୍ତ ସୂତ୍ରରୁ ଖବର ମିଳୁଥିଲା ବମ୍ବେରେ ନିଖିଳ ଭାରତ କଂଗ୍ରେସ କମିଟି ଓ୍ୱାର୍ଦ୍ଧା ପ୍ରସ୍ତାବକୁ ଗ୍ରହଣ କରିବା ସାଙ୍ଗେ ସାଙ୍ଗେ

କାର୍ଯ୍ୟନିର୍ବାହକ ସମିତିର ସଭ୍ୟମାନଙ୍କୁ ଆଫ୍ରିକାର ଉଗାଣ୍ଡା ନାମକ ସ୍ଥାନକୁ ନେଇ ନିଆଯିବ, କଂଗ୍ରେସର ସମସ୍ତ କର୍ମୀ ଓ ପୃଷ୍ଠପୋଷକମାନଙ୍କୁ ଧରି ନିଆଯିବ, ଯେପରିକି ଗାନ୍ଧିଜୀଙ୍କ ଦ୍ୱାରା ଘୋଷିତ 'ପ୍ରକାଶ୍ୟ ବିଦ୍ରୋହ'ର ଆରମ୍ଭ ସୁଦ୍ଧା ନ ହୋଇପାରେ । ଖବର ମିଳୁଥାଏ ଯେ ଭାରତ ସରକାର ଭାବୁଛନ୍ତି ଯେ, ପ୍ରାୟ ଆଠ-ଶହ ଲୋକଙ୍କୁ ଏକ ସଙ୍ଗରେ ହଠାତ୍ ଧରି ନେଲେ କୌଣସି ପ୍ରକାର ଆଉ ଆନ୍ଦୋଳନ ହୋଇପାରିବ ନାହିଁ ।

ଓଡ଼ିଶାରୁ ଆସିଥିବା ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ, ଶ୍ରୀମତୀ ମାଳତୀ ଦେବୀ, ସର୍ଦ୍ଦାର ସୁରେନ୍ଦ୍ର, ସୁରେନ୍ଦ୍ର ଦ୍ୱିବେଦୀ ପ୍ରଭୃତିଙ୍କ ସହିତ ଦିନେ ମାତ୍ର ସତ୍ୟାଗ୍ରହ ସମ୍ବନ୍ଧରେ ଆଲୋଚନା ହୋଇଥିଲା । ସେ ପୁଣି ଅଳ୍ପ ସମୟ ପାଇଁ—ଏଣେ ହଠାତ୍ ଯେଉଁଦିନ ନିଖିଳ ଭାରତ କଂଗ୍ରେସ କମିଟି ଗାନ୍ଧିଜୀଙ୍କୁ ସତ୍ୟାଗ୍ରହ ଭାର ଦେଲା, ତହିଁ ପରଦିନ ଅଗଷ୍ଟ ନଅ ତାରିଖ, ଅତି ସକାଳୁ ଜଣେ ଚାକର ଆସି ମୋତେ ନିଦରୁ ଉଠାଇ କହିଲା, 'ସାହେବ, ଆପଣଙ୍କୁ ତଳେ ପୋଲିସ୍ ଡାକୁଛନ୍ତି ।' ପଣ୍ଡିତ ଗୋବିନ୍ଦବଲ୍ଲଭ ପନ୍ଥ ଓ ମୁଁ ରାଜା ଗୋବିନ୍ଦ ଲାଲ ପିତ୍ତିଙ୍କ ଅତିଥି ହୋଇଥିଲୁ । ମୁଁ ପନ୍ଥଜୀଙ୍କୁ ନିଦରୁ ଉଠାଇ କହିଲି ଯେ ପୋଲିସ୍ ଆସିଲେଣି । ଇତିମଧ୍ୟରେ ମୁଁ ନିତ୍ୟକର୍ମ ସାରିବାକୁ ଚେଷ୍ଟାକଲି । ଭାବୁଥାଏ ଏଠି ପ୍ରତିରୋଧ କପରି କରିବାକୁ ହେବ । ପନ୍ଥଜୀ ମଧ୍ୟ ଭାବୁଥାନ୍ତି । ଦୁହେଁ ଠିକ୍ କଲୁ ଯେ ଆମେ ବସି ରହିବା, ଆମ ନିଜ ଶକ୍ତି ଖରଚ କରି ଆମେ ଜେଲ୍‌କୁ ଯିବାନାହିଁ । ପୋଲିସ୍ ତାଙ୍କ ଶକ୍ତି ଖରଚ କରି ଆମକୁ ନେବ ତ ନେଉ । ଅନ୍ୟ କିଏ କୁଆଡ଼େ ଧରା ହୋଇଛନ୍ତି କି ନା ଜାଣିବାପାଇଁ ଟେଲିଫୋନ୍ ଧରିବା ବେଳକୁ ଦେଖିଲି ଯେ ଘରୁଆଡ଼େ ଟେଲିଫୋନ୍ କାଟି ଦିଆହୋଇଛି । ଛଅଟା ବେଳେ ସ୍ପେଶାଲ ଟ୍ରେନ୍‌ରେ ଆମକୁ କୌଣସି ଆଡ଼କୁ ନେଇ ନିଆଯିବ । ସେହି ଟ୍ରେନ୍‌ରେ ଗାନ୍ଧିଜୀ ଓ କାର୍ଯ୍ୟ-ନିର୍ବାହକ ସମିତିର ଅନ୍ୟ ସଦସ୍ୟମାନେ ଯିବେ ଇତ୍ୟାଦି କଥା ପୋଲିସ୍ ଆମକୁ କହି ତରତର କରାଇବାରେ ଲାଗିଲେ, ମାତ୍ର ଆମେ କିଛି ଶୁଣୁ ନ ଥାଉଁ । ଛଅଟା ବାଜିଗଲା । ପୋଲିସ୍ ମଧ୍ୟ ବିବ୍ରତ ହୋଇ ପଡ଼ିଲେ । ଇତିମଧ୍ୟରେ ବିରଲା ଭବନରୁ ଶ୍ରୀ ରାମେଶ୍ୱର ଦାସ ବିରଲା ଓ ଶ୍ରୀ ବ୍ରଜମୋହନ ବିରଲା ଆସି ପହଞ୍ଚିଲେ । ସେମାନେ ଖବର ଦେଲେ ଯେ ଅନ୍ୟମାନେ କୌଣସି ପ୍ରତିରୋଧ କରି ନାହାନ୍ତି । ଏଣେ ରାଜା ଗୋବିନ୍ଦଲାଲ ମଧ୍ୟ ବହୁତ ଅନୁନୟ ବିନୟ କରି ଆମକୁ ପୋଲିସ୍ ସଙ୍ଗରେ ଯିବାପାଇଁ କହିଲେ । ଶେଷରେ ଆମେ ଗଲୁ । ଆମ ଯିବାବେଳକୁ ସ୍ପେଶାଲ ଟ୍ରେନ୍ ଛାଡ଼ି ଦେଲାଣି । ସେଥିରେ ପ୍ରାୟ ଶହେ଼ଜଣ ଯାଇଛନ୍ତି ବୋଲି ଖବର ପାଇଲୁ । ସେ ଦିନ ଆମକୁ ବମ୍ବେ ସହରର ଆର୍ଥର ରୋଡ଼ ବନ୍ଦିଶାଳାରେ

ରଖାହେଲା । ସେଠାରେ ମାଲୟର ଅନେକ ଲୋକ ବନ୍ଦୀ ହିସାବରେ ଥାଆନ୍ତି । ସେମାନେ ଆମ କଥା ବୁଝୁ ନ ଥାନ୍ତି, କି ଆମେ ତାଙ୍କ କଥା ବୁଝିପାରୁ ନ ଥାଉ । କେବଳ 'ଗାନ୍ଧି' ଶବ୍ଦ ତାଙ୍କ ମୁଖରୁ ଶୁଣି ଇଙ୍ଗିତ୍ ଦ୍ୱାରା ହସଖୁସି ବିଆନିଆ ହେଲୁ । ସେ ଜେଲ୍‌ରେ ଖାଦ୍ୟ ଏପରି ଖରାପ ଯେ, ସେ ଦିନଯାକ ଆମେ ସେଠାରେ ଉପବାସୀ ରହିଲୁ । ଏଥର ଗାନ୍ଧିଜୀଙ୍କ ନିର୍ଦ୍ଦେଶ ଯେ ଜେଲ ନିୟମମାନ ସଭ୍ୟତାର ସହିତ ଅମାନ୍ୟ କରିବାକୁ ହେବ । ଆମେ ମଧ୍ୟ ତାହା କଲୁ—ସୁପରିଣ୍ଟେଣ୍ଡେଣ୍ଟ୍ ଆସିଥିଲେ, ଆମେ ଛିଡ଼ା ହେଲୁ ନାହିଁ । ଆମ ପାଖରେ ଥିବା ଟଙ୍କା ପଇସା ଜେଲ ଅଫିସରେ ଦେଲୁନାହିଁ, ତଥାପି ଆମକୁ କେହି କିଛି କହିଲେ ନାହିଁ । ସେଦିନ ପ୍ୟାରେଲାଲ ଓ ଧୀରୁଭାଇ ଦେଶାଇ ଧରାହୋଇ ସେହି ଜେଲ୍‌କୁ ଆସିଲେ । ତାଙ୍କଠାରୁ ଶୁଣିଲୁ ଯେ ସେଦିନ ବମ୍ବେରେ ଗୁଳି ହୋଇଛି—ଲୋକଙ୍କ ଭିତରେ ପ୍ରବଳ ଉତ୍ତେଜନା । ସେଦିନ ରାତିରେ ପ୍ରାୟ ନଅଟା ବେଳେ ଆମକୁ ସେ ଜେଲରୁ ନିଆ ହୋଇ ପୁନାଆଡ଼କୁ ଯାଉଥିବା ରେଲଗାଡ଼ିରେ ନିଆ ହେଉଥାଏ । ସକାଳେ କର୍କି ଷ୍ଟେସନ୍‌ରେ ଓହ୍ଲାଇଲୁ । ସେଠି ପ୍ରାୟ ଦୁଇ ଘଣ୍ଟା ଅପେକ୍ଷା କରିବାକୁ ହେଲା । କେଉଁଠାକୁ ଯିବୁ ଆମେ ଜାଣି ପାରୁ ନ ଥାଉ; ଶେଷରେ ଗୋଟିଏ ମଟରରେ ଚେଷ୍ଟାଅଶି ମାଇଲ ବୁଲା ହୋଇ ଅହମ୍ମଦ ନଗରରେ ପହଞ୍ଚିଲୁ—ସେଠାରୁ କିଲ୍ଲା ଭିତରକୁ ଆମକୁ ନିଆ ହେଲା । ଭିତରେ ଦେଖିଲୁ ଯେ କାର୍ଯ୍ୟନିର୍ବାହକ ସମିତିର ସମସ୍ତ ସଭ୍ୟଙ୍କୁ ସେହିଠାରେ ରଖା ହୋଇଛି । ଏଠାରେ ସର୍ଦ୍ଦାର ପଟେଲ, ମୌଲାନା ଆଜାଦ୍, ଜବାହରଲାଲ ନେହରୁ, ଡାକ୍ତର ପ୍ରଫୁଲ୍ଲ ଘୋଷ, ଶଙ୍କର ରାଓ ଦେଓ, ଆଚାର୍ଯ୍ୟ କୃପାଲିନୀ, ଆଚାର୍ଯ୍ୟ ନରେନ୍ଦ୍ର ଦେଓ, ଆସଫ୍ ଅଲି, ଡାକ୍ତର ପଟ୍ଟାଭି ସୀତାରାମାୟା, ଡାକ୍ତର ମାହମୁଦ ଏହିମାନେ ସମସ୍ତେ ଥାଆନ୍ତି ।

ବର୍ତ୍ତମାନ ମୁଁ ଅହମ୍ମଦ ନଗର ଫୋର୍ଟର ବନ୍ଦୀ । ଏହା ଜେଲ ନୁହେଁ—ଏହା ଏକ ଐତିହାସିକ କିଲ୍ଲା, ଏହାକୁ ଚାନ୍ଦବିବି କିଲ୍ଲା କହନ୍ତି । ଆକବରଙ୍କ ସମୟରେ ଚାନ୍ଦବିବି ଏହି କିଲ୍ଲାରେ ଯୁଦ୍ଧ କରି ହାରିଗଲେ, ମାତ୍ର ବଶ୍ୟତା ସ୍ୱୀକାର କଲେ ନାହିଁ । ଅନ୍ତତଃ ଚାରିଶହ ବର୍ଷର ଏକ ଐତିହାସିକ ପୀଠ ଉପରେ ରହି କେତେ ଅତୀତ ସ୍ମୃତି ମନରେ ଜାଗି ଉଠିଲା । ଏହା ଇଂରେଜଙ୍କର ଏକ ପ୍ରଧାନ କିଲ୍ଲା ରୂପେ ବ୍ୟବହୃତ ହେଉଥିଲା । ସେତେବେଳେ ଏଠାରେ ଟ୍ୟାଙ୍କଯୁଦ୍ଧ ଶିକ୍ଷା ଦିଆହେଉଥିଲା । ସେଠାରେ ଅଧିକ ସଂଖ୍ୟାରେ ଗୋରା ସୈନ୍ୟ ଥିଲେ । ପ୍ରଥମେ ଇଟାଲିୟାନ୍ ଅଫିସର ଆଫ୍ରିକା ଯୁଦ୍ଧରେ ବନ୍ଦୀ ହୋଇ ଏଠାରେ ରହିଥିଲେ । ପରେ ସେଇଠି ଆମ୍ଭମାନଙ୍କୁ ରଖାହେଲା । ଜଣେ ଗୋରା ସୁପରିଣ୍ଟେଣ୍ଡେଣ୍ଟ୍ ଅଧିକାଂଶ ସମୟ ଆମକୁ ଜଗି ରହୁଥିଲେ । ଚାରିପାଖରୁ ଆବଦ୍ଧ

ଏକ ପରନ୍ତୁବନ୍ଦୀ ହୋଇ ଅନେକଗୁଡ଼ିଏ ବର୍ଷରୁ । ଏହା ଭିତରେ ଆମ ଜେଲର୍ ମଧ୍ୟ ବଦଳୁଥିଲେ । ଆମକୁ ଜଗିବା ପାଇଁ ଦଶଜଣ ଓ୍ୱାର୍ଡ଼ର ମଧ୍ୟ ଥିଲେ । ଆମର କାମଦାମ କରିବା ପାଇଁ ପନ୍ଦର ଜଣ ସାଧାରଣ ବନ୍ଦୀ ପୁନାରୁ ଅଣାହୋଇ ଏଠାରେ ରଖା ହୋଇଥିଲେ । ଜେଲର, ଓ୍ୱାର୍ଡ଼ର ଓ ଆମେ ସମସ୍ତେ କଲ୍ଲାର ଗୋରା ସୈନ୍ୟମାନଙ୍କଦ୍ୱାରା ପରିବୃତ ହୋଇ ରହୁଥାଉଁ । କୌଣସି ପ୍ରକାର ବାହାର ସହିତ ସମ୍ପର୍କ ଯେପରି ଆମର ନ ରହେ, ଆମେ କେଉଁଠି ଅଛୁ ତା' ମଧ୍ୟ ବାହାର ଲୋକେ ଯେପରି ନ ଜାଣିବେ, ସେଥିପାଇଁ ସମସ୍ତ ବ୍ୟବସ୍ଥା କରାହୋଇଥିଲା । ପ୍ରଥମେ ଖବରକାଗଜ ସୁଦ୍ଧା ଦିଆ ହେଉ ନ ଥିଲା, କିଛି ଦିନ ପରେ ତା' ମିଳିଲା ।

ଅହମ୍ମଦ ନଗରରେ ଆମ୍ଭେମାନେ ପହଞ୍ଚିବାର ଦିନକ ପରେ ନିଜ ଭିତରେ ଆଲୋଚନା କରି ସ୍ଥିର କଲୁ ଯେ ଆମ୍ଭେମାନେ କେହି କୌଣସି ବିଷୟରେ ଜେଲ କର୍ତ୍ତୃପକ୍ଷଙ୍କୁ ଅନୁରୋଧ କରିବୁ ନାହିଁ ଓ କେବଳ ଖାଦ୍ୟ ବାଦ୍ଦେଲ ଅନ୍ୟ କୌଣସି ଜିନିଷ ପାଇଁ ସରକାରଙ୍କଠାରୁ ଖର୍ଚ୍ଚ ନେବୁନାହିଁ, ବହୁ ଯୁକ୍ତି-ତର୍କ ପରେ ଏହା ସ୍ଥିର ହୋଇଗଲା । ଫଳରେ ହାତରୁ ମାସକୁ ପ୍ରାୟ ଦୁଇ ଶହ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ୁଥିଲା; କିନ୍ତୁ ତଦ୍ଦ୍ୱାରା ସରକାରୀ ଦୃଷ୍ଟିରେ ଆମର ଗୌରବ ବଢ଼ିଥିଲା ! ଆଉ ଗୋଟିଏ ବିଷୟ ତର୍କ ଯୁକ୍ତି ପରେ ସ୍ଥିର ହେଲା ଯେ ବାହାର ବିଷୟ ଜେଲ୍ ଭିତରେ ଆଲୋଚିତ ହେବ ନାହିଁ, କାରଣ ବାହାରର ସମସ୍ତ ବିଷୟ ଜେଲ୍ ଭିତରେ ଜାଣିବାର ସୁବିଧା ନାହିଁ । ଏହା ଫଳରେ ଜେଲ୍ ଜୀବନର ପୂର୍ଣ୍ଣ ସୁବିଧା ଉଠାଇବା ସମ୍ଭବ ହୋଇଥିଲା ।

୧୯୪୨ ମସିହା ଅଗଷ୍ଟ ମାସଠାରୁ ୧୯୪୫ ମସିହା ଅପ୍ରେଲ ମାସ ପର୍ଯ୍ୟନ୍ତ ମୁଁ ଅହମ୍ମଦ ନଗର ଫୋର୍ଟରେ ଆବଦ୍ଧ ଥିଲି । ମୋର ମନେହୁଏ ଏହି ସମୟଟି ଜୀବନରେ ସବୁଠାରୁ ଉତ୍କୃଷ୍ଟ ସମୟ । ପଣ୍ଡିତ ଜବାହରଲାଲ, ସର୍ଦ୍ଦାର ପଟେଲ ଓ ମୌଲାନା ଆଜାଦ୍ ପ୍ରଭୃତିଙ୍କୁ ମଧ୍ୟ ସେହିପରି ମନେ ହୋଇଥିଲା । କୌଣସି ସୁନିୟନ୍ତ୍ରିତ ବିଦ୍ୟାଳୟରେ ଯେପରି ଛାତ୍ରମାନେ ସଂଯମ ଓ ସାଧନା ଭିତର ଦେଇ ଗଢ଼ି କରି ଭବିଷ୍ୟତ ପାଇଁ ପ୍ରସ୍ତୁତ ହୁଅନ୍ତି, ଅନ୍ତତଃ ମୁଁ ନିଜକୁ ନିଜେ ସେହିପରି କରିଥିଲି । ଅନ୍ୟମାନେ ମଧ୍ୟ ସେହିପରି କରିଥିଲେ । ତିନିବର୍ଷ କାଳ ନିରବଚ୍ଛିନ୍ନ-ଭାବରେ ନିର୍ଦ୍ଦିଷ୍ଟ କାର୍ଯ୍ୟନିର୍ଘଣ୍ଟ ଅନୁସାରେ ମିନିଟ୍ ହିସାବ କରି ଚାଲିବାଠାରୁ ଆରମ୍ଭ କରି, ଲେଖା ପଢ଼ା ଖେଳ କସରତ ଓ ମାଟି ହାଣିବା ପ୍ରଭୃତି ବଗିଚା କାମ ନିୟମିତ ରୂପେ କରିବା ଫଳରେ ନିଜ ଭିତରେ ଥିବା ଶକ୍ତି ବିକାଶ ଲାଭ କରିଥିଲା, ଏହା ଆମ୍ଭେମାନେ ସମସ୍ତେ ଅନୁଭବ କରିଥିଲୁ । ଆମ୍ଭମାନଙ୍କ କାର୍ଯ୍ୟନିର୍ଘଣ୍ଟ ଏହିପରି

ଥିଲା— ସକାଳ ସାତଟା ପନ୍ଦର ମିନିଟ୍‌ରେ ସକାଳ ଜଳଖିଆ, ତତ୍ପୂର୍ବରୁ ନିତ୍ୟ-କର୍ମ ଶେଷ କରିବାକୁ ହେବ । ଏହି ନିତ୍ୟକର୍ମ ମଧ୍ୟରେ ଆସନ ଓ ପ୍ରାଣାୟାମ ମୋ ପକ୍ଷରେ ମୁଁ ବାଧ୍ୟତାମୂଳକ କରିଥିଲି । ଏଗାରଟାବେଳେ ମଧ୍ୟାହ୍ନ ଭୋଜନ—ଏହା ମଧ୍ୟରେ ଲେଖା-ପଢ଼ାରେ ନିଯୁକ୍ତ ହେଉଥିଲୁ । ପୁଣି ସାଢ଼େ ଘୂରିଟାବେଳେ ସାନ୍ଧ୍ୟ ଜଳଯୋଗ । ଇତିମଧ୍ୟରେ ଇଚ୍ଛାମତ ଘଣ୍ଟାଏ କିରି ତାସ ଖେଳ ମଧ୍ୟ ଥିଲା । ସାଢ଼େ ଘୂରିଟାଠାରୁ ସାଢ଼େ ପାଞ୍ଚଟା ପର୍ଯ୍ୟନ୍ତ କଠିନ ବଗିଚା କାମ । ସାଢ଼େ ପାଞ୍ଚଟାଠାରୁ ସାଢ଼େ ଛଅଟା ପର୍ଯ୍ୟନ୍ତ ଇଚ୍ଛାମତ ବ୍ୟାଡ଼ମିଣ୍ଟନ ଖେଳ । ପୁଣି ସାଢ଼େ ଆଠଟାବେଳେ ରାତ୍ରି ଭୋଜନ । ତା'ପରେ ସାଢ଼େ ଦଶଟା ପର୍ଯ୍ୟନ୍ତ କ୍ଲବ୍‌ରେ ଯୋଗଦାନ । ଏହିପରି ନିୟମ ଅନୁସାରେ ଚଳିବା ଫଳରେ ଏତେ ବିଷୟ ଅଧ୍ୟୟନ କରିବା ଓ ଏତେ ବିଷୟ ଲେଖିବା ସମ୍ଭବ ହୋଇଥିଲା ଯେ, ଆଜି ସୁଦ୍ଧା ସେହିପରି ନିୟମାନୁସାରେ ଚଳି ବହୁ କାର୍ଯ୍ୟପାଇଁ ସହଜରେ ସମୟ ପାଇବାର ଅଭ୍ୟାସ ହୋଇଯାଇଛି । "ସମୟ ହେଉନାହିଁ" ଏ କଥାଟାରେ ମୋ ନିଜର ବିଶ୍ୱାସ ହୁଏନାହିଁ, କାରଣ ବହୁ ସମୟ ଅଳକ୍ଷିତ ଭାବରେ ଅଯଥା କଟିଯାଏ । ସେଠି ଆମେ ଯେଉଁମାନେ ଥିଲୁ, ସେମାନଙ୍କ ମଧ୍ୟରୁ ମୁଁ ଥିଲି ସବୁଠାରୁ ବୟସରେ ସାନ । ତେଣୁ ସମସ୍ତେ ସ୍ୱଭାବତଃ କିଛି ନା କିଛି କାମ ମୋତେ ବରାଦ କରୁଥିଲେ । ଈଶ୍ୱରଙ୍କ ଇଚ୍ଛାରୁ ମୁଁ ସମସ୍ତଙ୍କର ସ୍ନେହଭାଜନ ହୋଇପାରିଥିଲି । ଗୋଟିଏ ଘଟଣା ଉଲ୍ଲେଖ ନ କରି ମୁଁ ରହିପାରୁ ନାହିଁ, ସେ ହେଉଛି—ପଣ୍ଡିତ ଜବାହରଲାଲଙ୍କ ସହିତ ଏକପ୍ରକାର କଳହ । ଜେଲ୍‌ଜୀବନରେ ଏହିପରି ଟିକିଏ ଟିକିଏ ହୋଇଥାଏ ଓ ତାହା ମଧ୍ୟ ଜୀବନର ସରସତା ବଢ଼ାଇଥାଏ । ଥରେ ବ୍ୟାଡ଼୍‌ମିଣ୍ଟନ ଖେଳରେ ମୁଁ ଜବାହରଲାଲଙ୍କ ପକ୍ଷରେ ଖେଳୁଥିଲି, ଅନ୍ୟ ପକ୍ଷରେ କୃପାଲିନୀ ଓ ଶଙ୍କର ରାଓ ଥିଲେ । ସ୍ୱାମୀ ମଧ୍ୟସ୍ଥ ଡାକ୍ତର ପଟ୍ଟାଭି ଥିଲେ । ଆମ୍ଭେମାନେ ହାରିଗଲୁ । ଖେଳଟା ଏପରି ଜିଦ୍‌ରେ ହେଉଥିଲା ଯେ, ଏ ହାରିଯିବାଟା ଜବାହରଲାଲଙ୍କ ମନକୁ ଲାଗିଲା ଓ ସେ ହଠାତ୍ ରାଗିଯାଇ ହାରିବାର ଦାୟିତ୍ୱଟାକୁ ମୋ ଉପରେ ଲଦିଦେଲେ । ସ୍ୱଭାବତଃ ମୁଁ ସେଥିରେ ବାଧା ଦେଲି । ଏହିପରି କଥାଟା ବଢ଼ିଗଲା । ଫଳରେ ମୁଁ ଆଉ ବ୍ୟାଡ଼୍‌ମିଣ୍ଟନ୍ ଖେଳିଲି ନାହିଁ । କିଛିଦିନ ପରେ ଜବାହରଲାଲ ପୁଣି ନିଜେ ଆସି ମୋତେ ଟାଣିନେଇ ଖେଳରେ ଛିଡ଼ା କରାଇଲେ । ଏପରି ପିଲାଳିଆ ଆଚରଣ ମଧ୍ୟ ଆମ ଭିତରେ ବେଳେ ବେଳେ ପ୍ରକାଶ ପାଉଥିଲା ।

ଏହି ତିନିବର୍ଷ ମଧ୍ୟରେ ମୁଁ ଦୁଇବର୍ଷ ନିୟମିତ ଭାବରେ ସଂସ୍କୃତ ପଢ଼ିଛି । ଆଚାର୍ଯ୍ୟ ନରେନ୍ଦ୍ର ଦେବ ସେଠି ଥିବାରୁ ସଂସ୍କୃତ ଅଧ୍ୟୟନର ସୁବିଧା ହୋଇଥିଲା ।

ସେ ଜଣେ ଭାରତବିଖ୍ୟାତ ପଣ୍ଡିତ । ବହୁ ବିଷୟରେ ପଣ୍ଡିତ ଲେଖକମାନଙ୍କର ବହିମାନ ପଢ଼ିବାକୁ ସୁବିଧା ମିଳିଥିଲା । ପ୍ରତ୍ୟେକ ନିଜେ ନିଜେ କିଛି କିଣି ଅନ୍ୟ ପାଠାଗାରମାନଙ୍କର ପୁସ୍ତକ ମଗାଇବା, ଫଳରେ ସେଠି ଏକ ବଡ଼ ପୁସ୍ତକାଗାର ଧୀରେ ଧୀରେ ଗଠିତ ହୋଇଗଲା । ପଣ୍ଡିତ ଜହରଲାଲ୍ ଗ୍ରନ୍ଥାଗାର ହିସାବରେ ବହୁ ପୁସ୍ତକ ପୃଥିବୀର ନାନା ଦେଶରୁ ଉପହାର ସ୍ୱରୂପ ପାଉଥିଲେ । ତିନୋଟି ନାଟ୍ୟ, ତିନୋଟି ଉପନ୍ୟାସ ଓ ବହୁ ଶ୍ରେଷ୍ଠ ଶ୍ରେଷ୍ଠ କବିତା ଲେଖିବା ଛଡ଼ା, ଓଡ଼ିଶା ଇତିହାସ ଲେଖିବାର ସୁଯୋଗ ମୁଁ ଏହିଠାରେ ପାଇଥିଲି । ଓଡ଼ିଶା ଇତିହାସ ଲେଖିବା ପାଇଁ ମୁଁ ପ୍ରାୟ ଅଢ଼େଇବର୍ଷ ଲାଗିଥିଲି । ରାତିରେ ସେଥିପାଇଁ ନିୟମିତ ଘଣ୍ଟାଘଣ୍ଟା କାମ କରିବାକୁ ପଡ଼ୁଥିଲା । ଲେଖାପଢ଼ା ଛଡ଼ା ଗୋଟିଏ ଦପ୍ତରଖାନା ମୁଁ ଖୋଲିଥିଲି । ବହୁ ସଂଖ୍ୟାରେ ବହିସବୁ କାରବାର ହେବା ଫଳରେ ବହି ସିଲାଇ ଓ ମରାମତିର ଆବଶ୍ୟକ ପଡ଼ିଲା । ପିଲାଦିନେ ଯାହା କିଛି ମୁଁ ଏଥିରୁ ଶିଖିଥିଲି, ତାହା ଏଇଠି ବଡ଼ କାମରେ ଆସିଲା । ତା’ ଛଡ଼ା ଦପ୍ତରଖାନାରେ କ୍ୟାଲେଣ୍ଡର ପ୍ରଭୃତି ତିଆରି କରିବା କାମ ମୁଁ ଆରମ୍ଭ କରିଥିଲି । ଏଥିପାଇଁ ପ୍ରତି ରବିବାର ତିନି ଘଣ୍ଟାଏ କରି ସମୟ ଦେଉଥିଲି ।

ଅହମ୍ମଦନଗର ଫୋର୍ଟର ସମସ୍ତ ବିବରଣୀ ଲେଖିଲେ ସେ ଗୋଟିଏ ପୁସ୍ତକ ହେବ । ଜୀବନକୁ ଏକ ନିର୍ଦ୍ଦିଷ୍ଟ ସାଧନାର ବଶବର୍ତ୍ତୀ କରି ପୁଣି କାମରେ ଲଗାଇବାର ଅବକାଶ ଏପରି ଆଉ ଭାଗ୍ୟରେ ଜୁଟିବ କି ନା ସନ୍ଦେହ । ପାରିପାର୍ଶ୍ୱିକ ଅବସ୍ଥା ମଧ୍ୟ ଏପରି ଅନୁକୂଳ ହୋଇପାରିବ କି ନା ସନ୍ଦେହ । ୧୯୨୨ ମସିହାରେ ପ୍ରଥମେ ଯେତେବେଳେ ମୋତେ ଜେଲ୍‌ଦଣ୍ଡ ହୋଇଥିଲା, ସେ ସମୟରେ ଭାଗଲପୁର ଜେଲ୍‌ରେ ଭଲ ଭାବରେ ଦରିଣୀ କାମ ଶିଖିଥିଲି । ସେ କାରାକ୍ଳେଶ ବର୍ତ୍ତମାନ କଳ୍ପନାତୀତ । ୧୯୪୨ ମସିହା କାରାଦଣ୍ଡରେ ନିଜର ସାଧନା ପାଇଁ ଯେତିକି ସୁବିଧା ମିଳିଥିଲା, ତା’ର ପୂର୍ଣ୍ଣ ଉପଯୋଗ ମୁଁ କରିଛି ବୋଲି ମୋର ମନେହୁଏ । ଅହମ୍ମଦ ନଗର ଫୋର୍ଟରେ ଆମ୍ଭମାନଙ୍କ ଭିତରୁ ଡାକ୍ତର ମାହମୁଦ ନ୍ୟୂନତା ସ୍ୱୀକାର କରି ଯେତେବେଳେ ସରକାରଙ୍କୁ ଖଣ୍ଡେ ପତ୍ର ଲେଖିବା ଫଳରେ ସେ ଜେଲ୍‌ରୁ ମୁକ୍ତିଲାଭ କରିଥିଲେ । ତାଙ୍କର ଏ କାର୍ଯ୍ୟ ଆମ ସମସ୍ତଙ୍କୁ ବଡ଼ ଆଘାତ ଦେଇଥିଲା ।

୧୯୪୫ ମସିହା ଅପ୍ରେଲ ମାସରେ ମୁଁ ସମ୍ବଲପୁର ଜେଲ୍‌କୁ ଅଣାହେଲି ଓ ସେଠାରେ ନିର୍ଜ୍ଜନ କାରାବାସରେ ଆବଦ୍ଧ ହେଲି । ଜେଲ୍ ଡାକ୍ତରଖାନାକୁ ଅନ୍ୟତ୍ର ଉଠାଇ ନିଆ ହୋଇ ସେଇଠି ମୋତେ ଏକୁଟିଆ ରଖାହେଲା । ଅହମ୍ମଦ

ନଗରର ସମସ୍ତ ନ୍ୟୁଜ୍ପେପରମାନେ ଏଠି ମଧ୍ଯ ଚଳୁଥାଏ । ଏଠାରେ ମାସେ ରହିବା ପରେ ଦିନେ ସନ୍ଧ୍ୟାବେଳେ ଖାଁ ସାହେବ ମୋସାହେବ ଖାଁ ଆସି ମୋତେ କହିଲେ ଯେ, ମୁଁ ପରଦିନ ସକାଳେ ମୁକ୍ତ ହେବି । ମୁଁ ସେ କଥାଟାକୁ ପ୍ରଥମେ ବୁଝିପାରିଲି ନାହିଁ, କାରଣ ସାର୍ଦ୍ଧ ବର୍ଷ ଆଗରୁ ଆମେ ଯେ ମୁକ୍ତ ପାଇବା, ଏହା କଳ୍ପନାତୀତ ଥିଲା ଓ ଅହମ୍ମଦନଗର ଫୋର୍ଟରେ ଆମେ ସବୁ ହିସାବ କରି ସେହି ବିଶ୍ୱାସ ମନରେ ପୋଷଣ କରିଥିଲୁ । ସେହି ବିଶ୍ୱାସ ନେଇ ଦୀର୍ଘ ସମୟସାପେକ୍ଷ ବହୁ କାର୍ଯ୍ୟ ଜେଲ ଭିତରେ କରିବାକୁ ହାତକୁ ନେଇ ସାରିଥିଲି । ଓଡ଼ିଶା ଇତିହାସ ପରେ ଇଂରେଜୀ ଓଡ଼ିଆ ଅଭିଧାନଟିଏ ଲେଖିବା ଆରମ୍ଭ କରିଥିଲି । ଆହୁରି ମଧ୍ଯ ଭାରତ ଇତିହାସ ଲେଖିବାପାଇଁ ଅଧ୍ୟୟନ ଆରମ୍ଭ କରିଥିଲି । ଏହି ଦୁଇଟି କାର୍ଯ୍ୟରେ ଆହୁରି ତିନି ଚାରି ବର୍ଷ କଟିଯିବ ବୋଲି ଭାବିଥିଲି । ମୋସାହେବ୍ ଖାଁଙ୍କଠାରୁ ଏ କଥାଟା ଶୁଣି ପ୍ରଥମେ ମୁଁ କିଛି ବୁଝିପାରିଲି ନାହିଁ । ତା' ପରେ ମନରେ ବିଷାଦ ଜାତ ହେଲା ଏତେ ଗୁଡ଼ାଏ କାମ ରହିଗଲା, ଆଉ ହୋଇ ପାରିବ କି ନା ସନ୍ଦେହ । ମୋତେ ଆଉ ଭାବିବାକୁ ସମୟ କାହିଁ ? ରାତାରାତି ଯେତେ ଜିନିଷପତ୍ର ଥିଲା ସବୁ ବନ୍ଧାବନ୍ଧ ହେଲା, ଅଧିକାଂଶ ଜିନିଷ ହେଉଛି ବହି । କିରାସିନି ପଟା ବାକ୍ସ ବଡ଼ବଡ଼ ଆଣି ଠିକ୍‌ଠାକ୍ ପିଟାପିଟି ହୋଇ ବହି ଓ ଜିନିଷପତ୍ର ସବୁ ବନ୍ଧା ହେଉଛି ରାତିସାରା । ଏଣେ ଗୋଟିଏ ଚୌକିରେ ବସି ମୁଁ ରାତିସାରା ଚିନ୍ତାମଗ୍ନ । ସହସା ଏକ ଦୁର୍ଘଟଣା ଘଟିଗଲା ବୋଲି ମୋର ମନେ ହେଉଥାଏ । ତାକୁ ସମ୍ଭାଳି ଭବିଷ୍ୟତ କାର୍ଯ୍ୟକ୍ରମ ବିଷୟରେ ଚିନ୍ତା କରିବାକୁ ପଡ଼ୁଥାଏ । ସିନ୍ଦୁର ଫାଟିବା ମାତ୍ରକେ ଜିନିଷପତ୍ର ବୁହାବୁହି କରି ମୋତେ ଜେଲରୁ ଖଲାସ କରି ଦିଆଗଲା । ମୋସାହେବ୍ ଖାଁ ଅତି ଚତୁରତାର ସହିତ ମୋତେ ସର୍କିଟ ହାଉସ୍‌କୁ ଡାକିନେଲେ । ସେଇଠି ଏକ ମଟରକାର୍ ପ୍ରସ୍ତୁତ ଥିଲା । ଆଉ ଅପେକ୍ଷା ନ କରି ମୋତେ ଶୀଘ୍ର କଟକ ବିଦା କରିଦେଲେ । ଶୁଣିଲି ଯେ ସମ୍ବଲପୁରରେ କୌଣସି ସ୍ୱାଗତିଆର ଅବକାଶ ନ ଦିଆଯିବା ପାଇଁ ମୋସାହେବ୍ ଖାଁ ତତ୍‌କାଳୀନ ସରକାରଙ୍କ ନିର୍ଦ୍ଦେଶରେ ସେହିପରି ବ୍ୟବସ୍ଥା କରିଥିଲେ ।

୧୯୪୫ ମସିହାରେ ଅବଶିଷ୍ଟ ଅଂଶତକ କଂଗ୍ରେସ ଲୋକ ଓ କର୍ମୀମାନଙ୍କ ଭିତରେ ସାହସ ଓ ଉତ୍ସାହ ଜାଗ୍ରତ କରାଇବାରେ ବ୍ୟସ୍ତ ହୋଇଥିଲି । ସେତେବେଳକୁ କଂଗ୍ରେସ ଅତି ମ୍ରିୟମାଣ ଅବସ୍ଥାରେ । କଂଗ୍ରେସ ଅନୁଷ୍ଠାନମାନ ବେଆଇନ୍, କଂଗ୍ରେସ କର୍ମୀମାନେ ଇତସ୍ତତଃ । ମୁଁ କଟକରେ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ଘରେ ରହିଲି । ବିଜୟ ପଟ୍ଟନାୟକ ସେତେବେଳେ ଲାହୋର୍ ଜେଲରୁ ମୁକ୍ତ ହୋଇ କଟକ ସହରରେ ଆବଦ୍ଧ ହୋଇଥାନ୍ତି । ତାଙ୍କ ସାଙ୍ଗରେ

ସେତେବେଳେ ଲୁଣ୍ଠନକରି ଦେଖାସାକ୍ଷାତ୍ ହେଉଥିଲୁ । ଏହି ଲୁଟ୍ପାଟ କାରବାର ମଧ୍ୟରେ ଲୁଗାକଳ ସ୍ଥାପନ ଏକ କାର୍ଯ୍ୟକ୍ରମ ଥିଲା । ଶେଷରେ ତାହା ଏକ ବାସ୍ତବତାରେ ପରିଣତ ହେଲା । ଲୁଗାକଳ ସ୍ଥାପନ ଉଦ୍ୟମରେ ଲୋକଙ୍କ ସଂସ୍ପର୍ଶରେ ଆସି ଲୁଗାକଳ କରିଆରେ ବହୁ ସୁଶିକ୍ଷିତ ଶ୍ରମଜୀବୀଙ୍କୁ ସଂଗଠନ କରି ଶେଷରେ ଇଂରେଜ ସରକାରଙ୍କ ସାଙ୍ଗରେ ଲଢ଼ିବାକୁ ହେବ, ଏହି ଥିଲା ଆମର କଳ୍ପନା । ଏହି ସମୟରେ ଶ୍ରୀ ବୀରେନ୍ ମିତ୍ରଙ୍କ ସାଙ୍ଗରେ ମୋର ଘନିଷ୍ଠ ପରିଚୟ ହୋଇଥିଲା । ତାଙ୍କର ଉତ୍ସାହ ଓ କର୍ମନିଷ୍ଠା ମୋତେ ଅଭିଭୂତ କରି ଦେଇଥିଲା । ପରେ କାର୍ଯ୍ୟ ଉପଲକ୍ଷେ ମୁଁ କଲିକତା ଯାଇ ନିଜର ନିଗିପଶ୍ରୀ ପାଇଁ ବିରଲାଘରେ ରହିଥିଲି । ସେହି ସମୟରେ ଲୁଚି ରହିଥିବା କଂଗ୍ରେସର ଅନେକ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସିଥିଲି । ମିସେସ୍ ଅରୁଣା ଆସଫ୍ ଅଲି ସେମାନଙ୍କ ମଧ୍ୟରୁ ଜଣେ । ବମ୍ବେରେ ସେହିପରି ବହୁ ଗୁପ୍ତ ଅନୁଷ୍ଠାନ ଓ କର୍ମୀମାନଙ୍କ ସଂସ୍ପର୍ଶରେ ଆସିଥିଲି । ପୁଲିସ୍ ଓ ସି.ଆଇ.ଡି ଛକାଛକି ମଧ୍ୟରେ ଏ ସବୁ ମୁଁ ସାହସର ସହିତ କରୁଥାଏ । କଳ୍ପନା ପ୍ରୀତି ବନ୍ଧୁ ଗୋପନୀୟତାକୁ ନିନ୍ଦା କରୁଥିବାରୁ ମୋର ଉକ୍ତ କାର୍ଯ୍ୟକୁ ଅନେକ ନାପସନ୍ଦ କରୁଥିଲେ । ଓଡ଼ିଶାର ତତ୍କାଳୀନ କଂଗ୍ରେସ ଅବସ୍ଥା ଗୋଟିଏ ଘଟଣାରୁ ଅନୁମାନ କରାଯାଇପାରେ ।

କୋରାପୁଟ ଜିଲ୍ଲାରେ ଖୁବ୍ ଅତ୍ୟାଚାର ଚାଲିଥିଲା ଓ ଚାଲିଥାଏ ବୋଲି ସମ୍ବାଦ ପାଇ ମୁଁ ଜୟପୁର ଗଲି । ସେଠାରେ ମହାରାଜାଙ୍କର ଆତିଥ୍ୟ ଗ୍ରହଣ କରିବାର ବ୍ୟବସ୍ଥା କଲି, ନ ହେଲେ ନିରାପଦ ଭାବରେ ମୋର ନିଜର ରହିବା ମଧ୍ୟ କଠିନ ଥିଲା । ମୁଁ ଜୟପୁରରେ ପହଞ୍ଚିବା ମାତ୍ରକେ ବସ୍ଷ୍ଟାଣ୍ଡପାଖରେ ବହୁ କଂଗ୍ରେସସେବକ ଉତ୍ସାହରେ ମୋତେ ପାଛୋଟି ନେବାପାଇଁ ଅପେକ୍ଷା କରିଥିଲେ । ପୋଲିସ ସେମାନଙ୍କୁ ଘଉଡ଼ାଇ ଦେଲେ । ପୁଣି ମୁଁ ସେ ସମସ୍ତଙ୍କୁ ଡାକି ମହାରାଜାଙ୍କ ଅତିଥିଶାଳାକୁ ଆଣିଲି । ସେଠି ମଧ୍ୟ ପୋଲିସ ଉପସ୍ଥିତ । ଅତି ସାବଧାନତା ସହକାରେ କଂଗ୍ରେସ କର୍ମୀମାନଙ୍କ ସହିତ କଥାବାର୍ତ୍ତା କରି ସେମାନଙ୍କୁ ଉତ୍ସାହ ଦେଇଥିଲି । ସେଇଠି ଥିବା ସମୟରେ ସେ ସମୟର ଡୁଡୁମା ସମ୍ବନ୍ଧୀୟ ବାଦ-ବିବାଦ ବୃତ୍ତାନ୍ତ ପୁଙ୍ଖାନୁପୁଙ୍ଖରୂପେ ଜାଣିଥିଲି । ଓଡ଼ିଶା ସରକାରଙ୍କ ପକ୍ଷରୁ ଗୋବର୍ଦ୍ଧନ୍ ନାୟର୍ ମଧ୍ୟ ସେହି ସମୟରେ ସେଠି ଥିଲେ । ଏହି ଡୁଡୁମା ବିଷୟକୁ ଆଶ୍ରୟ କରି କଂଗ୍ରେସ କର୍ମୀମାନଙ୍କ ସହିତ କଥାବାର୍ତ୍ତା ଚଳାଇଲି । ସି.ଆଇ.ଡି ଭୟ ଓ ନିଷ୍ଫଳତାର ଦୁର୍ଦ୍ଦଶା । ତଥାପି ତା'ରି ଭିତରେ ଗତି କରିବାକୁ ହେଉଥିଲା ।

ଏ ଅବସ୍ଥାରେ ଗାନ୍ଧିଜୀ-କ'ଣ ଭାବୁଛନ୍ତି ଏହା ଜାଣିବାପାଇଁ ମୁଁ ତାଙ୍କ ସହିତ କିଛି ଦିନ କଟାଇଥିଲି । ସେତେବେଳେ ସେ କାରାମୁକ୍ତ ହୋଇ ପଞ୍ଚଗନିରେ

ଥିଲେ । ସେଇଠି ଥିବା ସମୟରେ ଶ୍ରୀ ରାଜଗୋପାଳାଚାରିଙ୍କ ବିରୁଦ୍ଧରେ ଏକ ଲେଖା ପ୍ରକାଶ କରିଥିଲି । ସେଥିରେ ଗାନ୍ଧିଜୀ ବିରକ୍ତ ହୋଇ ମୋତେ କହିଥିଲେ, "ତୁମର କାମ କରିବାର କଥା, ନାଁ ନାମ କରିବାର କଥା—କାମ କରିବା ଯଦି ଉଦ୍ଦେଶ୍ୟ ଥାଏ ତାହାହେଲେ ବିବୃତି ଦେବା ବନ୍ଦ କର ।" ସେତିକିବେଳେ ମୁଁ ଜାଣିଲି ଯେ ଗାନ୍ଧିଜୀ ନିଜ ଉପାୟରେ ତତ୍କାଳୀନ ଅବସ୍ଥାକୁ ସମ୍ଭାଳିବା ପାଇଁ ବାସ୍ତବିକ୍ ଭଗୀରଥ-ପ୍ରୟତ୍ନ କରୁଥିଲେ । ତା'ପରେ ଭୁଲାଭାଇ ଦେଶାଇଙ୍କ ଘରେ କିଛି ଦିନ ରହିଥିଲି । ସେ ମଧ୍ୟ ଗାନ୍ଧିଜୀଙ୍କ ଉକ୍ତ ପ୍ରୟତ୍ନରେ ବ୍ୟବହୃତ ହେଉଥିଲେ । ସେତେବେଳେ ଶ୍ରୀ ରାଜଗୋପାଳାଚାରୀ ଓ ଶ୍ରୀ ଭୁଲାଭାଇ ଦେଶାଇ ପ୍ରମୁଖ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ପ୍ରତି କଂଗ୍ରେସ ମହଲରେ ଉତ୍କଟ ବିରାଗ; କିନ୍ତୁ ଗାନ୍ଧିଜୀଙ୍କ ଆଶୀର୍ବାଦଭାଜନ ହୋଇ ସେମାନେ ସାଧୁଭାବରେ ସେମାନଙ୍କ କର୍ତ୍ତବ୍ୟ ସମ୍ପାଦନ କରି ଯାଉଥିଲେ । ଏହି ସମୟରେ ମୁଁ ଗାନ୍ଧିଜୀଙ୍କ ଅହିଂସାର ଏକ ସୂକ୍ଷ୍ମ କୌଶଳ ଉପଲବ୍ଧି କରି ପାରିଥିଲି ।

ମୋର ମୁକ୍ତିଲାଭର ପ୍ରାୟ ମାସକ ପରେ କାର୍ଯ୍ୟନିର୍ବାହକ ସମିତିର ଅନ୍ୟ ସଦସ୍ୟମାନେ ମୁକ୍ତ ହେଲେ । ମୋର ସମ୍ବଲପୁର ଆସିବା ପରେ ପରେ ସେମାନେ ମଧ୍ୟ ସବୁ ଭିନ୍ନ ଭିନ୍ନ ସ୍ଥାନକୁ ପଠାଇ ଦିଆ ହୋଇଥିଲେ । ସେତେବେଳକୁ ମୋ ମନରେ ବ୍ୟବସ୍ଥାସଭା ପ୍ରବେଶ ଭାବ ଘୁଣାକ୍ଷରରେ ଜାତ ହୋଇ ନ ଥିଲା । ବ୍ୟବସ୍ଥାସଭାକୁ ଯାଇ କାର୍ଯ୍ୟଭାର ଗ୍ରହଣ କରିବା ବିଷୟ ମୋତେ ଓଡ଼ିଶାର ତତ୍କାଳୀନ ଗଭର୍ଣ୍ଣର ସାର୍ ହଥର୍ଣ୍ଣ ଲୁଇସ୍ ପ୍ରଥମେ କହିଥିଲେ । ଗାନ୍ଧିଜୀ ମୋତେ ପଞ୍ଚଗନିରେ ବୁଝାଇ କହିଥିଲେ, "ବର୍ତ୍ତମାନ ଅବସ୍ଥାକୁ ସମ୍ଭାଳିବାକୁ ହେବ; ଅଥଚ ଦେଶର ସମ୍ମାନ ରକ୍ଷା କରିବାକୁ ହେବ ।" ସେହି ପ୍ରସଙ୍ଗରେ ସେ ମୋତେ ସାର୍ ହଥର୍ଣ୍ଣ ଲୁଇସ୍‌ଙ୍କ ସହ ସମ୍ପର୍କ ରଖିବା ପାଇଁ ପରାମର୍ଶ ଦେଇଥିଲେ । ଚମ୍ପାରନ୍ ସତ୍ୟାଗ୍ରହବେଳେ ସାର୍ ହଥର୍ଣ୍ଣ ଲୁଇସ୍ ନୂଆ ଆଇ. ସି. ଏସ୍.ରେ ଯୋଗ ଦେଇ ସେହି ଚମ୍ପାରନ୍‌ରେ ସବ୍‌ଡିଭିଜନ୍ ଅଫିସର ଥିଲେ । ସେହି ସମୟରେ ଗାନ୍ଧିଜୀ ତାଙ୍କ ସଂସ୍ପର୍ଶରେ ଆସିଥିଲେ । ଏହି କଥାଟି ସାର୍ ହଥର୍ଣ୍ଣ ଲୁଇସ୍‌ଙ୍କୁ ସ୍ମରଣ କରାଇଦେବା ମାତ୍ରକେ ସେ ଉଲ୍ଲସିତ ହୋଇ କହି ପକାଇଥିଲେ 'ଗାନ୍ଧୀ ଏହା ମନେ ରଖିଛନ୍ତି ।"

ତା'ପରେ ପରେ ବ୍ରିଟିଶ ସରକାରଙ୍କ ସହିତ କଂଗ୍ରେସର ମିଳାମିଶା ଓ ଭାରତର ସ୍ୱାଧୀନତା । ଘଟଣାଚକ୍ରରେ ୧୯୪୬ ସାଲ ଅପ୍ରେଲ ମାସରେ ମୁଁ ଓଡ଼ିଶାର ଶାସନଭାର ଗ୍ରହଣ କଲି । ପ୍ରଧାନମନ୍ତ୍ରୀ ହୋଇ କଅଣ କରିଛି ନ କରିଛି, ତାହା ଆଜ ଆଲୋଚିତ ହେବାର ନୁହେଁ । ଅତି ନୂତନ ସେ ବିଷୟ । କିନ୍ତୁ

ଏ ଭିତରେ ଯେ କେତୋଟି ବଡ଼ ବଡ଼ ଘଟଣା ଘଟିଛି ତା'ର ପୂର୍ଣ୍ଣ ବିବରଣୀ ପ୍ରକାଶ କରିବାକୁ ହେଲେ ସ୍ୱତନ୍ତ୍ର ପୁସ୍ତକମାନ ଲେଖିବାକୁ ହେବ । ଅନ୍ତତଃ ଗଡ଼ଜାତ ମିଶ୍ରଣ ସମ୍ବନ୍ଧରେ ସ୍ୱତନ୍ତ୍ର ପୁସ୍ତକଟିଏ ଲେଖିଛି, ମାତ୍ର ଆଉ ଯାହା କିଛି ସେ ବିଷୟରେ ଲେଖିବାର କଥା ତାହା ସୁବିଧା ହେଲେ ପରେ ସିନା ଲେଖିପାରିବି, ଆଜି ନୁହେଁ ।

ଜୀବନର ମଧ୍ୟଭାଗରେ ଆଜି ଛିଡ଼ାହୋଇ ପଛ କଥା ମନେ ପକାଇ ଆଗକୁ ଅଗ୍ରସର ହେବାକୁ ପଡ଼ୁଛି । ଅତି କ୍ଷିପ୍ର ଗତିରେ ଗଡ଼ିଚାଲିଛି ପ୍ରବାହ । ପ୍ରତି ଜଳକଣାର ପୁଙ୍ଖାନୁପୁଙ୍ଖ ବିବରଣ ରଖୁଛିବା କିଏ ? ବର୍ଣ୍ଣନା କଲେ ପ୍ରତ୍ୟେକ ବୁଦ୍‌ବୁଦ୍‌ର ମଧ୍ୟ ଜୀବନୀ ଲେଖା ହୋଇପାରିବ ! କିନ୍ତୁ ପ୍ରବାହ ସହିତ ସେହି ବୁଦ୍‌ବୁଦ୍‌ର ଗତି ନିର୍ଣ୍ଣୟ ଅନ୍ତତଃ ବୁଦ୍‌ବୁଦ୍ ପକ୍ଷରେ ସାହାଯ୍ୟକାରକ । ବୁଦ୍‌ବୁଦ୍‌ର ଶେଷ ଯେଉଁଠି ତ୍ରୁଟିଇଠି ସେ ବିସ୍ମୃତିରେ ଲୀନ । ଯେ ମୁହୂର୍ତ୍ତରେ ଏ ଜୀବନଟିର କାର୍ଯ୍ୟକ୍ରମ ଶେଷ ହୋଇଯିବ, ସେହି ମୁହୂର୍ତ୍ତର ଭବିଷ୍ୟତ ପରେ ଅନ୍ୟକେ କେଉଁଠି ପ୍ରକାଶ କରିଯାଇପାରେ କି ନା କିଏ ଜାଣେ ନାହିଁ । କିନ୍ତୁ ତାହା ଆଉ ଏଠି ପ୍ରକାଶ କରିଯାଇ ପାରିବ ନାହିଁ । ତେଣିକି ଲୋକମୁଖରେ ଭଲ ଅବା ମନ୍ଦ ଶୁଣାଯିବ ।